" ଏକ ନିର୍ଦ୍ଦିଷ୍ଟ ପରିସୀମା ମଧ୍ୟରେ ବସବାସ କରୁଥିବା, ଏକ ସ୍ୱତନ୍ତ୍ର ଭାଷା ମାଧ୍ୟମରେ ଭାବ ବିନିମୟ କରୁଥିବା, ଏକ ବିଶେଷ ସାମାଜିକ ଓ ସାଂସ୍କୃତିକ ବନ୍ଧନରେ ଆବଦ୍ଧ ଥିବା ତଥା ଏକ ବିଶିଷ୍ଟ ଧାର୍ମିକ ଚେତନା କିମ୍ବା ଉପାସ୍ୟ ଦେବତାଙ୍କୁ ସ୍ୱୀକାର କରୁଥିବା ଗୋଟିଏ ଗୋଷ୍ଠୀର ଅଭୂତପୂର୍ବ ଜାଗରଣହିଁ ଜାତୀୟତା । ଏହି ଜାତୀୟତାହିଁ ବିଭିନ୍ନ କାଳରେ, ବିଭିନ୍ନ ସ୍ଥାନରେ ରାଷ୍ଟ୍ରବିବର୍ତ୍ତନର ମୂଳ ହେତୁ ତଥା ରାଜନୀତିତତ୍ତ୍ୱର ଏକ ମୁଖ୍ୟ ଉପାଦାନ । ଓଡ଼ିଆ ଜାତିକୁ ଏହିପରି ଏକ ଜାତୀୟ ମନ୍ତ୍ରରେ ଅଭିମନ୍ତ୍ରିତ କରିବା ସାରଳା ଦାସଙ୍କର ଅନ୍ୟତମ ଉଦ୍ଦେଶ୍ୟ ।

(ପୃ. ୧୪୮)

*　　*　　*

ସୁସ୍ଥ ଯୌନଜୀବନ ଯାପନ ଦ୍ୱାରା ମାନବର ବ୍ୟକ୍ତିଗତ ଜୀବନ ଯେ କେବଳ ଆନନ୍ଦମୁଖର ହୋଇଉଠେ, ତା' ନୁହେଁ; ବରଂ, ସାମାଜିକ ଉନ୍ନତିର ପଥ ମଧ୍ୟ ସୃଷ୍ଟି ହୁଏ । ଅସଂଯତ ଯୌନଚର୍ଯ୍ୟା ବ୍ୟକ୍ତି, ସମାଜ ଓ ରାଷ୍ଟ୍ରକୁ ଧ୍ୱଂସାଭିମୁଖୀ କରିଥାଏ ।　(ପୃ. ୧୫୭)

*　　*　　*

ସାରଳାଙ୍କ ସମୟକୁ ନାରୀମାନେ ସମସ୍ତ ଗୌରବ ହରାଇ 'ନରକର ଦ୍ୱାର', 'ଶୂଦ୍ରାଦିବତ୍ ତୁଲ୍ୟ ତ୍ୟାଜ୍ୟ' ଓ 'ଘର୍ ମେଁ ବାଘନୀ, ବନ୍ ମେଁ ମୋହନୀ' ରୂପେ ବିବେଚିତ ହେଉଥିଲେ । କିନ୍ତୁ ସାରଳା ଦାସ ଆଜିର ବୁଦ୍ଧିଜୀବୀମାନଙ୍କ ପରି ହୃଦୟଙ୍ଗମ କରିଥିଲେ ଯେ ନାରୀ ରାଷ୍ଟ୍ରର ଏକ ଅମୋଘଶକ୍ତି; ଏକ ମଙ୍ଗଳକାମୀ ରାଷ୍ଟ୍ର ପାଇଁ ନାରୀର ସାମାଜିକ ସ୍ଥିତି ଦୃଢ଼ୀଭୂତ ହେବା ଏକାନ୍ତ ବାଂଛନୀୟ ।

(ପୃ. [illegible])

# A WORD ABOUT THE WORK

The MAHABHARAT, the most popular ancient Indian epic, has cast an indelible impression on the minds of poets through the ages, as a result of which some of them have retold the text in their own language and style. The MAHABHARAT by Sarala Das, the pioneering Oriya poet of the 15th century, is a monument of scholastic genius which not only depicts the original story in a unique form, but also brings out the traits of history and culture of the land splendidly. While this work has earned for the poet the undisputed distinction of being a founder of Oriya literature, it has never-the-less established him as a historian, social reformer, religious leader and political thinker of great eminence. Although some critics have high-lighted the historical, social and religious significance of SARALA MAHABHARAT, its political worth had almost been lost sight of. In order to bring this aspect to light, Dr. Surya Narayan Das, who is already credited with the authorship of 35 titles, has endeavoured to establish that the political ideals of Sarala Das are no less striking than those propounded by the reputed Western and Eastern political philosophers of all times. The present work is the culmination of the writer's literary pursuits spread over a quarter century and this has incidentally been recognised for award of Ph. D. degree by the Berhampur University.

It is hoped, this Book will benefit the Students, Research Scholars, Legislators, Administrators and Conscious Readers in general.



ନ ଗୁରୋରଧିକଂ ତତ୍ତ୍ୱଂ ନ ଗୁରୋରଧିକଂ ତପଃ । ନ ଗୁରୋରଧିକଂ ଜ୍ଞାନଂ ତସ୍ମୈ ଶ୍ରୀଗୁରବେ ନମଃ ।
ଗୁରୁରେବ ଜଗତ୍ସର୍ବଂ ବ୍ରହ୍ମା ବିଷ୍ଣୁ ଶିବାତ୍ମକମ୍ । ଗୁରୋଃ ପରତରଂ ନାସ୍ତି ତସ୍ମାତ୍ ସଂପୂଜୟେଦ୍ ଗୁରୁମ୍ ॥

# ସାରଳା ମହାଭାରତରେ ରାଜନୈତିକ ମୂଲ୍ୟବୋଧ

# ସାରଳା ମହାଭାରତରେ ରାଜନୈତିକ ମୂଲ୍ୟବୋଧ

ଡକ୍ଟର ସୂର୍ଯ୍ୟନାରାୟଣ ଦାଶ

ଗୁରୁଗୌରବ ଗ୍ରନ୍ଥସେବା, ବ୍ରହ୍ମପୁର - ୭୬୦୦୦୫

# ସାରଳା ମହାଭାରତରେ ରାଜନୈତିକ ମୂଲ୍ୟବୋଧ


ରଚନା : ଡ଼. ସୂର୍ଯ୍ୟନାରାୟଣ ଦାସ, ଏମ୍.ଏ., ପି.ଏଚ୍.ଡ଼ି., ଓ. ଏଫ୍. ଏସ୍.

ପ୍ରକାଶକ ଓ ସ୍ୱତ୍ୱ : ଶ୍ରୀମତୀ ପଦ୍ମାବତୀ ଦାସ, ଗୁରୁଗୌରବ ଗ୍ରନ୍ଥସେବା,
ଅନନ୍ତ ନଗର, ବ୍ରହ୍ମପୁର (ଗଞ୍ଜାମ) ୭୬୦୦୦୫

ମୁଦ୍ରଣ : ଶ୍ରୀ ଅଭିମନ୍ୟୁ ପାଢ଼ୀ, ସନ୍ତୋଷ ପ୍ରିଣ୍ଟର୍ସ, ବ୍ରହ୍ମପୁର-୯

ପ୍ରଚ୍ଛଦ : ଶ୍ରୀ ଚିତ୍ତରଞ୍ଜନ ମହାପାତ୍ର, ଗ୍ରାଫିକ୍ ଇଣ୍ଡିଆ, ଭୁବନେଶ୍ୱର-୯

ପ୍ରଥମ ପ୍ରକାଶ : ଗୀତା ଜୟନ୍ତୀ (ନଭେମ୍ବର-୩୦) ୧୯୯୦

ମୂଲ୍ୟ : ଶୋଭନ—ଟ ୭୦-୦୦ ସାଧାରଣ—ଟ ୫୫-୦୦

※ ପରିବେଷକ ※

ଓଡ଼ିଶା ବୁକ୍ ଷ୍ଟୋର, ବିନୋଦବିହାରୀ, କଟକ-୨
ଶ୍ରୀ ପ୍ରକାଶନ, ନାରାୟଣ ମିଶ୍ର ଲେନ, କଟକ-୩
ଗ୍ରନ୍ଥାଳୟ, ମାର୍କେଟ ବିଲଡ଼ିଂ, ଭୁବନେଶ୍ୱର-୯
ବିଜୟ ବୁକ୍ ଷ୍ଟୋର୍, ବାରକ୍‌ସ, ବ୍ରହ୍ମପୁର-୧
ତାରତାରିଣୀ ପୁସ୍ତକାଳୟ, ବାରକ୍‌ସ, ବ୍ରହ୍ମପୁର-୧

**SARALA MAHABHARATARE RAJANAITIKA MULYABODHA**

*Author* : **Dr. Surya Narayan Das**, M. A., Ph. D., O. F. S.

*Publisher* : Smt. Padmavati Das, **Guru Gourava Grantha Seva**, Anant Nagar, Berhampur (Ganjam) 760005

*Printer* : Sri Abhimanyu Padhi, **Santosh Printers**, Old Berhampur Pandara Street, Berhampur-9

*First Edition* : November 30, 1990

**Deluxe—Rs. 70/-** **Popular—Rs. 55/-**

ଗୁରୁଗୌରବର ନିଦର୍ଶନ ସ୍ୱରୂପ
ଅଗ୍ରଜକଳ୍ପ ସାହିତ୍ୟିକ ସୁହୃଦ୍
ଡକ୍ଟର ସୁଦର୍ଶନ ଆଚାର୍ଯ୍ୟଙ୍କ ହାତରେ……

# ପ୍ରସଙ୍ଗକ୍ରମ

## ॥ ପୂର୍ବାଭାଷ ॥

ନିଜସ୍ୱ ସଂଳାପ ୧୦-୧୫, ସ୍ରଷ୍ଟାଙ୍କ ଅନ୍ୟାନ୍ୟ କୃତି-୧୬
ଗ୍ରନ୍ଥ-ପ୍ରବେଶ ୧୭-୨୩, ବିଶେଷ ସୂଚନା ୨୪

## ॥ ପୃଷ୍ଠଭୂମି ॥

**ପ୍ରଥମ ପରିଚ୍ଛେଦ : ବିବର୍ତ୍ତନ-ସରଣୀରେ ରାଜନୀତି-ଦର୍ଶନ** ୨୬-୯୮

ରାଜନୀତିର ସ୍ୱରୂପ ଓ ପ୍ରକାର-୨୮, ରାଜନୀତିକ ଚେତନାର ବିବର୍ତ୍ତନ-୩୦

**(କ) ପାଶ୍ଚାତ୍ୟ ରାଜନୈତିକ ପରଂପରା-୩୧**

ଗ୍ରୀକ୍ ରାଜନୈତିକ ଆଦର୍ଶ-୩୨, ସଫିଷ୍ଟ-୩୬, ପ୍ଲେଟୋ-୩୮, ଆରିଷ୍ଟୋଟଲ-୪୩, ଆରିଷ୍ଟୋଟଲୋତ୍ତର ଗ୍ରୀକ ରାଜନୈତିକ ଚିନ୍ତାଧାରା-୪୬, ରୋମାନ୍ ରାଜନୈତିକ ଆଦର୍ଶ-୪୮

**(ଖ) ଭାରତୀୟ ରାଜନୈତିକ ପରଂପରା-୫୦**

ବୈଦିକ ଭାରତର ରାଜନୈତିକ ଆଦର୍ଶ-୫୫, ଅଶୋକଙ୍କ ଶାସନ ନୀତି-୬୨, ସ୍ମୃତିକାର ମନୁ-୬୫, କୌଟିଲ୍ୟଙ୍କ ଶାସନାଦର୍ଶ-୭୧, ଯାଜ୍ଞବଲ୍କ୍ୟ ସଂହିତା-୭୨, ବୌଦ୍ଧ-ଜାତକର ରାଜନୈତିକ ଆଦର୍ଶ-୭୯, ଗୁପ୍ତଯୁଗୀୟ ଆଦର୍ଶ-୮୦ ଗୁପ୍ତଯୁଗ ପରବର୍ତ୍ତୀ ଶାସ୍ତ୍ରୀୟ ଶାସନ ବ୍ୟବସ୍ଥା-୮୪, ବାର୍ହସ୍ପତ୍ୟ ଶାସନ ବ୍ୟବସ୍ଥା-୮୫, ଶୁକ୍ର, କାମନ୍ଦକ ଓ ପାରାଶର୍ଯ୍ୟ ଶାସନାଦର୍ଶ-୯୦, ବିଭିନ୍ନ ପୁରାଣ ଓ ସାହିତ୍ୟକୃତିର ଆଦର୍ଶ-୯୩

ଦ୍ୱିତୀୟ ପରିଚ୍ଛେଦ : ସାରଳାଙ୍କ ରାଜନୈତିକ ଚେତନା :
ପରଂପରା ଓ ପରିବେଶ ୯୯-୧୪୦

(କ) ଓଡ଼ିଶାର ରାଜନୈତିକ ପରଂପରା ଓ ସାରଳା ଦାସ-୧୦୧

ପ୍ରାଚୀନ ଉତ୍କଳର ଶାସନ ବ୍ୟବସ୍ଥା ୧୦୩, କପିଳେନ୍ଦ୍ର ଦେବଙ୍କ ରାଜ୍ୟ ବିସ୍ତାର ବିବରଣୀ-୧୦୭, କପିଳେନ୍ଦ୍ରଙ୍କ ଶାସନାଦର୍ଶ-୧୦୯, ଅର୍ଥନୈତିକ ବ୍ୟବସ୍ଥା-୧୧୧, ଧର୍ମାଦର୍ଶ-୧୧୨, ଓଡ଼ିଆ ଭାଷା ପ୍ରୀତି-୧୧୩, ସାମାଜିକ ପରିବେଶ-୧୧୪

(ଖ) ସାରଳାଯୁଗୀୟ ଭାରତର ରାଜନୈତିକ ପରିବେଶ-୧୧୬

ସାରଳାଙ୍କ ସମକାଳୀନ ଭାରତର ବିଭିନ୍ନ ସ୍ୱାଧୀନ ରାଜ୍ୟ-୧୨୦, ବାହ୍ମନୀ ଓ ବିଜୟନଗର ସାମ୍ରାଜ୍ୟ-୧୨୧, ସାରଳାଙ୍କ ସମକାଳୀନ ଭାରତୀୟ ଶାସନ ବ୍ୟବସ୍ଥା-୧୨୫, ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ପରିବେଶ-୧୨୬

(ଗ) ସାରଳାଙ୍କ ସମୟର ବିଶ୍ୱ ରାଜନୈତିକ ପୃଷ୍ଠଭୂମି-୧୩୦

ମୁର୍‌ଙ୍କ 'ୟୁଟୋପିଆ'ର ଆଦର୍ଶ-୧୩୫, ମେକ୍ୟାଭେଲିଙ୍କ ଚିନ୍ତାଧାରା-୧୩୭

## ॥ ପର୍ଯ୍ୟେଷଣା ॥

ତୃତୀୟ ପରିଚ୍ଛେଦ : ସାରଳାମହାଭାରତରେ ରାଜନୈତିକ ଆଦର୍ଶ
୧୪୩-୧୯୫

ସାରଳାଙ୍କ ରାଜନୈତିକ ଆଦର୍ଶ : ଭୂମି ଓ ଭୂମିକା-୧୪୪, କାଶ୍ୟପତାବାଦ-୧୪୭, ବିଭିନ୍ନ ରାଜବଂଶର ଉତ୍ପତ୍ତି ଓ ପରଂପରା-୧୫୩, ବିଭିନ୍ନ ରାଜା ଓ ରାଜ୍ୟ : ସାରଳାଙ୍କ ବିବରଣୀ-୧୫୬, ଭାରତୀୟ ପରଂପରାର ପ୍ରଭାବ ୧୬୩, ଅଭିଷେକ ବିଧାନ-୧୬୬, ରାଜକୀୟ ଯୋଗ୍ୟତା-୧୬୭, ଯଜ୍ଞାନୁଷ୍ଠାନ ପ୍ରତିଷ୍ଠା-୧୬୯, ରଣଚର୍ଯ୍ୟା ଓ ସମର ଚିନ୍ତା-୧୭୨, ଯୁଦ୍ଧ ବିଦ୍ୟା ଶିକ୍ଷା-୧୭୪, ଯୁଦ୍ଧର କାରଣ-୧୭୬, ଯୁଦ୍ଧ ପ୍ରସ୍ତୁତି-୧୭୭, ଯୁଦ୍ଧ ପ୍ରଣାଳୀ-୧୮୧, ଯୁଦ୍ଧର ନିୟମ-୧୮୪, ଆଦର୍ଶ ରାଜଧର୍ମ-୧୮୫, ଅର୍ଥନୈତିକ ବ୍ୟବସ୍ଥା-୧୮୭, ଶାସନ ବ୍ୟବସ୍ଥା-୧୯୦, ସାରଳାଙ୍କ କୂଟନୈତିକ ଆଦର୍ଶ-୧୯୩

ଚତୁର୍ଥ ପରିଚ୍ଛେଦ : ସାରଳାଙ୍କ ରାଜନୀତି-ଦର୍ଶନ :
ଧାର୍ମିକ ଆଦର୍ଶର ବୃହତ୍ତର ସଂସ୍କରଣ ୧୯୭-୨୩୪

ରାଜନୈତିକ ଆଦର୍ଶର ଧାର୍ମିକ ପୃଷ୍ଠଭୂମି-୧୯୮, ଓଡ଼ିଶାର ଧାର୍ମିକ ପରଂପରାରେ ସାରଳା ଦାସ ୨୦୧, ସାରଳା ଚଣ୍ଡୀ ଓ ସାରଳା ଦାସ-୨୦୨, ସାରଳାଙ୍କ ଦୃଷ୍ଟିରେ ଶ୍ରୀ ଗଣେଶ-୨୦୫, ସାରଳାଙ୍କ ଶାକ୍ତ ଚେତନା-୨୦୭, ସାରଳା ମହାଭାରତରେ ଶୈବ ଚେତନା-୨୦୮, ସାରଳା ମହାଭାରତରେ ବିଷ୍ଣୁ ଉପାସନାର ମହତ୍ତ୍ୱ-୨୧୦, ନବଗୁଞ୍ଜର ରୂପର ସଙ୍କେତ-୨୧୪, ସାରଳା ଦାସ : ସମନ୍ୱିତ ଜଗନ୍ନାଥତତ୍ତ୍ୱର ଆଦ୍ୟପ୍ରବକ୍ତା-୨୧୫, ସାରଳା ମହାଭାରତରେ ସୂର୍ଯ୍ୟୋପାସନାର ସଙ୍କେତ-୨୧୮, ସ୍ତୁତି ସ୍ତୋତ୍ରର ଗନ୍ତାଘର-ସାରଳା ମହାଭାରତ-୨୨୧, ସାରଳାଙ୍କ ଧର୍ମଚେତନାର ଅନ୍ୟ ଦିଗ-୨୨୩, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ-୨୨୪, ସାରଳାଙ୍କ ଧାର୍ମିକ ଚେତନାର ରାଜନୈତିକ ବୈଶିଷ୍ଟ୍ୟ-୨୨୮

ପଞ୍ଚମ ପରିଚ୍ଛେଦ : ସାରଳାଙ୍କ ରାଜନୈତିକ ଆଦର୍ଶ ଓ
ସମକାଳୀନ ସାମାଜିକ ଚିତ୍ର ୨୩୫-୨୭୭

ଜାତି ସଂସ୍କାର-୨୩୭, ଶିକ୍ଷା ବ୍ୟବସ୍ଥା-୨୩୯, ରଜସ୍ୱଳା ବିଧି-୨୪୩, ବିବାହ ପ୍ରଥା-୨୪୭, ବିବାହକାଳୀନ ବେଶଭୂଷା-୨୪୯, ବିବାହ ପଦ୍ଧତି-୨୫୦, ନବବଧୂ ଯାତ୍ରା-୨୫୧, ଯୌତୁକ ପ୍ରଥା-୨୫୨, ଯୌନଚର୍ଯ୍ୟା-୨୫୩, ସାରଳା ମହାଭାରତରେ ଆଦର୍ଶ ସାମାଜିକ ଜୀବନର ରୂପରେଖ-୨୫୭, ସାରଳାଙ୍କ ଦୃଷ୍ଟିରେ ନାରୀର ଆଦର୍ଶ-୨୬୦, ସାରଳା ମହାଭାରତରେ ଲୋକ ସଂସ୍କୃତିର ସ୍ୱରୂପ ଓ ଆଦର୍ଶ-୨୬୫, ଓଷାବ୍ରତ ଓ ପର୍ବପର୍ବାଣି-୨୬୯, ଚିକିତ୍ସା ପଦ୍ଧତି-୨୭୦, ରନ୍ଧନ ପ୍ରଣାଳୀ ଓ ଖାଦ୍ୟ ସାମଗ୍ରୀ-୨୭୨, ସାମାଜିକ ଆଚରଣ-୨୭୩

ଷଷ୍ଠ ପରିଚ୍ଛେଦ : ସାରଳା ମହାଭାରତର ବୈଶିଷ୍ଟ୍ୟ :
ଏକ ରାଜନୈତିକ ବିଶ୍ଳେଷଣ ୨୭୮-୩୦୮

ସାରଳା ମହାଭାରତରେ ଐତିହାସିକ ରାଜବଂଶର ପରିଚୟ-୨୮୨
ସାରଳା ମହାଭାରତରେ ଭୌଗୋଳିକ ଉପାଦାନ-୨୮୫,

ସାରଳା ମହାଭାରତରେ ଅର୍ଥନୀତି-୬୮୭, ସାରଳାଙ୍କ ସାମାଜିକ ସାମ୍ୟ ଭାବନା-୬୮୯, ସାରଳା ମହାଭାରତରେ ଧର୍ମନିରପେକ୍ଷ ଆଦର୍ଶର ବ୍ୟଞ୍ଜନା-୨୯୨, ସାରଳାଙ୍କ ରାଜନୈତିକ ଆଦର୍ଶର ବୈଶିଷ୍ଟ୍ୟ-୨୯୫, ସାରଳା ମହାଭାରତରେ କୌଟିଲ୍ୟଙ୍କ ଆଦର୍ଶର ପ୍ରତିଫଳନ-୨୯୯, ସାରଳା ମହାଭାରତରେ ବୈଦିକ ଆଦର୍ଶର ରୂପାୟନ-୩୦୩, ସାରଳାଙ୍କ ସାମଗ୍ରିକ ରାଜନୈତିକ ଆଦର୍ଶର ସ୍ୱରୂପ-୩୦୫

## ॥ ପୃଷ୍ଠବନ୍ଧ ॥

ସପ୍ତମ ପରିଚ୍ଛେଦ : ପରବର୍ତ୍ତୀକାଳୀନ ରାଜନୀତିଦର୍ଶନରେ ସାରଳାଙ୍କ ଆଦର୍ଶର ପ୍ରତିଫଳନ ୩୧୧-୩୬୨

ପାଶ୍ଚାତ୍ୟର ରାଜନୀତି ଆଦର୍ଶ ଓ ସାରଳା ଦାସ-୩୧୫, ସମାଜବାଦ-୩୨୪, ଶ୍ରେଣୀ ସଂଘବାଦ-୩୨୮, ଅରାଜକତାବାଦ-୩୨୯, ଜାତୀୟତାବାଦ ଓ ଆନ୍ତର୍ଜାତୀୟତାବାଦ-୩୩୦, ଅରାଜକତାବାଦ-୩୩୧, ସାମ୍ରାଜ୍ୟବାଦ-୩୩୨, ଅନ୍ୟାନ୍ୟ ମତବାଦ-୩୩୨, କଲ୍ୟାଣବ୍ରତୀ ରାଷ୍ଟ୍ରାଦର୍ଶ-୩୩୩, ଭାରତୀୟ ରାଜନୈତିକ ଚିନ୍ତାଧାରା-୩୩୫, ସଂସ୍କାରବାଦୀ ଚେତନା ୩୩୮, ଜାତୀୟ କଂଗ୍ରେସ ଓ ସ୍ୱରାଜ୍ୟ ଭାବନା-୩୪୧, ଗାନ୍ଧିବାଦୀ ଆଦର୍ଶ-୩୪୩ ବୈପ୍ଳବିକ ଚେତନା-୩୪୫, ନେହେରୁଙ୍କ ଚିନ୍ତାଧାରା-୩୪୮, ସାମ୍ପ୍ରତିକ ରାଜନୀତିରେ ସାରଳା ଦାସଙ୍କ ପଦଧ୍ୱନି-୩୫୦, ସାମ୍ପ୍ରତିକ ଭାରତୀୟ ରାଜନୀତି ଓ ସାରଳାଙ୍କ କଳିଯୁଗ ବିବରଣୀ-୩୫୩, ଉପସଂହାର ୩୫୯

## ॥ ପରିଶିଷ୍ଟ ॥

ରାଜନୈତିକ ଆଦର୍ଶ ସମ୍ପର୍କୀୟ ଚିନ୍ତାସାମ୍ୟର ସୂଚନା—୩୬୫-୩୭୩
ସହାୟକ ଗ୍ରନ୍ଥସୂଚୀ—୩୭୪-୩୮୭



"ବ୍ୟକ୍ତିର ଚିନ୍ତା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ସ୍ୱାଧୀନ ମନେହେଲେ ସୁଦ୍ଧା ପରମ୍ପରା ଓ ପରିବେଶ ଦ୍ୱାରା ହିଁ ନିୟନ୍ତ୍ରିତ ହୋଇଥାଏ । ସେ ଦୃଷ୍ଟିରୁ ବିଶ୍ୱର ପ୍ରତ୍ୟେକ ଚିନ୍ତାଶୀଳ ମନୀଷୀଙ୍କ ବ୍ୟକ୍ତିଚେତନା ପୂର୍ବବର୍ତ୍ତୀ ଚିନ୍ତାନାୟକମାନଙ୍କ ଦ୍ୱାରା ଯେପରି ପ୍ରଭାବିତ ହୋଇଥାଏ, ସେହିପରି ସମସାମୟିକ ପରିବେଶ ଦ୍ୱାରା ମଧ୍ୟ ନିୟନ୍ତ୍ରିତ ହୋଇଥାଏ । ସାର୍ତ୍ରଙ୍କ ରାଜନୈତିକ ଦର୍ଶନ ଏଥିର ଏକ ବ୍ୟତିକ୍ରମ ହେବା ସମ୍ଭବ ନୁହେଁ ।"

# ନିଜସ୍ୱ ସଂଳାପ

•

ସାହିତ୍ୟ କ୍ଷେତ୍ରରେ ସୁନାମ ବା ସିଦ୍ଧି ଅର୍ଜନ କରିବା କାହା ପାଇଁ ହୁଏତ ଜନ୍ମଗତ ପ୍ରତିଭାର ପରିସ୍ଫୁରଣ ଅଥବା ଦୁଃଖ ଦୈନ୍ୟ, ମିଳନ-ବିଚ୍ଛେଦ, ପ୍ରେମ ପ୍ରତାରଣା କିମ୍ବା କଟୁତିକ୍ତ ଅନୁଭୂତିର ପ୍ରତିଫଳନ ହୋଇପାରେ; କେହି ହୁଏତ ରାଜ ଅନୁଗ୍ରହ ବଳରେ ସାହିତ୍ୟରଥୀ ସାଜିଥାନ୍ତି ନରୁବା ନିଜର ଅଦମ୍ୟ ଲିପ୍ସା ଚରିତାର୍ଥ କରିବା ନିମିତ୍ତ ପ୍ରଗାଢ଼ ଅଧ୍ୟବସାୟ ବଳରେ ଏହି କ୍ଷେତ୍ରରେ ପ୍ରବେଶ କରିଥାନ୍ତି; ସମ୍ବାଦପତ୍ର, ଆକାଶବାଣୀ ବା ଦୂରଦର୍ଶନ ଭଳି ପ୍ରଚୁର ମାଧ୍ୟମ ସଂସ୍ପର୍ଶରେ ଆସି ମଧ୍ୟ କେତେକ ସାହିତ୍ୟିକ ପାଲଟି ଯାଇଥାନ୍ତି । କିନ୍ତୁ ସାହିତ୍ୟ ପ୍ରତି ମୋର ଆଗ୍ରହ ଜନ୍ମିବା ମୂଳରେ ଏସବୁ କିଛି ନାହିଁ; ତାହା ପରିସ୍ଥିତିର ଆହ୍ୱାନ ଓ ପ୍ରଭାବଶାଳୀ ପରିବେଶର ଅବଦାନ ମାତ୍ର । ନିଜ ଗାଁ ଘରେ ସଂଘଟିତ ଏକ ଘୃଣ୍ୟ ଘଟଣାର ପ୍ରତିକ୍ରିୟାରେ ହିଁ 'ପରିଣାମ' ଶୀର୍ଷକ ଏକ ଅପରିପକ୍ୱ ଗଳ୍ପ ମାଧ୍ୟମରେ ମୋ ସାହିତ୍ୟ ସୃଷ୍ଟିର ଅଙ୍କୁରୋଦ୍‌ଗମ ଘଟିଛି । କାଳକ୍ରମେ କଲେଜ ଜୀବନର ଅନୁଭୂତି, ସହସ୍ର ସଭ୍ୟତାର ସ୍ପର୍ଶ ଓ ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଭ୍ରମଣର ସୁଯୋଗ ଫଳରେ ସେହି ସାହିତ୍ୟାଙ୍କୁର ପଲ୍ଲବିତ ହୋଇଛି ବିଭିନ୍ନ ଅମାର୍ଜିତ ଗପ, କବିତା ଓ ପ୍ରବନ୍ଧ ରୂପରେ । ପରବର୍ତ୍ତୀ-କାଳୀନ ଛାତ୍ରାବସ୍ଥାରେ ପ୍ରାପ୍ତ କେତେକ ପୁରସ୍କାର ଓ ପ୍ରୋତ୍ସାହନ ସାଙ୍ଗକୁ ଏକ ଅନ୍ତଃ ପ୍ରାଦେଶିକ ପ୍ରବନ୍ଧ ପ୍ରତିଯୋଗିତାରେ ଉତ୍ତର ପ୍ରଦେଶ ସରକାରଙ୍କ ଠାରୁ ଆର୍ଥିକ ପୁରସ୍କାର ଅର୍ଜନ ଦ୍ୱାରା ମୋ ସାହିତ୍ୟ ସ୍ପୃହା ଅଧିକ ବଳବତୀ ହୋଇ ପାରିଲା ।

ଠିକ୍ ସେତିକି ବେଳକୁ ଓଡ଼ିଶା ସାହିତ୍ୟ ଏକାଡ଼େମୀରେ ପ୍ରକାଶନ ସହକାରୀ ରୂପେ ନିଯୁକ୍ତି ଏବଂ କଟକର ବିଭିନ୍ନ ମୁଦ୍ରଣାଳୟ ସହ ସଂପର୍କ ଫଳରେ ମୋ ସାହିତ୍ୟ କଳିକା ପୁଷ୍ପିତ ଓ ସୁରଭିତ ହେଲା । ଉକ୍ତ ପରିବେଶରେ ରଚିତ "ଯୁଗସ୍ରଷ୍ଟା ନେହରୁ" ଆତ୍ମପ୍ରକାଶ କଲା ନେହରୁଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ । ସେହି ଉଦ୍ୟମ ପାଇଁ ସେତେବେଳେ ରାଜ୍ୟର ବହୁ ବରେଣ୍ୟ ସାହିତ୍ୟସ୍ରଷ୍ଟା, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ରାଜ୍ୟପାଳ ଏପରିକି ଉପରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନଙ୍କ ଠାରୁ ମଧ୍ୟ ପ୍ରଶଂସାର ସ୍ରୋତ ଛୁଟି ଆସିଥିଲା । ସ୍ୱର୍ଗତ ଗୋଦାବରୀଶ

ମହାପାତ୍ରଙ୍କ ଭଳି ସମାଲୋଚକ ମଧ୍ୟ ( 'ନିଆଁଖୁଣ୍ଟା' ଅକ୍ଟୋବର ୧୯୬୫ ସଂଖ୍ୟାରେ ) ବହିଟିର ଉଚ୍ଚ ପ୍ରଶଂସା କରିଥିଲେ । ଏତାଦୃଶ ପ୍ରୋତ୍ସାହନକୁ ପାଥେୟ କରି ମୋ ସୃଷ୍ଟିର ଦିଗ୍‌ବଳୟ କ୍ରମଶଃ ପ୍ରସାରିତ ହେବାକୁ ଲାଗିଲା । ସମୟକ୍ରମେ ପ୍ରକାଶ ପାଇଲା ଗାନ୍ଧିଜୀ, ଶାସ୍ତ୍ରୀଜୀ ଓ ଗୋପବନ୍ଧୁଙ୍କ ଉପରେ ଜୀବନୀ ଗ୍ରନ୍ଥ; 'ଜାତିସଂଘ', 'ଯୁଗେ ଯୁଗେ ଆଫ୍ରିକା' ଓ 'ଯୁଗେ ଯୁଗେ ଭାରତ' ଭଳି ଐତିହାସିକ ଆଲୋଚନା ଏବଂ 'ମାନସ ମନ୍ଥନ' ଓ 'ଡ଼ାହାଣୀର ଆତ୍ମହତ୍ୟା' ଭଳି ଅନୁଭୂତି ଅନୁରଞ୍ଜିତ କାଳ୍ପନିକ ରଚନା । 'ଯୁଗେ ଯୁଗେ ଆଫ୍ରିକା'ର ମୁଖବନ୍ଧ ଲେଖି ସାରିବା ପରେ ସ୍ୱନାମଧନ୍ୟ ରାଜନୀତିବିଶାରଦ ଡ଼କ୍ଟର ଶ୍ରୀରାମଚନ୍ଦ୍ର ଦାସ ମୋତେ ହର୍ଷୋତ୍ଫୁଲ୍ଲ ଚିତ୍ତରେ ପରାମର୍ଶ ଦେଇଥିଲେ ଯେ ଗ୍ରନ୍ଥଟିକୁ ଇଂରାଜୀରେ ରୂପାନ୍ତର କରି ଗବେଷଣା ନିବନ୍ଧ ରୂପେ ଉପସ୍ଥାପନ କରାଯାଇ ପାରିବ !

ସେହିଦିନଠାରୁ ଗବେଷକ ରୂପେ କୌଣସି ବିଶ୍ୱବିଦ୍ୟାଳୟରେ ନାମ ରେଜିଷ୍ଟ୍ରୀଭୁକ୍ତ କରାଇ ନେବା ବାସନା ମୋ ଅବଚେତନ ମନରେ ସ୍ଫୁର୍ତ୍ତି ଉଠିଥିଲା । ମାନ୍ଦ୍ରାଜର ବରିଷ୍ଠ ଜ୍ୟୋତିଷୀ ସ୍ୱର୍ଗତ ଜି. ଏସ୍. ରାଓ ମଧ୍ୟ ମୋ ଜନ୍ମ ପତ୍ରିକା ବିଚାର କରି ସେଥିରେ ପି.ଏଚ୍. ଡି. ପ୍ରାପ୍ତିଯୋଗ ରହିଛି ବୋଲି ବହୁ ପୂର୍ବରୁ (୨୧।୧୦।୬୩ରେ) ଲେଖିଥିଲେ । କିନ୍ତୁ ପରେ ଗୃହକର୍ମ କ୍ଷେତ୍ରରେ କଟକରେ ଅବସ୍ଥାନ କାଳରେ ବହୁ ବରିଷ୍ଠ ସାହିତ୍ୟସାଧକ ଓ ସାହିତ୍ୟାନୁରାଗୀ ସୁହୃଦ୍‌ଙ୍କ ସଂସ୍ପର୍ଶରେ ଆସି ସଭା, ସମିତି, ସଙ୍ଗଠନ ଓ ସଙ୍କଳନାଦି କାର୍ଯ୍ୟରେ ମଜ୍ଜି ରହିବା ଫଳରେ ଗବେଷଣା ଆକାଂକ୍ଷାଟା ସୁପ୍ତ ହୋଇ ପଡ଼ିଥିଲା । ଯେତେବେଳେ କଟକରୁ ବ୍ରହ୍ମପୁରକୁ ସ୍ଥାନାନ୍ତର ଘଟିଲା, ମୋର ଅଗ୍ରଜକଳ୍ପ ସାହିତ୍ୟିକ ବନ୍ଧୁ ଡ଼କ୍ଟର ସୁଦର୍ଶନ ଆଚାର୍ଯ୍ୟ ଏଥିପାଇଁ ଏକପ୍ରକାର ବାଧ୍ୟ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସେତେବେଳକୁ ମୋର ମୋଟ ୩୪ ଖଣ୍ଡ ବହି ଓ ୧୬୭ଟି ପ୍ରବନ୍ଧ ପ୍ରକାଶ ପାଇ ସାରିଥାଏ । "ହଜାର ହଜାର ପୃଷ୍ଠା ତ ଲେଖି ସାରିଲଣି; ଏଥର ଡ଼କ୍ଟରେଟଟିଏ ପାଇଁ କିଛି ଲେଖା-ଯାଉ"— ତାଙ୍କର ଅଭିମାନୀ ସ୍ୱର ମୋ ପାଇଁ ଥିଲା ସେମିତି ଆଦେଶର ଅଙ୍କୁଶ । ପୁଣି, ନିବନ୍ଧଟିର ବିଷୟବସ୍ତୁ ନିରୂପଣ ଓ ନାମକରଣ ମଧ୍ୟ ତାଙ୍କର ଅବଦାନ । ଏହି ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ ଓ ରାଜନୀତି ବିଜ୍ଞାନ ଉଭୟ ବିଷୟ ସମନ୍ୱିତ ଏ ଗବେଷଣାମୂଳକ ସନ୍ଦର୍ଭର ସୃଷ୍ଟି ସମ୍ଭବ ହୋଇପାରିଛି ।

ସରକାରୀ କାର୍ଯ୍ୟ କ୍ଷେତ୍ରରେ ଘନ ଘନ ଗତିକ୍ରମ ଓ ବାରମ୍ବାର ସ୍ଥାନାନ୍ତର ମଧ୍ୟରେ ଏଭଳି ଏକ କାର୍ଯ୍ୟ ସମ୍ପାଦନା କରିବା କିଭଳି ଶ୍ରମ ସାପେକ୍ଷ, ତାହା କହିବା ଅନାବଶ୍ୟକ । ତେବେ, ଏସବୁ ପ୍ରକାରାନ୍ତରେ ମୋ ପାଇଁ ସହାୟକ ହୋଇଛି ବିଭିନ୍ନ

ସ୍ଥାନରୁ ବିଭିନ୍ନ ତଥ୍ୟ ତଥା ସୂଚନାଗ୍ରନ୍ଥ ସଂଗ୍ରହ କରିବା ଦିଗରେ । ଅନ୍ୟଥା, ହୁଏ ତ ଅନେକ ପୁରୁଣା ଓ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ଅବଲୋକନ ଲାଗି ଅବକାଶ ମିଳି ନଥାନ୍ତା । ପୁନଶ୍ଚ, ଏହି ନିବନ୍ଧ ପ୍ରସ୍ତୁତି କାଳରେ ( ଜୁଲାଇ '୮୪ ଠାରୁ ଜୁନ୍ '୮୯ ) ମୋର ସାମାଜିକ ଓ ସାଧାରଣ ଜୀବନ ଜଞ୍ଜାଳପୂର୍ଣ୍ଣ ହୋଇ ପଡ଼ିଥିଲା । ଏକ ପକ୍ଷରେ 'ଫଲ୍‌ଗୁ ସାହିତ୍ୟ ସଂସଦ'ର ପରିଚାଳନାରେ ସକ୍ରିୟ ଅଂଶଗ୍ରହଣ ଓ ସଂସଦର ମୁଖପତ୍ର ସଂପାଦନା ଦାୟିତ୍ୱ ନିର୍ବାହ ଏବଂ ଅନ୍ୟ ପକ୍ଷରେ, ଜ୍ୟେଷ୍ଠା କନ୍ୟାର ବିବାହ, ତାର ପ୍ରଥମ ପ୍ରସୂତିକାଳୀନ ପରିଚର୍ଯ୍ୟା ଓ ଦୁହିତାର ମୁଖବ୍ୟାଧି ଚିକିତ୍ସା ତତ୍ତ୍ୱାବଧାନ; ସ୍ୱଗୃହରେ ପ୍ରତିପାଳିତା ମାତୃଶ୍ୱଶ୍ରୂଙ୍କର ପକ୍ଷାଘାତଜନିତ ଚିକିତ୍ସା ବିଧାନ ଓ ତାଙ୍କର ତିରୋଧାନ; ଜ୍ୟେଷ୍ଠ ଶାଳକଙ୍କ କଠିନ ବ୍ୟାଧି ଅସ୍ତ୍ରୋପଚାରର ବ୍ୟବସ୍ଥା ଓ ତାଙ୍କର ଅକାଳମୃତ୍ୟୁ; ସୁବର୍ଣ୍ଣପୁର ମୌରସି ଧର୍ମାନୁଷ୍ଠାନର କର୍ତ୍ତା ପିତୃବ୍ୟଙ୍କ ପରଲୋକ ଓ ଉତ୍ତରାଧିକାରୀ ସୂତ୍ରରେ ଜ୍ୟେଷ୍ଠ ପୁତ୍ରର ସେହି ଦାୟିତ୍ୱ ଗ୍ରହଣ ପ୍ରଭୃତି ଘଟଣାରେ ମୋର ମାନସିକ ଶାନ୍ତି ଓ ସ୍ଥିରତା ବାଧାପ୍ରାପ୍ତ ହୋଇ ପଡ଼ିଥିଲା । ସୁତରାଂ, ବାଧାବିଘ୍ନ, ଘାତ ପ୍ରତିଘାତ ମଧ୍ୟରେ ଏହି ଗବେଷଣା କାର୍ଯ୍ୟ ସଂପାଦିତ ହୋଇପାରିବା ନିଶ୍ଚିତ ଭାବେ ପିତୃପୁରୁଷ ତଥା ଗୁରୁଜନଙ୍କ ଆଶୀର୍ବାଦ ଓ ବିଶ୍ୱନିୟନ୍ତାଙ୍କର ଅପାର କରୁଣାର ଫଳ ବୋଲି ମନେହୁଏ ।

ମୋର ତତ୍ତ୍ୱାବଧାରକ ଡ଼କ୍ଟର ଆଚାର୍ଯ୍ୟଙ୍କର ଅବିରାମ ପ୍ରେରଣା, ଅକ୍ଲାନ୍ତ ସହଯୋଗ ଓ ଅଭ୍ରାନ୍ତ ଦିଗ୍‌ଦର୍ଶନ ଯୋଗୁଁ ଏହା ସମ୍ଭବ ହୋଇଥିବାରୁ ଗ୍ରନ୍ଥଟିକୁ ତାଙ୍କ ନାମରେ ଉତ୍ସର୍ଗ ନକରି ରହିପାରୁ ନାହିଁ । ପୁଣି, ବିଭିନ୍ନ ତଥ୍ୟ ତଥା ସହାୟକ ଗ୍ରନ୍ଥର ସାହାଯ୍ୟ ବିନା ମଧ୍ୟ ଏ ଗବେଷଣା କାର୍ଯ୍ୟ ସମ୍ପନ୍ନ ହୋଇ ପାରି ନଥାନ୍ତା । ଏଣୁ ଏ କ୍ଷେତ୍ରରେ ମୋ ତତ୍ତ୍ୱାବଧାରକଙ୍କ ସାଙ୍ଗକୁ ବ୍ରହ୍ମପୁର ବିଜୟ ବୁକ୍ ଷ୍ଟୋର, ଗଞ୍ଜାମ ମହାବିଦ୍ୟାଳୟ, ପାରଳାଖେମୁଣ୍ଡି ସଂସ୍କୃତ ମହାବିଦ୍ୟାଳୟ, ପୁରୀ ଯୁବ ପାଠାଗାର ଏବଂ ସାହିତ୍ୟିକ ବନ୍ଧୁ ଶ୍ରୀ ସହଦେବ ସାହୁ, ଆଇ. ଏ. ଏସ୍., ଶ୍ରୀ ସତ୍ୟନାରାୟଣ ମହାପାତ୍ର, ଡ଼କ୍ଟର ହରିହର ଦାସ ଓ ଡକ୍ଟର ବାଉରିବନ୍ଧୁ ସାହୁଙ୍କ ସହଯୋଗ ଅବିସ୍ମରଣୀୟ । ଏତଦ୍‌ବ୍ୟତୀତ, ମୋ ଗବେଷଣାର ଗତିପଥକୁ ଆଲୋକିତ କରିବା ଦିଗରେ ଡ଼କ୍ଟର ସୀତାରାମ ମହାପାତ୍ର, ଡ଼କ୍ଟର ସଚ୍ଚିଦାନନ୍ଦ ମହାନ୍ତି ଓ ଶ୍ରୀ ଉଦୟନାରାୟଣ ପାଢ଼ୀଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଖ୍ୟାତିସଂପନ୍ନ ସମାଲୋଚକ ଡ଼କ୍ଟର କୃଷ୍ଣଚରଣ ସାହୁ ଓ ଡ଼କ୍ଟର ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ ଗ୍ରନ୍ଥଟିକୁ ଆମୂଳଚୂଳ ପାଠକରି ଏହାର ସାର୍ଥକତା ସଂପର୍କରେ ଅନୁକୂଳ ମନ୍ତବ୍ୟ ପ୍ରଦାନ କରିବା ମୋର ପରମ ସୌଭାଗ୍ୟ । ଏଥିପାଇଁ ଏ ସମସ୍ତଙ୍କ ନିକଟରେ ମୁଁ ଚିରଋଣୀ ।

ଏହି କାର୍ଯ୍ୟ ସମ୍ପାଦନ କାଳରେ କର୍ମକ୍ଷେତ୍ରରେ ମୋର ବରିଷ୍ଠ ପଦାଧିକାରୀ ଟ୍ରେଜେରୀସମୂହର ତତ୍କାଳୀନ ନିର୍ଦ୍ଦେଶକ ଶ୍ରୀ ତ୍ରିଲୋଚନ ଦାସ, ଓ. ଏଫ୍. ଏସ୍, ତଦାନୀନ୍ତନ ବାଣିଜ୍ୟକର କମିଶନର ଶ୍ରୀ ସଞ୍ଜୀବଚନ୍ଦ୍ର ହୋତା, ଆଇ. ଏ. ଏସ୍, ସାହିତ୍ୟାନୁରାଗୀ ବନ୍ଧୁ ଶ୍ରୀ ସତ୍ୟନାରାୟଣ ପଣ୍ଡା, ଓ. ଏଫ୍. ଏସ୍., ଶ୍ରୀ ଉପେନ୍ଦ୍ରନାଥ ପୁରୋହିତ, ଓ. ଏଫ୍. ଏସ୍.ଙ୍କ ଉତ୍ସାହ ଓ ପ୍ରେରଣା ମୋ ପାଇଁ ପାଥେୟ ହୋଇଥିବାରୁ, ଏମାନଙ୍କୁ ମୁଁ ବିନମ୍ର କୃତଜ୍ଞତା ଜ୍ଞାପନ କରୁଅଛି ।

ଏ ଅବସରରେ ମୂଳ ପାଣ୍ଡୁଲିପି ରଚନା, କେରେକ୍ସନ କପି ସମ୍ପାଦନ, ବିଭିନ୍ନ ଗ୍ରନ୍ଥ ଚୟନ, ଗ୍ରନ୍ଥ-ସୂଚୀ ପ୍ରସ୍ତୁତ ପ୍ରଭୃତି କାର୍ଯ୍ୟରେ ମୋର ପତ୍ନୀ ଓ ପୁତ୍ର କନ୍ୟାମାନଙ୍କର ସାହାଯ୍ୟ ପାଇଁ ସେମାନଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି । ନିବନ୍ଧ ଗ୍ରନ୍ଥର କପିଗୁଡ଼ିକୁ ସଂଶୋଧନ କରିବାରେ ବନ୍ଧୁପତ୍ନୀ ଶ୍ରୀମତୀ ବିନୋଦିନୀ ଆଚାର୍ଯ୍ୟଙ୍କର ସ୍ୱତଃସ୍ଫୂର୍ତ୍ତି ଆଗ୍ରହ ଅବିସ୍ମରଣୀୟ । ମୂଳ ନିବନ୍ଧର ଅଙ୍ଗସଜ୍ଜା ଓ ଏହି ଗ୍ରନ୍ଥର ସୁମୁଦ୍ରଣ ପାଇଁ ସନ୍ତୋଷ ପ୍ରିଣ୍ଟର୍ସର ସ୍ୱତ୍ୱାଧିକାରୀ ଶ୍ରୀ ଅଭିମନ୍ୟୁ ପାତ୍ରୀ ଏକାନ୍ତ ଧନ୍ୟବାଦାର୍ହ । ପୁନଶ୍ଚ, ପ୍ରୁଫ୍ ଆଦାନପ୍ରଦାନ ଦ୍ୱାରା ମୁଦ୍ରଣ କାର୍ଯ୍ୟକୁ ତ୍ୱରାନ୍ୱିତ କରାଇବାରେ ଅନୁଜକଳ୍ପ ସୁରେନ୍ଦ୍ରନାଥ ମହାପାତ୍ର ଓ ସୁଭାଷଚନ୍ଦ୍ର ଦାସଙ୍କ ସହଯୋଗ ଏବଂ ଗୁରୁପ୍ରତିମ ହିତୈଷୀ ଶ୍ରୀ ପୁରୁଷୋତ୍ତମ ମିଶ୍ର (ଓ. ଏଫ୍. ଏସ୍.)ଙ୍କ ପ୍ରେରଣା ନିତାନ୍ତ ସ୍ମରଣୀୟ ।

ଏହି କୃତିଟି ମୋର ଆନୁଷ୍ଠାନିକ ଶିକ୍ଷାର୍ଜନଜନିତ ଉଚ୍ଚତମ ସୋପାନର ଏକ ନିଦର୍ଶନ ହୋଇଥିବାରୁ ଏହାର ପ୍ରକାଶନ ଅବକାଶରେ ମୋ ଜ୍ଞାନଚକ୍ଷୁ ଉନ୍ମୀଲନ କ୍ଷେତ୍ରରେ ବାଲ୍ୟଗୁରୁ ଶ୍ରୀ ସୋମନାଥ ପଣ୍ଡାଙ୍କ ଠାରୁ ଆରମ୍ଭ କରି ଗବେଷଣା ତତ୍ତ୍ୱାବଧାରକ ଡ଼କ୍ଟର ଆଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ସ୍ୱର୍ଗତ ଭଗୀରଥି ପୁରୋହିତ, ଭରତ ବେହେରା, ଚିନ୍ତାମଣି ଦାସ, ରଘୁନାଥ ଶାସ୍ତ୍ରୀ, ନରସିଂହ ପାଢ଼ୀ, ଶ୍ୟାମସୁନ୍ଦର ପାଢ଼ୀ, ହେମମୟୀ ପଣ୍ଡା, ଶ୍ରୀମତୀ ବି. ଲଳିତା, ଏସ୍. ପଦ୍ମାବତୀ, ଶାନ୍ତ ମହାପାତ୍ର, ସବଂଶୀ ଏସ୍. କ୍ରିଷ୍ଟାନ୍, ମନୋହର ବଶିଷ୍ଠନ୍, ଜି. ଚନେଶ୍ୱର ରାଓ, ଏନ୍. ସି. ଜାକୋବ, ବି. କୃଷ୍ଣମୂର୍ତ୍ତି, ପ୍ରସନ୍ନକୁମାର ପଟ୍ଟନାୟକ ( ଆଇ. ଏ. ଏସ୍ ), ନୟନରାମ ଦୁବେ (ଓ. ଏଫ୍. ଏସ୍), କମଳ ପ୍ରସନ୍ନ ପରିଜା (ଓ ଏଫ୍ ଏସ୍), କେପ୍‌ଟେନ୍ ଅବଧବିହାରୀ ଲାଲ, ଡ଼କ୍ଟର ଆର୍. ପି. ଢାକୋଲିଆ, ଡ଼କ୍ଟର ଓମ୍ ପ୍ରକାଶ, ଡ଼କ୍ଟର ମଦନ ଗୋପାଳ ଗୁପ୍ତା, ଡ଼କ୍ଟର ପି. ମିଥିଲ୍, ଡ଼କ୍ଟର ସୀତାରାମ ମହାପାତ୍ର, ଡ଼କ୍ଟର ନାରାୟଣ ତ୍ରିପାଠୀ, ଡ଼କ୍ଟର କୃଷ୍ଣଚନ୍ଦ୍ର ଜେନା, ଶଙ୍କରପ୍ରସାଦ ବ୍ରହ୍ମା, ରାଧାକାନ୍ତ ନାୟକ, କାଳୀଚରଣ ରଥ, ପୂର୍ଣ୍ଣଚନ୍ଦ୍ର ପଣ୍ଡା ପ୍ରମୁଖ ବରେଣ୍ୟ ଗୁରୁବୃନ୍ଦଙ୍କର ଅଯାଚିତ ଅବଦାନ ନମ୍ରତାର ସହ ସ୍ୱୀକାର କରୁଅଛି ।

ସର୍ବୋପରି, ସେଠାରେ ଏକାନ୍ତ ଉଲ୍ଲେଖଯୋଗ୍ୟ ଯେ ଗତ ତା ୧୦।୭।୮୯ ରେ ପି ଏଚ୍. ଡି ଉପାଧି ନିମନ୍ତେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ତଥା ତା ୧୧।୧୨।୮୯ରେ ଉକ୍ତ ଉପାଧି ପାଇଁ ଯୋଗ୍ୟ ବିବେଚିତ 'ସାରଳା ମହାଭାରତରେ ରାଜନୀତି' ଶୀର୍ଷକ ମୂଳ ନିବନ୍ଧଟିକୁ ପ୍ରକାଶନ କାଳରେ କେତେକ ସ୍ଥଳେ ଖଣ୍ଡନମଣ୍ଡନ କରାଯାଇଥିଲେ ହେଁ, ଏହାର ମୁଖ୍ୟ ବିଷୟବସ୍ତୁ ଅପରିବର୍ତ୍ତିତ ରହିଅଛି । ସୁଧୀ ପାଠକସମାଜହିଁ ଏହାର ସାର୍ଥକତାର ଶ୍ରେଷ୍ଠ ବିଚାରକ । ତେବେ, ସମସ୍ତ ସତର୍କତା ସତ୍ତ୍ୱେ ଏଥିରେ ରହିଯାଇଥିବା ଅଳ୍ପ କେତୋଟି ମୁଦ୍ରଣ ତ୍ରୁଟି (ପୃ. ୪୦ରେ ସମହଯୋଗ = ସହଯୋଗ, ପୃ. ୮୦ରେ ନ୍ୟାୟ ପରାୟଣ, ନ୍ୟାୟ ପରାୟଣତା ପୃ. ୧୮୧ରେ ବିଭୂଷିତ ଥିଲ = ବିଭୂଷିତ ଥିଲେ, ପୃ. ୨୭୧ରେ ଆତ୍ମାହତ୍ୟା = ଆତ୍ମହତ୍ୟା, ପୃ. ୨୭୩ରେ ଅଜ୍ଞାତ୍ତି କର୍ମ = ଅଜ୍ଞାନ୍ତି କର୍ମ, ପୃ. ୨୯୮ରେ ନୀତି ସମର୍ଥନ = ନୀତି ପ୍ରତି ସମର୍ଥନ ଇତ୍ୟାଦି ) ବିଜ୍ଞ ପାଠକବର୍ଗ ସଂଶୋଧନ କରିନେବେ ବୋଲି ଅନୁରୋଧ । ଛାତ୍ର, ଗବେଷକ, ବୈଧାନିକ ବା ପ୍ରଶାସକମାନଙ୍କୁ ଏହି କୃତିଟି କିଞ୍ଚିତ ଉପାଦାନ ଯୋଗାଇ ପାରିଲେ ମୋର ଉଦ୍ୟମ ସଫଳ ହେବ ।

ବିନୀତ

# ସ୍ରଷ୍ଟାଙ୍କ ଅନ୍ୟାନ୍ୟ କୃତି

| ପୁସ୍ତକର ନାମ | ପ୍ରକାଶ କାଳ |
|---|---|
| ଯୁଗସ୍ରଷ୍ଟା ନେହରୁ | ୧୯୬୫ |
| ଯୁଗଜ୍ୟୋତି ଲାଲବାହାଦୁର ଶାସ୍ତ୍ରୀ | ୧୯୬୬ |
| ଜାତିସଂଘ | ୧୯୬୬ |
| ଯୁଗେ ଯୁଗେ ଆଫ୍ରିକା | ୧୯୬୭ |
| ଯୁଗଜନକ ମହାତ୍ମା ଗାନ୍ଧୀ | ୧୯୬୮ |
| ମାନସ ମନ୍ଥନ (ଉପନ୍ୟାସ) | ୧୯୬୮ |
| ଦ ଲିଟିଲ୍ ଗ୍ରେଟ୍ ହିରୋ (ଇଂରାଜୀରେ ଶାସ୍ତ୍ରୀଙ୍କ ଜୀବନୀ) | ୧୯୬୯ |
| ଯୁଗମାନବ ଜାକିର ହୁସେନ୍ | ୧୯୭୦ |
| ସାଂପ୍ରତିକ ପ୍ରବନ୍ଧ | ୧୯୭୨ |
| ପୃଥିବୀର ଅମର ମଣିଷ (୫ ଖଣ୍ଡ) | ୧୯୭୧।୭୨ |
| ଯୁଗେ ଯୁଗେ ଭାରତ | ୧୯୭୨ |
| ଯୁଗନେତ୍ରୀ ଇନ୍ଦିରା | ୧୯୭୨ |
| ଯୁଗପୁରୁଷ ଗୋପବନ୍ଧୁ ଦାସ | ୧୯୭୨ |
| ଡାହାଣୀର ଆତ୍ମହତ୍ୟା (ରହସ୍ୟ ଉପନ୍ୟାସ) | ୧୯୭୨ |
| ଯୁଗେ ଯୁଗେ ନାରୀ | ୧୯୭୫ |
| ମୌଲାନା ଆଜାଦ | ୧୯୭୫ |
| ନାସ୍ତି-ପ୍ରତିଭା (୩ ଖଣ୍ଡ) | ୧୯୭୬।୮୦ |
| ଦାସ ଆପଣେ | ୧୯୭୬ |
| ଯୁଗର୍ଷି ରାଜାଜୀ | ୧୯୭୬ |
| ସାଂପ୍ରତିକ ସମସ୍ୟା | ୧୯୭୭ |
| ମିଷ୍ଟର୍ ଦାସ | ୧୯୬୭ |
| ଯୁଗଜୟୀ ଜୟପ୍ରକାଶ | ୧୯୭୭ |
| ଜୀବନୀ ଓ ଜାଗରଣ | ୧୯୮୦ |
| ଅମର ଜୀବନୀ (୪ ଖଣ୍ଡ) | ୧୯୮୧ |
| ଆମ ଜଣାବଳିଆ (ଶିଶୁ ସାହିତ୍ୟ) | ୧୯୮୯ |
| ଷଷ୍ଠିଗୁଣ ଦର୍ପଣ (ଜ୍ୟୋତିଷାଲୋଚନା) | ୧୯୯୦ |

୦

# ଗ୍ରନ୍ଥ ପ୍ରବେଶ

ଶୂଦ୍ରମୁନି ସାରଳା ଦାସ ଏ ଦେଶର ଆଦି ମହାକବି ଏବଂ ତାଙ୍କ ରଚିତ ମହାଭାରତ ଏ ଜାତିର ଜାତୀୟ ବେଦ । ବ୍ୟାସ ବିରଚିତ ସଂସ୍କୃତ ମହାଭାରତର ମୂଳ-ଭିତ୍ତି ଉପରେ ସେ ଯେଉଁ ବିଶାଳ ସୌଧ ନିର୍ମାଣ କରିଛନ୍ତି, ତାହା ଆପାତତଃ ମୂଳ ମହାଭାରତର ଉତ୍କଳୀୟ ସଂସ୍କରଣର ଭ୍ରମ ସୃଷ୍ଟି କରୁଥିଲେ ସୁଦ୍ଧା, ଏହା ଯେ ସାରଳା ଦାସଙ୍କ ଅପୂର୍ବ ନବନବୋନ୍ମେଷଶାଳିନୀ ପ୍ରଜ୍ଞା, ପ୍ରଚଣ୍ଡ ସୃଷ୍ଟି ଶକ୍ତି, ସୁଲଳିତ ବର୍ଣ୍ଣନା ଭଙ୍ଗୀ, ଅସୀମ ଅନୁଭୂତି, ପରିଣାମଦର୍ଶୀ ଧୀଶକ୍ତି ଏବଂ ସର୍ବୋପରି ଆଦିଶକ୍ତି ସାରଳାଙ୍କ ଅହେତୁକୀ ଆଶୀର୍ବାଦର ସମନ୍ୱୟରେ ରୂପ ଲାଭ କରିଥିବା ଏକ ସମ୍ପୂର୍ଣ୍ଣ ଅଭିନବ ଓ ମୌଳିକ ସୃଷ୍ଟି, କହିବା ବାହୁଲ୍ୟ ମାତ୍ର । ମହାମହିମ ପ୍ରବଳ ପରାକ୍ରମୀ ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବଙ୍କ ଶାସନ କାଳରେ ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଯେଉଁ ବୈପ୍ଳବିକ ଅଭ୍ୟୁତ୍ଥାନ ସଂଘଟିତ ହୋଇଥିଲା, ତାର ସାମଗ୍ରିକ ଚିତ୍ରରେ ସାରଳାଙ୍କ ମହାଭାରତ ମହିମାମୟ । ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ, ଲକ୍ଷ୍ମୀନାରାୟଣ ବଚନିକା ପ୍ରଭୃତି ଅନ୍ୟ କେତୋଟି ଗ୍ରନ୍ଥ ସାରଳାଙ୍କ ବଳିଷ୍ଠ ଲେଖନୀରୁ ନିଃସୃତ ହୋଇଥିଲେ ସୁଦ୍ଧା, ମହାଭାରତର ପ୍ରଚଣ୍ଡ ଜ୍ୟୋତି ନିକଟରେ ସେ ଗୁଡ଼ିକ ନିଷ୍ପ୍ରଭ ମନେ ହୁଅନ୍ତି । ଓଡ଼ିଶାର ସର୍ବଶ୍ରେଷ୍ଠ ଦେବତା „ଜଗତର ନାଥ ଜଗନ୍ନାଥଙ୍କ ଠାରୁ ଆରମ୍ଭ କରି ଅଖ୍ୟାତ ପଲ୍ଲୀର ଅଜ୍ଞାତ ବୈଶ୍ୟ କନ୍ୟା ସୁହାଣୀ ପର୍ଯ୍ୟନ୍ତ, ସର୍ବଧର୍ମ ସମନ୍ୱୟର ପବିତ୍ର ଆଧ୍ୟାତ୍ମିକ ତତ୍ତ୍ୱଠାରୁ ଖନିକାରର ଜନ୍ମ ବୃତ୍ତାନ୍ତ ରୂପକ କଳଙ୍କିତ ଅଧ୍ୟାୟ ପର୍ଯ୍ୟନ୍ତ ଉତ୍କଳୀୟ ଜନଜୀବନର ପ୍ରତ୍ୟେକଟି ଚିନ୍ତା-ଚେତନା, ଘଟଣା-ଦୁର୍ଘଟଣା ଏଥିରେ ଅନାବିଳ ରୂପ ଲାଭ କରିଅଛି । ଏଥିପାଇଁ ସାରଳାଙ୍କ ମହାଭାରତ ଓଡ଼ିଶାର ଅସଙ୍କଳିତ ଇତିହାସ ଏବଂ ଏହାର ରଚୟିତା ମାଟିର ମହାକବି ।

ସାରଳା ମହାଭାରତର ଏହି ଅପୂର୍ବ ଲୋକପ୍ରିୟତା ଓଡ଼ିଆ ସମାଲୋଚନା ସାହିତ୍ୟର ଉନ୍ମେଷ କାଳରୁ ହିଁ ସାହିତ୍ୟିକମାନଙ୍କୁ ଏହାର ଆଲୋଚନା ପାଇଁ ଆକୃଷ୍ଟ

କରିପାରିଛି । ଗ୍ରନ୍ଥର ବିପୁଳତା ଏବଂ ବିଷୟବସ୍ତୁର ମୌଳିକତା ଦୃଷ୍ଟିରୁ ପ୍ରାଥମିକ ସ୍ତରର ସମାଲୋଚକମାନେ ଏହାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ପାଇଁ ସାହସ କରି ପାରି ନଥିଲେ ମଧ୍ୟ ହଣ୍ଟର୍, ବୀମସ୍, ମନମୋହନ ଚକ୍ରବର୍ତ୍ତୀ ପ୍ରମୁଖ ଏ ସଂପର୍କରେ ସଂକ୍ଷିପ୍ତ ସୂଚନା ଦେବାପାଇଁ ପ୍ରୟାସ କରିଛନ୍ତି । କିନ୍ତୁ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଓଡ଼ିଶାର ଦୁଇଜଣ ବରେଣ୍ୟ ପଣ୍ଡିତ ଏହାର ବିସ୍ତୃତ ଆଲୋଚନାରେ ପ୍ରବୃତ୍ତ ହେବା ଫଳରେ ପରବର୍ତ୍ତୀ ସମାଲୋଚକମାନେ ସାରଳା ମହାଭାରତର ସୀମାହୀନ ଉପବନ ମଧ୍ୟରେ ପ୍ରବେଶ କରିବା ପାଇଁ ସମର୍ଥ ହୋଇପାରିଛନ୍ତି । ତୁଳନାତ୍ମକ ସମାଲୋଚନାର ଆଧାରରେ ରଚିତ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ 'ଶ୍ରୀ ଭାରତ ଦର୍ପଣ' ଏବଂ ଐତିହାସିକ ସମାଲୋଚନା ଭିତ୍ତିରେ ଲିଖିତ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଶାରଳା ଚରିତ' ଏ ଅବସରରେ ଏକାନ୍ତ ସ୍ମରଣୀୟ । ପଣ୍ଡିତ ନନ୍ଦଶର୍ମା ସାରଳ ମହାଭାରତର ଭାଷା, ରଚନା ଶୈଳୀ ପ୍ରଭୃତିର ବିଚାର ସଙ୍ଗେ ସଙ୍ଗେ ମୂଳ ମହାଭାରତର ବିଷୟବସ୍ତୁ ସହିତ ସାରଳା ମହାଭାରତର ଯେଉଁ ତୁଳନାତ୍ମକ ଅଧ୍ୟୟନ କରି ଯାଇଛନ୍ତି, ତାହା ଏ ପର୍ଯ୍ୟନ୍ତ ଅନତିକ୍ରମଣୀୟ ରହିଅଛି । ସେହିପରି, ପଣ୍ଡିତ ମୃତ୍ୟୁଞ୍ଜୟ ବହୁ କଷ୍ଟ ସ୍ୱୀକାରପୂର୍ବକ ସାରଳାଙ୍କ ଜୀବନୀ ଓ କୃତି ସଂପର୍କରେ ଯେଉଁ ତଥ୍ୟସମୂହ ପରିବେଷଣ କରିଛନ୍ତି, ତାହା ମଧ୍ୟ ଏ ପର୍ଯ୍ୟନ୍ତ ସମାଲୋଚକମାନଙ୍କୁ ଦିଗ୍‌ଦର୍ଶନ ଦେଇ ଆସୁଅଛି । ଚଳିତ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଅନ୍ୟାନ୍ୟ ବହୁ ସମାଲୋଚକ ସାରଳା ସାହିତ୍ୟ ସଂପର୍କରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନାତ୍ମକ ରଚନାମାନ ପ୍ରସ୍ତୁତ କରିଥିବା ଲକ୍ଷ୍ୟ କରାଯାଏ । ଏମାନଙ୍କ ମଧ୍ୟରୁ ବିଜୟଚନ୍ଦ୍ର ମଜୁମଦାର, ତାରିଣୀଚରଣ ରଥ, ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ପଣ୍ଡିତ ନୀଳକଣ୍ଠ ଦାସ ପ୍ରମୁଖ ଅନ୍ୟତମ । କିନ୍ତୁ ବିଗତ ତ୍ରିଶ ବର୍ଷ ମଧ୍ୟରେ ହିଁ ବିଭିନ୍ନ ବ୍ୟକ୍ତି, ଅନୁଷ୍ଠାନ ଓ ସରକାରୀ ଉଦ୍ୟମରେ ସାରଳା ସାହିତ୍ୟ ଆଲୋଚନାର ଭୂୟୋବିକାଶ ସାଧିତ ହୋଇପାରିଛି ।

ଏ ସବୁକୁ ବିଶ୍ଳେଷଣ କଲେ, ଏହି ଆଲୋଚନାର ତ୍ରିବିଧ ଦୃଷ୍ଟିକୋଣର ପରିଚୟ ମିଳିପାରେ । ସାରଳା ମହାଭାରତର ପ୍ରକୃତ ବିଶ୍ଳେଷଣ ପାଇଁ ଏକ ଶୁଦ୍ଧ ସଂସ୍କରଣର ଅଭାବ ଉପଲବ୍ଧି କରି ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ବଂଶୀଧର ମହାନ୍ତି ଓ ଡକ୍ଟର କୃଷ୍ଣଚରଣ ସାହୁ ଏ ଦିଗରେ ସଫଳ ପ୍ରୟାସ କରି- ଥିବା ଦେଖାଯାଏ । ଅନ୍ୟ ଦିଗରେ, ଏ ସାହିତ୍ୟର ପରିପ୍ରଚାର ଓ ପରିପ୍ରସାର ପାଇଁ ବ୍ୟକ୍ତିଗତ ଓ ଆନୁଷ୍ଠାନିକ ପ୍ରଚେଷ୍ଟାରେ ବହୁ ପ୍ରବନ୍ଧ ଓ ଗ୍ରନ୍ଥ ପ୍ରକାଶ ଲାଭ

କରିଅଛି । ପ୍ରଜାତନ୍ତ୍ର ପ୍ରଚାର ସମିତି, ସାରଳା ସାହିତ୍ୟ ସଂସଦ, ସାରଳା ସ୍ମୃତି ସଂସଦ ପ୍ରଭୃତି ଆନୁକୂଲ୍ୟରେ 'ସାରଳା ସ୍ମରଣିକା', 'ସାରଳା ସାହିତ୍ୟ ସମୀକ୍ଷା,' 'ସାରଳା ମହାଭାରତ : ଚରିତ୍ରର ଚିତ୍ରଶାଳା' 'ସାରଳା ମହାଭାରତର କଥା ଉପକଥା' ଇତ୍ୟାଦି ଗ୍ରନ୍ଥ ପ୍ରକାଶିତ ହୋଇ ଏ ସାହିତ୍ୟର ବିଭିନ୍ନ ଦିଗ ଉନ୍ମୋଚନ ପାଇଁ ଚେଷ୍ଟା କରାଯାଇଅଛି । ତୃତୀୟତଃ, କେତେ ଗବେଷକ ଓ ଐତିହାସିକ ବ୍ୟକ୍ତିଗତ ପ୍ରଚେଷ୍ଟାରେ ସାରଳାଙ୍କ ବିଶାଳ ସୃଷ୍ଟିର ତାତ୍ତ୍ୱିକ ବିଶ୍ଳେଷଣ ଦିଗରେ ପ୍ରୟାସ କରିଛନ୍ତି । ଏମାନଙ୍କ ମଧ୍ୟରୁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର ମାୟାଧର ମାନସିଂହ, ଡକ୍ଟର ନଟବର ସାମନ୍ତରାୟ, ଡକ୍ଟର କୃଷ୍ଣଚରଣ ସାହୁ, ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ପ୍ରମୁଖଙ୍କ ନାମ ସର୍ବାଦୌ ଉଲ୍ଲେଖନୀୟ । ଏହି ଅବସରରେ ଯେଉଁ ବରିଷ୍ଠ ଅଧ୍ୟାପକମାନେ ସାରଳା ମହାଭାରତର ଭାଷା, ସମାଜଚିତ୍ର, ଶାକ୍ତ-ସଂସ୍କୃତି, ଶୈବ ସଂସ୍କୃତି, ବୌଦ୍ଧ ସଂସ୍କୃତି ପ୍ରଭୃତି ସମ୍ପର୍କରେ ଗବେଷଣାତ୍ମକ ନିବନ୍ଧମାନ ପ୍ରସ୍ତୁତ କରିଛନ୍ତି, ସେମାନଙ୍କୁ ମଧ୍ୟ ସ୍ମରଣ କରିବାର କଥା ।

କିନ୍ତୁ ସାରଳା ସାହିତ୍ୟ ସମାଲୋଚନାର ଏହି ବିପୁଳ ବିସ୍ତୃତି ମଧ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ଅଭାବ ଲକ୍ଷ୍ୟ କରାଯାଇପାରେ । ସାରଳା ଦାସ ଯେଉଁ ସମୟରେ ଜନ୍ମଗ୍ରହଣ କରିଥିଲେ, ତାହା ଥିଲା ଓଡ଼ିଶା ଇତିହାସର ଏକ ସୁବର୍ଣ୍ଣ ଯୁଗ । ସୂର୍ଯ୍ୟବଂଶୀ ଗଜପତିମାନଙ୍କର ଛତ୍ରଛାୟା ତଳେ ଓଡ଼ିଶା ରାଜନୈତିକ ଅଭ୍ୟୁତ୍ଥାନର ଚରମସୀମା ସ୍ପର୍ଶ କରିଥିଲା । ଗଙ୍ଗ ରାଜତ୍ୱର କ୍ଷୀୟମାନ ଚିତ୍ର ସହିତ ସୂର୍ଯ୍ୟବଂଶୀ ରାଜତ୍ୱର ଉଦୀୟମାନ ଚିତ୍ର ସାରଳାଙ୍କ ଅନୁଭୂତିରେ ଜାଗ୍ରତ ଥିଲା । ସେ କେବଳ ଏହାର ନୀରବ ଦ୍ରଷ୍ଟା ନଥିଲେ, ଅପରନ୍ତୁ ଏହି ଶାସନ-ତନ୍ତ୍ର ସହିତ ନିବିଡ଼ ଭାବେ ସଂଶ୍ଳିଷ୍ଟ ମଧ୍ୟ ଥିଲେ । ଏଣୁ ତାଙ୍କ ମହାଭାରତ ପୃଷ୍ଠାରେ ସମକାଳୀନ ରାଜନୀତି ଏବଂ ଅନୁଭବସିଦ୍ଧ ରାଜନୀତି-ଦର୍ଶନ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ରୂପଲାଭ କରିବା ଏକାନ୍ତ ସ୍ୱାଭାବିକ । ବର୍ତ୍ତମାନ ପର୍ଯ୍ୟନ୍ତ କୌଣସି ସମାଲୋଚକ କିମ୍ବା ଗବେଷକ ସାରଳା ମହାଭାରତର ଏହି ବିଶିଷ୍ଟ ଦିଗଟି ପ୍ରତି ସଚେତନ ଆଲୋକପାତ କରିଥିବା ଦୃଷ୍ଟିଗୋଚର ହୁଏ ନାହିଁ । ତେଣୁ ସାରଳା ସାହିତ୍ୟ ସମାଲୋଚନାର ଏହି ଅଭାବଟି ପୂରଣ କରିବା ପାଇଁ ନିବନ୍ଧ ରଚନାର ବିଷୟ ପରିକଳ୍ପନାବେଳେ ଏପରି ଏକ ବିଷୟବସ୍ତୁକୁ ଗ୍ରହଣ କରାଯାଇଅଛି ।

ନିବନ୍ଧ ପ୍ରସ୍ତୁତି ପାଇଁ ବହୁ ମୌଳିକ ଓ ଆଲୋଚନାତ୍ମକ ଗ୍ରନ୍ଥର ସାହାଯ୍ୟ ନିଆଯାଇଥିଲେ ସୁଦ୍ଧା ମୁଖ୍ୟତଃ ସାରଳାଙ୍କ ମହାଭାରତକୁ ହିଁ ମୂଳ ଉପାଦାନ

ରୂପେ ଗ୍ରହଣ କରାଯାଇଅଛି । ପ୍ରଥମେ ମୂଳ ମହାଭାରତ ସହିତ ଏହାର ଏକ ତୁଳନାତ୍ମକ ଅଧ୍ୟୟନ କରାଯାଇ ଯେଉଁ ସ୍ଥଳଗୁଡ଼ିକରେ ସାରଳା ନିଜର ମୌଳିକତା ପ୍ରଦର୍ଶନ କରିଛନ୍ତି, ସେଗୁଡ଼ିକ ଉପରେ ହିଁ ଅଧିକ ଗୁରୁତ୍ୱ ଆରୋପ କରାଯାଇ ତାଙ୍କ ରାଜନୈତିକ ମତବାଦର ବିଶ୍ଳେଷଣ ଉପସ୍ଥାପିତ ହୋଇଅଛି । ଏହି ଆଲୋଚନା ପାଇଁ ଅଧୁନା ଉପଲବ୍ଧ ସାରଳା ମହାଭାରତର ଦୁଇଟିଯାକ ସଂସ୍କରଣ ଉପରେ ନିର୍ଭର କରାଯାଇଅଛି । ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ଗ୍ରନ୍ଥ (ସା : ମ: ଭା: (ରା) ରୂପେ ନିବନ୍ଧରେ ସୂଚିତ) ସାରଳା ମହାଭାରତର ଏକ ସଂଶୋଧିତ ଚିରାଚରିତ ସଂସ୍କରଣ । ଏଥିରେ ସାରଳାଙ୍କ ବିଷୟବସ୍ତୁକୁ ଅକ୍ଷୁଣ୍ଣ ରଖିବା ପାଇଁ ଚେଷ୍ଟା କରାଯାଇ-ଥିଲେ ହେଁ ଭାଷା ଓ ଭାବ ପ୍ରକାଶ ଭଙ୍ଗୀକୁ ପରିବର୍ତ୍ତନ କରିଦିଆଯିବା ଫଳରେ ମୌଳିକ ରଚନା ଠାରୁ ଦୂରେଇ ଯାଇଅଛି । ସେହିପରି, ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ଏବଂ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ସାରଳା ମହାଭାରତ (ସା: ମ: ଭା: (ସା) ରୂପେ ସୂଚିତ) ବୈଜ୍ଞାନିକ ଭିତ୍ତିରେ ସଂପାଦିତ, ତେଣୁ ସାରଳାଙ୍କ ରଚନାର ଅଧିକ ନିକଟବର୍ତ୍ତୀ ବୋଲି ଗ୍ରହଣ କରାଯାଉଥିଲେ ସୁଦ୍ଧା ଏହାର ପ୍ରାମାଣିକତା ତଥାପି ସନ୍ଦେହମୁକ୍ତ ନୁହେଁ । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପରି ସାରଳା ସାହିତ୍ୟର ବିଶିଷ୍ଟ ସମାଲୋଚକମାନେ ଏହାକୁ ମୂଳ ରଚନାର ନିକଟବର୍ତ୍ତୀ ବୋଲି ସ୍ୱୀକାର କରିବା ପାଇଁ କୁଣ୍ଠିତ । ଏ ପରିପ୍ରେକ୍ଷୀରେ, ଡକ୍ଟର କୃଷ୍ଣଚରଣ ସାହୁଙ୍କ ଦ୍ୱାରା ପ୍ରସ୍ତୁତ ସଂକଳନଟି ଅଧିକ ବିଶ୍ୱାସ ଯୋଗ୍ୟ ବୋଲି ମନେହୁଏ । କିନ୍ତୁ କ୍ଷୋଭର ବିଷୟ, ତାହା ଅସମ୍ପୂର୍ଣ୍ଣ । ଏହି ପରିସ୍ଥିତିରେ ନିବନ୍ଧ ରଚନା ପାଇଁ ଉଭୟ ରାଧାରମଣ ପୁସ୍ତକାଳୟ ଓ ସାଂସ୍କୃତିକ ବ୍ୟାପାର ବିଭାଗର ସଂସ୍କରଣକୁ ଗ୍ରହଣ କରାଯାଇଛି । ଅନ୍ୟାନ୍ୟ ଯେଉଁ ଗ୍ରନ୍ଥଗୁଡ଼ିକର ସହାୟତା ଏ ଅବସରରେ ନିଆଯାଇଛି, ପାଦଟୀକାରେ ସେ ସବୁର ଋଣ ସ୍ୱୀକାର କରାଯାଇଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳା ଦାସ ସୁବିପୁଳ ମହାଭାରତ ଗ୍ରନ୍ଥ ବ୍ୟତୀତ 'ଚଣ୍ଡୀ ପୁରାଣ', 'ବିଲଙ୍କା ରାମାୟଣ' ଓ 'ଲକ୍ଷ୍ମୀନାରାୟଣ ବଚନିକା'ର ରଚୟିତା ମଧ୍ୟ । ପୁନଶ୍ଚ, ସାରଳା ଦାସ ବା ସିଦ୍ଧେଶ୍ୱର ଦାସଙ୍କ ନାମରେ ଭଣିତ 'ବିଚିତ୍ର ରାମାୟଣ', 'ସପ୍ତକାଣ୍ଡ ରାମାୟଣ' ଓ 'ଅଧ୍ୟାତ୍ମ ରାମାୟଣ' ଗ୍ରନ୍ଥଗୁଡ଼ିକୁ ମଧ୍ୟ ସମାଲୋଚକଗଣ ସାରଳା ଦାସଙ୍କର ରଚନା ରୂପେ ସ୍ୱୀକାର କରିବାକୁ ଆରମ୍ଭ କଲେଣି । ଏସବୁ ଗ୍ରନ୍ଥରେ ମଧ୍ୟ ସାରଳାଙ୍କ ସମକାଳୀନ ସମାଜ ଓ ଶାସନ ଧାରାର

କେତେକ ଚିନ୍ତା ପ୍ରତିଫଳିତ ହୋଇଅଛି । କିନ୍ତୁ କେବଳ ସାରଳାଙ୍କ ମହାଭାରତକୁ ଭିତ୍ତିକରି ଆଲୋଚ୍ୟ ନିବନ୍ଧର ସ୍ୱରୂପ ନିର୍ଦ୍ଧାରଣ କରାଯାଇଥିବା ଦୃଷ୍ଟିରୁ ସାରଳାଙ୍କ ଦ୍ୱାରା ପ୍ରଣୀତ ଅନ୍ୟାନ୍ୟ ଗ୍ରନ୍ଥର ବିଷୟବସ୍ତୁକୁ ଏଥିରେ ଗୁରୁତ୍ୱ ଦିଆଯାଇ ନାହିଁ । ଅନ୍ୟାନ୍ୟ ଯେଉଁସବୁ ଗ୍ରନ୍ଥ ଓ ପତ୍ରପତ୍ରିକାର ସହାୟତା ଏ ଅବସରରେ ଗ୍ରହଣ କରାଯାଇଛି, ସେ ସବୁର ଋଣ ସ୍ୱୀକାର ସ୍ୱରୂପ ପାଦଟୀକାରେ ସବିଶେଷ ସୂଚନା ପ୍ରଦତ୍ତ ହେବା ସଙ୍ଗେ ସଙ୍ଗେ ଗ୍ରନ୍ଥ ଶେଷରେ ସହାୟକ ଗ୍ରନ୍ଥସୂଚୀରେ ଉଲ୍ଲେଖ କରାଯାଇଅଛି ।

ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ନିବନ୍ଧଟିକୁ ସାତୋଟି ପରିଚ୍ଛେଦରେ ବିଭକ୍ତ କରାଯାଇଅଛି । ସେଥିରୁ ପ୍ରଥମ ଦୁଇଟିକୁ ସାରଳାଙ୍କ ରାଜନୈତିକ ଦର୍ଶନର ପୃଷ୍ଠଭୂମି ରୂପେ ଏବଂ ସପ୍ତମ ପରିଚ୍ଛେଦଟିକୁ ପୃଷ୍ଠବନ୍ଧ ରୂପେ ଗ୍ରହଣ କରାଯିବା ଉଚିତ । ଅବଶିଷ୍ଟ ଚାରୋଟି ପରିଚ୍ଛେଦରେ ସାରଳା ମହାଭାରତର ରାଜନୀତି ଓ ତାର ବିଶେଷତ୍ୱ ସଂପର୍କରେ ତଥ୍ୟଭିତ୍ତିକ ଆଲୋଚନା ଉପସ୍ଥାପିତ ହୋଇଅଛି । ବ୍ୟକ୍ତିର ଚିନ୍ତାଧାରା ସଂପୂର୍ଣ୍ଣ ସ୍ୱତନ୍ତ୍ର ଓ ସ୍ୱାଧୀନ ମନେ ହେଲେ ସୁଦ୍ଧା ପରମ୍ପରା ଓ ପରିବେଶ ଦ୍ୱାରା ହିଁ ନିୟନ୍ତ୍ରିତ ହୋଇଥାଏ । ସେ ଦୃଷ୍ଟିରୁ ବିଶ୍ୱର ପ୍ରତ୍ୟେକ ଚିନ୍ତାଶୀଳ ମନୀଷୀଙ୍କ ବ୍ୟକ୍ତିଚେତନା ପୂର୍ବବର୍ତ୍ତୀ ଚିନ୍ତାନାୟକମାନଙ୍କ ଦ୍ୱାରା ଯେପରି ପ୍ରଭାବିତ ହୋଇଥାଏ, ସେହିପରି ସମସାମୟିକ ପରିବେଶ ଦ୍ୱାରା ମଧ୍ୟ ନିୟନ୍ତ୍ରିତ ହୋଇଥାଏ । ସାରଳାଙ୍କ ରାଜନୈତିକ ଦର୍ଶନ ଏହାର ଏକ ବ୍ୟତିକ୍ରମ ହେବା ସମ୍ଭବ ନୁହେଁ । ରାଜନୀତି-ଚେତନାର ଉନ୍ମେଷ କାଳରୁ ତାହା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦାର୍ଶନିକଙ୍କ ସୂକ୍ଷ୍ମ ବିଶ୍ଳେଷଣ ପଦ୍ଧତି ଦ୍ୱାରା ପରିମାର୍ଜିତ ହୋଇ ନବ ନବ ରୂପ ପରିଗ୍ରହ କରି ଚାଲିଛି । ପଞ୍ଚଦଶ ଶତାବ୍ଦୀ ବେଳକୁ ଏହା ଯେଉଁ ରୂପ ପରିଗ୍ରହ କରିଥିଲା, ସେ ସଂପର୍କରେ ଏକ ସ୍ଥୂଳ ଧାରଣା ବ୍ୟତୀତ ସାରଳାଙ୍କ ରାଜନୀତି-ଦର୍ଶନର ସମ୍ୟକ୍ ଅବଧାରଣା କରିବା ଦୁଷ୍କର ବ୍ୟାପାର । ଏଣୁ ନିବନ୍ଧର ପ୍ରଥମ ଦୁଇଟି ପରିଚ୍ଛେଦରେ ପାଶ୍ଚାତ୍ୟ, ପ୍ରାଚ୍ୟ ଓ ଉତ୍କଳୀୟ ରାଜନୈତିକ ପରମ୍ପରା ଓ ପରିବେଶର ସୂଚନା ଦିଆଯାଇଅଛି । ଏହା ସହିତ ସାରଳା ଦାସ ଯେଉଁ ରାଜତନ୍ତ୍ର ମଧ୍ୟରେ ନିଜର ମହାଭାରତକୁ ରୂପଦାନ କରିଥିଲେ, ସେହି ପରିବେଶର ମଧ୍ୟ ଏକ ବିଶ୍ଳେଷଣାତ୍ମକ ଚିତ୍ର ଦ୍ୱିତୀୟ ପରିଚ୍ଛେଦରେ ପ୍ରଦତ୍ତ ହୋଇଅଛି ।

ଉପରୋକ୍ତ ପୃଷ୍ଠଭୂମିରେ ସାରଳା ମହାଭାରତରେ ରାଜନୀତି-ଦର୍ଶନ ଓ ଶାସନ ନୀତିର ଯେଉଁ ତଥ୍ୟାବଳୀ ଉପସ୍ଥାପିତ ହୋଇଅଛି, ତାକୁ ରାଜନୈତିକ,

ଧାର୍ମିକ ଓ ସାମାଜିକ କ୍ରମରେ ତ୍ରିଧା ବିଭକ୍ତ କରି ପରବର୍ତ୍ତୀ ତିନୋଟି ପରିଚ୍ଛେଦରେ ବିଶ୍ଳେଷଣ କରାଯାଇଅଛି । ଏହି ଅବସରରେ ସାରଳାଙ୍କ ରାଜନୈତିକ ଆଦର୍ଶ ସହିତ ବିଭିନ୍ନ ରାଜବଂଶର ପରିଚୟ, ରାଜ୍ୟାଭିଷେକ, ଶାସନ ପ୍ରଣାଳୀ, ଯୁଦ୍ଧନୀତି, ଯଜ୍ଞାନୁଷ୍ଠାନ, ଧାର୍ମିକ ଚେତନା, ଅର୍ଥନୈତିକ ବ୍ୟବସ୍ଥା, ସାମାଜିକ ଚିନ୍ତା ଓ ଆଦର୍ଶ ସଂପର୍କରେ ସମୀକ୍ଷା କରାଯାଇ ସାରଳାଙ୍କ ସଂସ୍କାରପ୍ରବଣ ମନୋବୃତ୍ତିର ଚିତ୍ର ପ୍ରଦତ୍ତ ହୋଇଅଛି । ରାଜନୀତି ସହିତ ଧର୍ମନୀତି ଓ ସମାଜନୀତି ଯେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, କହିବା ବାହୁଲ୍ୟ ମାତ୍ର । ଏଥିପାଇଁ ସାରଳା ମହାଭାରତରେ ଏ ତିନୋଟି ଅର୍ଥାତ୍ ରାଷ୍ଟ୍ର, ଧର୍ମ ଓ ସମାଜ କିପରି ପରସ୍ପରର ପରିପୂରକ ଭାବେ ରହିଛନ୍ତି, ସେ ସଂପର୍କରେ ସୂଚନା ଦେବା ଆଲୋଚ୍ୟ ତିନୋଟି ପରିଚ୍ଛେଦର ଲକ୍ଷ୍ୟ ।

ଷଷ୍ଠ ପରିଚ୍ଛେଦଟି ସାରଳା ମହାଭାରତର ବୈଶିଷ୍ଟ୍ୟ ପ୍ରତିପାଦନ ନିମନ୍ତେ ଉତ୍ସର୍ଗୀତ । ଏଥିରେ ତାଙ୍କ ମାନବତାବାଦ, ଜାତୀୟତା ଓ ଆନ୍ତର୍ଜାତୀୟତାବାଦ, ସଂଘୀୟ ରାଷ୍ଟ୍ର ପରିକଳ୍ପନା, ଅର୍ଥନୈତିକ ସାମ୍ୟଭାବନା, ବିଶ୍ୱଶାନ୍ତି ପ୍ରତିଷ୍ଠା ପ୍ରଭୃତି ରାଜନୈତିକ ଚିନ୍ତାଧାରାର ବିଶେଷତ୍ୱ ସଂପର୍କରେ ଆଲୋଚନା କରାଯାଇଅଛି । ସାରଳା କେବଳ ସମସାମୟିକ ସମାଜର କୁଶଳୀ ଚିତ୍ରକର ନୁହନ୍ତି, ବରଂ ଜଣେ ଦୂରଦୃଷ୍ଟିସମ୍ପନ୍ନ ପୁରାଣ ପ୍ରଣେତା । ପୌରାଣିକତାର ଆବରଣ ତଳେ ଗଣତାନ୍ତ୍ରିକ ଚେତନାର ସ୍ୱର ତାଙ୍କ ମହାଭାରତର ଅଧିକାଂଶ ସ୍ଥଳରେ ଶୁଣିବାକୁ ମିଳିଥାଏ । ପରବର୍ତ୍ତୀକାଳୀନ ବିଶ୍ୱ ଓ ଭାରତୀୟ ରାଜନୀତିର ଧାରା ସମାଜବାଦୀ କଲ୍ୟାଣବ୍ରତୀ ରାଷ୍ଟ୍ର ପ୍ରତିଷ୍ଠା ଦିଗରେ ହିଁ ଗତିଶୀଳ । ଏଣୁ ପରବର୍ତ୍ତୀ ଦୀର୍ଘ ପାଞ୍ଚ ଶହ ବର୍ଷର ରାଜନୈତିକ ଚିନ୍ତାପ୍ରବାହ ମଧ୍ୟରେ ସାରଳାଙ୍କ ଏହି ସ୍ୱର କିପରି ସ୍ପଷ୍ଟ ଅନୁରଣିତ ହୋଇଅଛି, ତାହା ଦର୍ଶାଇବା ପାଇଁ ନିବନ୍ଧର ଶେଷ ପରିଚ୍ଛେଦଟି ଉଦ୍ଦିଷ୍ଟ ।

ସର୍ବୋପରି, ସାରଳାଙ୍କ ଚିନ୍ତାଦର୍ଶର ବିଶ୍ଳେଷଣ କ୍ରମେ ତାଙ୍କର ପରଂପରା ପ୍ରୀତି, ପରମ୍ପରାରୁ ବିଚ୍ୟୁତି ଓ ଦୂରଦୃଷ୍ଟିସମ୍ପନ୍ନ ଦିଗ୍‌ଦର୍ଶନର ଏକ ବିସ୍ତୃତ ସାରଣୀ ଯଥାସ୍ଥାନରେ ପ୍ରଦାନ କରାଯାଇଛି ଏବଂ ପରିଶିଷ୍ଟରେ ପ୍ରାଚୀନ କାଳରୁ ଆରମ୍ଭ କରି ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ବିଭିନ୍ନ ସମସ୍ତରର, ବିଭିନ୍ନ ଜାତୀୟ ଓ ଆନ୍ତର୍ଜାତୀୟ ଚିନ୍ତାନାୟକମାନଙ୍କର ଚିନ୍ତାଦର୍ଶ ସହିତ ସାରଳା ଦାସଙ୍କ ରାଜନୈତିକ ଆଦର୍ଶର କିପରି ସାମ୍ୟ ପରିଲକ୍ଷିତ ହୁଏ, ତାହାର ଏକ ବିସ୍ତୃତ ବିବରଣୀ (ପୃଷ୍ଠାଙ୍କ ସୂଚନା ସହ) ସଂଲଗ୍ନିତ ହୋଇଅଛି । ଏଥିରୁ ଯେ ସାରଳାଙ୍କ ରାଜନୈତିକ

ଦର୍ଶନ ଓ ମତବାଦର ଏକ ଉନ୍ନତ ତଥା ସ୍ପଷ୍ଟ ଚିତ୍ର ଉପଲବ୍ଧି କରିହେବ, କହିବା ବାହୁଲ୍ୟ ମାତ୍ର ।

ଏହିପରି ଭାବରେ ବିଶ୍ଳେଷଣ କରି ନିବନ୍ଧଟିରେ ପ୍ରତିପାଦନ କରିବା ପାଇଁ ଚେଷ୍ଟା କରାଯାଇଛି ଯେ ପଞ୍ଚଦଶ ଶତାବ୍ଦୀରେ ସାରଳା ଦାସ ଯେଉଁ ରାଜନୈତିକ ଆଦର୍ଶାବଳୀର ଅବତାରଣା କରିଥିଲେ, ତାହାର କେତେକାଂଶ ହିଁ ଆଜିର ଗଣତାନ୍ତ୍ରିକ ସମାଜବାଦୀ ନେତୃବୃନ୍ଦ ପ୍ରଣୟନ କରୁଥିବା ଯୋଜନାମାନଙ୍କରେ ରୂପାୟିତ । ତଥାପି ମନେହୁଏ, ସାରଳାଙ୍କ ଆଦର୍ଶକୁ ଗ୍ରହଣ କରାଗଲେ, ଏଗୁଡ଼ିକରେ ପରିପୂର୍ଣ୍ଣତା ଆଣିବା ସହଜସାଧ୍ୟ ହେବ । ଭାରତର ରାଷ୍ଟ୍ରୀୟ ବ୍ୟବସ୍ଥାରେ ପରିବର୍ତ୍ତନ ଆସିଥିଲେ ସୁଦ୍ଧା ଜାତୀୟ ଜନମାନସରେ ବରଂ ପରଂପରା ପ୍ରତି ଆସକ୍ତି ତଥାପି ବଳବତ୍ତର ଅଛି । ମଙ୍ଗଳକାମୀ ରାଷ୍ଟ୍ରନାୟକମାନେ ଗଣଚେତନାକୁ ଭ୍ରୂକ୍ଷେପ ନକରି ଆଇନକାନୁନ ମାଧ୍ୟମରେ ରାଷ୍ଟ୍ର ପରିଚାଳନା ପାଇଁ ପ୍ରୟାସ କରିବା ବିଡ଼ମ୍ବନା ମାତ୍ର । ଏ ଦୃଷ୍ଟିରୁ ଜନମାନସର ଅଧ୍ୟୟନ, ରାଷ୍ଟ୍ରୀୟ ଶାସନ ବ୍ୟବସ୍ଥାର ସୁପରିଚାଳନା ତଥା ଦେଶର ଉଜ୍ଜ୍ୱଳ ଭବିଷ୍ୟତ ଗଠନରେ ଆଜିର ରାଜନୈତିକ କର୍ଣ୍ଣଧାର-ମାନଙ୍କୁ ଏବଂ ସାରଳା ମହାଭାରତର ତାତ୍ତ୍ୱିକ ଆଲୋଚନାରେ ପ୍ରବୃତ୍ତ ଥିବା ଗବେଷକମାନଙ୍କୁ ପ୍ରସ୍ତୁତ ନିବନ୍ଧଟି ଯତ୍‌କିଞ୍ଚିତ୍ ସାହାଯ୍ୟ କରିପାରିଲେ, ସମସ୍ତ ଶ୍ରମ ସାର୍ଥକ ହେଲା ବୋଲି ମନେହେବ ।

**ନିବନ୍ଧକ**

ସେଲ୍‌ଟାକ୍‌ସ କଲୋନୀ,
ଚକ୍ରତୀର୍ଥ ରୋଡ଼, ପୁରୀ
ନେତ୍ରୋତ୍ସବ (ଜୁଲାଇ, ୪) ୧୯୮୯ ।

# ବିଶେଷ ସୂଚନା

ସମୟର ପ୍ରବହମାନତା ମଧ୍ୟରେ ବହୁ ପ୍ରାଚୀନ ମୂଳ ରଚନା ସଂଶୋଧିତ ବା ଅପଭ୍ରଂଶ ହୋଇଥିବା ଫଳରେ ଅନେକ ନାମ, ଶବ୍ଦ, ସ୍ଥାନ ଓ ପାଠ ଭିନ୍ନ ଭିନ୍ନ ରଚନାରେ ଭିନ୍ନ ଭିନ୍ନ ରୂପରେ ପରିଦୃଷ୍ଟ ହୋଇଥାଏ । ପାଞ୍ଚଶହ ବର୍ଷ ପୂର୍ବେ ରଚିତ ସାରଳା ଦାସଙ୍କ ମହାଭାରତ ଗ୍ରନ୍ଥ ମଧ୍ୟ ଏହାର ବ୍ୟତିକ୍ରମ ହୋଇ ନପାରେ । ଏଥିପାଇଁ ସାରଳା ମହାଭାରତର ବିଭିନ୍ନ ସଂସ୍କରଣରେ କେତେକ ନାମ ଓ ଶବ୍ଦର ଅସାମଞ୍ଜସ୍ୟ ଦୃଷ୍ଟିଗୋଚର ହୁଏ । ଯଥା—ଓଡ଼, ଓଡ୍ର, ଉଡ଼, ଉଡ୍ର, ଉଡଙ୍ଗ; ଜରାସନ୍ଧ, ଜାରାସନ୍ଧ; ଜରାଶବର, ଜାରାଶବର; ଜମାଗୋଷ୍ଠ, ଯମାଗୋଷ୍ଠ, ଦମାଗୋଷ୍ଠ; ଖନକାର, ଖଲ୍ୟକାର; ସ୍ୱରଗ ସୁନ୍ଦରୀ, ସ୍ୱର୍ଗ ସୁନ୍ଦରୀ, ସହଜ ସୁନ୍ଦରୀ, ସରହ ସୁନ୍ଦରୀ, ସରଦ ସୁନ୍ଦରୀ ଇତ୍ୟାଦି । ଏପରିକି, ଗ୍ରନ୍ଥର ପ୍ରଥମ ପର୍ବଟିକୁ 'ଆଦି' ଓ 'ଆଦ୍ୟ' ଉଭୟ ଭାବରେ ଗ୍ରହଣ କରାଯାଇଛି ।

ଏହା ବ୍ୟତୀତ, ସଂସ୍କୃତ ଓ ଇଂରାଜୀ ଶବ୍ଦଗୁଡ଼ିକୁ ଭାଷାନ୍ତର କରାଗଲା ବେଳେ ମଧ୍ୟ ସମତ୍ୱ ରକ୍ଷା କରିବା ସମ୍ଭବ ନୁହେଁ । ଏଣୁ ଅନ୍ୟ ଭାଷାର କେତେକ ଶବ୍ଦ ( ବିଶେଷତଃ ନାମବାଚକ ଶବ୍ଦ ) ଓଡ଼ିଆରେ ଭିନ୍ନ ଭିନ୍ନ ରୂପରେ ଗୃହୀତ ହୋଇଛି । ଯଥା— କୌଟଲ୍ୟ, କୌଟିଲ୍ୟ; ପ୍ଲାଟୋ, ପ୍ଲୁଟୋ, ପ୍ଲେଟୋ, ପ୍ଲୋଟୋ; ଜନ୍ ହପ୍, ଜନ୍ ହୁପ୍, ଜୋନ୍ ହାସ୍, ଜନ୍ ହାସ୍; ଟମାସ୍ ମୁର୍, ଟମାସ୍ ମୋର୍, ଥମାସ୍ ମୋର୍, ଥମାସ୍ ମୁର୍, ଥୋମାସ୍ ମୋର୍, ଥୋମାସ୍ ମୁର୍; ମେଗାସ୍ଥେନିସ୍, ମେଘାସ୍ଥେନିସ୍, ମେଗାସ୍ଥିନିସ୍, ମେଘାସ୍ଥିନିସ୍, ମେଗାସ୍ଥନିସ୍ ମେଘାସ୍ଥନିସ୍ ଇତ୍ୟାଦି ।

ସୁତରାଂ, ଉକ୍ତ ପରିପ୍ରେକ୍ଷୀରେ ଏଭଳି ଶବ୍ଦଗୁଡ଼ିକର ଯେଉଁ ରୂପ ପ୍ରସ୍ତୁତ ନିବନ୍ଧ-ଗ୍ରନ୍ଥରେ ବ୍ୟବହୃତ ହୋଇଛି, ତାକୁ ସୁଧୀ ପାଠକବୃନ୍ଦ ଉଦାର ଚିତ୍ତରେ ଗ୍ରହଣ କରିନେବା ଉଚିତ ।

□ □ □

"ସାମ୍ପ୍ରତିକ ରାଜନୀତି ବ୍ୟକ୍ତିଗତ ଅଧିକାର, ସାମାଜିକ ବ୍ୟବସ୍ଥା, ଶାସନ ପରିଚାଳନା, ଆଇନ ପ୍ରଣୟନ, ବିଚାର ପଦ୍ଧତି ନିୟନ୍ତ୍ରଣ, ବୃତ୍ତି ନିର୍ଦ୍ଧାରଣ, ନାଗରିକତା ନିରୂପଣ, ନୈତିକତା ରକ୍ଷା, ଅର୍ଥନୈତିକ ଉନ୍ନତି ବିଧାନ, ଜାତୀୟତାର ବିକାଶ ସାଧନ, ଆନ୍ତର୍ଜାତୀୟ ସଂହତି ସ୍ଥାପନ ଆଦି ବହୁଧା ବିନ୍ୟସ୍ତ ହୋଇ ବ୍ୟକ୍ତି-ଜୀବନର ସାମୂହିକ ଅଭିବୃଦ୍ଧି ନିମନ୍ତେ ଅଭିପ୍ରେତ । ପରନ୍ତୁ, ରାଜନୀତିର ଏହି ପରିବ୍ୟାପ୍ତ ରୂପ ରାଜନୈତିକ ଚେତନା ବିବର୍ତ୍ତନର ଅବଶ୍ୟମ୍ଭାବୀ ପରିଣତି ମାତ୍ର ।"

ପ୍ରଥମ ପରିଚ୍ଛେଦ

---

# ବିବର୍ତ୍ତନ - ସରଣୀରେ ରାଜନୀତି-ଦର୍ଶନ

ମହାଭାରତ ସାର୍ବଜନୀନ ଓ ସାର୍ବକାଳିକ ବିଶ୍ୱଚେତନାର ଏକ ମହନୀୟ ପରିପ୍ରକାଶ । କାଳଚକ୍ରର ବିବର୍ତ୍ତନରେ ବେଦବ୍ୟାସଙ୍କ ମୂଳଚିନ୍ତାସ୍ରୋତର ପ୍ରବାହ କୌଣସି ସମୟରେ ମନ୍ଥରତା ବା କ୍ଷୀଣତା ପ୍ରାପ୍ତ ହୋଇନାହିଁ । ଏଥିପାଇଁ ବିଂଶ ଶତାବ୍ଦୀର ଶେଷପାଦରେ ସୁଦ୍ଧା ଏହି ଗ୍ରନ୍ଥର ଆବେଦନ ଅପରିବର୍ତ୍ତିତ ରହିଅଛି । ଏହା ଭଗବାନଙ୍କ ଅବତାର ରୂପେ ପରିକଳ୍ପିତ ମହର୍ଷି କୃଷ୍ଣ-ଦ୍ୱୈପାୟନଙ୍କ ମୁଖ ନିଃସୃତ ତଥା ବିଦ୍ୟାଧିକାରୀ ଦେବତା ରୂପେ ସ୍ୱୀକୃତ ଗଣାଧିପ ବିନାୟକଙ୍କ ଦ୍ୱାରା ଲିଖିତ ହୋଇଥିଲେ ସୁଦ୍ଧା କେବଳ ଏକ ଧର୍ମଗ୍ରନ୍ଥ ରୂପେ ପରିଗଣିତ ନୁହେଁ, ବରଂ ସୂକ୍ଷ୍ମ ଅର୍ଥନୀତି, ଅପୂର୍ବ ସାହିତ୍ୟିକ ସୁଷମା, ସମୁଚିତ ବ୍ୟବହାର ବିଦ୍ୟା ଏବଂ ସର୍ବୋପରି ପ୍ରଜାରଞ୍ଜକ ରାଜନୈତିକ ଆଦର୍ଶର ସମନ୍ୱୟରେ ଏହି ବିଶାଳ ଗ୍ରନ୍ଥ ଏକ ସମ୍ମାନିତ ରୂପ ଆହରଣ କରିପାରିଛି ।

ଏଥିରେ କେବଳ ପ୍ରବଳ ପରାକ୍ରମୀ ଭୀମ, ପ୍ରଚଣ୍ଡ ଅହଂକାରୀ ମାନଗୋବିନ୍ଦ ଦୁର୍ଯ୍ୟୋଧନ, ଆଦର୍ଶ ଜନନୀ ଗାନ୍ଧାରୀ, ସତୀସାଧ୍ୱୀ ଦ୍ରୌପଦୀ, ଦାନବୀର କର୍ଣ୍ଣ, କୁଚକ୍ରୀ ଶକୁନି, ନିର୍ବିଗ୍ରହ ଅପରାଧ କୁଣ୍ଡଳୀ ଦୁଃଶାସନ, ପୌରୁଷହୀନ ଶିଖଣ୍ଡୀ, ଧର୍ମରାଜ ଯୁଧିଷ୍ଠିର, ଆଦର୍ଶ ଗୁରୁ ଦ୍ରୋଣ ପ୍ରଭୃତି ଚରିତ୍ରର ଯେ ଅବତାରଣା କରାଯାଇଛି, ତାହା ନୁହେଁ; ଶ୍ରୀକୃଷ୍ଣ, ଭୀଷ୍ମ ଓ ବିଦୁରଙ୍କ ପରି ପ୍ରବୀଣ ତଥା ଚିନ୍ତାଶୀଳ ରାଜନୀତି-ନିପୁଣ ଚରିତ୍ରମାନଙ୍କର ମଧ୍ୟ ସମାବେଶ ଘଟିଅଛି । ଆଦର୍ଶ ରାଜ୍ୟ, ଆଦର୍ଶ ରାଜା ତଥା ଆଦର୍ଶ ପ୍ରଜାମାନଙ୍କ ସଂପର୍କରେ ଏହି ଚରିତ୍ରମାନଙ୍କ ମାଧ୍ୟମରେ ଯେଉଁ ମତାମତ ପ୍ରକାଶ ପାଇଛି, ତାହା ଅଦ୍ୟାବଧି ସଂପୂର୍ଣ୍ଣ ରୂପେ ପରିବର୍ତ୍ତିତ ହୋଇପାରି ନାହିଁ । କିନ୍ତୁ ମହାଭାରତର ରଚନାକାଳଠାରୁ ଆରମ୍ଭ କରି ଆଜି ସୁଦ୍ଧା ଭାରତ ବର୍ଷରେ ବହୁ ରାଜନୈତିକ ପରିବର୍ତ୍ତନ ସଂଘଟିତ ହୋଇଅଛି, ବହୁ ଦେଶୀୟ ରାଜ୍ୟର ଉତ୍ଥାନ ପତନ ସମ୍ଭବ ହୋଇଅଛି ଏବଂ ଯୌଗନ୍ଧରାୟଣ, ଚାଣକ୍ୟ କୌଟିଲ୍ୟ

ପ୍ରଭୃତିଙ୍କ ପରି ବହୁ ପ୍ରବୀଣ କୃଷ୍ଣନୀତିଜ୍ଞ ଏ ଦେଶରେ ଜନ୍ମଗ୍ରହଣ କରିଛନ୍ତି । ଫଳରେ, ମୂଳ ମହାଭାରତର ମୌଳିକ ଚିନ୍ତାଧାରା ସହିତ ସମସ୍ୟୋଚିତ ରାଜନୈତିକ ଆଦର୍ଶର ସମ୍ମିଶ୍ରଣ ଘଟିଅଛି । ଏଥିପାଇଁ ଆନ୍ଧ୍ରର ନାନ୍ନେୟା (୧୧ଶ ଶତାବ୍ଦୀ), କର୍ଣ୍ଣାଟକର ପମ୍ପା (୧୦ମ ଶତାବ୍ଦୀ), ବଙ୍ଗଳାର କାଶୀରାମ (୧୭ଶ ଶତାବ୍ଦୀ), ଆସାମର ରାମ ସରସ୍ୱତୀ (୧୬ଶ ଶତାବ୍ଦୀ) ଓ ମହାରାଷ୍ଟ୍ରର ମୁକ୍ତେଶ୍ୱର (୧୭ଶ ଶତାବ୍ଦୀ)ଙ୍କ ମହାଭାରତରେ ନୂତନତାର ସ୍ୱର ଶୁଣିବାକୁ ମିଳିଥାଏ । ସାରଳା ଦାସଙ୍କ ଓଡ଼ିଆ ମହାଭାରତରେ ମଧ୍ୟ ଏହି ସ୍ୱର ଅଧିକ ସ୍ପଷ୍ଟ ଓ ଶାଣିତ ।

ମୂଳ ମହାଭାରତର ରଚନା ସମସ୍ତ ଯଦି ଖ୍ରୀଷ୍ଟପୂର୍ବ ଶତାବ୍ଦୀମାନଙ୍କରେ ନିର୍ଦ୍ଧାରିତ ହୁଏ, ତେବେ ପ୍ରାୟ ୨୦୦୦ ବର୍ଷର ରାଜନୈତିକ କ୍ରମପରିଣାମର ସ୍ୱରୂପ ସାରଳା ଦାସଙ୍କ ମହାଭାରତରେ ଆଶା କରିବା ଅଯୌକ୍ତିକ ନୁହେଁ । ନିଜକୁ ଅପଣ୍ଡିତ, ମୂର୍ଖ, ହୀନ କମ୍ବା ଅଜ୍ଞ ବୋଲି ପରିଚିତ କରାଉଥିବା ସାରଳା ଦାସ ଯେ ସେ ସମୟର ଜଣେ ବଳିଷ୍ଠ ଚିନ୍ତାନାୟକ, ଏହାକୁ ଅସ୍ୱୀକାର କରାଯାଇ ନପାରେ । କେବଳ ଓଡ଼ିଶାର ନୁହେଁ, ସେ ସମୟର ବହୁ ରାଜ୍ୟର ରାଜନୈତିକ ପରିସ୍ଥିତି ପର୍ଯ୍ୟାଲୋଚନା କରି ସାରଳା ଦାସ ନିଜର ରାଜନୈତିକ ଆଦର୍ଶକୁ ରୂପରେଖ ଦେଇଛନ୍ତି । ଏଣୁ ସାରଳା ଦାସଙ୍କ ମହାଭାରତର ରାଜନୈତିକ ଚିନ୍ତାଧାରା ବିଶ୍ଳେଷଣ କରିବା ପାଇଁ ଅଗ୍ରସର ହେବା ପୂର୍ବରୁ ରାଜନୀତିର ସଂଜ୍ଞା ଓ ସ୍ୱରୂପ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ମନୀଷୀମାନଙ୍କ ଦ୍ୱାରା ପ୍ରଖ୍ୟାପିତ ମତବାଦ ତଥା ରାଜନୈତିକ ଚିନ୍ତା ଓ ଚେତନା ସଂପର୍କରେ ସଂକ୍ଷିପ୍ତ ସାଧାରଣ ଧାରଣା ଦେବା ସମୀଚୀନ ହେବ । ଏହି ଦୃଷ୍ଟିରୁ ରାଜନୀତିର ସ୍ୱରୂପ ନିର୍ଦ୍ଦେଶପୂର୍ବକ ପ୍ରଥମେ ପାଶ୍ଚାତ୍ୟ ଓ ପରେ ପ୍ରାଚ୍ୟ ରାଜନୈତିକ ଆଦର୍ଶର ଏକ ସ୍ଥୂଳ ଚିତ୍ର ଏଠାରେ ଉପସ୍ଥାପନ କରାଯାଉଅଛି ।

## ରାଜନୀତିର ସ୍ୱରୂପ ଓ ବିକାଶ

ଆଧୁନିକ ଯୁଗରେ ରାଜନୀତି ଶବ୍ଦର ଅର୍ଥ ଅତି ବ୍ୟାପକ ହୋଇପଡ଼ିଛି । ପୃଥିବୀର ଅଧିକାଂଶ ଦେଶ ଜନକଲ୍ୟାଣ କାର୍ଯ୍ୟକ୍ରମକୁ ମୁଖ୍ୟ ରାଜନୈତିକ ଅଙ୍ଗ ମୁଖ୍ୟ ରୂପେ ଗ୍ରହଣ କରିନେଇଛନ୍ତି । ରାଜନୀତିର ପରିସର ବିଭିନ୍ନ କ୍ଷେତ୍ରରେ ଜନମଙ୍ଗଳ କର୍ମ ସଂପାଦନ ନିମିତ୍ତ ଉଦ୍ଦିଷ୍ଟ ରହିବା ଫଳରେ ଏହା କେବଳ ବ୍ୟକ୍ତି-ଜୀବନର ପୂର୍ଣ୍ଣାଙ୍ଗ ବିକାଶ ସହିତ ଯେ ସଂଶ୍ଳିଷ୍ଟ, ତାହା ନୁହେଁ; ଅଧିକନ୍ତୁ

ଭ୍ରୂଣ ପରିଚର୍ଯ୍ୟା ଏବଂ ମରଣୋତ୍ତର ସେବା ବ୍ୟବସ୍ଥା ସହିତ ମଧ୍ୟ ଜଡ଼ିତ । ବର୍ତ୍ତମାନ କୌଣସି ଏକ କଲ୍ୟାଣବ୍ରତୀ ରାଷ୍ଟ୍ରରେ ସନ୍ତାନସମ୍ଭବା ମାତୃକୁଳର ସ୍ୱାସ୍ଥ୍ୟ-ସୁରକ୍ଷା ଦାୟିତ୍ୱ ଠାରୁ ଆରମ୍ଭ କରି ଶିଶୁର ଜନ୍ମ, ବାଲ୍ୟକାଳୀନ ରକ୍ଷଣାବେକ୍ଷଣ, କୈଶୋରରେ ଶିକ୍ଷାଦାନ, ଯୌବନରେ କର୍ମ ଯୋଗାଣ, ପରିଣତ ଅବସ୍ଥାରେ ଅବସରକାଳୀନ ସୁବିଧା ପ୍ରଦାନ ଏବଂ ମୃତ୍ୟୁ ପରେ ଉତ୍ତରାଧିକାରୀମାନଙ୍କ ନିମନ୍ତେ ଆର୍ଥିକ ସାହାଯ୍ୟ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ରାଜନୈତିକ ପରିସରର ଅଙ୍ଗୀଭୂତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସଂକ୍ଷେପରେ ପ୍ରକାଶ କଲେ, ରାଜନୀତି ବ୍ୟକ୍ତି-ଜୀବନ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଏହି ରାଜନୈତିକ ଚେତନା ବଳରେ ହିଁ ବ୍ୟକ୍ତି ବିସ୍ତୀର୍ଣ୍ଣ ଜନସମୁଦ୍ର ମଧ୍ୟରେ ନିଜକୁ ସାମାନ୍ୟ ଜଳବିନ୍ଦୁ ମନେ ନକରି ନିଜର ସ୍ୱତନ୍ତ୍ର ସତ୍ତା ଉପଲବ୍‌ଧି କରିବାକୁ ସକ୍ଷମ ହୁଏ । ତାର ସେହି ଅନୁଭୂତି ଓ ଅନୁଭବ ଶକ୍ତି ଦ୍ୱାରା ଜାତୀୟତାଭାବ, ତ୍ୟାଗ ମନୋବୃତ୍ତି ତଥା ସାମାଜିକ ଦାୟିତ୍ୱବୋଧର ବିକାଶ ଘଟିଥାଏ ଏବଂ ଏହା ଫଳରେ ହିଁ ସୁସ୍ଥ ସମାଜ, ଆଦର୍ଶ ଶାସନ, ଉନ୍ନତ ରାଜନୀତି ତଥା ସୁସଂସ୍କୃତ ଜୀବନର ଅଭ୍ୟୁତ୍‌ଥାନ ସମ୍ଭବ ହୋଇଥାଏ ।

ସଭ୍ୟତାର ବିକାଶକ୍ରମରେ ରାଜନୈତିକ ଗୋଷ୍ଠୀଚେତନା ନିଶ୍ଚିତ ଭାବେ ପରିବାର ଓ ସମାଜର ପରବର୍ତ୍ତୀ । ତେବେ, ପୃଥିବୀର ଉତ୍ପତ୍ତି କେବେ ଓ କିପରି ହେଲା, ତାହା ଯେଉଁଳି ରହସ୍ୟାବୃତ; ବିଶ୍ୱଜଗତରେ ଆଦିମାନବର ଆବିର୍ଭାବ କିପରି ଓ କେବେ ଘଟିଲା, ତାହା ଯେମିତି ସଂଶୟାଚ୍ଛନ୍ନ; ସେହିପରି 'ରାଜନୀତି'ର ଉତ୍ପତ୍ତି କେବେ, କେଉଁଠି ଓ କାହିଁକି ହେଲା ତଥା ରାଜ୍ୟ ବା ରାଷ୍ଟ୍ରର ଉଦ୍‌ଭବ କେବେ ଓ କିପରି ଘଟିଲା, ସେ ସଂପର୍କରେ କୌଣସି ବିଧିବଦ୍ଧ ଐତିହାସିକ ଅଭିଲେଖ ଦୃଷ୍ଟିଗୋଚର ହୁଏ ନାହିଁ କିମ୍ବା ନିର୍ଦ୍ଦିଷ୍ଟ ବିଜ୍ଞାନସମ୍ମତ ବିବର୍ତ୍ତନଧାରା ମଧ୍ୟ ଉପଲବ୍‌ଧ ହୁଏ ନାହିଁ । ଏପରିକି, ରାଜନୀତିର ବିଶ୍ଳେଷଣ ନିମନ୍ତେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ପଦ୍ଧତି ଅବଲମ୍ବନ କରିବା ମଧ୍ୟ ସମ୍ଭବ ନୁହେଁ । (୧)

---

(୧) (କ) ଆରୋହ ଓ ଅବରୋହ କ୍ରମ, ଦାର୍ଶନିକ ପଦ୍ଧତି, ଐତିହାସିକ ପଦ୍ଧତି, ତୁଳନାତ୍ମକ ପଦ୍ଧତି, ପରୀକ୍ଷାମୂଳକ ପଦ୍ଧତି, ଅଭିଜ୍ଞତାସିଦ୍ଧ ପଦ୍ଧତି, ପରିସଂଖ୍ୟାନ ପଦ୍ଧତି, ଜୈବିକ ପଦ୍ଧତି, ସମାଜ-ବିଜ୍ଞାନ ପଦ୍ଧତି, ନ୍ୟାୟାତ୍ମକ ପଦ୍ଧତି, ମନସ୍ତାତ୍ତ୍ୱିକ ପଦ୍ଧତି, ବ୍ୟବହାରମୂଳକ ପଦ୍ଧତି, ପୂର୍ଣ୍ଣାଙ୍ଗ ବିଚାର ପଦ୍ଧତି ଓ ଅନ୍ତଃଜ୍ଞାନ ସମାହାର ପଦ୍ଧତି—ଏପରି ୧୪ଟି ବିଶ୍ଳେଷଣ ପଦ୍ଧତିର ପ୍ରଚଳନ ପରିଦୃଷ୍ଟ ହୁଏ ।

—ଜେନା, ଡ଼ଃ ଭ୍ରମରବର : ଆଧୁନିକ ରାଜନୀତି ବିଜ୍ଞାନ ( କବିତା ମହଲ, କଟକ ) ୧୯୮୫ ପୃ. ୨୦-୨୧ ।

ଇତିହାସର ବିଭିନ୍ନ ପର୍ଯ୍ୟାୟରେ, ପୃଥିବୀର ବିଭିନ୍ନ ସ୍ଥାନରେ ରାଷ୍ଟ୍ର ବା ରାଜ୍ୟ ଗଠନ ତଥା ଶାସନତନ୍ତ୍ର ଭିନ୍ନ ଭିନ୍ନ ରୂପ ଧାରଣ କରିଛି; ରାଷ୍ଟ୍ର ପ୍ରତି ଆନୁଗତ୍ୟର ବିଭିନ୍ନ କାରଣ ପରିକଳ୍ପନା କରାଯାଇଛି; ରାଷ୍ଟ୍ରତତ୍ତ୍ୱବିଦ୍ ତଥା ରାଜନୀତିବିଶାରଦ-ମାନେ ମଧ୍ୟ ରାଷ୍ଟ୍ର ଗଠନ ପ୍ରଣାଳୀ ସମ୍ପର୍କରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ମତ ପୋଷଣ କରିଅଛନ୍ତି । କେତେକ ଦାର୍ଶନିକ ରାଷ୍ଟ୍ରକୁ ଏକ ଜୈବିକ ରଚନା ( Organism ) ରୂପେ ଗ୍ରହଣ କଲାବେଳେ, ଅନ୍ୟ କେତେକ ଏହାକୁ ଏକ ଯାନ୍ତ୍ରିକ ଉଦ୍ଭାବନ (Machine) ବୋଲି କହିଥାନ୍ତି । ପରବର୍ତ୍ତୀ କାଳରେ ରାଷ୍ଟ୍ରକୁ ଶ୍ରେଣୀ ସଂଘର୍ଷର ପରିଣାମ ଭାବେ ମଧ୍ୟ ବିବେଚନା କରାଯାଇଛି । (୨) ଏହିପରି ରାଜନୀତିର ପରିସର କ୍ରମଶଃ ପରିବ୍ୟାପ୍ତ ହୋଇ ଚାଲିଛି । ସାମ୍ପ୍ରତିକ ରାଜନୀତି ବ୍ୟକ୍ତିଗତ ଅଧିକାର, ସାମାଜିକ ବ୍ୟବସ୍ଥା, ଶାସନ ପରିଚାଳନା, ଆଇନ ପ୍ରଣୟନ, ବିଚାର ପଦ୍ଧତି ନିୟନ୍ତ୍ରଣ, ବୃତ୍ତି ନିର୍ଦ୍ଧାରଣ, ନାଗରିକତା ନିରୂପଣ, ନୈତିକତା ରକ୍ଷା, ଅର୍ଥନୈତିକ ଉନ୍ନତି ବିଧାନ, ଜାତୀୟତାର ବିକାଶ ସାଧନ, ଆନ୍ତର୍ଜାତୀୟ ସହୃତି ସ୍ଥାପନ ଆଦି ବହୁଧା ବିନ୍ୟସ୍ତ ହୋଇ ବ୍ୟକ୍ତି-ଜୀବନର ସାମୂହିକ ଅଭିବୃଦ୍ଧି ନିମନ୍ତେ ଅଭିପ୍ରେତ । ପରନ୍ତୁ, ରାଜନୀତିର ଏହି ପରିବ୍ୟାପ୍ତ ରୂପ ରାଜନୈତିକ ଚେତନା ବିବର୍ତ୍ତନର ଅବଶ୍ୟମ୍ଭାବୀ ପରିଣତି ମାତ୍ର ।

## ରାଜନୀତିକ ଚେତନାର ବିବର୍ତ୍ତନ

ବର୍ତ୍ତମାନ ଘରେ, ବାହାରେ, ଗୋଷ୍ଠୀରେ, ସମାଜରେ, ରାଷ୍ଟ୍ରରେ, ରାଜ୍ୟରେ, ଦେଶରେ, ବିଦେଶରେ, ଜାତୀୟସ୍ତରରେ, ଆନ୍ତର୍ଜାତୀୟ କ୍ଷେତ୍ରରେ, ସାଗର ବକ୍ଷରେ, ଗ୍ରହଲୋକରେ ତଥା ମହାଶୂନ୍ୟରେ ସର୍ବତ୍ର ରାଜନୀତିର ପ୍ରଭାବ ଅନୁଭୂତ ହୁଏ । କିନ୍ତୁ ସଭ୍ୟତାର ଆଦିମ ସ୍ତରରେ ମାନବର ସାଧାରଣ ଜୀବନ ନିର୍ବାହ ନିମନ୍ତେ ଆହାର, ନିଦ୍ରା, ମୈଥୁନ ପ୍ରଭୃତି ଜୈବିକ ଆବଶ୍ୟକତାଗୁଡ଼ିକ ଯେତିକି ଅପରିହାର୍ଯ୍ୟ

---

(୧) Rathore, L. R. In defence of Political Theory (Essay) The Indian Journal of Political Science (Oct.-Dec. 75) P. 331.

(୨) Wayper, C. L. - Political thought (The English Universities Press, London) 1958, Introduction. P. X

ମନେ ହେଉଥିଲା, ସମାଜ, ଧର୍ମ, ରାଜନୀତି ପ୍ରଭୃତିର ପ୍ରୟୋଜନୀୟତା ସେତିକି ଉପଲବ୍ଧ ହେଉ ନଥିଲା । ମାନବ ଯେତେବେଳେ ସମାଜ ଭିତରେ ବସବାସ କରିବା ଆରମ୍ଭ କଲା, ସେତେବେଳେ ସହଯୋଗ, ସହାବସ୍ଥାନ ଓ ସାମାଜିକ ମନୋବୃତ୍ତିର ଆବରଣତଳେ ରାଜନୈତିକ ଚେତନାର ଅଙ୍କୁରୋଦ୍‌ଗମ ଘଟିଥିଲା । ସମସ୍ତ କ୍ରମେ ତାହା ବିଭିନ୍ନ ଧର୍ମ ଧାରଣାର ସଂସ୍ପର୍ଶରେ ଆସି ବିକଶିତ ଓ ପଲ୍ଲବିତ ହେବାକୁ ଲାଗିଲା । ବସ୍ତୁତଃ, ସେ ସମୟର ରାଜନୀତି ଥିଲା ଧର୍ମପିଣ୍ଡିତ । ଏହାର ବହୁ ଶତାବ୍ଦୀପରେ କୌଟିଲ୍ୟ ଓ ଆରିଷ୍ଟୋଟଲ ପ୍ରମୁଖ ଚିନ୍ତାବିଦ୍ ରାଜନୀତିକୁ ଧର୍ମନୀତି ଠାରୁ ସ୍ୱତନ୍ତ୍ର କରି ବୈଜ୍ଞାନିକ ରାଜନୀତି ଦର୍ଶନର ମୂଳଭିତ୍ତି ସ୍ଥାପନ କରିଛନ୍ତି । କୌଟିଲ୍ୟଙ୍କୁ କେନ୍ଦ୍ର କରି ଯେପରି ଭାରତୀୟ ରାଜନୈତିକ ଚେତନାର ବିକାଶ ସଂପର୍କରେ ଆଲୋଚନା କରାଯାଇଥାଏ, ସେହିଭଳି ଆରିଷ୍ଟୋଟଲଙ୍କ ମତବାଦକୁ ଭିତ୍ତି କରି ପାଶ୍ଚାତ୍ୟ ରାଜନୈତିକ ଦର୍ଶନର କ୍ରମବିବର୍ତ୍ତନ ପ୍ରସଙ୍ଗ ଆଲୋଚିତ ହୋଇଥାଏ ।

## (କ) ପାଶ୍ଚାତ୍ୟ ରାଜନୈତିକ ପରଂପରା

ପାଶ୍ଚାତ୍ୟ ସମାଲୋଚକମାନଙ୍କ ଦୃଷ୍ଟିରେ ଗ୍ରୀସ୍ ହେଉଛି ରାଜନୀତି-ଦର୍ଶନର ଉତ୍ସ ଭୂମି ଏବଂ ଆରିଷ୍ଟୋଟଲ ତାର ଜନ୍ମଦାତା । କିନ୍ତୁ ଆରିଷ୍ଟୋଟଲଙ୍କ ସୁଚିନ୍ତିତ ଦାର୍ଶନିକ ମତବାଦର ପୃଷ୍ଠଭୂମିରେ ଯେଉଁ ବଳିଷ୍ଠ ପରଂପରା ନିହିତ, ତାହା କେବଳ ପ୍ଲେଟୋ କିମ୍ବା ସକ୍ରେଟିସଙ୍କ ଠାରେ ସୀମିତ ନୁହେଁ, କିନ୍ତୁ ବହୁ ସୁଦୂରପ୍ରସାରୀ । ଏପରି କି ଖ୍ରୀଷ୍ଟପୂର୍ବ ଅଷ୍ଟାଦଶ ଶତାବ୍ଦୀରେ ପ୍ରାଚୀନ ବେବିଲୋନିଆର ସମ୍ରାଟ ହାମୁରାବି ରାଜ୍ୟଶାସନର ଯେଉଁ ନୀତି ନିର୍ଦ୍ଧାରଣ କରିଥିଲେ, ତାକୁ ପାଶ୍ଚାତ୍ୟ ରାଜନୈତିକ ଚେତନାର ଆଦ୍ୟ ପରିସ୍ଫୁରଣ ବୋଲି କୁହାଯାଇପାରେ ।

**ହାମୁରାବି :** ହାମୁରାବିଙ୍କ ଶାସନ କାଳ ( ଖ୍ରୀ : ପୂ : ୧୭୯୨-୧୭୫୦ ) ରେ ଯେଉଁ ଆଇନ ଓ ଶାସନ ପଦ୍ଧତି ପ୍ରଚଳିତ ହୋଇଥିଲା, ତାହା ଥିଲା ପୃଥିବୀ ଇତିହାସରେ ସର୍ବପ୍ରଥମ ରାଜନୈତିକ ଶାସନ ସଂହିତା । ଏହା ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପଚାଶ ମିଟର ଉଚ୍ଚତା ବିଶିଷ୍ଟ ଏକ ପ୍ରସ୍ତର ଫଳକ ଉପରେ ଖୋଦନ କରାଯାଇଥିଲା ଏବଂ ସେଥିରେ ୨୮୫ ଗୋଟି ଆଇନର ଦଫା ଲିପିବଦ୍ଧ ହୋଇଥିଲା । ସେହି ଖୋଦିତ ପ୍ରସ୍ତର ଫଳକରେ ବିଭିନ୍ନ ଅପରାଧର ବିବରଣୀ ସହିତ ଆଇନ ସଂହିତା, ଦଣ୍ଡବିଧାନ ସଂହିତା, ବାଣିଜ୍ୟିକ ସଂହିତା ଓ ବିଚାର ସଂହିତା—

ଏପରି ଚତୁର୍ବିଧ ନିୟମାବଳୀ ସନ୍ନିବିଷ୍ଟ ଥିଲା । ଅପରାଧ ଅନୁଯାୟୀ ଶାସ୍ତିବିଧାନ ଏହାର ଏକ ବିଶେଷତ୍ୱ । 'ଚକ୍ଷୁ ବଦଳରେ ଚକ୍ଷୁ ଏବଂ ଦନ୍ତ ପାଇଁ ଦନ୍ତ' (An eye for an eye and a tooth for a tooth) ଆଇନ ବଳରେ ନିର୍ମାଣ ତ୍ରୁଟିରୁ ବାସଗୃହ ଭାଙ୍ଗିଯାଇ ଗୃହକର୍ତ୍ତାର ପୁତ୍ର ଯଦି ପ୍ରାଣ ହରାଉଥିଲା, ଗୃହନିର୍ମାଣ କରିଥିବା ରାଜମିସ୍ତ୍ରୀର ପୁତ୍ରକୁ ପ୍ରାଣଦଣ୍ଡ ଦିଆଯାଉଥିଲା । ଏହି ବ୍ୟବସ୍ଥା ନିତାନ୍ତ କଠୋର ଓ ନ୍ୟାୟ ଗର୍ହିତ ମନେହୁଏ ସତ, କିନ୍ତୁ ଦଣ୍ଡ ଭୟରେ ସମୁଚିତ କର୍ତ୍ତବ୍ୟ ସଂପାଦନ କରାଇବା ହିଁ ଥିଲା ହମୁରାବିଙ୍କ ମୁଖ୍ୟ ଲକ୍ଷ୍ୟ । ଏହା ବ୍ୟତୀତ, ଅନାଥ, ବିଧବା ଓ ନିରାଶ୍ରିତମାନଙ୍କର ରକ୍ଷଣାବେକ୍ଷଣ, ବିଭିନ୍ନ ବ୍ୟବହାର୍ଯ୍ୟ ଦ୍ରବ୍ୟର ଦର ନିୟନ୍ତ୍ରଣ, ଚିକିତ୍ସକମାନଙ୍କର ପାରିତୋଷିକ ନିର୍ଦ୍ଧାରଣ, ବିଭିନ୍ନ କର୍ମଚାରୀଙ୍କର ବେତନ ନିରୂପଣ, ବିଚାରପତି ନିଯୁକ୍ତି, ରାଜସ୍ୱ ଆଦାୟ, ଜମି ବନ୍ଦୋବସ୍ତ, ଚୁକ୍ତିନାମା, ସାକ୍ଷ୍ୟ ପ୍ରଦାନ, ବିବାହ, ଛାଡ଼ପତ୍ର ଆଦି କୃଷି, ବାଣିଜ୍ୟ, ଶାସନ ଶୃଙ୍ଖଳା ଓ ସାମାଜିକ ସଂପର୍କ ପ୍ରତିଷ୍ଠା ସମ୍ବନ୍ଧରେ ସେ ଯେଉଁ ଦୂରଦୃଷ୍ଟି ସଂପନ୍ନ ଆଇନ ପ୍ରଣୟନ କରିଥିଲେ, ଆଧୁନିକ ଯୁଗର ପ୍ରଗତିଶୀଳ ଶାସନ ବ୍ୟବସ୍ଥାରେ ଅନୁସୃତ ନିୟମ ବିଧାନ ପରିପ୍ରେକ୍ଷୀରେ ତାର ଗୁରୁତ୍ୱ ଅବଶ୍ୟ ସ୍ୱୀକାର୍ଯ୍ୟ । ବାସ୍ତବ କ୍ଷେତ୍ରରେ ହମୁରାବିଙ୍କ ଆଇନ ପରବର୍ତ୍ତୀ କାଳରେ ପୃଥିବୀର ବହୁ ସଭ୍ୟ ରାଷ୍ଟ୍ରର ଆଇନ ପଦ୍ଧତି ତଥା ରାଜନୀତିକୁ ପ୍ରଭାବିତ କରିଅଛି । (୩)

ହମୁରାବିଙ୍କ ପରବର୍ତ୍ତୀ ସମୟରେ ପାଶ୍ଚାତ୍ୟ ଭୂଖଣ୍ଡରେ ବହୁ ସଭ୍ୟତାର ଯେ ଉତ୍ଥାନ ପତନ ନ ଘଟିଛି, ତାହା ନୁହେଁ, କିନ୍ତୁ ସେ ସବୁ କ୍ଷେତ୍ରରେ ପ୍ରଚଳିତ ଶାସନ ବ୍ୟବସ୍ଥାର ବିବରଣୀ ଉପଲବ୍ଧ ନୁହେଁ । ଏଣୁ ରାଜନୀତି-ଦର୍ଶନର ଆଲୋଚନା ପରିସରରେ ଗ୍ରୀକ୍ ସଭ୍ୟତାକୁ ହିଁ ପ୍ରଥମ ସୋପାନ ଭାବେ ଗ୍ରହଣ କରାଯାଇପାରେ ।

## ଗ୍ରୀକ୍ ରାଜନୈତିକ ଆଦର୍ଶ

ପୃଥିବୀ ଇତିହାସରେ ଗ୍ରୀକ୍ ସଭ୍ୟତା ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ସେଠାରେ ନଗର-ରାଷ୍ଟ୍ର ସଭ୍ୟତାର ଅଭ୍ୟୁଦୟ ପୂର୍ବରୁ ଆୟୋନିଆନ୍‌ମାନେ ଗ୍ରୀସ୍ ପରିତ୍ୟାଗ କରି ଏସିଆ ମାଇନର ପ୍ରଭୃତି ଅଞ୍ଚଳକୁ ଚାଲିଯିବା ଫଳରେ ଗ୍ରୀକ

(୩) Das, Dr. M. N. - World History ( Vidyapuri, Cuttack ) 1981, pp. 59-60.

ସମାଜରେ ଈଶ୍ୱର ଭକ୍ତ ଓ ଧର୍ମାନୁରକ୍ତ ଗୌଣ ହୋଇ ପଡ଼ିଥିଲା । ବ୍ୟକ୍ତିର ପାରିବାରିକ ଆକର୍ଷଣ ଓ ରାଷ୍ଟ୍ରୀୟ ମମତା ମଧ୍ୟରେ ବ୍ୟବଧାନ ହ୍ରାସ ପାଇଥିଲା । ସେହି ପରିପ୍ରେକ୍ଷୀରେ ପ୍ରାକୃତିକତା ପରିବର୍ତ୍ତେ ଆତ୍ମକୈନ୍ଦ୍ରିକ ବ୍ୟକ୍ତି-ଚେତନାକୁ ଭିତ୍ତି କରି ନଗର-ରାଷ୍ଟ୍ର ଶାସନ ବ୍ୟବସ୍ଥା ଗଢ଼ି ଉଠିଥିଲା । ସମଗ୍ର ଗ୍ରୀସ୍ ଭୂଖଣ୍ଡରେ ପ୍ରଥମେ ରାଜତନ୍ତ୍ର (Monarchy), ପରେ ସମ୍ଭ୍ରାନ୍ତତନ୍ତ୍ର (Aristocracy), ତା ପରେ ସ୍ୱେଚ୍ଛାଚାରୀ ଶାସନ (Tyranny) ଓ ଶେଷରେ ଗଣତନ୍ତ୍ର (Democracy) କ୍ରମାନ୍ୱୟରେ ପ୍ରବର୍ତ୍ତିତ ଓ ପରୀକ୍ଷିତ ହୋଇଥିଲା । ଫଳତଃ, ଗ୍ରୀକ୍ ଜନସାଧାରଣ ବିଭିନ୍ନ ପ୍ରକାର ଶାସନ ପ୍ରଣାଳୀର ଉତ୍କର୍ଷ ଓ ଅପକର୍ଷର ତୁଳନାତ୍ମକ ଅନୁଭୂତି ଅର୍ଜନ କରିପାରିଥିଲେ । ଏହାଦ୍ୱାରା ସେଠାରେ ଏକ ସମୁନ୍ନତ ରାଜନୀତିକ ଚେତନାର ଉନ୍ମେଷ ସମ୍ଭବ ହୋଇପାରିଥିଲା । (୪)

ପ୍ରାଚୀନ ଗ୍ରୀସରେ ସ୍ପାର୍ଟା ଓ ଏଥେନ୍ସ ଥିଲା ନଗର-ରାଷ୍ଟ୍ର ସଭ୍ୟତାର ଦୁଇଟି ଶ୍ରେଷ୍ଠ ପ୍ରାଣକେନ୍ଦ୍ର । ସ୍ପାର୍ଟାରେ ଏକ ସମୟରେ ଦୁଇଜଣ ରାଜା ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ଅଠାଇଶ ଜଣ ପରିଣତ ବୟସ୍କ ସଭ୍ୟବିଶିଷ୍ଟ ପରାମର୍ଶଦାତା ପରିଷଦ, ପାଞ୍ଚଜଣ ସଭ୍ୟ ବିଶିଷ୍ଟ ପର୍ଯ୍ୟବେକ୍ଷକ ମଣ୍ଡଳୀ (ଏଫରସ୍) ଏବଂ ସମ୍ଭ୍ରାନ୍ତ ନାଗରିକମାନଙ୍କୁ ନେଇ ଗଠିତ ବିଧାନସଭା (ଆପେଲା) ତତ୍କାଳୀନ ଶାସନ ବ୍ୟବସ୍ଥାର ସହାୟକ ଅନୁଷ୍ଠାନ ଥିଲା । ଶାସନଗତ ସୁବିଧା ଦୃଷ୍ଟିରୁ ସ୍ପାର୍ଟା ନଗର-ରାଜ୍ୟକୁ ପାଞ୍ଚଟି ସାମରିକ କକ୍ଷାରେ ବିଭକ୍ତ କରାଯାଇଥିଲା । (୫)

ତତ୍କାଳୀନ ଗ୍ରୀସର ଅନ୍ୟତମ ନଗର-ରାଷ୍ଟ୍ର ଏଥେନ୍ସର ଇତିହାସ ସ୍ପାର୍ଟାଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର । କଳା, ବିଜ୍ଞାନ, ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ଏଥେନ୍ସର ସୁନାମ ଥିଲା ଦିଗନ୍ତ ବିସ୍ତାରିତ ଓ ଦୀର୍ଘସ୍ଥାୟୀ । ଏଥିପାଇଁ ଗ୍ରୀକ୍ ସଭ୍ୟତା କହିଲେ ଏଥେନ୍ସ ସଭ୍ୟତାକୁ ହିଁ ବୁଝାଯାଏ । ପ୍ରଚଳିତ ରାଜତନ୍ତ୍ରର କୁପରିଣାମରେ ଅତିଷ୍ଠ ହୋଇ ଏଥେନ୍ସବାସୀ ଆର୍କନମାନଙ୍କୁ ନେଇ ସେଠାରେ ଯେଉଁ ସମ୍ଭ୍ରାନ୍ତତନ୍ତ୍ର ପ୍ରଚଳନ କଲେ, ତାହା ମଧ୍ୟ କ୍ରମଶଃ ବ୍ୟକ୍ତିକୈନ୍ଦ୍ରିକ ହୋଇ ପଡ଼ିଥିଲା । ସେହି ଶାସନ ପ୍ରଣାଳୀର ସଂସ୍କାର ଦିଗରେ ଡ୍ରାକୋ ପ୍ରଥମ ପଦକ୍ଷେପ ଗ୍ରହଣ କରିଥିଲେ ।

---

୪) Barker, Sir Ernest. - Greek Political Theory (B. I. Publications, India) 1980, pp. 1-6

(୫) Das, Dr. M. N.—World History, OP. CT. pp-165-166

ଡ୍ରାକୋ ନିକେ ଥିଲେ ଜଣେ ଆର୍କନ ଏବଂ ସଂଭ୍ରାନ୍ତ ପରିବାରର ବ୍ୟକ୍ତି । ଏଥେନ୍ସର ବିଗୃର ବ୍ୟବସ୍ଥାରେ ଗୁରୁତର ବିଚ୍ୟୁତି ଲକ୍ଷ୍ୟ କରି ସେ ଖ୍ରୀଷ୍ଟପୂର୍ବ ୬୨୧ ରେ ଏକ ନୂତନ ଆଇନ ଗ୍ରନ୍ଥ ପ୍ରଣୟନ କରିଥିଲେ । ସେହି ଆଇନ ଥିଲା ଅତି କଠୋର ଏବଂ ଅଧିକାଂଶ ଅପରାଧ ପାଇଁ ମୃତ୍ୟୁଦଣ୍ଡକୁ ହିଁ ଉଚିତ ଶାସ୍ତିରୂପେ ଗ୍ରହଣ କରାଯାଇଥିଲା । ଏଥିପାଇଁ ଅଦ୍ୟାବଧି ଯେ କୌଣସି କଠୋର ଆଇନ ଡ୍ରାକୋନିଆନ୍ ଆଇନ ନାମରେ ପରିଚିତ ।

ଏଥେନ୍ସର ଉପର୍ଯ୍ୟୁକ୍ତ ଆଇନ ବ୍ୟବସ୍ଥାକୁ କୋହଳ, ଜନପ୍ରିୟ ଓ ବିଗୃର ପଦ୍ଧତିକୁ ଅଧିକ ଯୁକ୍ତିସଙ୍ଗତ ତଥା ସାମ୍ୟ ରୂପ ପ୍ରଦାନ କରିବା କ୍ଷେତ୍ରରେ ସୋଲନଙ୍କ ନାମ ସ୍ମରଣଯୋଗ୍ୟ । ବିଖ୍ୟାତ ରାଜା କୋଡ୍ରସ୍‌ଙ୍କ ବଂଶଧର ଆର୍କନ ସୋଲନ୍ ଖ୍ରୀ: ପୂ. ୫୯୪ ରେ ଏଥେନ୍ସ୍‌ର କୁହେଳିକାଚ୍ଛନ୍ନ ରାଜନୈତିକ ଦିଗ୍‌ବଳୟରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ଆବିର୍ଭୂତ ହୋଇଥିଲେ । ସେ ଥିଲେ ଏକାଧାରରେ ଜଣେ ଲବ୍ଧ ପ୍ରତିଷ୍ଠ କବି, ଅ.ଦର୍ଶ ଚରିତ୍ରବାନ୍ ଓ ସଂସ୍କାରଧର୍ମୀ ଶାସକ । ଋଣ ପରିଶୋଧ କରିନପାରି ଋଣଦାତାଙ୍କ ନିକଟରେ କ୍ରୀତଦାସ ରୂପେ ରହିଥିବା ବ୍ୟକ୍ତିଙ୍କୁ ମୁକ୍ତ କରିବା ଓ ବନ୍ଧକ ଦିଆଯାଇଥିବା ଜମିଗୁଡ଼ିକୁ ଫେରାଇଦେବା ଦିଗରେ ତାଙ୍କ ଆଇନରେ ଦୃଢ଼ ବ୍ୟବସ୍ଥା କରାଯାଇଥିଲା । ଏହା ବ୍ୟତୀତ, ସେ ଭୂ-ସମ୍ପତ୍ତିର ସୀମା ନିର୍ଦ୍ଧାରଣ, ବିବାହ, ଶବ ସତ୍କାର, ଶିକ୍ଷାଦାନାଦି ସାମାଜିକ ବ୍ୟବସ୍ଥା ତଥା ପର୍ବପର୍ବାଣି ଓ ଉତ୍ସବାଦିରେ ଅର୍ଥବ୍ୟୟ ଲାଗି କଟକଣା ଜାରି କରିବା ଦିଗରେ ପଦକ୍ଷେପମାନ ଗ୍ରହଣ କରିଥିଲେ (୬) ଏଥିପାଇଁ ସେ ଗଣତନ୍ତ୍ର ପନ୍ଥୀଙ୍କ ଦ୍ୱାରା ପେରିକ୍ଲସ ଯୁଗୀୟ 'ଗଣତନ୍ତ୍ରର ପିତା' ଏବଂ ମଧ୍ୟମ ପନ୍ଥୀଙ୍କ ଦ୍ୱାରା 'ସାମ୍ବିଧାନିକ ପରମ୍ପରାର ଜନକ' ରୂପେ ସମ୍ମାନିତ । (୭)

ସୋଲନଙ୍କ ପରେ ତାଙ୍କ ଭ୍ରାତୃଷ୍ପୁତ୍ର ପିସିଷ୍ଟ୍ରେଟସ୍ (ଖ୍ରୀ. ପୂ: ୫୪୬-୫୨୭) ଜନହିତକର ଆଇନ ପ୍ରବର୍ତ୍ତନ ଦିଗରେ କେତେକ ଦୃଢ଼ ପଦକ୍ଷେପ ନେଇଥିଲେ । ସେ ଏଥେନ୍ସରେ କୃଷି, ଶିଳ୍ପ, କଳା ଓ ସାହିତ୍ୟର ଉନ୍ନତି ଘଟାଇବା ସଙ୍ଗେ ସଙ୍ଗେ ଜନମତକୁ ସମର୍ଥନ କରି କେତେକ ସଂଭ୍ରାନ୍ତ ଶ୍ରେଣୀୟ ବ୍ୟକ୍ତିଙ୍କୁ ରାଜ୍ୟରୁ ବିତାଡ଼ିତ କରିଦେଇଥିଲେ ଏବଂ ସେମାନଙ୍କ ଜମିକୁ ଭୂମିହୀନ ନାଗରିକଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ତାଙ୍କ ପରେ କ୍ଲାଇସ୍‌ଥେନିସ୍ ସମସ୍ତ ନାଗରିକଙ୍କୁ ଭୋଟଦାନ ଅଧିକାର ପ୍ରଦାନ କରିଥିଲେ ଓ ବିଭିନ୍ନ ସଂପ୍ରଦାୟରୁ ପଚାଶ ଜଣ ସଭ୍ୟଙ୍କୁ ନେଇ

(୬) Ibid. p. 167
(୭) Barker : Greek Political Theory OP. CT. pp. 52-53

ଗୋଟିଏ ଶାସନ ପରିଷଦ ଗଢ଼ିଥିଲେ । ଗଣତନ୍ତ୍ରର ସୁରକ୍ଷା ଦିଗରେ ଶାସନ ବିଧାୟକ ପରିଷଦର ସଭ୍ୟମାନଙ୍କ ଗଣଭୋଟ ସାହାଯ୍ୟରେ ବହିଷ୍କାର (ଅଷ୍ଟ୍ରାସିଜମ୍) ବ୍ୟବସ୍ଥା ରାଜନୀତି କ୍ଷେତ୍ରକୁ ତାଙ୍କର ଏକ ବିଶିଷ୍ଟ ଅବଦାନ ।

ସେହି ସମୟରେ, ଏଥେନ୍ସ, ସ୍ପାର୍ଟା ଓ ଡ଼େଲ୍‌ଫି ତିନୋଟି ନଗର-ରାଷ୍ଟ୍ର ମଧ୍ୟରେ ପାରସ୍ପରିକ ସଂଯୋଗ ସ୍ଥାପନ ନିମିତ୍ତ ପରିବେଶ ଅନୁକୂଳ ଥିବା ଯୋଗୁଁ ଆୟୋନୀୟ ପୁନର୍ଜାଗରଣର ପ୍ରଭାବ ଗ୍ରୀକ୍ ଚିନ୍ତାଧାରାକୁ ସମ୍ପ୍ରସାରିତମୁଖୀ କରିଥିଲା । (୭) ଆୟୋନୀୟ ମନୀଷୀ ପାଇଥାଗୋରାସ (ଖ୍ରୀ: ପୂ: ୫୩୦) ପ୍ରାକୃତିକ ଦର୍ଶନତତ୍ତ୍ୱ ସମ୍ବଳିତ ନୀତିସମ୍ପନ୍ନ ରାଷ୍ଟ୍ରର ପରିକଳ୍ପନା କରି ରାଜନୀତି ଶାସ୍ତ୍ରକୁ ନିର୍ଦ୍ଦିଷ୍ଟ ରୂପରେଖ ଦେଇଥିଲେ । (୮) ତାଙ୍କ ରାଜନୈତିକ ଦର୍ଶନର ମୂଳତତ୍ତ୍ୱ ଥିଲା ଜ୍ଞାନପ୍ରିୟ (Lovers of wisdom), ସମ୍ମାନପ୍ରିୟ (Lovers of honour) ଓ ଧନପ୍ରିୟ (Lovers of gain)-ଏଭଳି ତ୍ରିବିଧ ମାନବ ଜାତିର ପରିକଳ୍ପନା । ଏହା ବ୍ୟତୀତ, ସଙ୍ଗୀତ, ଭେଷଜ ଜ୍ଞାନ ଓ ବ୍ୟକ୍ତିଗତ ପବିତ୍ରତା ଉପରେ ଗୁରୁତ୍ୱ ପ୍ରଦାନପୂର୍ବକ ସେ 'ଜ୍ଞାନର ବିଦ୍ୟାଧିକାର ନୀତି' (Theory of Divine Right of Wisdom) ପ୍ରବର୍ତ୍ତନ କରିଥିଲେ । (୯)

ଆୟୋନୀୟ ଗୋଷ୍ଠୀର ଅନ୍ୟ ଚିନ୍ତାନାୟକଙ୍କ ମଧ୍ୟରେ ହିରାକ୍ଲିଟାସ (ଖ୍ରୀ: ପୂ: ୫୦୦) ଓ ତାଙ୍କ ଅନୁଗାମୀ ଆନାକ୍‌ଜିମାଣ୍ଡେର ବିଶେଷ ସ୍ମରଣୀୟ । ହିରାକ୍ଲିଟାସ ପ୍ରାକୃତିକ ଆଇନ ଉପରେ ଗୁରୁତ୍ୱ ଦେଇଥିଲେ ଏବଂ ଆନେକଜିମାଣ୍ଡେର ମାନବ ଜଗତ ଓ ବସ୍ତୁ ଜଗତ ମଧ୍ୟରେ ସମନ୍ୱୟ ରେଖା ଟାଣି ଆତ୍ମିକ ଉତ୍କର୍ଷର

---

(୮) ପାଇଥାଗୋରାସଙ୍କ ଏହି ନୀତିସମୂହ ହେଉଛି— (୧) କର୍ଷଣ ନ ଦେବା, (୨) ପତିତ ପଦାର୍ଥ ନ ଉଠାଇବା, (୩) ଶ୍ୱେତାଙ୍ଗପକ୍ଷୀ ସ୍ପର୍ଶ ନ କରିବା, (୪) ରୁଟି ଛିନ୍ନ ନ କରିବା, (୫) ବାଡ଼ ଉଲ୍ଲଙ୍ଘନ ନ କରିବା, (୬) ଲୁହାକୁ ନିଆଁରେ ନ ତତାଇବା, (୭) ସମ୍ପୂର୍ଣ୍ଣ ଆହାର ନ କରିବା, (୮) ପୁଷ୍ପ ହାରରୁ ପୁଷ୍ପ ନ ଛିଣ୍ଡାଇବା, (୯) ଚତୁଷ୍କୋଣୀ ଆସନରେ ନ ବସିବା, (୧୦) କଲିଜା ନ ଖାଇବା, (୧୧) ସଡ଼କ ମଝିରେ ନ ଚାଲିବା ଓ (୧୨) ଆଲୁଅ ନିକଟରେ ଦର୍ପଣ ନ ଦେଖିବା ।

(୯) Barker : Greek Political Theory-pp-58 60.

ପ୍ରାଧାନ୍ୟ ପ୍ରତିପାଦନ କରିଥିଲେ । ଅନ୍ୟତମ ଆଥେନୀୟ ଜେନୋଫେନ୍ ଡ଼େଲ୍‌ଫି ବାସୀଙ୍କ ମଧ୍ୟରେ ରାଷ୍ଟ୍ରୀୟ ମମତା, ଏକତା ଓ ଏକାଗ୍ରତା ଜାଗ୍ରତ କରାଇ ଦେବଦେବୀଙ୍କ ଉପରେ ଅନ୍ଧଭାବେ ବିଶ୍ୱାସ କରୁଥିବା ଆଥେନୀୟମାନଙ୍କୁ ବାସ୍ତବବାଦୀ ଓ ବିଜ୍ଞାନାଭିମୁଖୀ କରାଇଥିଲେ । ଏମାନଙ୍କ ପଦାଙ୍କ ଅନୁସରଣ କରି ଥେଲସ୍, ପାରମେନାଇଡ଼ସ୍, ଷ୍ଟ୍ରାବୋ, ଏମ୍ପେଡ଼ୋକଲ୍ ପ୍ରମୁଖ ପ୍ରାକୃତିକ ଆଇନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଗଣତାନ୍ତ୍ରିକ ଚେତନାକୁ ଉଜ୍ଜୀବିତ ରଖିଥିଲେ । (୧୦)

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆଥେନୀୟ ଚିନ୍ତାଧାରାର ପ୍ରତିବାଦ ସ୍ୱରୂପ ସମସ୍ଥଳବାଦୀ (Levellers) ସୋଫିଷ୍ଟ ମତବାଦର ଅଭ୍ୟୁଦୟ ଘଟିଥିଲା । ଏମାନେ ପ୍ରଚଳିତ ରାଜନୈତିକ ଆଦର୍ଶର ବିରୁଦ୍ଧାଚରଣ କରି କେତେକ ଅଭିନବ ଚିନ୍ତାଧାରା ପ୍ରବର୍ତ୍ତନ କରିଥିଲେ । ଏମାନଙ୍କ ମଧ୍ୟରୁ ଜର୍ଜିଆସ୍, ପ୍ରୋଟା-ଗୋରାସ୍ ଓ ହିପିଆସ୍ ମାନବିକ ଆଦର୍ଶ ଓ ନୈତିକ ଦର୍ଶନ ଉପରେ ଗୁରୁତ୍ୱ ଆରୋପ କରିଥିବେଳେ ପୋଲେମାର୍କାସ୍, ଥ୍ରାସିମାକାସ୍, ଗ୍ଲାକୋନ୍, ଏଣ୍ଟିଫନ୍ ପ୍ରମୁଖ ବ୍ୟକ୍ତିର ଇଚ୍ଛା, ଅହଂବାଦ, ଆଧିପତ୍ୟବିସ୍ତାର ପ୍ରବୃତ୍ତି, ଆତ୍ମହିତ ନୀତି, ସାମାଜିକ ଚୁକ୍ତିବଦ୍ଧତା ଆଦିକୁ ପ୍ରାଧାନ୍ୟ ପ୍ରଦାନ କରିଅଛନ୍ତି । (୧୧)

ଏବଂବିଧ ଗ୍ରୀସୀୟ ରାଜନୈତିକ ପୃଷ୍ଠଭୂମିରେ ପେରିକ୍ଲସ (ଖ୍ରୀ: ପୂ: ୪୬୧-୪୨୯) ଙ୍କ ଆବିର୍ଭାବ ଏକ ଉଚ୍ଚ ଗଣତାନ୍ତ୍ରିକ ଆଦର୍ଶ ପ୍ରତିଷ୍ଠା କ୍ଷେତ୍ରରେ ସହାୟକ ହୋଇଥିଲା । ସର୍ବସାଧାରଣଙ୍କ ଦ୍ୱାରା ନିର୍ବାଚିତ ବିଧାନ ପରିଷଦର ବିଧାନ ସମ୍ବନ୍ଧ ପ୍ରତି ଦାୟିତ୍ୱ ଓ ଜନତା ଦ୍ୱାରା ନିର୍ବାଚିତ ସ୍ୱାଧୀନ ଓ ନିରପେକ୍ଷ ବିଚାରକ ମଣ୍ଡଳୀ ତତ୍କାଳୀନ ଗଣତାନ୍ତ୍ରିକ ମୂଲ୍ୟବୋଧର ପ୍ରକୃଷ୍ଟ ଦୃଷ୍ଟାନ୍ତ । ସମକାଳୀନ ଗ୍ରୀକ୍ ରାଷ୍ଟ୍ର କେବଳ ଆଇନ ବା ରାଜନୀତିର ଏକ ଅନୁଷ୍ଠାନ ନଥିଲା, ତାହା ଥିଲା ସର୍ବସାଧାରଣଙ୍କର ପ୍ରାଣ କେନ୍ଦ୍ର । (୧୨) ଆଜନ୍ମ ସାମ୍ରାଜ୍ୟବାଦୀ ପେରିକ୍ଲସ ସୁଶାସକ ଓ ସେନାଧ୍ୟକ୍ଷ ଭାବେ ଅପାର ସିଦ୍ଧହସ୍ତତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ମାନବିକ ସ୍ୱାଧୀନତା, ସୀମାନ୍ତ ଶାନ୍ତି ନୀତି ତଥା ନାଗରିକମାନଙ୍କର ନିରଙ୍କୁଶ ଅଧିକାରର ସୁରକ୍ଷା ଦିଗରେ ବ୍ରତୀ ହୋଇ ଗଣତାନ୍ତ୍ରିକ ପରଂପରାର ପୂର୍ଣ୍ଣାଙ୍ଗ ବିକାଶ ଓ

(୧୦) ତତ୍ରୈବ ।

(୧୧) ତତ୍ରୈବ, ପୃ. ୬୮-୭୯ ।

(୧୨) Sabine, George H—A History of Political Theory (I. B. H. Publishing Co. India) 4th Ed. 1973, pp 26-27.

ଦୃଢ଼ୀକରଣ କ୍ଷେତ୍ରରେ ବଳିଷ୍ଠ ଭୂମିକା ଗ୍ରହଣ କରି ଯାଇଛନ୍ତି । ବସ୍ତୁତଃ ସେହି ଆଦର୍ଶ ହେଉଛି ମୁକ୍ତରାଜ୍ୟରେ ମୁକ୍ତ ନାଗରିକତାର ଆଦର୍ଶ । (୧୩)

ସେହି ସମୟରେ (ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ) ଯେଉଁ ତିନିଜଣ ଗ୍ରୀକ୍ ମନୀଷୀ ରାଜନୀତିକୁ ବିଜ୍ଞାନସମ୍ମତ ରୂପରେଖ ଦେଇ ବିଶ୍ୱବିଶ୍ରୁତ ହୋଇଛନ୍ତି, ସେମାନେ ହେଉଛନ୍ତି ଶ୍ରେୟତ୍ତ୍ୱର ଉପାସକ ସକ୍ରେଟିସ, ଜ୍ଞାନବାଦୀ ପ୍ଲେଟୋ ଓ ଆଦର୍ଶବାଦୀ ଆରିଷ୍ଟୋଟଲ ।

**ସକ୍ରେଟିସ୍ :** ଉପର୍ଯ୍ୟୁକ୍ତ ତିନି ଜଣ ଦାର୍ଶନିକଙ୍କ ମଧ୍ୟରୁ ସତ୍ୟାନ୍ୱେଷୀ ପାଇଁ ମୃତ୍ୟୁବରଣ କରିଥିବା ସକ୍ରେଟିସ ( ଖ୍ରୀ: ପୂ: ୪୬୯-୩୯୯ ) ଅଗ୍ରଗଣ୍ୟ । ସେ ଏକ ସାଧାରଣ ସ୍ଥପତିକୁଳରେ ଜନ୍ମ ଗ୍ରହଣ କରି ବଂଶଗତ ବିଦ୍ୟା ସହିତ ପ୍ରାକୃତିକ ବିଜ୍ଞାନ ଓ ଦାର୍ଶନିକ ତତ୍ତ୍ୱରେ ନୈପୁଣ୍ୟ ଅର୍ଜନ କରିପାରିଥିଲେ । ଯୌବନରେ ସେ ଥିଲେ ଜଣେ ଅସ୍ତ୍ରବିଦ୍ୟାକୁଶଳୀ ଗ୍ରୀକ୍ ସୈନିକ । ନିଜର ଜ୍ଞାନ ଗରିମା ଓ ଚିନ୍ତାର ସ୍ୱଚ୍ଛତା ଯୋଗୁଁ ପ୍ରୌଢ଼ାବସ୍ଥାରେ ( ଖ୍ରୀ: ପୂ: ୪୦୬ ରେ ) ସେ ବିଧାନ ସଭାର ସଭ୍ୟ ଭାବେ ନିର୍ବାଚିତ ହୋଇଥିଲେ । ଗ୍ରୀସର ସାଧାରଣ ଜନ ଜୀବନ, ସମସାମୟିକ ବୁଦ୍ଧିଜୀବୀମାନଙ୍କର ଚିନ୍ତାଧାରା ଏବଂ ରାଜନୈତିକ ଘଟଣା ପ୍ରବାହ ସହିତ ନିବିଡ଼ ଭାବେ ସଂଶ୍ଳିଷ୍ଟ ରହିବା ଫଳରେ ସେ ଏକ ନୂତନ ରାଜନୈତିକ ଆଦର୍ଶ ପ୍ରତିଷ୍ଠା କରିପାରିଥିଲେ ।

ସକ୍ରେଟିସ୍ ଥିଲେ 'ଦ୍ୱୈତ ଜ୍ଞାନମତ' ( Doctrine of two knowledges )ର ପ୍ରବକ୍ତା । ତାଙ୍କ ମତରେ ବାହ୍ୟ ଜ୍ଞାନ କ୍ଷଣସ୍ଥାୟୀ; ପ୍ରକୃତ ଜ୍ଞାନ ବିବେକାନୁମୋଦିତ ଓ ଚିରସ୍ଥାୟୀ । ଯାନ୍ତ୍ରିକ ଜ୍ଞାନ ଅପେକ୍ଷା ମାନବିକ ଆଚରଣ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କ ବିଚାରରେ ଯାହା ଶ୍ରେଷ୍ଠ, ସତ୍ୟ ତଥା ପବିତ୍ର, ତାହାହିଁ ଜ୍ଞାନ ପଦବାଚ୍ୟ । ସକ୍ରେଟିସ୍‌ଙ୍କ ଦୃଷ୍ଟିରେ ଶ୍ରେଷ୍ଠତା ମଧ୍ୟ ଦ୍ୱିବିଧ—ଜନମତ ଯାହା ଶ୍ରେଷ୍ଠ ରୂପେ ଗ୍ରହଣ କରେ, ତାହା ଶ୍ରେଷ୍ଠ; ପୁଣି, ଜ୍ଞାନ ଓ ବିବେକ ଅନୁଯାୟୀ ଯାହା ଶ୍ରେଷ୍ଠ, ତାହା ମଧ୍ୟ ଶ୍ରେଷ୍ଠ । ତେବେ, ପ୍ରଥମ ଶ୍ରେଷ୍ଠତା ହେଉଛି କ୍ଷଣସ୍ଥାୟୀ, ବିପୂରଣଯୋଗ୍ୟ ତଥା ପରିବର୍ତ୍ତନଶୀଳ; ଦ୍ୱିତୀୟ ଶ୍ରେଷ୍ଠତା ସ୍ଥାୟୀ ଓ ଶାଶ୍ୱତ । ଏଣୁ ପ୍ରଥମଟି ହେଉଛି ସାଧାରଣ ଶ୍ରେଷ୍ଠତା ଓ ଦ୍ୱିତୀୟଟି ହେଉଛି

(୧୩) Ibid-pp. 33-35.

ଦାର୍ଶନିକ ଶ୍ରେଷ୍ଠତା । (୧୪) ସଂକ୍ଷେପତଃ, ଜ୍ଞାନର ସାର୍ବଭୌମତ୍ୱ (Sovereignty of knowledge) ଥିଲା ସକ୍ରେଟିସଙ୍କ ଦର୍ଶନର ମୂଳମନ୍ତ୍ର ।

ରାଜନୈତିକ ଦିଗରୁ ବିଚାର କଲେ, ତାଙ୍କର ଏହି ମତ ଥିଲା 'ବ୍ୟୁତ୍ପନ୍ନ ଏକଛତ୍ର ଶାସନ' ( Enlightened Despotism )ର ପକ୍ଷପାତୀ । କାରଣ, ଜ୍ଞାନର ଶ୍ରେଷ୍ଠତ୍ୱ ନିକଟରେ ଜନମତର ପ୍ରାଧାନ୍ୟ ନଗଣ୍ୟ ଏବଂ ଆଇନର ଧାରା ମଧ୍ୟ ଦୁର୍ବଳ । ସୁତରାଂ, ଗଣମତ ଉପରେ ଆଧାରିତ ଗଣତନ୍ତ୍ରର ଏହା ପରିପନ୍ଥୀ; କାରଣ, ଗଣମତ ସର୍ବଦା ଶ୍ରେଷ୍ଠ ଜ୍ଞାନର ପରିମାପକ ହୋଇ ନପାରେ । (୧୫) ଶ୍ରେଷ୍ଠ ଜ୍ଞାନ ସବୁ ବେଳେ ସତ୍ ଓ ପବିତ୍ର । ସକ୍ରେଟିସ ପବିତ୍ରତା ଓ ସଦ୍‌ଜ୍ଞାନ ମଧ୍ୟରେ କୌଣସି ବ୍ୟବଧାନକୁ ସ୍ୱୀକାର କରୁ ନଥିଲେ । ଏଣୁ ସେ ଦୃଢ଼ ବିଶ୍ୱାସ ଘୋଷଣା କରିଥିଲେ ଯେ ସଦ୍‌ଜ୍ଞାନ କେବଳ ରାଜନୈତିକ ପବିତ୍ରତା ନୁହେଁ, ସକଳ ପ୍ରକାର ପବିତ୍ରତାର ମୂଳାଧାର । (୧୬) ଏହା ବ୍ୟତୀତ, ସେ ପ୍ରଚଳିତ ଧର୍ମଭିତ୍ତିକ ତଥା ଅସଂଖ୍ୟ ଦେବ-ଦେବୀଙ୍କ ଅସ୍ତିତ୍ୱ ଉପରେ ବିଶ୍ୱାସ କରୁ ନଥିଲେ । ତାଙ୍କ ମତରେ ମନୁଷ୍ୟ ହିଁ ସମସ୍ତ ବିଷୟର ଶ୍ରେଷ୍ଠ ଆଧାର । ଧର୍ମ ଅପେକ୍ଷା ସେ ମାନବିକତା ତଥା ସତ୍ୟ, ସାଧୁତା ଓ ନୈତିକତା ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ସକ୍ରେଟିସ୍‌ଙ୍କ ଏହି ଚିନ୍ତାଧାରାକୁ ପ୍ଲୁଟୋ ଅଧିକ ବ୍ୟାପକ ଓ ବାସ୍ତବାଭିମୁଖୀ କରିଛନ୍ତି ।

**ପ୍ଲୁଟୋ** : ସକ୍ରେଟିସ୍‌ଙ୍କ ଦାରୁଣ ମୃତ୍ୟୁ ଘଟଣା (୧୭) ପ୍ଲୁଟୋ ( ଖ୍ରୀ: ପୂ: ୪୨୭-୩୪୭ ) ଗଭୀର ଭାବେ ପ୍ରଭାବିତ କରିଥିଲା ଏବଂ ସେ ସ୍ପଷ୍ଟ ହୃଦୟଙ୍ଗମ କରିଥିଲେ ଯେ

---

(୧୪) Barker : Greek Political Theory —pp. 101-103.

(୧୫) Ibid - P. 111

(୧୬) Sabine - A History of Political Theory—pp 45-46

(୧୭) ସ୍ପାର୍ଟାରେ ରାଜତନ୍ତ୍ରର ବିକାଶ ଯୋଗୁଁ ଏଥେନ୍ସରେ ଗଣତନ୍ତ୍ର ଦୁର୍ବଳ ହୋଇପଡ଼ିବା ଫଳରେ ରାଜନୈତିକ ଭବିଷ୍ୟତ ପ୍ରତି ସକ୍ରେଟିସଙ୍କ ଦର୍ଶନ ବିପପକ୍ଷଙ୍କ ମନେ କରି ତାଙ୍କ ବିରୁଦ୍ଧରେ ଭଗବାନଙ୍କୁ ବିଶ୍ୱାସ ନ କରିବା ଏବଂ ଯୁବଗୋଷ୍ଠୀକୁ ବିଭ୍ରାନ୍ତ ଓ ଦୁର୍ନୀତିଗ୍ରସ୍ତ କରିବା ଅଭିଯୋଗ ଆଗତ କରାଯାଇଥିଲା । ତେଣୁ ତାଙ୍କୁ ବିଷ ପାନ କରି ଆତ୍ମବିସର୍ଜନ କରିବାକୁ ପଡ଼ିଥିଲା । (Barker : Greek Political Theory—P. 108 )

ତାଙ୍କ ରାଜନୈତିକ ଗୁରୁଙ୍କର ଅକାଳ ମୃତ୍ୟୁର ପାଇଁ ଗଣତନ୍ତ୍ରବାଦୀମାନେ ହିଁ ଦାୟୀ । ଏଥିପାଇଁ ସେ ଗଣତନ୍ତ୍ର ବିରୋଧୀ ମନୋଭାବ ପୋଷଣ କରିଥିଲେ ଏବଂ ଜ୍ଞାନ ଓ ଆଇନ୍ ଭିତ୍ତିକ ଦାର୍ଶନିକ କର୍ତ୍ତୃକ ଶାସନକୁ ହିଁ ଶ୍ରେଷ୍ଠ ରାଜନୈତିକ ବ୍ୟବସ୍ଥା ରୂପେ ଗ୍ରହଣ କରି ନେଇଥିଲେ । ଦୀର୍ଘ ବାର ବର୍ଷ କାଳ ବିଭିନ୍ନ ରାଜ୍ୟ ଭ୍ରମଣ କରି ଏବଂ ନିଜେ ଏକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରି ସେ ଯେଉଁ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିଥିଲେ, ତାହା ତାଙ୍କ ରାଜନୈତିକ ଚିନ୍ତାଧାରାକୁ ଅଧିକ ମାର୍ଜିତ ଓ ବଳିଷ୍ଠ ରୂପ ଦେଇଥିଲା । ପ୍ଲେଟୋଙ୍କ ଦର୍ଶନର ଦୁଇଟି ମୁଖ୍ୟ ବିଭବ ହେଉଛି—ଆତ୍ମାର ପରିବର୍ତ୍ତନ ଓ ମଣିଷ ଜାତିର ସେବା । (୧୮) ବ୍ୟକ୍ତିର ଆଦର୍ଶ ଜୀବନ ଗଠନ ପାଇଁ ପବିତ୍ର ଜ୍ଞାନ ଯେଉଁଳି ଆବଶ୍ୟକ, ଆଦର୍ଶ ରାଷ୍ଟ୍ର ପରିଚାଳନା ନିମନ୍ତେ ସେଉଁଳି ପବିତ୍ର ଜ୍ଞାନସମ୍ପନ୍ନ ଦାର୍ଶନିକ ଶାସକଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ, ଏହା ତାଙ୍କର ଦୃଢ଼ ବିଶ୍ୱାସ ଥିଲା । (୧୯) ପ୍ରକୃତ ନ୍ୟାୟ, ସତ୍‌ଶିକ୍ଷା, ସତ୍ ସାହସ ଉପରେ ଆଧାରିତ ସମ୍ବିଧାନ ଓ ଆଇନ ସମର୍ଥିତ ଦାର୍ଶନିକମାନଙ୍କ ଦ୍ୱାରା ଶାସିତ ରାଷ୍ଟ୍ର ହିଁ ଶ୍ରେଷ୍ଠ ରାଷ୍ଟ୍ର, ଏହା ପ୍ରତିପାଦନ କରିବା ହିଁ ପ୍ଲେଟୋଙ୍କ ବିଭିନ୍ନ ରାଜନୈତିକ ରଚନାବଳୀର ମୌଳିକ ଲକ୍ଷ୍ୟ ।

ପ୍ଲେଟୋ ରଚନା କରିଥିବା ଗ୍ରନ୍ଥମାନଙ୍କ ମଧ୍ୟରେ 'ରିପବ୍ଲିକ୍', 'ପଲିଟିକାସ୍' ବା 'ଷ୍ଟେଟସ୍‌ମ୍ୟାନ୍' ଓ 'ଦ ଲସ୍' ( The Laws ) ରାଜନୈତିକ ତତ୍ତ୍ୱ ସମ୍ବନ୍ଧିତ ଗ୍ରନ୍ଥ ଭାବରେ ପ୍ରଖ୍ୟାତ ଏବଂ ତନ୍ମଧ୍ୟରୁ 'ରିପବ୍ଲିକ୍' ସର୍ବଶ୍ରେଷ୍ଠ । ଆଦର୍ଶ ରାଷ୍ଟ୍ର ଗଠନର ପନ୍ଥା ନିର୍ଦ୍ଦେଶ ହେଉଛି 'ରିପବ୍ଲିକ୍'ର ମୁଖ୍ୟ ଉପାଦାନ । ଏଥିରେ ନ୍ୟାୟ ତଥା ନୈତିକତାର ଆବଶ୍ୟକତା, ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା, ସମାଜରେ ସାମ୍ୟବାଦର ପ୍ରଚଳନ, ପାରିବାରିକ ଜୀବନ ତଥା ଧନ ସମ୍ପତ୍ତି ନିୟନ୍ତ୍ରଣ ଇତ୍ୟାଦି ବିଷୟରେ ସେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି । 'ରିପବ୍ଲିକ୍'ର ରାଜନୈତିକ ତତ୍ତ୍ୱସମୂହର ଏକ ସଂକ୍ଷିପ୍ତ ରୂପ ନିମ୍ନ ସାରଣୀରେ ପ୍ରଦାନ କରାଗଲା ।

---

(୧୮) Barker : Greek Political Theory—P. 128

(୧୯) Sabine : A History of Political Theory—P. 49.




ଉପର୍ଯ୍ୟୁକ୍ତ ବିଷୟମାନଙ୍କ ମଧ୍ୟରୁ ନ୍ୟାୟନୀତି ପ୍ଲେଟୋଙ୍କ ଦର୍ଶନର ଶ୍ରେଷ୍ଠ ମୌଳିକ ଉପାଦାନ । ଏହା ମୁଖ୍ୟତଃ ସାମାଜିକ ଆବଶ୍ୟକତା ଉପରେ ଆଧାରିତ । ଏହାର ତିନୋଟି ବିଶିଷ୍ଟ ବିଭାବ ହେଉଛି— (୧) ବ୍ୟକ୍ତିର ଶକ୍ତି ଓ ଯୋଗ୍ୟତା ଅନୁଯାୟୀ କାର୍ଯ୍ୟ ନିର୍ଦ୍ଧାରଣ, (୨) ବିନା ହସ୍ତକ୍ଷେପରେ କାର୍ଯ୍ୟ ସମ୍ପାଦନ ଓ (୩) ବିଭିନ୍ନ ଶ୍ରେଣୀର ସମନ୍ୱୟ । ଏହି ନୀତି ନିର୍ବାଚିତ ଲୋକାଗ୍ରହ, କୃତ୍ରିମତା ତଥା ବାହ୍ୟିକ ବିଷୟ ଉପରେ ଆଧାରିତ ନଥିଲା; ମାନବିକତା ତଥା ସାମାଜିକତା ଥିଲା ତାର ମୂଳଭିତ୍ତି । ପ୍ଲେଟୋୟ ଦର୍ଶନରେ ମାନବାତ୍ମାର ତ୍ରିବିଧ ଉପାଦାନ ପରିକଳ୍ପିତ- ଔଚିତ୍ୟ ( Reason ), ସାହସ ବା ଉଦ୍ଦୀପନା ( Courage or Spirit ) ଓ ସ୍ପୃହା ବା କ୍ଷୁଧା ( Appetite ) । ଏହି ତିନୋଟି ଉପାଦାନକୁ ଭିତ୍ତି କରି ପ୍ଲେଟୋ ସମାଜରେ ଯଥାକ୍ରମେ ଶାସକ ଶ୍ରେଣୀ, ସୈନିକ ଶ୍ରେଣୀ ଓ ଶ୍ରମିକ ଶ୍ରେଣୀ ବା ଉତ୍ପାଦନକାରୀ ଗୋଷ୍ଠୀର ପରିକଳ୍ପନା କରିଛନ୍ତି । ପୁଣି, ଏମାନଙ୍କର ପାରସ୍ପରିକ ନିର୍ଭରଶୀଳତା ତଥା ସମନ୍ୱୟଯୋଗ ଓ ସହଯୋଗରେ ହିଁ ଆଦର୍ଶ ସମାଜ ଓ ରାଷ୍ଟ୍ର ଗଠନ ସମ୍ଭବପର । ଏଥିପାଇଁ ସେ ଶିକ୍ଷାନୀତି ଉପରେ ଗୁରୁତ୍ୱ ଦେଇଥିଲେ ।

ପ୍ଲେଟୋଙ୍କ ଶିକ୍ଷା ବ୍ୟବସ୍ଥା ଥିଲା ଅତ୍ୟନ୍ତ ବ୍ୟାପକ । ସେ ଶାରୀରିକ, ମାନସିକ ଓ ସହଶିକ୍ଷା ଉପରେ ପ୍ରାଧାନ୍ୟ ଆରୋପ କରିବା ସଙ୍ଗେ ସଙ୍ଗେ ଶିକ୍ଷାକୁ ରାଷ୍ଟ୍ରାୟତ୍ତ ଓ ବାଧ୍ୟତାମୂଳକ କରିବାର ପକ୍ଷପାତୀ ଥିଲେ । ତାଙ୍କ ଶିକ୍ଷାନୀତି ସ୍ଥୂଳତଃ ଦୁଇଟି ପର୍ଯ୍ୟାୟରେ ବିଭକ୍ତ—ପ୍ରାରମ୍ଭିକ ଓ ଉଚ୍ଚଶିକ୍ଷା । ପ୍ରାରମ୍ଭିକ ସ୍ତରରେ ଶିକ୍ଷାର୍ଥୀମାନଙ୍କୁ ପ୍ରଥମରୁ ଛଅ ବର୍ଷ ପର୍ଯ୍ୟନ୍ତ ଭାଷା ଜ୍ଞାନ, ଧର୍ମ ଓ ପୁରାଣ; ଛଅ ବର୍ଷରୁ ଅଠର ବର୍ଷ ପର୍ଯ୍ୟନ୍ତ କଳା, ସଙ୍ଗୀତ, ବିଜ୍ଞାନ ସାଙ୍ଗକୁ କ୍ରୀଡ଼ା, କୁସ୍ତି,

କସରତ ପ୍ରଭୃତି ଶାରୀରିକ ଶିକ୍ଷା ଓ ଅଠର ବର୍ଷରୁ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ସାମରିକ ଶିକ୍ଷା ଦିଆଯିବା ଉଚିତ । ଏହାପରେ ଉଚ୍ଚଶିକ୍ଷା ପାଠ୍ୟକ୍ରମ ଅନୁଯାୟୀ କୋଡ଼ିଏରୁ ତିରିଶ ବର୍ଷ ଯାଏ ଗଣିତ, ଜ୍ୟାମିତି, ଜ୍ୟୋତିଷ ଓ ସଙ୍ଗୀତ ଶିକ୍ଷାର ବ୍ୟବସ୍ଥା ଏବଂ ପରବର୍ତ୍ତୀ ପାଞ୍ଚ ବର୍ଷରେ ତର୍କବିଦ୍ୟା ( Dialectic ) ଶିକ୍ଷା ବ୍ୟବସ୍ଥା ରହିଥିଲା । (୨୦) ଯେଉଁମାନେ କେବଳ ପ୍ରାରମ୍ଭିକ ଶିକ୍ଷା ଲାଭ କରିବେ, ସେମାନେ ବ୍ୟବସାୟ, କାରିଗରି ଅଥବା ମଜୁରିଆ ବୃତ୍ତି; ଯେଉଁମାନେ ଉଚ୍ଚଶିକ୍ଷା ଗ୍ରହଣ କରିବେ, ସେମାନେ ସୈନିକ ଓ ସାମରିକ ଅଧିକାରୀ; ଏବଂ ଯେଉଁମାନେ ଶେଷ ପର୍ଯ୍ୟାୟର ଉଚ୍ଚତମ ଶିକ୍ଷାରେ ଉତ୍ତୀର୍ଣ୍ଣ ହେବେ, ଶାସନ ବା ସାମରିକ କ୍ଷେତ୍ରରେ ଉଚ୍ଚ ପଦବୀରେ ନିଯୁକ୍ତ ହୋଇପାରିବେ । ପଚିଶ ବର୍ଷ ବୟସରେ କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରିବା ପରେ ଯେଉଁମାନେ ଦର୍ଶନ ଓ ନୀତିଶାସ୍ତ୍ର ଅଧ୍ୟୟନ କରିବେ ସେମାନେ ଭବିଷ୍ୟତ ବଂଶଧରମାନଙ୍କୁ ଶିକ୍ଷାଦେବା ପାଇଁ ଉପଯୁକ୍ତ ବିବେଚିତ ହେବେ । (୨୧)

ଶିକ୍ଷାନୀତି ପରେ ପ୍ଲାଟୋଙ୍କ ସାମ୍ୟନୀତି ମଧ୍ୟ ଥିଲା ଏକ ବିଫଳ ସ୍ୱପ୍ନ । ସାମ୍ୟବାଦ ବିନା କ୍ୟାୟ ଶାସନ ପ୍ରତିଷ୍ଠା ଅସମ୍ଭବ ମନେକରି ସେ 'ରିପବ୍ଲିକ୍'ରେ ସମ୍ପତ୍ତି ଓ ପରିବାର କ୍ଷେତ୍ରରେ ସାମ୍ୟନୀତିର ପ୍ରବର୍ତ୍ତନ ଉପରେ ପ୍ରାଧାନ୍ୟ ଆରୋପ କରିଥିଲେ । ତାଙ୍କର ଲକ୍ଷ୍ୟ ଥିଲା ବ୍ୟକ୍ତିଗତ ସମ୍ପତ୍ତିର ସମ୍ପୂର୍ଣ୍ଣ ଉଚ୍ଛେଦ ସାଧନ । ସମ୍ପତ୍ତିର ସମ-ବଣ୍ଟନ ଭିତ୍ତିକ ସାମ୍ୟବାଦ ପରଂପରା ସହିତ ଗ୍ରୀକ୍‌ବାସୀ ଅବଗତ ଥିଲେ ସତ, (୨୨) ମାତ୍ର ପରିବାର ତଥା ପତ୍ନୀମାନଙ୍କ ସାମ୍ୟବାଦ ( Communism of Wives ) ଥିଲା ପ୍ଲାଟୋଙ୍କର ଏକ ନୂତନ ଉଦ୍‌ଭାବନ । ବିବାହ ପ୍ରଥା ତଥା ଏକପତ୍ନୀ ଗ୍ରହଣ ରୀତି ପରିବର୍ତ୍ତେ ସେ ସୁସ୍ଥ, ସବଳ ସନ୍ତାନ ଉତ୍ପାଦନ ନିମନ୍ତେ ସବଳ ଓ ଶକ୍ତିଶାଳୀ ଯୁବକଙ୍କ ସହିତ ସୁନ୍ଦରୀ ତଥା ସ୍ୱାସ୍ଥ୍ୟବତୀ ଯୁବତୀଙ୍କ ରାଷ୍ଟ୍ରାଧୀନ ସହବାସ ସପକ୍ଷରେ ମତ ଦେଇଥିଲେ । ଶାସକ ଶ୍ରେଣୀ ବର୍ଷରେ ନିର୍ଦ୍ଦିଷ୍ଟ ସମୟରେ ସହବାସ କରିବା ଉଚିତ ଏବଂ ସୈନିକବର୍ଗ ତାଙ୍କର ଇଚ୍ଛା ଅନୁଯାୟୀ ଯାହାକୁ ଯେତେବେଳେ ଗ୍ରହଣ ଉପଭୋଗ କରିପାରିବେ । (୨୩) ପ୍ଲାଟୋଙ୍କ ଏହି ପତ୍ନୀସମାଜର ସାମ୍ୟବାଦ

(୨୦) Barker : Greek Political Theory—pp. 215-233

(୨୧) Ibid-P. 234.

(୨୨) ଝୀଟ୍, ଡ଼ୋରିକ୍ ଓ ଗ୍ରୀକ୍ ସାମ୍ୟବାଦ କୃଷି, ଖଣି ଓ ଜଙ୍ଗଲ କ୍ଷେତ୍ରରେ ସୀମିତ ଥିଲା । ( Barker : Greek Political Theory—P. 240)

(୨୩) Wayper - Political Thought—pp. 33-34

ଆଧୁନିକ ବିଶ୍ୱରରେ ଗୃହପାଳିତ ପଶୁମାନଙ୍କର ସୁନିୟନ୍ତ୍ରିତ ବଂଶ ବୃଦ୍ଧି ଯୋଜନା ଠାରୁ କିଛି ଭିନ୍ନ ନଥିଲା ଏବଂ ତାହା ବ୍ୟକ୍ତିତ୍ୱର ବିକାଶ, ମନସ୍ତାତ୍ତ୍ୱିକ ଆବଶ୍ୟକତା ଓ ରକ୍ତଗତ ସଂପର୍କର ମହତ୍ତ୍ୱ ଉପରେ ଆଦୌ ଗୁରୁତ୍ୱ ଦେଇ ନଥିଲା । (୨୪)

'ରିପବ୍ଲିକ୍'ରେ ପ୍ଲେଟୋ ଦାର୍ଶନିକବାଦ୍ ଶାସକର ଜ୍ଞାନପ୍ରଣୋଦିତ ଶାସନ ଉପରେ ସଂପୂର୍ଣ୍ଣ ଭରସା ରଖି ସେଥିପାଇଁ ଆଇନର ଆବଶ୍ୟକତାକୁ ଆଦୌ ଗ୍ରହଣ କରିନଥିଲେ । ସେ ଦୃଢ଼ ମତ ପ୍ରକାଶ କରିଥିଲେ ଯେ ଯେତେବେଳ ପର୍ଯ୍ୟନ୍ତ ଦାର୍ଶନିକମାନେ ରାଜା ହୋଇନାହାନ୍ତି ବା ଏହି ପୃଥିବୀର ରାଜା ଓ ଯୁବରାଜମାନେ ଦର୍ଶନର ତାତ୍ପର୍ଯ୍ୟ ଓ ଶକ୍ତି ଉପଲବ୍ଧି କରିନାହାନ୍ତି ଏବଂ ଯେତେବେଳ ପର୍ଯ୍ୟନ୍ତ ରାଜନୈତିକ ମହାନୀୟତା ଓ ବିଜ୍ଞତା ଏକୀଭୂତ ନ ହୋଇଛି, ସେତେବେଳ ପର୍ଯ୍ୟନ୍ତ ନଗରସମୂହ ତଥା ମାନବ ଜାତି ମଧ୍ୟ ଦୁର୍ଦ୍ଦଶା ମୁକ୍ତ ହେବନାହିଁ । (୨୫) ଅବଶ୍ୟ, ପରିଣତ ବୟସରେ ତାଙ୍କର ସେହି ଦୃଢ଼ତା ଶିଥିଳ ହୋଇପଡିଥିଲା; ତେଣୁ ସେ 'ଷ୍ଟେଟସ୍‌ମ୍ୟାନ'ରେ ଶାସନ କ୍ଷେତ୍ରରେ ଆଇନର ଆବଶ୍ୟକତା ଉପଲବ୍ଧି କରିଥିଲେ । 'ରିପବ୍ଲିକ୍' ଥିଲା ଜ୍ଞାନ ଗରିଷ୍ଠ ରାଜତନ୍ତ୍ରର ପ୍ରାଚୀର ପତ୍ର ଏବଂ 'ଷ୍ଟେଟସ୍‌ମ୍ୟାନ' ଆଇନସମ୍ମତ ସାମ୍ବିଧାନିକ ଗଣତନ୍ତ୍ରର ବାର୍ତ୍ତାବହ । ଏହି ପରବର୍ତ୍ତୀ ଗ୍ରନ୍ଥରେ ପ୍ଲେଟୋ ଆଇନସମର୍ଥିତ ଓ ଆଇନବର୍ଜିତ ରାଷ୍ଟ୍ର ମଧ୍ୟରେ ଏକ ସୀମାରେଖା ଟାଣିଥିଲେ ।

| କ୍ଷମତାଧରଙ୍କ ସଂଖ୍ୟା | ଆଇନସମର୍ଥିତ ରାଷ୍ଟ୍ର | ଆଇନବର୍ଜିତ ରାଷ୍ଟ୍ର |
|---|---|---|
| ଜଣେ | ରାଜତନ୍ତ୍ର (Monarchy) | ସ୍ୱେଚ୍ଛାଚାର (Tyranny) |
| ଅଳ୍ପ ଜଣ | ସଂଭ୍ରାନ୍ତତନ୍ତ୍ର (Aristocracy) | ଧନତନ୍ତ୍ର (Oligarchy) |
| ବହୁ ଜଣ | ଉତ୍କୃଷ୍ଟ ଗଣତନ୍ତ୍ର | ନିକୃଷ୍ଟ ଗଣତନ୍ତ୍ର |

'ଷ୍ଟେଟସ୍‌ମ୍ୟାନ'ର ଏହି ଆଇନାନୁମୋଦିତ ଶାସନ ବ୍ୟବସ୍ଥାକୁ ପ୍ଲେଟୋ ଶ୍ରେଷ୍ଠତା ଦୃଷ୍ଟିରୁ ଦ୍ୱିତୀୟ ସ୍ଥାନ ଦେଇଥିଲେ । (୨୬)

---

(୨୪) Sabine—A History of Political Theory—P. 68

(୨୫) Wayper—Political Thought—pp. 24-25.

(୨୬) Sabine—A History of Political Theory—P. 78

ପ୍ଲାଟୋଙ୍କ ମୃତ୍ୟୁପରେ ପ୍ରକାଶିତ 'ଦି ଲସ୍'ରେ ଆଇନର ସାର୍ବଭୌମତ୍ୱ ଉପରେ ଗୁରୁତ୍ୱ ଆରୋପିତ ହୋଇଥିଲା । ଏଥିରେ ଗୋଟିଏ ରାଷ୍ଟ୍ରର ଜନସଂଖ୍ୟାକୁ ୫୦୪୦ ମଧ୍ୟରେ ସୀମାବଦ୍ଧ ରଖାଯିବା ଉଚିତ ବୋଲି ସେ ମତ ବ୍ୟକ୍ତ କରିଥିଲେ । ତାଙ୍କ ବିଚାରରେ ରାଷ୍ଟ୍ର ସମୁଦ୍ର କୂଳଠାରୁ ଦୂରରେ ବିଶେଷ ବୃକ୍ଷରାଜି ନଥିବା ସ୍ଥାନରେ ପ୍ରତିଷ୍ଠିତ ହେବା ଶ୍ରେୟସ୍କର, କାରଣ ଜନସାଧାରଣ କାଷ୍ଠକୁ ପୋତ ରୂପେ ବ୍ୟବହାର କରି ସାମୁଦ୍ରିକ ବାଣିଜ୍ୟ ଦିଗରେ ପ୍ରବୃତ୍ତ ହେବେ ଯାହା ଆଦର୍ଶ ରାଷ୍ଟ୍ର ନିମିତ୍ତ ବାଞ୍ଛନୀୟ ନୁହେଁ । ଏଥିରେ ପ୍ଲାଟୋ ବିବାହ (ବିଶେଷତଃ ପ୍ରେମ ବିବାହ) ପ୍ରଥା ଉପରେ ଗୁରୁତ୍ୱ ଦେଇଥିଲେ ଏବଂ ପଞ୍ଚତିରିଶ ବର୍ଷ ପୂର୍ବ୍ବା କେହି ଅବିବାହିତ ରହିଥିଲେ, ତାଙ୍କ ପ୍ରତି ନିର୍ଦ୍ଦିଷ୍ଟ ବାର୍ଷିକ ଶୁଳ୍କ ଧାର୍ଯ୍ୟ ବ୍ୟବସ୍ଥା କରିଥିଲେ । ଏହା ବ୍ୟତୀତ, ୩୬୦ ଜଣ ସଭ୍ୟବିଶିଷ୍ଟ ଏକ ବିଧାନ ପରିଷଦ, ୩୭ ଜଣ ବିଚାରକଙ୍କର ଏକ ନ୍ୟାୟ ସଂସ୍ଥା ଓ ସେଥିରୁ ୧୦ ଜଣ ବରିଷ୍ଠ ବିଚାରପତିଙ୍କୁ ନେଇ ଏକ ନୈଶ୍ୟ ପରିଷଦ (Nocturnal Council) ଗଠନ ବ୍ୟବସ୍ଥା ପରିକଳ୍ପନା କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ଲାଟୋଙ୍କ ରାଜନୈତିକ ଚିନ୍ତାଧାରା ଥିଲା ଆଦର୍ଶବାଦ ଓ ବାସ୍ତବବାଦର ଏକ ମଧୁର ସମନ୍ୱୟ । ବାସ୍ତବତାର ଭିତ୍ତିଭୂମି ଉପରେ ସେ ଏକ ସ୍ୱପ୍ନିଳ ଆଦର୍ଶ ରାଜ୍ୟର ପରିକଳ୍ପନା କରିଥିଲେ । ପରବର୍ତ୍ତୀ ସମୟରେ ବହୁ ରାଜନୀତି-ଦାର୍ଶନିକ (୨୭) ପ୍ଲାଟୋଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ସ୍ୱପ୍ନକୁ ମାର୍ଜିତ ରୂପ ଦେବା ଦିଗରେ ଚେଷ୍ଟା କରିଥିଲେ ସୁଦ୍ଧା ବହୁକାଳ ଧରି 'ରିପବ୍ଲିକ୍'ର ପରିକଳ୍ପନା ସ୍ୱପ୍ନର ପିରାମିଡ୍ ଭାବେ ହିଁ ରହି-ଯାଇଥିଲା । କିନ୍ତୁ ପ୍ଲାଟୋଙ୍କର ଏହି ଆପାତ ବିରୋଧୀ ଚିନ୍ତାଧାରାହିଁ ରାଜନୀତି କ୍ଷେତ୍ରରେ ଏକ ଯୁଗାନ୍ତର ସୃଷ୍ଟି କରିଥିଲା ଏବଂ ଏହାର ଭାଷ୍ୟକାର ଆରିଷ୍ଟୋଟଲଙ୍କୁ ରାଜନୀତି ବିଜ୍ଞାନର ଜନକ ରୂପେ ପ୍ରତିଷ୍ଠିତ କରାଇ ପାରିଥିଲା ।

**ଆରିଷ୍ଟୋଟଲ** : ଗ୍ରୀସୀୟ ରାଜନୀତି ଦର୍ଶନର ଯେଉଁ ବଳିଷ୍ଠ ପରଂପରା ବହୁ ପରୀକ୍ଷା ନିରୀକ୍ଷା ମଧ୍ୟରେ ପ୍ଲାଟୋଙ୍କ ପର୍ଯ୍ୟନ୍ତ ପ୍ରବାହିତ ହୋଇ ଆସିଥିଲା, ସେହି ପରମ୍ପରାର ସର୍ବଶ୍ରେଷ୍ଠ ଓ ସର୍ବମାନ୍ୟ ରାଜନୀତି-ବୈଜ୍ଞାନିକ ହେଉଛନ୍ତି ବିଶ୍ୱବିଶ୍ରୁତ ଆରିଷ୍ଟୋଟଲ (ଖ୍ରୀ: ପୂ: ୩୮୪-୩୨୨) । ଦୀର୍ଘ କୋଡ଼ିଏ ବର୍ଷ କାଳ ପ୍ଲାଟୋଙ୍କ

(୨୭) ରୋମର ସିସେରୋ (ଖ୍ରୀ:ପୂ: ୧୦୬-୪୩), ସେଣ୍ଟ ଅଗଷ୍ଟାଇନ୍ (ଖ୍ରୀ:ପୂ: ୩୫୪-୪୨୭), ଥମାସ୍ ମୁର୍‌ଙ୍କ 'ୟୁଟୋପିଆ' (୧୫୧୬), ରୁଷୋଙ୍କ 'ସୋସିଆଲ କଣ୍ଟ୍ରାକ୍ଟ' (୧୭୬୨), ଅଗଷ୍ଟ କାମ୍ଟେଙ୍କ ଆତ୍ମଜୀବନୀ (୧୮୭୩) ରେ ପ୍ଲାଟୋୟ ଦର୍ଶନର ପରିମାର୍ଜିତ ରୂପ ପରିସ୍ଫୁଟିତ । ଏମାନଙ୍କ ବ୍ୟତୀତ, ଗ୍ରୋସିଅସ୍

ଏକାଡ଼େମୀରେ ଶିକ୍ଷାଲାଭ କରି ସେ ପ୍ଲାଟୋନିୟ ଆଦର୍ଶରେ ସମ୍ପୂର୍ଣ୍ଣ ଅନୁପ୍ରାଣିତ ଥିଲେ । (୧୮) କିନ୍ତୁ ତାଙ୍କ ବୈଜ୍ଞାନିକ ମନୋବୃତ୍ତି, ମୌଳିକ ବିବେଚନା ଶକ୍ତି ଏବଂ ଯୁକ୍ତିସଙ୍ଗତ ବିଶ୍ଳେଷଣ ପଦ୍ଧତି ପ୍ଲାଟୋଙ୍କ ସମସ୍ତ ରାଜନୈତିକ ଆଦର୍ଶକୁ ଦ୍ୱିଧାହୀନ ଭାବେ ଗ୍ରହଣ କରିନେବା ପାଇଁ ତାଙ୍କୁ ପ୍ରରୋଚିତ କରିପାରି ନଥିଲା । ଫଳରେ ସେ ତାଙ୍କ ରାଜନୈତିକ ଗୁରୁଙ୍କର ସ୍ୱପ୍ନିଳ ଆଦର୍ଶବାଦଠାରୁ ବାସ୍ତବତାକୁ ବିଚ୍ଛିନ୍ନ କରି ପ୍ରତ୍ୟେକ ବିଷୟକୁ ଚିନ୍ନ ଭିନ୍ନ ଆଲୋଚନା କରିଛନ୍ତି । ଏଣୁ ସେ 'ରିପବ୍ଲିକ'ର ଆଦର୍ଶକୁ ସମାଲୋଚନା କଲାବେଳେ ଅନ୍ୟ ଦୁଇଟି ଗ୍ରନ୍ଥର ଆଦର୍ଶକୁ ଯୁକ୍ତିସମ୍ମତ ଭାବରେ ଗ୍ରହଣ କରିନେଇଛନ୍ତି । (୧୯)

ମନୁଷ୍ୟର ସାମାଜିକତା, ରାଷ୍ଟ୍ରର ଅପରିହାର୍ଯ୍ୟତା, ଶିକ୍ଷା ଓ ତାଲିମର ଆବଶ୍ୟକତା, ଆଇନର ମହତ୍ତ୍ୱ ପ୍ରତିପାଦନ, ଯୁଦ୍ଧର ପ୍ରୟୋଜନୀୟତା ସ୍ୱୀକାର ତଥା ଗଣତନ୍ତ୍ର ପ୍ରତି ହତାଦର ପ୍ରକାଶ କ୍ଷେତ୍ରରେ ସେ ପ୍ଲାଟୋନିୟ ଆଦର୍ଶର ଅନୁଗାମୀ । ଏହା ସତ୍ତ୍ୱେ, ଆରିଷ୍ଟୋଟଲ ସାଧାରଣ ଜନତାର ସ୍ୱାର୍ଥ, ଆଇନସମ୍ମତ ଶାସନ ଓ ସାମ୍ବିଧାନିକ ବ୍ୟବସ୍ଥା ଉପରେ ଗୁରୁତ୍ୱ ପ୍ରଦାନପୂର୍ବକ ରାଜନୀତି-ବିଜ୍ଞାନର ପ୍ରୟୋଗାତ୍ମକ ଦିଗ ପ୍ରତି ସଚେତନ ରହିବା ଫଳରେ ନିଜର ମୌଳିକତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ରାଜନୈତିକ ଦର୍ଶନର ସୀମାକୁ ସମ୍ପ୍ରସାରିତ କରି ପାରିଥିଲେ । ରାଷ୍ଟ୍ରଗୁଡ଼ିକର ଶ୍ରେଣୀବିଭାଗ କରିବାକୁ ଯାଇ ସେ ଆଦର୍ଶ ରାଷ୍ଟ୍ରର ସଂରଚନା

---

(୧୫୮୩-୧୬୪୫), ହବ୍‌ସ (୧୭୭୬-୧୮୩୧), ଗ୍ରୀନ୍ (୧୮୩୬-୧୮୮୨), କାଣ୍ଟ (୧୭୨୪-୧୮୦୪) ବୋସାଙ୍କେଟ୍ (୧୮୪୮-୧୯୨୩) ପ୍ରମୁଖଙ୍କ ଉପରେ ପ୍ଲାଟୋ ଗଭୀର ପ୍ରଭାବ ବିସ୍ତାର କରିଥିଲେ । ସର୍ବୋପରି, ସୋଭିଏତ୍ ରୁଷ ପ୍ରଭୃତି ବିଂଶ ଶତାବ୍ଦୀର ସାମ୍ୟବାଦୀ ରାଷ୍ଟ୍ରମାନଙ୍କ ଶାସନ ବ୍ୟବସ୍ଥାର ପଶ୍ଚାଦ୍‌ଦେଶରେ ମଧ୍ୟ ପ୍ଲାଟୋନିୟ ଦର୍ଶନର ପ୍ରଚ୍ଛନ୍ନ ଇଙ୍ଗିତ ପରିଲକ୍ଷିତ ହୁଏ ।

(Barker—Greek Political Theory-pp 445-456.

Sabine—A History of Political Theory-P. 397 ଓ

Wayper—Political Thought-P. 37)

(୧୮) Sabine—A History of Political Theory-P-99

(୧୯) Ibid—pp. 97—100

ଦେଇଥିଲେ ଓ ସେଥିରୁ ତିନୋଟିକୁ ଆଦର୍ଶ ବ୍ୟବସ୍ଥା ଓ ଅନ୍ୟ ତିନୋଟିକୁ ଭ୍ରଷ୍ଟାଚାରୀ ଶାସନ ରୂପେ ଚିହ୍ନଣ କରିଥିଲେ । ଯଥା—

| କ୍ଷମତାଧରଙ୍କ ସଂଖ୍ୟା | ଆଦର୍ଶ ରୂପ | ଭ୍ରଷ୍ଟାଚାର ରୂପ |
|---|---|---|
| ଏକ ବ୍ୟକ୍ତି | ରାଜତନ୍ତ୍ର | ସ୍ୱେଚ୍ଛାଚାରତନ୍ତ୍ର |
| ମୁଷ୍ଟିମେୟ ବ୍ୟକ୍ତି | ସମ୍ଭ୍ରାନ୍ତ ତନ୍ତ୍ର | ଧନତନ୍ତ୍ର |
| ଅନେକ ବ୍ୟକ୍ତି | ସୁଜନ ତନ୍ତ୍ର (Polity) | ଗଣତନ୍ତ୍ର |

ଆରିଷ୍ଟୋଟଲଙ୍କ ମତରେ ସୁଜନ ତନ୍ତ୍ର ଗତିଶୀଳତା, ସ୍ଥାୟିତ୍ୱ ଓ ପ୍ରୟୋଗାତ୍ମକତା ଦୃଷ୍ଟିରୁ ସର୍ବଶ୍ରେଷ୍ଠ । କେତେକ ଦିଗରୁ ଉନ୍ନତ ରାଜତନ୍ତ୍ର ଓ ସମ୍ଭ୍ରାନ୍ତତନ୍ତ୍ର ଗ୍ରହଣୀୟ ହେଲେ ମଧ୍ୟ ସେଥିରେ ବିଚ୍ୟୁତି ଓ ଅଧଃପତନର ସମ୍ଭାବନା ଅଧିକ ବୋଲି ତାଙ୍କର ବଦ୍ଧମୂଳ ଧାରଣା ରହିଥିଲା । ୧୫୮ ଗୋଟି ନଗର-ରାଷ୍ଟ୍ରର ସାମ୍ବିଧାନିକ ଇତିହାସ ଅନୁଧ୍ୟାନ କରି ଆରିଷ୍ଟୋଟଲ ତାଙ୍କ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । (୩୦) ବିଭିନ୍ନ ସାମ୍ବିଧାନିକ ବ୍ୟବସ୍ଥାର ସୁପରିଚାଳନା ନିମନ୍ତେ ସେ କେତେକ ପରାମର୍ଶ ଦେଇଥିଲେ । ତାଙ୍କ ବିଚାରରେ ଧନତନ୍ତ୍ରରେ ଗରିବମାନଙ୍କୁ ଏବଂ ଗଣତନ୍ତ୍ରରେ ଧନିକ ଶ୍ରେଣୀକୁ ପ୍ରଶାସନିକ କ୍ଷେତ୍ରରେ ସହଯୋଗ କରିବା ଲାଗି ସୁଯୋଗ ମିଳିବା ଉଚିତ । ଗଣତନ୍ତ୍ରରେ ଗରିବମାନଙ୍କର ଅତ୍ୟାଚାର ଆଶଙ୍କାରୁ ଧନିକଗୋଷ୍ଠୀକୁ ମୁକ୍ତ ରଖାଯିବା ବାଞ୍ଛନୀୟ । ଏପରିକି, ସ୍ୱେଚ୍ଛାଚାରୀ ଶାସନର ସୁଦୃଢ଼ ସ୍ଥିତି ଲାଗି ମଧ୍ୟ ସେ କେତୋଟି ପନ୍ଥା ନିର୍ଦ୍ଦେଶ କରିଥିଲେ । ଯଥା —(୧) ଗୁପ୍ତଚର (ବିଶେଷତଃ ମହିଳା ଗୁପ୍ତଚର) ନିଯୁକ୍ତି, (୨) ଆକ୍ରମଣାତ୍ମକ ବୈଦେଶିକ ନୀତି, (୩) ବାହ୍ୟାକ୍ରମଣ ଭୟ ସଞ୍ଚାର, (୪) ଧର୍ମାନୁକୂଳ ମନୋଭାବ ପ୍ରଦର୍ଶନ, (୫) ବ୍ୟକ୍ତିଗତ ସାହାଯ୍ୟ ଦାନ, (୬) ଦୋଷୀ ପ୍ରତି ଦଣ୍ଡବିଧାନ, (୭) ଜନସାଧାରଣଙ୍କୁ କୌଣସି ପ୍ରକାରେ ବ୍ୟସ୍ତ ରଖିବା, (୮) ନଗରୀର ସୌନ୍ଦର୍ଯ୍ୟ ବୃଦ୍ଧି କରିବା, (୯) ବିଭିନ୍ନ ବୈଷୟିକ ଉନ୍ନତି ଘଟାଇବା, (୧୦) ସାମ୍ପ୍ରତିକ ଚେତନାକୁ ହତ୍ୟା କରିବା, (୧୧) ସାହିତ୍ୟ ସଭା ଓ ସମ୍ମିଳନୀକୁ ନିଷିଦ୍ଧ କରିବା, (୧୨) ସାହସୀ ଉଚ୍ଚ-ପଦାସୀନ ବ୍ୟକ୍ତିଙ୍କୁ କର୍ମଚ୍ୟୁତ କରିବା ଇତ୍ୟାଦି । (୩୧)

---

(୩୦) Sabine—A History of Political Theory—pp. 96 & 109.

(୩୧) Pant, S. C.—History of Western Political Thought Vol. I (Prakashan Kendra, Lucknow) (1983) P. 181.

ଆରିଷ୍ଟୋଟଲଙ୍କ ଆଦର୍ଶ ରାଷ୍ଟ୍ରର କେତେକ ଲକ୍ଷଣୀୟ ବିଭବ ହେଉଛି— (୧) ଏହା ଏକ କ୍ଷୁଦ୍ର ନଗର ରାଷ୍ଟ୍ର; (୨) ଏଠାରେ ଧର୍ମ, ପରିବାର ତଥା ବ୍ୟକ୍ତିଗତ ସ୍ୱାର୍ଥ ଅପେକ୍ଷା ସାମାଜିକ ଜୀବନର ପ୍ରାଧାନ୍ୟ ବେଶୀ; (୩) ଆଇନର ସ୍ଥାନ ଖୁବ୍ ଉଚ୍ଚରେ; (୪) ନାଗରିକମାନଙ୍କ ନୈତିକ ବିକାଶ ଏହାର ଲକ୍ଷ୍ୟ; (୫) ଶିକ୍ଷାର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ; (୬) ବ୍ୟକ୍ତିଗତ ସମ୍ପତ୍ତିର ସୁରକ୍ଷା ରାଷ୍ଟ୍ରର କର୍ତ୍ତବ୍ୟ; (୭) କୃଷି କ୍ଷେତ୍ରରେ ସମବଣ୍ଟନ ଆବଶ୍ୟକ; (୮) ଶ୍ରମ-ବିଭାଜନ ବାଞ୍ଛନୀୟ; (୯) ରାଷ୍ଟ୍ରର ଆୟତନ ସୀମିତ ରଖାଯିବା ତଥା ନାଗରିକମାନଙ୍କ ସଂଖ୍ୟା ସ୍ୱଳ୍ପ ହେବା ଦରକାର; (୧୦) ବିଦେଶୀ ଅନୁପ୍ରବେଶ ସୁଗମ ନ ହେବା ବିଧେୟ; (୧୧) ରାଷ୍ଟ୍ରର ଜଳବାୟୁ ସମଶୀତୋଷ୍ଣ ହେବା କାମ୍ୟ; (୧୨) ସାମୁଦ୍ରିକ ବାଣିଜ୍ୟ ପାଇଁ ସୁବିଧା ଥିବା ଆବଶ୍ୟକ; (୧୩) ଅର୍ଥନୈତିକ ଆତ୍ମନିର୍ଭରଶୀଳତା; (୧୪) ନାଗରିକମାନଙ୍କ ବିଜ୍ଞତା ଓ ସାହସିକତାର ସମନ୍ୱିତ ଅଭିବୃଦ୍ଧି ଏବଂ (୧୫) କୃଷକ, ଶ୍ରମିକ, ସୈନିକ, ଧନିକ, ଯାଜକ ଓ ଶାସକ—ଷଡ଼୍‌ବିଧ ସାମାଜିକ ଶ୍ରେଣୀର ବିକାଶ ସାଧନ ନିତାନ୍ତ ପ୍ରୟୋଜନ। (୩୨)

ଆରିଷ୍ଟୋଟଲଙ୍କ ବହୁମୁଖୀ ପ୍ରତିଭା କେବଳ ରାଷ୍ଟ୍ର ଗଠନ ଆଦର୍ଶ ପ୍ରଖ୍ୟାପନରେ ସୀମିତ ନୁହେଁ। ସେ ଶିକ୍ଷା, ପରିବାର, ଅର୍ଥନୀତି, ଶ୍ରମନୀତି ଆଦି ରାଜନୀତିର ବିଭିନ୍ନ ବିଭବ ସଂପର୍କରେ ମଧ୍ୟ ନିଜର ମୌଳିକ ମତାମତ ଉପସ୍ଥାପନ କରିଛନ୍ତି। ଶିକ୍ଷା ସଂପର୍କରେ ତାଙ୍କର ଅଭିମତ ହେଉଛି, ଶିଶୁକୁ ୭ ବର୍ଷ ପର୍ଯ୍ୟନ୍ତ ସ୍ୱଗୃହରେ ପ୍ରାଥମିକ ଶିକ୍ଷା ଦେଲା ପରେ ୧୪ ବର୍ଷ ପର୍ଯ୍ୟନ୍ତ ଶାରୀରିକ ବ୍ୟାୟାମ ଓ ସଙ୍ଗୀତ ଶିକ୍ଷା ଦେବା ଆବଶ୍ୟକ। ଏହାପରେ ତାଙ୍କୁ ୨୧ ବର୍ଷ ପର୍ଯ୍ୟନ୍ତ ଉଚ୍ଚଶିକ୍ଷା ଦିଆଯାଇପାରେ। ପରିବାରର ଉପଯୋଗିତା ତଥା ବ୍ୟକ୍ତିଗତ ସମ୍ପତ୍ତିର ସୁରକ୍ଷା ସଂପର୍କରେ ତାଙ୍କ ମତ ଅତ୍ୟନ୍ତ ସ୍ପଷ୍ଟ। ଏହା ସହିତ କ୍ରୀତଦାସ ପ୍ରଥା ଓ ଶ୍ରମିକମାନଙ୍କଠାରୁ ନାଗରିକ ଅଧିକାର ଉଚ୍ଛେଦର ସେ ପକ୍ଷପାତୀ। କ୍ଷମତାର ବିଭାଗୀକରଣ **(Separation of Powers)** ଓ ରାଜନୀତିରେ ଅର୍ଥନୀତିର ଭୂମିକାକୁ ପ୍ରାଧାନ୍ୟ ପ୍ରଦାନ କରିବା କ୍ଷେତ୍ରରେ ସେ ପୃଥିବୀର ସର୍ବପ୍ରଥମ ଦାର୍ଶନିକ। (୩୩) ※

---

(୩୨) **Ibid—pp. 220, 232.**

(୩୩) **Ibid—pp. 219, 197—199.**

※ ଖ୍ରୀଷ୍ଟୀୟ ୧୩ଶ ଶତାବ୍ଦୀରେ ଆରିଷ୍ଟୋଟଲଙ୍କ ରଚନା ଆରବୀ ଓ ଲାଟିନ୍ ଭାଷାରେ ଅନୂଦିତ ହେବା ପର୍ଯ୍ୟନ୍ତ ସେ ୟୁରୋପରେ ଅପରିଚିତ ଥିଲେ। କିନ୍ତୁ ପରବର୍ତ୍ତୀ କାଳରେ ଥମାସ୍ ଆକୁଇନାସ୍ (୧୨୨୬-୭୪),

## ଆରିଷ୍ଟୋଟଲୋତ୍ତର ଗ୍ରୀକ୍ ରାଜନୈତିକ ଚନ୍ତାଧାର

ଆରିଷ୍ଟୋଟଲଙ୍କ ପରେ ଦୀର୍ଘ ଦେଢ଼ ହଜାର ବର୍ଷ ପର୍ଯ୍ୟନ୍ତ ୟୁରୋପୀୟ ଦେଶମାନଙ୍କରେ ତାଙ୍କ ଆଦର୍ଶର ପ୍ରଭାବ ଅନୁଭୂତ ହୋଇ ନଥିଲେ ମଧ୍ୟ ଗ୍ରୀକ୍ ରାଜନୈତିକ ଭାବଧାରା ସମ୍ପୂର୍ଣ୍ଣ ଅବଲୁପ୍ତ ହୋଇନଥିଲା । (୩୪) ଆରିଷ୍ଟୋଟଲଙ୍କ ମୃତ୍ୟୁରେ ଗୋଟିଏ ଯୁଗର ଅବସାନ ଘଟିଥିଲା ସତ, ତଥାପି ତାଙ୍କର ଜୀବଦ୍ଦଶାରେ ହିଁ ତାଙ୍କ ଛାତ୍ର ଆଲେକ୍ଜାଣ୍ଡରଙ୍କ ଅଭ୍ୟୁଦୟ ଫଳରେ ମେସିଡ଼ୋନିଆ ପ୍ରଭାବଶାଳୀ ହୋଇଉଠିଥିଲା ଏବଂ ଗ୍ରୀକ୍ ରାଜନୀତି ନଗର-ରାଷ୍ଟ୍ର ଆଦର୍ଶକୁ ପରିତ୍ୟାଗ କରି ବିପରୀତ ମାର୍ଗରେ ଗତି କରିଥିଲା । (୩୫)

ଏହି କ୍ଷେତ୍ରରେ ଦୁଇଟି ରାଜନୈତିକ ଗୋଷ୍ଠୀର ବିଚାରଧାରା ଉଲ୍ଲେଖ-ଯୋଗ୍ୟ । ଭୋଗବାଦୀ ଗୋଷ୍ଠୀ (Epicureans) ଏପିକ୍ୟୁରସ୍ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦୁଃଖ, ଯନ୍ତ୍ରଣା ଓ ମନସ୍ତାପ ପରିହାର ନିମିତ୍ତ ରାଜନୀତି ଓ ଧର୍ମାନୁସରଣ ପ୍ରତି ବୀତସ୍ପୃହ ହେବା ଉଚିତ ବୋଲି ମତ ପୋଷଣ କରିଥିଲେ । ସେମାନେ ମାନବର ଉନ୍ନତି ସକାଶେ ବିଭିନ୍ନ ବୈଷୟିକ ଆବଶ୍ୟକତା ଉପରେ ପ୍ରାଧାନ୍ୟ ଦେଇଥିଲେ । (୩୬) ଅନ୍ୟ ପକ୍ଷରେ, ନାସ୍ତିକବାଦୀ ଗୋଷ୍ଠୀ (Skeptics)ର ପ୍ରବକ୍ତା କାର୍ନେଡ଼ସ୍ (Carneades)ଙ୍କ ମତାନୁଯାୟୀ ବ୍ୟକ୍ତି-ସ୍ୱାର୍ଥକୁ ମୂଳଭିତ୍ତି ରୂପେ ଗ୍ରହଣ କରି ବ୍ୟକ୍ତିଗତ ସ୍ୱାର୍ଥର ସୁରକ୍ଷା ନିମିତ୍ତ ହିଁ ରାଷ୍ଟ୍ରର ଉପଯୋଗିତାକୁ ସ୍ୱୀକାର କରାଯାଉଥିଲା । (୩୭)

---

ଦାନ୍ତେ (୧୨୬୫-୧୩୨୧), ମାର୍ସିଲିଓ (୧୨୭୦-୧୩୪୯), ମେକ୍ୟାଭେଲି (୧୪୬୯-୧୫୨୭), ବୋଦାଁ (୧୫୩୦-୯୬), ହେରିଙ୍ଗଟନ୍ (୧୬୧୧-୭୭) ମଣ୍ଟେସ୍କ୍ୟୁ (୧୬୮୯-୧୭୫୫), ହେଗେଲ (୧୭୭୦-୧୮୩୧) ପ୍ରମୁଖ ତାଙ୍କ ଚନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲେ (Pant : History of Western Political Thought—pp.247-248)

(୩୪) Ibid—pp 247—248

(୩୫) Sabine : A History of Political Theory—P. 130

(୩୬) Ibid—pp 132 135.

(୩୭) Ibid—P. 133 and 134

ଏହା ବ୍ୟତୀତ, ଏଣ୍ଟିସ୍ଥେନେସ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ କୁଟିଳବାଦୀ (Cynics) ଗୋଷ୍ଠୀ ସାମାଜିକ ବୈଷମ୍ୟର ତୀବ୍ର ବିରୋଧ କରି ଧନୀ ଗରିବ, ସଭ୍ୟ ଅସଭ୍ୟ, ଶ୍ରମିକ କ୍ରୀତଦାସ ପ୍ରଭୃତି ବ୍ୟବଧାନ ବିପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ । ଏଥିପାଇଁ କୁଟିଳବାଦୀଙ୍କ ଏହି ସାମ୍ୟନୀତିକୁ 'ଶୂନ୍ୟବାଦର ସମତା' (Equality of Nihilism) ବୋଲି କୁହାଯାଇଛି । (୩୮) ତେବେ ଏମାନଙ୍କ ରାଜନୈତିକ ଦର୍ଶନରେ ଦାରିଦ୍ର୍ୟକୁ ନୀତି ରୂପେ ଗ୍ରହଣ କରାଯାଇ ଥିବାରୁ କୁଟିଳବାଦୀ ଗୋଷ୍ଠୀ ଶ୍ରମଜୀବୀ ଦର୍ଶନ (Proletarian Philosophy)ର ମୂଳଭିତ୍ତି ସ୍ଥାପନ କରିଥିଲେ ବୋଲି କୁହାଯାଏ । (୩୯) ଏହି କୁଟିଳବାଦୀ ଦର୍ଶନ ଉଦାସବାଦ (Stoicism) ର ଜନ୍ମଦାତା ଏବଂ ଉଦାସବାଦ କୁଟିଳବାଦର ଏକ ଶାଖା ରୂପେ କାର୍ଯ୍ୟ ବିସ୍ତାର କରି ରୋମାନ୍ ଦାର୍ଶନିକମାନଙ୍କୁ ପ୍ରଭାବିତ କରିଥିଲା । (୪୦) ⁂

ରୋମ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ଭଳି ଜଣେ ବି ଚିନ୍ତାନାୟକଙ୍କୁ ଜନ୍ମ ଦେଇପାରି ନଥିଲେ ମଧ୍ୟ ଗ୍ରୀକ୍ ଚିନ୍ତାଧାରାକୁ ପାଶ୍ଚାତ୍ୟ ଜଗତରେ ପରିଚିତ କରାଇଥିବା ଯୋଗୁଁ ରାଜନୈତିକ ଦର୍ଶନର ବିକାଶ ସାଧନ କ୍ଷେତ୍ରରେ ଗ୍ରୀସ ପଛକୁ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । (୪୧)

**ରୋମାନ ରାଜନୈତିକ ଆଦର୍ଶ**

ପ୍ରାଚୀନ କାଳରେ ରୋମ ଥିଲା ଇଟାଲୀ ଅନ୍ତର୍ଗତ ଏକ କ୍ଷୁଦ୍ର ରାଜ୍ୟ । ପରେ ବିଭିନ୍ନ ନଗର-ରାଷ୍ଟ୍ରଗୁଡ଼ିକ ରୋମ ସହିତ ସମ୍ମିଳିତ ହୋଇଯିବା ଫଳରେ ଖ୍ରୀଷ୍ଟପୂର୍ବ ୭୫୩ ବେଳକୁ ତାହା ଏକ ସାମ୍ରାଜ୍ୟରେ ପରିଣତ ହୋଇଥିଲା । ସେଠାରେ

---

(୩୮) Ibid – P. 136.

(୩୯) Ibid– P. 137

(୪୦) Ibid–pp. 144 & 145

⁂ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଶେଷ ଭାଗରେ ଜେନୋଙ୍କ ଦ୍ୱାରା ପ୍ରବର୍ତ୍ତିତ ଉଦାସବାଦ ପ୍ରଥମ ଶତାବ୍ଦୀ ବେଳକୁ ଗ୍ରୀସ୍ ମାଟିରୁ ମଉଳି ଯାଇ ଏହାର ତଥାକଥିତ ଦ୍ୱିତୀୟ ପ୍ରତିଷ୍ଠାତା କ୍ରିସିପାସ୍‌ଙ୍କ ମାଧ୍ୟମରେ ପାନାଟିଆସ୍‌ଙ୍କ ଦ୍ୱାରା ରୋମରେ ଅଙ୍କୁରିତ ହୋଇଥିଲା ।

(Sabine—A History of Political Theory, pp. 150-151)

(୪୧) Pant—History of Western Political Thought, Vol-I pp. 260-261

ବଂଶାନୁକ୍ରମିକ ରାଜତନ୍ତ୍ର ପ୍ରଚଳିତ ଥିଲା ଏବଂ ସେଥିର ଶାସନରେ ନିଷ୍ପେଷିତ ରୋମବାସୀ ଟାର୍କୁଇନ୍ ସୁପେରବାସ୍‌ଙ୍କୁ ଗାଦିଚ୍ୟୁତ କଲାପରେ ଖ୍ରୀ: ପୂ: ୫୧୦ରେ ସେଠାରେ ସାଧାରଣତନ୍ତ୍ର ଶାସନ ପ୍ରତିଷ୍ଠା କରିଥିଲେ । (୪୨) ଏହା ଫଳରେ ଜନସାଧାରଣଙ୍କ ହସ୍ତରେ ଅନ୍ତିମ କ୍ଷମତା ନ୍ୟସ୍ତ ରହିଲା ଓ ମାଜିଷ୍ଟ୍ରେଟମାନଙ୍କ ଆଧିପତ୍ୟ କ୍ଷୁଣ୍ଣ ହେଲା । ଏପରିକି, ସେମାନେ ସାମରିକ କ୍ଷମତା ପ୍ରୟୋଗ କ୍ଷେତ୍ରରେ ମଧ୍ୟ ନିରଙ୍କୁଶ ଅଧିକାର ଉପଭୋଗ କରୁ ନଥିଲେ । ସେମାନଙ୍କର ତତ୍କାଳୀନ ସମ୍ବିଧାନ ଅଦ୍ୟାବଧି ଅନୁକରଣୀୟ ହୋଇ ରହିଛି । (୪୩)

ତତ୍କାଳୀନ ରୋମାନ୍ ସମ୍ବିଧାନ ଅନୁସାରେ କନ୍‌ସଲ, ସିନେଟ ଓ ଜାତୀୟ ବିଧାନସଭା ମାଧ୍ୟମରେ ଶାସନ କାର୍ଯ୍ୟ ନିର୍ବାହିତ ହେଉଥିଲା ଏବଂ ପ୍ରେଟର, ସେନ୍‌ସର କ୍ୱେଷ୍ଟାର୍ ଓ ଏଡିଲ୍ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଆଇନକୁ କାର୍ଯ୍ୟରେ ପରିଣତ କରି ଶାସନ ପରିଚାଳନା କରିବା ଥିଲା ଦୁଇଜଣ କନ୍‌ସଲଙ୍କ ଦାୟିତ୍ୱ । ସେମାନେ ପ୍ରତିବର୍ଷ ନିର୍ବାଚିତ ହେଉଥିଲେ । ପ୍ରେଟର ଥିଲେ କନ୍‌ସଲଙ୍କ ସହକାରୀ । କର ଧାର୍ଯ୍ୟ ନିମିତ୍ତ ସମ୍ପତ୍ତିର ମୂଲ୍ୟନିର୍ଦ୍ଧାରଣ ଓ ପ୍ରତି ପାଞ୍ଚ ବର୍ଷରେ ଥରେ ଜନଗଣନା କରିବା ଥିଲା ସେନସର୍‌ଙ୍କ କାର୍ଯ୍ୟ । କ୍ୱେଷ୍ଟରମାନେ ଥିଲେ କୋଷାଧ୍ୟକ୍ଷ ଓ କଥିପତ୍ରର ସଂରକ୍ଷକ । ଦୁଇଜଣ ଏଡିଲ୍ ନଗରର ପୋଲିସ ଓ ପୌର ଶାସନ ତଦାରଖ କରୁଥିଲେ । ତିନି ଶତ ସଦସ୍ୟଙ୍କୁ ନେଇ ଗଠିତ ସିନେଟ୍ ଥିଲା ମୁଖ୍ୟ ଆଇନ ପ୍ରଣୟନ ସଂସ୍ଥା । ଏହା ବ୍ୟତୀତ, କ୍ୟୁରିଆଟା ଓ ସେଞ୍ଚୁରିଆଟା ନାମକ ଦୁଇଟି ସାଧାରଣ ବିଧାନ ସଭା ରହିଥିଲା । ପ୍ରଥମୋକ୍ତ ସଂସ୍ଥା କର ଓ ଯୁଦ୍ଧନୀତି ନିର୍ଦ୍ଧାରଣ କରୁଥିଲା ଏବଂ ଦ୍ୱିତୀୟ ସଂସ୍ଥାଦ୍ୱାରା ଆଇନ ପ୍ରଣୀତ ହେଉଥିଲା । ଏହି ସମ୍ବିଧାନ ବଳରେ ରୋମ ଦୀର୍ଘ ପାଞ୍ଚଶତ ବର୍ଷ ଧରି କେବଳ ତାର ସାଧାରଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ସୁରକ୍ଷିତ ରଖିଥିଲା, ତାହା ନୁହେଁ; ପରବର୍ତ୍ତୀ କାଳରେ ଆମେରିକା ଓ ଫ୍ରାନ୍‌ସ ଭଳି ରାଷ୍ଟ୍ରମାନଙ୍କ ପାଇଁ ମଧ୍ୟ ସାମ୍ବିଧାନିକ ଉପାଦାନ ଯୋଗାଇଥିଲା । (୪୪)

---

(୪୨) Kapoor, A. C. - Principles of Political Science, ( S. Chand & Co, New Delhi ) 15th Ed. (1984) pp. 115-116

(୪୩) Das, M. N. - World History pp. 203-206

(୪୪) Ray, M. R. -A Brief Survey of World History (Vol. I) (Orient Longmans Ltd ) Ist Ed. 1949 P. 126

ରୋମାନ୍‌ମାନଙ୍କର ରାଜ୍ୟବିସ୍ତାର ମନୋବୃତ୍ତି ଓ ଗୃହଯୁଦ୍ଧ ଫଳରେ ଏହି ସାଧାରଣ ତନ୍ତ୍ରର ଅବସାନ ଘଟିଥିଲା ଏବଂ ତାର ଧ୍ୱଂସସ୍ତୂପ ଉପରେ ଗଢି ଉଠିଥିଲା ଜୁଲିୟସ୍ ସିଜରଙ୍କ ବିଶ୍ୱ-ସାମ୍ରାଜ୍ୟ । ଆଗାମୀ ଯୁଗର ରୋମ-ଇତିହାସ ଏହି ସାମ୍ରାଜ୍ୟବାଦୀ ରାଜତନ୍ତ୍ରର ଇତିହାସ ସହିତ ହିଁ ଜଡ଼ିତ । ରୋମର ଜନସାଧାରଣ ଜୁଲିୟସ୍ ସିଜର ( ଖ୍ରୀ: ପୂ: ୫୯-୪୪ ) କିମ୍ବା ଅଗଷ୍ଟସଙ୍କ ଶାସନ କାଳରେ ଯେପରି ସ୍ୱକୀୟ କଳା ଓ ସଂସ୍କୃତିକୁ ଚରମ ସୀମାରେ ଉପନୀତ କରାଇ ପାରିଥିଲେ, ସେପରି ନିରୋ ( ଖ୍ରୀ. ୫୪-୬୮ )ଙ୍କ ଅତ୍ୟାଚାରରେ ମଧ୍ୟ ଅତିଷ୍ଠ ହୋଇ ଉଠିଥିଲେ । ଏଣୁ ରୋମାନ୍ ଚିନ୍ତାନାୟକମାନଙ୍କ ଚେତନାରେ ଉଭୟ ଗଣତନ୍ତ୍ରର ଓ ରାଜତନ୍ତ୍ରର ସୁ ଓ କୁ ପରିଣତିର ପ୍ରଭାବ ଉଦ୍ଭାବିତ ଥିଲା । ଫଳରେ ସେମାନେ କୌଣସି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଆଦର୍ଶ ଗଢି ତୋଳିବା ପାଇଁ ସମର୍ଥ ହୋଇପାରି ନଥିଲେ । ପରିଣାମତଃ ଗ୍ରୀସୀୟ ରାଜନୈତିକ ଆଦର୍ଶର ଅନୁସରଣ, ବିଶ୍ଳେଷଣ ଓ ପ୍ରସାରଣ ହିଁ ସେମାନଙ୍କର ମୁଖ୍ୟ ଲକ୍ଷ୍ୟ ହୋଇ ପଡ଼ିଥିଲା । ତେବେ, ରୋମର ରାଜନୈତିକ କ୍ଷେତ୍ରରେ ସକ୍ରେଟିସ୍ କିମ୍ବା ଆରିଷ୍ଟୋଟଲଙ୍କ ଭଳି ପ୍ରତିଭାର ଆବିର୍ଭାବ ଘଟି ନଥିଲେ ସୁଦ୍ଧା, ପୋଲିବିୟସ୍ ( ଖ୍ରୀ: ପୂ: ୨୦୪-୧୨୨), ସିସେରୋ (ଖ୍ରୀ: ପୂ: ୧୦୬-୪୩), ସେନେକା ( ଖ୍ରୀଷ୍ଟୀୟ ୧ମ ଶତାବ୍ଦୀ ), ଏମ୍ବ୍ରୋସ୍ (୪ର୍ଥ ଶତାବ୍ଦୀ), ଅଗଷ୍ଟାଇନ୍ (୫ମ ଶତାବ୍ଦୀ), ଗ୍ରିଗୋରି ( ୬ଷ୍ଠ ଶତାବ୍ଦୀ ) ପ୍ରମୁଖ କେତେ ଜଣ ଚିନ୍ତାଶୀଳ ଦାର୍ଶନିକ ସ୍ୱକୀୟ ମତ ପ୍ରଦାନପୂର୍ବକ ରାଜନୀତି ବିଜ୍ଞାନର ଧାରାକୁ ଗତିଶୀଳ କରିଛନ୍ତି ।

'ରୋମାନ୍ ରାଜନୈତିକ ଦର୍ଶନର ଜନକ' ପୋଲିବିୟସ୍ କନସଲ, ସିନେଟ୍ ଓ ଜାତୀୟ ବିଧାନସଭା—ତ୍ରିବିଧ ସଙ୍ଗଠନର ଭୂମିକା ଉପରେ ଗୁରୁତ୍ୱ ଆରୋପ କରି ଏଗୁଡ଼ିକ ମିଶ୍ରିତ ରାଷ୍ଟ୍ର (Mixed State) ର ଦୋଷତ୍ରୁଟି ଦୂର କରିବାରେ ପ୍ରତିରୋଧ ଓ ସନ୍ତୁଳନ (Check and balance) ଭାବେ କାର୍ଯ୍ୟ କରିପାରିବେ (୪୫) ବୋଲି ମତ ପ୍ରକାଶ କଲାବେଳେ ସିସେରୋ ବ୍ୟକ୍ତିହିଁ ରାଷ୍ଟ୍ରୀୟ ସାର୍ବଭୌମତ୍ୱର ମୂଳ ଉତ୍ସ ବୋଲି ଦୃଢ଼ ମତ ପୋଷଣ କରିଛନ୍ତି । ସିସେରୋଙ୍କ ମତରେ, ବ୍ୟକ୍ତି ପ୍ରାକୃତିକ ଓ ରାଷ୍ଟ୍ରୀୟ ଦ୍ୱିବିଧ ଆଇନର ଦାସ; ପ୍ରଥମଟି ପ୍ରତି ତାର ପୂର୍ଣ୍ଣ ଆନୁଗତ୍ୟ ଓ ଦ୍ୱିତୀୟଟି ପ୍ରତି ସର୍ତ୍ତମୂଳକ ଆନୁଗତ୍ୟ ରହିବା ଆବଶ୍ୟକ । (୪୬)

---

(୪୫) Pant : History of Western Political Thought (Vol-I) pp. 266-269

(୪୬) Ibid - pp. 270-277

ପ୍ରଥମ ଶତାବ୍ଦୀ ବେଳକୁ ରୋମାନ୍ ରାଜତନ୍ତ୍ରରେ ଜନରୋଙ୍କ ଆବିର୍ଭାବ ରୋମୀୟ ରାଜନୈତିକ ଚିନ୍ତାଧାରାରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଫଳରେ ବିଶ୍ୱବ୍ୟାପୀ ଏକଛତ୍ରବାଦର ଆଦର୍ଶ ପ୍ରତିଷ୍ଠା ପାଇଁ ପରବର୍ତ୍ତୀ ରାଜନୀତି ସଚେତନ-ମନୀଷୀମାନେ ପ୍ରୟାସ କରିଛନ୍ତି । ଏହି କ୍ଷେତ୍ରରେ ସେନେକା ରାଷ୍ଟ୍ର ଅପେକ୍ଷା ସମାଜ, ରାଜନୀତି ଓ ରାଷ୍ଟ୍ରନୀତି ଅପେକ୍ଷା ଧର୍ମ ଓ ନୈତିକତା ଏବଂ ଏକ ବୃହତ୍ତର ରାଜ୍ୟ-ଗୋଷ୍ଠୀର ଆବଶ୍ୟକତା ବିଶେଷ ଭାବେ ଉପଲବ୍‌ଧି କରିଥିଲେ । ଏଥିପାଇଁ ସେନେକାଙ୍କ ସମୟରୁ ଧର୍ମ ଓ ରାଜନୀତି ଅବିଚ୍ଛେଦ୍ୟ ହୋଇପଡ଼ିଲା । ନାଗରିକମାନେ ଖ୍ରୀଷ୍ଟଧର୍ମରେ ଦୃଢ଼ ଆସ୍ଥା ସ୍ଥାପନ କଲେ ସମ୍ପତ୍ତି ଓ ଆଇନର ଆବଶ୍ୟକତା ରହିବ ନାହିଁ ବୋଲି ବିଶ୍ୱାସ ପୋଷଣ କରିଥିଲେ । (୪୭)

ସେନେକାଙ୍କର ମତବାଦ ରାଷ୍ଟ୍ରର ସାମୂହିକ ହିତସାଧନ ନିମିତ୍ତ ଉଦ୍ଦିଷ୍ଟ ଥିଲେ ସୁଦ୍ଧା ଅପରିଣାମଦର୍ଶୀ ରାଜା ଓ ଧର୍ମଯାଜକମାନଙ୍କ ଦ୍ୱାରା ଏକ ବିକୃତ ରୂପ ଧାରଣ କଲା । ସେତେବେଳେ ଦ୍ୱିବିଧ ନୀତିର ସ୍ଲୋଗାନ ଥିଲା—'ସିଜରଙ୍କ ଭାଗ ସିଜରଙ୍କୁ ଦିଅ, ଇଶ୍ୱରଙ୍କ ଭାଗ ଇଶ୍ୱରଙ୍କୁ ଦିଅ କୌଣସି ବିବାଦ ସୃଷ୍ଟି ହେଲେ ମନୁଷ୍ୟଙ୍କୁ ନ ମାନି ଇଶ୍ୱରଙ୍କୁ ମାନି ନିଅ' । (୪୮) ଏହାର ଅବଶ୍ୟମ୍ଭାବୀ ପରିଣତି ସ୍ୱରୂପ କେତେବେଳେ ଐଶ୍ୱରୀୟ ଅଧିକାର ନୀତି ବଳରେ ରାଜା ଏବଂ ଅନ୍ୟ କେତେବେଳେ ଧର୍ମଯାଜକ ଶାସନ କ୍ଷେତ୍ରରେ ନିଜ ନିଜର ପ୍ରାଧାନ୍ୟ ବିସ୍ତାର କରୁଥିଲେ ।

ଏହି ପରିପ୍ରେକ୍ଷୀରେ, ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏମ୍ବ୍ରୋସ୍ ଗୀର୍ଜାର ସ୍ୱାଧିକାରକୁ ଶାସକଙ୍କ କବଳରୁ ମୁକ୍ତ ରଖିବା ପାଇଁ ମତ ପ୍ରଦାନ କଲାବେଳେ ସେଣ୍ଟ ଅଗଷ୍ଟାଇନ୍ 'ବସୁଧୈବ କୁଟୁମ୍ବକମ୍' (୪୯) ନୀତି ପ୍ରସ୍ତରପୂର୍ବକ ମହାନ୍ ଖ୍ରୀଷ୍ଟୀୟ ରାଜ୍ୟଗୋଷ୍ଠୀର ପରିକଳ୍ପନା କରିଥିଲେ । ଏପରିକି, ସେଣ୍ଟ ଗ୍ରିଗୋରି ରାଜାଙ୍କୁ ଇଶ୍ୱରଙ୍କ ପ୍ରତିନିଧି ରୂପେ ଗ୍ରହଣ କରି ତାଙ୍କର ଶାସନ ପ୍ରଣାଳୀ ନ୍ୟାୟୋଚିତ ହେଉ ବା ନହେଉ ସେଥିପ୍ରତି ନିର୍ବିଘ୍ନର ଆନୁଗତ୍ୟ ପ୍ରକାଶ କରିବା ବିଧେୟ ବୋଲି କହିବା ପାଇଁ କୁଣ୍ଠାବୋଧ କରି ନାହାନ୍ତି । (୫୦)

---

(୪୭) Sabine—A History of Political Theory, pp. 172-175

(୪୮) Ibid—pp. 178-179.

(୪୯) Ibid—P. 185 (As quoted, 'The human race is indeed a single family'.)

(୫୦) Ibid—pp. 182-188.

ଏହିପରି ଭାବରେ ରାଜା ଓ ଧର୍ମଯାଜକଙ୍କୁ ନେଇ ଶାସନ କ୍ଷେତ୍ରରେ ଯେଉଁ ବିବାଦମାନ ପରିଲକ୍ଷିତ ସୃଷ୍ଟି ହୋଇଥିଲା, ପରବର୍ତ୍ତୀକାଳରେ କେତେକ ରାଜନୀତି ବିଶାରଦ ସେଥିରେ ସମାଧାନ ଆଣିବା ପାଇଁ ଚେଷ୍ଟା କରିଛନ୍ତି । ଏହି ମଧ୍ୟମପନ୍ଥୀ ଧର୍ମନିରପେକ୍ଷ ଦାର୍ଶନିକମାନଙ୍କ ମଧ୍ୟରେ ଜନ୍ (୧୩୨୦-୮୪), ଜନ୍ ହସ୍ (୧୩୬୯-୧୪୧୫), ଗେରସନ୍ (୧୩୬୫-୧୪୨୯) ଓ ନିକୋଲାସ (୧୪୦୧-୬୪)ଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଗ୍ରୀକ୍ ଓ ରୋମାନ୍ ସାମ୍ରାଜ୍ୟର ଅଧଃପତନ ପରେ ଯେତେବେଳେ ୟୁରୋପ ମହାଦେଶରେ ଘୋର ବିଶୃଙ୍ଖଳା ସୃଷ୍ଟି ହେଲା, ସେତେବେଳେ ରାଜନୀତି କ୍ଷେତ୍ରରେ ଏକ ନୂତନ ମତବାଦର ଅଭ୍ୟୁଦୟ ଘଟିଲା । ଏହା ହେଉଛି, ସାମନ୍ତବାଦ । ଏହି ବ୍ୟବସ୍ଥାରେ ସମାଜ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ହୋଇ ପଡ଼ିଥିଲା—ସାମନ୍ତ ଶ୍ରେଣୀ ଓ ରଇୟତ ଶ୍ରେଣୀ । ଏହି ଦୁଇଟି ଶ୍ରେଣୀ ମଧ୍ୟରେ ରାଜା ଓ ପ୍ରଜାଙ୍କ ପରି ଆନୁଗତ୍ୟମୂଳକ ସମ୍ପର୍କ ପରିବର୍ତ୍ତେ ଚୁକ୍ତିମୂଳକ ସମ୍ପର୍କ ସ୍ଥାପିତ ହୋଇଥିଲା । ପରବର୍ତ୍ତୀ କାଳରେ ଏହି ପ୍ରଥା ଜନପ୍ରତିନିଧିମୂଳକ ଶାସନ, ବୈଧାନିକ ବ୍ୟବସ୍ଥା, ଶୁଳ୍କ ଧାର୍ଯ୍ୟ ପ୍ରଣାଳୀ, ବ୍ୟସ୍ତ ଉଦାହରଣ ତଥା ଅନ୍ୟାୟାଚରଣର ପ୍ରତିବାଦାଦି ବିଭିନ୍ନ ସାମ୍ବିଧାନିକ ବିଧାନକୁ ଜନ୍ମ ଦେଇଥିଲା ଏବଂ ଶାସନ କ୍ଷେତ୍ରରେ ଗଣ-ଅଧିକାରର ପ୍ରାଧାନ୍ୟ ପ୍ରତିଷ୍ଠା କରିଥିଲା । (୫୧)

ଏହା ବ୍ୟତୀତ, ନାଗରିକ ଅଧିକାରର ସୁରକ୍ଷା, ଆଇନର ବିଭାଗୀକରଣ, ବିଶ୍ୱଶାନ୍ତି ଓ ଆନ୍ତର୍ଜାତିକ ସଂଘ ପରିକଳ୍ପନା କ୍ଷେତ୍ରରେ ଥମାସ୍ ଏକ୍ୱିନାସ୍ (୧୨୨୭-୭୪), ଦାନ୍ତେ (୧୨୬୫-୧୩୨୧), ମାର୍ଶିଲିଓ (୧୨୭୦-୧୩୪୯), ଉଇଲିୟମ (୧୨୮୦-୧୩୪୭) ପ୍ରମୁଖ ଯେଉଁ ନୂତନ ଆଦର୍ଶର ସୂଚନା ଦେଇଯାଇଛନ୍ତି, ତାହା ଭବିଷ୍ୟତ ବିଶ୍ୱ ରାଜନୈତିକ ଚିନ୍ତାଧାରାକୁ ବହୁ ଭାବରେ ପ୍ରଭାବିତ କରିଛି ।

ସଂକ୍ଷେପରେ ପ୍ରକାଶ କଲେ, ପାଶ୍ଚାତ୍ୟ ରାଜନୈତିକ ଦର୍ଶନର ଉଲ୍ଲେଖନୀୟ ବିଭାବଗୁଡ଼ିକ ହେଉଛି—(୧) ଗଣସାର୍ବଭୌମତ୍ୱ ଅବବୋଧ, (୨) ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ ସୁସମ୍ପର୍କ ରକ୍ଷା, (୩) ବ୍ୟକ୍ତି-ସ୍ୱାଧୀନତା ଓ ନାଗରିକ ଅଧିକାର ପ୍ରତି ମର୍ଯ୍ୟାଦା

(୫୧) ଇଂଲଣ୍ଡରେ ଖ୍ରୀ ୧୨୬୫ରେ ସାଇମନଙ୍କ ଦ୍ୱାରା ପ୍ରଥମେ ପାର୍ଲାମେଣ୍ଟ ଆହୂତ ହୋଇଥିଲା ।

ପ୍ରଦାନ, (୪) ସାମାଜିକ ସାମ୍ୟ ପ୍ରତିଷ୍ଠା, (୫) ସ୍ଥାନୀୟ ପ୍ରଥାନୁସାରେ ଆଇନ ବ୍ୟବସ୍ଥା, (୬) ନ୍ୟାୟ ଓ ଆଇନ ପ୍ରତି ସମ୍ମାନବୋଧ, (୭) ରାଜା ଓ ପ୍ରଜା ମଧ୍ୟରେ ଚୁକ୍ତିମୂଳକ ସମ୍ବନ୍ଧାବଦ୍ଧ ରାଷ୍ଟ୍ରର ପରିକଳ୍ପନା, (୮) ଆଇନ ବିରୋଧୀ ଶାସନ ବିରୁଦ୍ଧରେ ପ୍ରତିବାଦ ଅଧିକାର, (୯) ସ୍ୱେଚ୍ଛାଗୃହୀ ଶାସକଙ୍କ ବହିଷ୍କାର, (୧୦) ଆଇନ ପ୍ରତି ରାଷ୍ଟ୍ରାନୁଗତ୍ୟ ତଥା ରାଷ୍ଟ୍ରୀୟ କ୍ଷମତାର ସୀମା ନିର୍ଦ୍ଦେଶ, (୧୧) ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଆଇନସମ୍ମତ ସମ୍ପର୍କ ରକ୍ଷା ତଥା ଆନ୍ତର୍ଜାତୀୟ ଆଇନ ବ୍ୟବସ୍ଥା ଏବଂ (୧୨) ସାମନ୍ତବାଦ, ଉପନିବେଶବାଦ ଓ ମିଳିତ ରାଜ୍ୟଗୋଷ୍ଠୀ ପରିକଳ୍ପନା ।

ହମୁରାବିଙ୍କ ଠାରୁ ନିକୋଲାସଙ୍କ ପର୍ଯ୍ୟନ୍ତ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ଅଷ୍ଟାଦଶ ଶତାବ୍ଦୀରୁ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ପାଶ୍ଚାତ୍ୟ ରାଜନୀତି ଦର୍ଶନର ଯେଉଁ ସୁଦୀର୍ଘ ଅନୁଶୀଳନ କରାଗଲା, ସେଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ରାଜନୀତି କେବଳ ରାଜ୍ୟ ଶାସନନୀତି ମଧ୍ୟରେ ଆବଦ୍ଧ ନୁହେଁ । ଏହା ପ୍ରଥମେ ରାଜ୍ୟନୀତି ବା ରାଷ୍ଟ୍ରନୀତିରୁ ଆରମ୍ଭ ହୋଇଥିଲେ ସୁଦ୍ଧା ପରବର୍ତ୍ତୀ ସମୟରେ ଧର୍ମନୀତି, ସମାଜନୀତି ଓ ଅର୍ଥନୀତି ମଧ୍ୟ ଏହାର ଅନ୍ତର୍ଭୁକ୍ତ ହୋଇ ପଡ଼ିଛି । ଆଧୁନିକ ଯୁଗରେ ରାଜନୀତି-ବିଜ୍ଞାନୀମାନେ ରାଜନୀତି ଶାସ୍ତ୍ର ପ୍ରଣୟନ କଲାବେଳେ କିମ୍ବା ସେ ସମ୍ପର୍କରେ ଆଲୋଚନା କଲା ସମୟରେ ଏ ସମସ୍ତର ବିଶ୍ଳେଷଣ କରିବା ପାଇଁ କଦାପି ବିସ୍ମୃତ ହୋଇ ନଥାନ୍ତି ।

କିନ୍ତୁ, ଭାରତୀୟ ପରିପ୍ରେକ୍ଷୀରେ, ଏହା ମୁଖ୍ୟତଃ ରାଷ୍ଟ୍ରନୀତି ମଧ୍ୟରେ ହିଁ ଆବଦ୍ଧ । ସେଥିପାଇଁ ପ୍ରସ୍ତୁତ ନିବନ୍ଧରେ ସାରଳା ମହାଭାରତରେ ରାଜନୀତି ଆଲୋଚନା ପରିସରରେ ଆଧୁନିକ ରାଜନୀତିବିଜ୍ଞାନ ଅନୁଯାୟୀ ଯେହେତୁ ଶାସନନୀତି, ଧର୍ମନୀତି ଓ ସମାଜନୀତି ବିଶ୍ଳେଷଣ କରିବାର ପ୍ରୟାସ କରାଯାଇଛି, ତେଣୁ ଏ ସମସ୍ତ ଯେ ରାଜନୀତିର ଅନ୍ତର୍ଭୁକ୍ତି, ତାହା ଦର୍ଶାଇବା ହିଁ ଏହି ଆଲୋଚନାର ମୌଳିକ ଆଭିମୁଖ୍ୟ । ସାରଳା ଦାସ ଯେ ପାଶ୍ଚାତ୍ୟ ରାଜନୈତିକ ଦର୍ଶନ ସହିତ ଆଦୌ ପରିଚିତ ନଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏହା ସତ୍ତ୍ୱେ, ପାଶ୍ଚାତ୍ୟ ଦାର୍ଶନିକମାନଙ୍କ ମତବାଦ ସହିତ ସାରଳା ଦାସଙ୍କର ଯେ କେତେକାଂଶରେ ଚିନ୍ତା-ସାମ୍ୟ ରହିଥିଲା, ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ପରବର୍ତ୍ତୀ ପରିଚ୍ଛେଦ-ମାନଙ୍କରେ ଏହାର ବିସ୍ତୃତ ବିଶ୍ଳେଷଣ କରାଯାଇଅଛି । ତେବେ, ସାରଳା ଦାସ ଭାରତୀୟ ରାଜନୈତିକ ଦର୍ଶନର ପରଂପରା ସହିତ ପରିଚିତ ଥିବା ଏକାନ୍ତ ସ୍ୱାଭାବିକ । ଏହି ପରଂପରା ଦ୍ୱାରା ସେ କେତେ ଦୂର ପ୍ରଭାବିତ, ତାର ପରିଚୟ ପାଇବାକୁ ହେଲେ ଭାରତୀୟ ରାଜନୀତି ଦର୍ଶନ ସମ୍ପର୍କରେ ଅବହିତ ହେବା ଆବଶ୍ୟକ ।

## (ଖ) ଭାରତୀୟ ରାଜନୈତିକ ପରଂପରା

ମାନବର ଐହିକ ଓ ପାରତ୍ରିକ ଜୀବନ ସହିତ ସଂପୃକ୍ତ ପ୍ରତ୍ୟେକ ବିଷୟ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିବା ଭାରତୀୟ ମନୀଷାର ଏକ ସ୍ୱାଭାବିକ ପ୍ରବୃତ୍ତି । ବ୍ୟକ୍ତିର ଯୌନ-ଜୀବନ ଠାରୁ ଆରମ୍ଭ କରି ବ୍ରହ୍ମର ସ୍ୱରୂପ ନିର୍ଣ୍ଣୟ ପର୍ଯ୍ୟନ୍ତ କୌଣସି ଉପାଦାନ ଏଥିରୁ ବାଦ ପଡ଼ିନାହିଁ । ଆର୍ଯ୍ୟ ସନ୍ତାନମାନେ ଯେତେବେଳେ ପ୍ରଥମେ ଭାରତରେ ପଦାର୍ପଣ କରିଥିଲେ, ସେତେବେଳେ ସେମାନେ କେବଳ ଏକ ରମଣୀୟ ଆରଣ୍ୟକ ପ୍ରକୃତି କୋଳରେ ଆଶ୍ରୟ ନେଇଥିଲେ ତାହା ନୁହେଁ, ମହେଞ୍ଜୋଦାରୋ ଓ ହରପ୍ପା ଭଳି ନଗର-ସଭ୍ୟତାର ସଂସ୍ପର୍ଶରେ ମଧ୍ୟ ଆସିଥିଲେ । ତେଣୁ ପ୍ରକୃତିର ଅପରୂପ ମାଧୁର୍ଯ୍ୟ ସେମାନଙ୍କର ଚିତ୍ତବୃତ୍ତିରେ ଯେପରି ବ୍ରହ୍ମ-ଜିଜ୍ଞାସା ସୃଷ୍ଟି କରିଥିଲା, ସେହିପରି ମହେଞ୍ଜୋଦାରୋ-ହରପ୍ପା ସେମାନଙ୍କ ମନରେ ରାଷ୍ଟ୍ରନୀତି ଜିଜ୍ଞାସାର ବୀଜ ମଧ୍ୟ ବପନ କରିଥିଲା । ପରବର୍ତ୍ତୀ ସମୟରେ ମନୁ, କୌଟିଲ୍ୟ ପ୍ରମୁଖ ରାଜନୀତିକୁ ଏକ ଶାସ୍ତ୍ରୀୟ ରୂପ ପ୍ରଦାନ କରିଥିଲେ ସୁଦ୍ଧା, ବୈଦିକ ସାହିତ୍ୟର ଉନ୍ମେଷ କାଳରୁ ଭାରତୀୟ ରାଜନୈତିକ ଦର୍ଶନ ଯେ ବହୁ ପରୀକ୍ଷା-ନିରୀକ୍ଷା ଦେଇ ମାର୍ଜିତ ଓ ସୁସଂସ୍କୃତ ହୋଇପାରିଥିଲା, କହିବା ବାହୁଲ୍ୟ ମାତ୍ର ।

ଭାରତର ଭୌଗୋଳିକ ଅବସ୍ଥିତି, ଜାତିଗତ ଚରିତ୍ର, ସାମାଜିକ ପରିସ୍ଥିତି ଓ ଅର୍ଥନୈତିକ ଅବସ୍ଥାର ପ୍ରଭାବରେ ପ୍ରାଚୀନ କାଳରୁ ଏଠାରେ ରାଜତାନ୍ତ୍ରିକ ଶାସନ ତଥା ରାଜଧର୍ମର ଅଭ୍ୟୁଦୟ ଓ ବିକାଶ ଅପରିହାର୍ଯ୍ୟ ହୋଇ ଉଠିଥିଲା । ମଧ୍ୟ-ଭାରତ ଓ ଉତ୍ତର ଭାରତର ସୀମାନ୍ତରେ ବିନ୍ଧ୍ୟ ଓ ହିମାଚଳ ଭଳି ଉତ୍ତୁଙ୍ଗ ଗିରିଶ୍ରେଣୀ ପ୍ରାକୃତିକ ପ୍ରାଚୀର ସଦୃଶୀ ଦଣ୍ଡାୟମାନ ଥିବା ସତ୍ତ୍ୱେ ବିଭିନ୍ନ ଗିରିପଥ ଦେଇ ବହିରନୁପ୍ରବେଶ ଅବ୍ୟାହତ ରହିଥିଲା ଏବଂ ସମତଳ ଗାଙ୍ଗେୟ ଉପତ୍ୟକା ଅଞ୍ଚଳ ପୂର୍ବ ଉପକୂଳବର୍ତ୍ତୀ ଭୂଖଣ୍ଡରେ ଦୁର୍ଲଙ୍ଘ୍ୟ ଗିରି, ହ୍ରଦ ବା ନଦୀ ନଥିବା ଫଳରେ କ୍ରମାଗତ ସୀମା ସଂଘର୍ଷ ଅବଶ୍ୟମ୍ଭାବୀ ହୋଇପଡ଼ିଥିଲା । ପରିଣାମତଃ,ଅବିରାମ ସମର ସଜ୍ଜା, ବିଶାଳ ସୈନ୍ୟବାହିନୀ ଗଠନ, ବିପୁଳ ଅର୍ଥବ୍ୟୟ ଓ ରାଜକୋଷ ଭରଣା ନିମିତ୍ତ ଗୁରୁ ଶୁଳ୍କ ଭାର ତଦାନୀନ୍ତନ ହିନ୍ଦୁ-ରାଜନୀତିର ଅଙ୍ଗୀଭୂତ ହୋଇ ପଡ଼ିଥିଲା । କୃଷିଭିତ୍ତିକ ଜୀବିକା, ବିକ୍ଷିପ୍ତ ଗ୍ରାମବହୁଳ ସମାଜ, ଅପରିବର୍ତ୍ତନଶୀଳ ଅର୍ଥନୀତି, ଚାତୁର୍ବର୍ଣ୍ଣ୍ୟ ବିଶିଷ୍ଟ ଜାତିଭେଦ ପ୍ରଥା, ବିପୁଳ ଗ୍ରାମୀଣ ଜନସଂଖ୍ୟା ଓ ଗମନାଗମନ ସୁଯୋଗାଭାବାଦି କାରଣରୁ ପ୍ରାଚୀନ ଭାରତରେ ରାଜତାନ୍ତ୍ରିକ ଶାସନ ହିଁ ଶ୍ରେଷ୍ଠ ବିବେଚିତ ହୋଇଥିଲା ଏବଂ ବ୍ରାହ୍ମଣ ସମାଜ ମନ୍ତ୍ରୀ, ପାରିଷଦ ଓ ପୁରୋହିତ ଭାବେ

ଶାସନ ପଦ୍ଧତି ସଂଶ୍ଳିଷ୍ଟ ଥିଲେ । (୧) ଭାରତର ରାଜନୈତିକ ପରମ୍ପରା, ଆଦର୍ଶ, ଶାସନପଦ୍ଧତି ତଥା ରାଜଧର୍ମ ସମ୍ବନ୍ଧରେ ବେଦ, ବ୍ରାହ୍ମଣ, ଉପନିଷଦ ଆରଣ୍ୟକ, ସଂହିତା, ଶ୍ରୌତସୂତ୍ର, ଧର୍ମସୂତ୍ରାଦିରୁ ଯେଉଁ ପରିଚୟ ମିଳେ, ତାହାହିଁ ପ୍ରାଚୀନ ଭାରତୀୟ ରାଜନୀତିର ନିଷ୍କର୍ଷ ।

## ବୈଦିକ ଭାରତର ରାଜନୈତିକ ଆଦର୍ଶ

ଋକ୍‌ବେଦୀୟ ଭାରତରେ ରାଜନୈତିକ ଐକ୍ୟ ସ୍ଥାପନ ନିମିତ୍ତ ସମ୍ରାଟ ସୁଦାସଙ୍କ ବିରୁଦ୍ଧରେ ବ୍ରହ୍ମାବର୍ତ୍ତର ଦଶ ଜଣ ରାଜାଙ୍କର ମହାସମର ଏକ ଉଲ୍ଲେଖନୀୟ ଘଟଣା । ସେତେବେଳେ ମୁନିଋଷିମାନେ ମଧ୍ୟ ପୁରୋହିତ ବା ପୁରୋଧା ଭାବରେ ଯୁଦ୍ଧରେ ଅଂଶଗ୍ରହଣ କରୁଥିଲେ । ସେହି 'ଦଶରାଜ୍ଞ ସମର'ରେ ସୁଦାସଙ୍କ ପକ୍ଷରେ ରହିଥିଲେ ମହର୍ଷି ବଶିଷ୍ଠ ଏବଂ ଅପରପକ୍ଷର ସମର୍ଥକ ଥିଲେ ବିଶ୍ୱାମିତ୍ର । ସେହି ମହାଯୁଦ୍ଧରେ ସୁଦାସ ବିଜୟୀ ହୋଇଥିଲେ ଏବଂ ଋକ୍‌ବେଦୀୟ ଭାରତରେ କିଛି କାଳ ପାଇଁ ଅଖଣ୍ଡ ଆଧିପତ୍ୟ ବିସ୍ତାର କରିଥିଲେ । ଏହା ଫଳରେ ପରବର୍ତ୍ତୀ କାଳରେ ବୈଦିକ ଭାରତରେ ସାର୍ବଭୌମ ଶାସନର ଭିତ୍ତି ସ୍ଥାପନ ସମ୍ଭବ ହୋଇଥିଲା । (୨)

ଋଗ୍‌ବେଦରେ 'ନଗର' ଶବ୍ଦ ପରିବର୍ତ୍ତେ 'ପୁର' ଶବ୍ଦର ପ୍ରୟୋଗ ଦୃଷ୍ଟିଗୋଚର ହୁଏ । ତତ୍କାଳୀନ ସଭ୍ୟତା ଥିଲା ମୁଖ୍ୟତଃ ଗ୍ରାମଭିତ୍ତିକ । ପରିବାର କେବଳ ସାମାଜିକ ଜୀବନର ମୂଳପୀଠ ନଥିଲା, ତାହା ରାଷ୍ଟ୍ରର ମଧ୍ୟ ଥିଲା ଆଦ୍ୟ ସୋପାନ । କେତେକ ଏକାନ୍ନବର୍ତ୍ତୀ ବୃହତ୍ ପରିବାରକୁ ନେଇ ଗଢ଼ି ଉଠିଥିଲା ଗ୍ରାମ । ପରିବାରର କର୍ତ୍ତା ଭଳି ଗ୍ରାମର ମୁଖ୍ୟକର୍ତ୍ତା ରୂପେ ଗ୍ରାମମୁଖ୍ୟ ବା ଗ୍ରାମଣି ରହିଥିଲେ । କେତେକ ଗ୍ରାମର ସମ୍ମିଶ୍ରଣରେ ଗଠିତ ବୃହତ୍ତର ରାଜନୈତିକ ଏକକ ଥିଲା 'ସଂପ୍ରଦାୟ' ଏବଂ ସଂପ୍ରଦାୟ ପରେ 'ଜନ' । ସେହି କାଳରେ ଯାଦବ ଜନ, ଭରତ ଜନ ଇତ୍ୟାଦି ପଞ୍ଚଜନ ରହିଥିବା ଜଣାଯାଏ । ରାଜା ଥିଲେ ଜନ ରକ୍ଷକ ଏବଂ ରାଜ୍ୟ 'ରାଷ୍ଟ୍ର' ନାମରେ ପରିଚିତ ଥିଲା ।

---

(୧) Prasad, Dr. Beni—The State in Ancient India, 1st Ed. 1974 (The Indian Press Pvt. Ltd. Allahabad) pp. 3-9

(୨) Mahajan, V. D.—Ancient India (S. Chand & Co, New Delhi) 1983 Print, pp. 97-98

ରାଜାମାନେ ସାଧାରଣତଃ ପୁରୁଷାନୁକ୍ରମେ ରାଜ ସିଂହାସନ ଅଧିକାର କରୁଥିଲେ । ବେଳେବେଳେ ସିଂହାସନାରୋହଣ ପୂର୍ବରୁ ଯୁଦ୍ଧ ଅବଶ୍ୟମ୍ଭାବୀ ହୋଇ ପଡ଼ୁଥିଲା, କାରଣ ରାଜସିଂହାସନ ଥିଲା ଏକ ଲୋଭନୀୟ ଆକର୍ଷଣ । ସେତେବେଳେ ଯୁଦ୍ଧରେ ପଦାତିକ, ଅଶ୍ୱାରୋହୀ ଓ ରଥାରୋହୀ ସୈନ୍ୟ ନିଯୁକ୍ତ ହେଉଥିଲେ ଏବଂ ଭଲ, ଖଡ଼୍ଗ, ଧନୁଶର ଓ ଶିରସ୍ତ୍ରାଣ ପ୍ରଭୃତି ବ୍ୟବହୃତ ହେଉଥିଲା । ରାଜପ୍ରାସାଦ, ରାଜପୋଷାକ ଓ ରାଜକର୍ମଚାରୀଙ୍କ ଗହଣରେ ରାଜା ବିଳାସ ବ୍ୟସନରେ କାଳାତିପାତ କରୁଥିଲେ ସୁଦ୍ଧା ମୁଖ୍ୟତଃ ସେ ଥିଲେ ପ୍ରଜାରକ୍ଷକ । ତାଙ୍କ ହସ୍ତରେ ନ୍ୟାୟଦଣ୍ଡ ରହିଥିଲା ଏବଂ ଗୁପ୍ତଚର ମାଧ୍ୟମରେ ସେ ରାଜ୍ୟର ବିଭିନ୍ନ ସମ୍ବାଦ ସଂଗ୍ରହ କରୁଥିଲେ । କୌଣସି ବିଶେଷ କାର୍ଯ୍ୟାନୁଷ୍ଠାନ ପୂର୍ବରୁ ପୁରୋହିତ, ଗ୍ରାମଣି ଓ ସେନାନୀଙ୍କ ଠାରୁ ପରାମର୍ଶ ନେଉଥିଲେ । ଏହା ବ୍ୟତୀତ, 'ସଭା' ଓ 'ସମିତି'ରେ ମଧ୍ୟ ବିଭିନ୍ନ ନୀତି, ପଦ୍ଧତି ଓ ସାମାଜିକ ଚଳଣି ସଂପର୍କରେ ଆଲୋଚନା କରାଯାଉଥିଲା । ସୁଜାତ, ସୁଜ୍ଞାନୀ, ବିଭବଶାଳୀ ଓ ସମ୍ଭ୍ରାନ୍ତମର୍ଶୀଳ ବ୍ୟକ୍ତିମାନେ 'ସଭା' ଓ 'ସମିତି'ର ସଭ୍ୟ ରହୁଥିଲେ । (୩)

ଐତରେୟ ବ୍ରାହ୍ମଣ ଅନୁଯାୟୀ ଏକଦା ଦେବାସୁର ଯୁଦ୍ଧରେ ଦେବତାମାନେ ପରାଜିତ ହେବାରୁ ସେମାନେ ରାଜାଙ୍କର ଅଭାବରେ ହିଁ ପରାଜୟ ଘଟିଲା ବୋଲି ଭାବି ଜଣେ ରାଜାଙ୍କୁ ମନୋନୀତ କରିଥିଲେ ଏବଂ ସେହି ସମୟରୁ ଇତିହାସରେ ଶାସନକର୍ତ୍ତା ରୂପେ ରାଜାମାନଙ୍କର ଉଦ୍ଭବ ଘଟିଥିବା ଜଣାଯାଏ । ଏଥିପାଇଁ ଯୁଦ୍ଧର ଆବଶ୍ୟକତାରୁ ହିଁ ରାଜା ନିର୍ବାଚନ ପଦ୍ଧତି ଜନ୍ମ ନେଇଛି ବୋଲି କୁହାଯାଇଛି । (୪) ଏଥିରୁ ସୂଚନା ମିଳେ ଯେ ରାଜପଦବୀ କେବଳ ପୁରୁଷାନୁକ୍ରମିକ ନଥିଲା, ସେଥିପାଇଁ ନିର୍ବାଚନ ମଧ୍ୟ ହେଉଥିଲା । ଆଲୋଚ୍ୟ କାଳରେ, ରାଜା, ମହାରାଜା, ଅଧିରାଜ, ରାଜାଧିରାଜ, ସମ୍ରାଟ, ଏକରାଟ, ସ୍ୱରାଟ ପ୍ରଭୃତି ସାର୍ବଭୌମ କ୍ଷମତାସମ୍ପନ୍ନ ରାଜତାନ୍ତ୍ରିକ ଶାସନାଧୀଶଙ୍କର ଅଭ୍ୟୁଦୟ ଘଟିଥିଲା । 'ଗୋପଥ

---

(୩) (କ) Ibid—pp. 98-101

(ଖ) Mookerjee, Dr. R. K.—Hindu Civilization, 1964 (Bharatiya Bidya Bhavan) pp. 81, 104 & 106.

(୪) ଦାଶ, ଅଭିନ୍ନଚନ୍ଦ୍ର—ବୈଦିକ ସାହିତ୍ୟ ଓ ସଂସ୍କୃତି, ୧୯୭୮ (ଗ୍ରନ୍ଥ ମନ୍ଦିର, କଟକ) ପୃ—୧୬୨ ।

ବ୍ରାହ୍ମଣ'ରୁ ଜଣାଯାଏ ଯେ ସେତେବେଳେ ରାଜପଦଲାଭ ଗ୍ରହଣ ସମୟରେ ଯଜ୍ଞାନୁଷ୍ଠାନ ଅପରିହାର୍ଯ୍ୟ ଥିଲା ଏବଂ ରାଜସୂୟ ଯଜ୍ଞକାରୀ 'ଏକରାଟ', ବାଜପେୟ ଯଜ୍ଞକାରୀ 'ସମ୍ରାଟ', ଅଶ୍ୱମେଧ ଯଜ୍ଞକାରୀ 'ସ୍ୱରାଟ', ପୁରୁଷମେଧ ଯଜ୍ଞକାରୀ 'ବିରାଟ' ଓ ସର୍ବମେଧ ଯଜ୍ଞକାରୀ 'ସର୍ବରାଟ' ରୂପରେ ପରିଚିତ ହେଉଥିଲେ । (୫) ଏହା ବ୍ୟତୀତ, ସେତେବେଳେ ଶାସକମାନଙ୍କୁ ଭାରତର ମଧ୍ୟାଞ୍ଚଳରେ 'ରାଜା', ପୂର୍ବାଞ୍ଚଳରେ 'ସମ୍ରାଟ', ଉତ୍ତରାଞ୍ଚଳରେ 'ବିରାଟ', ପଶ୍ଚିମାଞ୍ଚଳରେ 'ସ୍ୱରାଟ' ଓ ଦକ୍ଷିଣାଞ୍ଚଳରେ 'ଭୋଜ' କୁହାଯାଉଥିଲା । (୬)

'ଶତପଥ ବ୍ରାହ୍ମଣ' ଅନୁସାରେ ରାଜା ପ୍ରଜାପତିଙ୍କର ପ୍ରତିନିଧି । ରାଜସୂୟ ଓ ବାଜପେୟ ଯଜ୍ଞାନୁଷ୍ଠାନ ପରେ ସେ ପ୍ରଜାପତିଙ୍କ ସମକକ୍ଷ ତଥା ଦେବତା ପଦର ଅଧିକାରୀ । ସୁତରାଂ ବୈଦିକଯୁଗରେ ରାଜାଙ୍କୁ ଐଶ୍ୱରୀୟ ପ୍ରତିନିଧି ଭାବେ ଗ୍ରହଣ କରାଯାଇଥିଲେ ହେଁ ତାଙ୍କର ମାନବତ୍ୱକୁ ସ୍ୱୀକାର କରାଯାଇଥିଲା, କାରଣ ସିଂହାସନାରୋହଣ ପୂର୍ବରୁ ଜନସମର୍ଥନର ଆବଶ୍ୟକତା ଅପରିହାର୍ଯ୍ୟ ଥିଲା । ରାଜ୍ୟାଭିଷେକ ବେଳେ ରାଜାମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବିଧିବିଧାନ ମଧ୍ୟରେ ପୃଥିବୀ ମାତାଙ୍କ ବନ୍ଦନା, ସୋମ, ବରୁଣ, ଇନ୍ଦ୍ରାଦି ଦେବତାଙ୍କ ପ୍ରତି ଘୃତାହୁତି ଅର୍ପଣ, ବୃକ୍ଷଲତା, ରୁଦ୍ର ଓ ଧର୍ମାଦି ଦେବତାଙ୍କ ଆରାଧନା ଅନ୍ତର୍ଭୁକ୍ତ ଥିଲା । ଏହା ବ୍ୟତୀତ, ରାଜପଦଯୋଗ୍ୟ ବ୍ୟକ୍ତିକୁ ସାତଟି ପବିତ୍ର ନଦୀର ଜଳରେ ସ୍ନାନ ଓ ପ୍ରୋକ୍ଷଣ କଲାପରେ ବ୍ୟାଘ୍ରଚର୍ମ ଆଚ୍ଛାଦିତ କାଷ୍ଠାସନରେ ବସାଇ ପୁରୋହିତ ୧୯୦ଟି ଛିଦ୍ର ବିଶିଷ୍ଟ ସୁବର୍ଣ୍ଣ ଥାଳିରେ ଶୁକ୍ଳ ଯଜୁର୍ବେଦର ନିର୍ଦ୍ଦିଷ୍ଟ ମନ୍ତ୍ରପାଠ ପୂର୍ବକ ଅଭିଷେକ କରାଉଥିଲେ । ସେତେବେଳେ ରାଜା ପ୍ରଜାମାନଙ୍କ ସମ୍ମୁଖରେ ଶପଥ କରୁଥିଲେ ଯେ ଯଦି ସେ ପ୍ରଜାସମାଜର ବିରୁଦ୍ଧାଚରଣ କରନ୍ତି, ତେବେ ତାଙ୍କ ଜୀବନର ସମସ୍ତ ପୁଣ୍ୟ ଫଳ ନଷ୍ଟ ହେବ, ସେ ସ୍ୱର୍ଗଲୋକରୁ ବଞ୍ଚିତ ହେବେ ଏବଂ ତାଙ୍କର ବଂଶ ଲୋପ ପାଇଯିବ । (୭)

---

(୫) ତତ୍ରୈବ—ପୃ: ୧୬୩

(୬) (କ) Mookerjee—Hindu Civilization—pp. 98-102

(ଖ) Majumdar, Dr. R. C. Raychaudhury, H. C. & Datta, Kalikinkar—An Advanced History of India, 3rd Ed. 1967 (Macmillan & Co. Ltd, London) P. 41.

(୭) Mahajan—Ancient India—P. 104

ସୁତରାଂ, ପ୍ରଜାନୁରଞ୍ଜନ ଥିଲା ତତ୍କାଳୀନ ଶ୍ରେଷ୍ଠ ରାଜଧର୍ମ । କୃଷି ଉନ୍ନୟନ, ଭୌତିକ ଓ ଆଧ୍ୟାତ୍ମିକ ବିକାଶ ତଥା ରାଜ୍ୟର ଓ ପ୍ରଜାଙ୍କର ସର୍ବବିଧ ଉନ୍ନତିସାଧନ ଥିଲା ରାଜାର କର୍ତ୍ତବ୍ୟ । ରାଜା ଥିଲା ଦଣ୍ଡଧାରୀ, କିନ୍ତୁ ଅଦଣ୍ଡ୍ୟ । ଦରିଦ୍ର, ରୋଗୀ ଓ କ୍ଷୁଧାର୍ତ୍ତର ପ୍ରତିପାଳନ ଥିଲା ରାଜାର ଦାୟିତ୍ୱ । ରାଜ୍ୟ, ସ୍ୱରାଜ୍ୟ, ବୈରାଜ୍ୟ, ଅଧିରାଜ୍ୟ ଆଦି ଶବ୍ଦରୁ ସୂଚନା ମିଳେ ଯେ ସେତେବେଳେ ସ୍ୱାଧିପତ୍ୟ, ସ୍ୱତନ୍ତ୍ର ଓ ସର୍ବତନ୍ତ୍ର ଶାସନର ପ୍ରଚଳନ ଘଟିଥିଲା । ରାଜାମାନେ ପ୍ରତ୍ୟେକ କାର୍ଯ୍ୟରେ ମନ୍ତ୍ରିମଣ୍ଡଳର ପରାମର୍ଶ ଗ୍ରହଣ କରୁଥିଲେ । ମନ୍ତ୍ରୀମାନଙ୍କୁ 'ରତ୍ନି' କୁହାଯାଉଥିଲା । (୮)

ଏହା ବ୍ୟତୀତ, ଏକ ଶତ ଗ୍ରାମର ଶାସନ ଦାୟିତ୍ୱ ଜଣେ 'ଶତପତି'ଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ଉପାନ୍ତବର୍ତ୍ତୀ ଜନପଦ ଅଧ୍ୟୁଷିତ ଅଞ୍ଚଳ ଦାୟିତ୍ୱରେ ଜଣେ 'ସ୍ଥପତି'ଙ୍କୁ ନିଯୁକ୍ତ କରାଯାଉଥିଲା । (୯) ସର୍ବୋପରି, ସଭା ଓ ସମିତି ମାଧ୍ୟମରେ ବିଭିନ୍ନ ରାଜକାର୍ଯ୍ୟ ସମାହିତ ହେଉଥିବାରୁ ଏହାର ସହଯୋଗ ଓ ସମର୍ଥନ ବଳରେ ରାଜାଗଣ ଶକ୍ତିଶାଳୀ ଓ ଶତ୍ରୁଦମନ ଲାଗି ସମର୍ଥ ହୋଇ-ପାରୁଥିଲେ । ଏହି ସଭା-ସମିତିରେ ସମସ୍ତ ଅଭିଯୋଗ ବିଚାର କରାଯାଉଥିଲା ଏବଂ ଏହା ମାଧ୍ୟମରେ ଜନସାଧାରଣ ଅତ୍ୟାଚାରୀ ରାଜା ଓ ଅଯୋଗ୍ୟ ରାଜକର୍ମଚାରୀମାନଙ୍କୁ କ୍ଷମତାଚ୍ୟୁତ କରିପାରୁଥିଲେ । ସଭା-ସମିତି ଥିଲା ଭାରତୀୟ ଇତିହାସର ପ୍ରାଚୀନତମ ତଥା ସର୍ବପ୍ରଥମ ଗଣତାନ୍ତ୍ରିକ ଅନୁଷ୍ଠାନ ।

ବୈଦିକ ରାଜ୍ୟବ୍ୟବସ୍ଥାରେ ରାଜାଙ୍କ ପ୍ରାପ୍ୟ ଅଂଶ କର ବା ଶୁଳ୍କ ଆକାରରେ ନିୟମିତ ପ୍ରଦାନ କରାଯାଉଥିବା ବିଷୟ ଅଥର୍ବ ବେଦରେ ଉଲ୍ଲେଖ

---

(୮) ମୈତ୍ରାୟଣୀ ସଂହିତା ଅନୁଯାୟୀ ତତ୍କାଳୀନ ମନ୍ତ୍ରିମଣ୍ଡଳର ସଂଖ୍ୟା ଥିଲା ୩୬; ତୈତ୍ତିରୀୟ ଉପନିଷଦରେ ଦ୍ୱାଦଶବିଧ ମନ୍ତ୍ରୀଙ୍କର ନାମୋଲ୍ଲେଖ ଅଛି । ଯଥା— (୧) ପୁରୋହିତ, (୨) ରାଜନ୍ୟ, (୩) ପରିଭୃତ, (୪) ମହିଷୀ, (୫) ସୂତ, (୬) ସେନାନି, (୭) କ୍ଷତ୍ରିୟ, (୮) କୋଷାଧ୍ୟକ୍ଷ, (୯) ଅକ୍ଷାବପ, (ଦ୍ୟୂତକ୍ରୀଡ଼ାଧିକାରୀ) (୧୦) ଭାଗଦୁହ (ଶୁଳ୍କ ଅଧିକାରୀ), (୧୧) ଗ୍ରାମଣୀ ଓ (୧୨) ଆଖେଟ (ମୃଗୟା ସହକାରୀ) ।

(୯) Majumdar, Rayachaudury & Datta—An Advanced History of India—P. 42

ଅଛି । (୧୦) ଗୌତମ ଧର୍ମସୂତ୍ର (୧ / ୨୪-୩୫) ଅନୁଯାୟୀ କୃଷିଜାତ ପଦାର୍ଥର ଏକ-ପଞ୍ଚମାଂଶ, ବାଣିଜ୍ୟର ଏକ-ବିଂଶାଂଶ, ଜଙ୍ଗଲଜାତ ଦ୍ରବ୍ୟର ଏକ ଷଡ଼ାଂଶ ଓ ସାମୁଦ୍ରିକ ବ୍ୟବସାୟ ଦ୍ରବ୍ୟର ଏକ-ଦଶମାଂଶ କର ସ୍ୱରୂପ ରାଜକୋଷକୁ ପ୍ରଦାନ କରାଯାଉଥିଲା । (୧୧) ସେହି ସମାଜରେ ଜାତିପ୍ରଥା ମଧ୍ୟ ଥିଲା ବୃତ୍ତିମୂଳକ ବା କର୍ମଭିତ୍ତିକ ।

ବୈଦିକ ଯୁଗର ଶେଷଭାଗରେ ପ୍ଲାଟୋଙ୍କ ଦାର୍ଶନିକ ରାଜାଭଳି କାଶୀରେ ଶ୍ରେଣିକ (ବିମ୍ବିସାର) ଓ କୁଣିକ (ଅଜାତଶତ୍ରୁ) ଏବଂ ବିଦେହରେ ରାଜର୍ଷି ଜନକ ଦାର୍ଶନିକତତ୍ତ୍ୱଜ୍ଞ ଶାସକ ରୂପେ ସୁଖ୍ୟାତି ଅର୍ଜନ କରିଥିଲେ । ତତ୍ପୂର୍ବରୁ ବାହ୍ଲିକ, ପରୀକ୍ଷିତ ଓ ଜନ୍ମେଜୟ ପ୍ରମୁଖଙ୍କ ସୁନାମ ରହିଥିଲା । ପାଞ୍ଚାଲର ଜୈବଲୀ ଓ କୈକେୟର ଅଶ୍ୱପତି ପରବର୍ତ୍ତୀ କାଳରେ ସେମାନଙ୍କର ଜ୍ଞାନଗୌରବ ପାଇଁ ପ୍ରସିଦ୍ଧ ଥିଲେ । ଏହା ବ୍ୟତୀତ, ଗ୍ରୀକ୍ ସୋଫିଷ୍ଟମାନଙ୍କ ଭଳି ସେହି ସମାଜରେ କୃରକଗଣ ପରିବ୍ରାଜକ ଶିକ୍ଷାଗୁରୁ ରୂପେ ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ବ୍ୟକ୍ତିଗତ ଭାବେ ଶିକ୍ଷାଦାନ କରୁଥିଲେ । ସତ୍ୟକାମ, ଉଦ୍ଧାଲକ (ଆରୁଣୀ), ଉପକୋଶଳ ପ୍ରମୁଖ ଏଭଳି ଗୁରୁ ଥିଲେ । (୧୨) ସେତେବେଳେ 'ପାଞ୍ଚାଳ ପରିଷଦ' ନାମକ ଏକ ଶିକ୍ଷାନୁଷ୍ଠାନ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । (୧୩) ତତ୍କାଳୀନ ବିଦ୍ୟାଳୟ-ଗୁଡ଼ିକରେ ବେଦ, ନିରୁକ୍ତ ଓ ଉପନିଷଦ ସାଙ୍ଗକୁ ପୁରାଣ, ରାଶିବିଦ୍ୟା (ଗଣିତ), ବାକୋବାକ୍ୟ (ତର୍କବିଦ୍ୟା), ଦେବବିଦ୍ୟା, ଭୂତବିଦ୍ୟା, ସର୍ପବିଦ୍ୟା, କ୍ଷାତ୍ରବିଦ୍ୟା,

---

(୧୦) ଜନଂ ବିଭ୍ରତୀ ବହୁଧା ବିବାଚସଂ ନାନାଧର୍ମାଣଂ ପୃଥିବୀ ଯଥୌକସମ୍
ସହସ୍ରଂଧାରା ଦ୍ରବିଣସ୍ୟ ମେଦୁହାଂ ଧ୍ରୁବେବ ଧେନୁରନପସ୍ଫୁରନ୍ତୀ ।
—ଅଥର୍ବ ବେଦ (୧୨ । ୧ । ୪୫)

(୧୧) (କ) ଦାଶ—ବୈଦିକ ସାହିତ୍ୟ ଓ ସଂସ୍କୃତି—ପୃ-୧୭୨

(ଖ) ମିଶ୍ର ଡ଼: ଗଣେଶ୍ୱର—ବୈଦିକ ଧର୍ମ ଚେତନା—ଏକ ଦାର୍ଶନିକ ବିଗ୍ଭର (ସନ୍ତୋଷ ପବ୍ଲିକେଶନସ୍, କଟକ, ୧୯୮୫) - ପୃ. ୭୮-୮୫

(୧୨) (କ) Mahajan—Ancient India—P. 106

(ଖ) Mookherjee—Hindu Civilization—P.108

(ଗ) Majumdar, Rayachaudhuri & Datta—An Advanced History of India, pp. 40-41

(୧୩) Mahajan—Ancient India—P. 106

ନକ୍ଷତ୍ରବିଦ୍ୟା, ଜ୍ୟୋତିଷ, ବ୍ୟାକରଣାଦି ସୂତ୍ରମୂଳକ ଶିକ୍ଷା ଦିଆଯାଉଥିଲା । (୧୪) ଏହା ବ୍ୟତୀତ, ବଶିଷ୍ଠ ଗୁରୁଗଣ ମଧ୍ୟ ଉଦାର ଭାବେ ଜ୍ଞାନ ବିତରଣ କରୁଥିଲେ । (୧୫) ଏହି ଯୁଗରେ ଗାର୍ଗୀ, ମୈତ୍ରେୟୀ, ଲୋପାମୁଦ୍ରା, ଅଗସ୍ତ୍ୟ, ଯାଜ୍ଞବଲ୍କ୍ୟ, ବୃହଦ୍ରଥ, ଐତରେୟ, ଶାଣ୍ଡିଲ୍ୟ, ନଚିକେତା, ସନତ୍କୁମାର, ଅତ୍ରି, ଗୌତମ, କପିଳ, ଗୋଭିଲ, ଗୋପଥ, କୌଷିତକ, ଆପସ୍ତମ୍ବ, ଭରଦ୍ୱାଜ, ତଣ୍ଡି, ଅଶ୍ୱଳ, ଶ୍ୱେତକେତୁ, ଶୁନଃଶେଫ, ଶୌନକ, ଶାକଲ୍ୟ, ଜୈମିନି, ଜାରୁକର୍ଣ୍ଣ ପ୍ରମୁଖ ବହୁ ସୁଜ୍ଞାନୀ ପଣ୍ଡିତଙ୍କର ଆବିର୍ଭାବ ଘଟିଥିଲା ।

ସଂକ୍ଷେପରେ ପ୍ରକାଶ କଲେ, ଭାରତୀୟ ଇତିହାସ ତଥା ରାଜନୀତିକୁ ସମୁନ୍ନତ ଓ ଗତିଶୀଳ କରିବା ଦିଗରେ ବୈଦିକ ଆର୍ଯ୍ୟ-ସଭ୍ୟତାର ବହୁବିଧ ଅବଦାନ ଅନୁପମ । ଏହା (୧) ଉନ୍ନତ ଆଧ୍ୟାତ୍ମିକତା ବଳରେ ଅନାର୍ଯ୍ୟମାନଙ୍କୁ ଆର୍ଯ୍ୟଧର୍ମ ପ୍ରତି ଆକୃଷ୍ଟ କରି ହିନ୍ଦୁଧର୍ମର ପ୍ରସାର ଘଟାଇଥିଲା; (୨) ସୂକ୍ଷ୍ମ ଚିନ୍ତା ରାଜନୀତିର ପ୍ରତ୍ୟେକ ସ୍ତରକୁ ବିଶ୍ଳେଷଣପୂର୍ବକ ଯୁକ୍ତିସମ୍ମତ ଓ ସୁନିୟନ୍ତ୍ରିତ କରିବା ଲାଗି ଉଦ୍ଦୀପନା ଯୋଗାଇଥିଲା; (୩) ସାହିତ୍ୟ ଓ କଳା ସୃଷ୍ଟିକୁ ସଂଯତ ଓ ସୁଶୃଙ୍ଖଳ କରିଥିଲା; (୪) ପରଂପରାନୁସୃତ କର୍ମ ପରିବର୍ତ୍ତନଶୀଳ ଜାତିପ୍ରଥା ଗଢ଼ିଥିଲା; (୫) ମାତୃପ୍ରଧାନ ତଥା ବହୁପତିଗ୍ରହଣ ବ୍ୟବସ୍ଥାର ଅବସାନ ଘଟାଇଥିଲା ଏବଂ (୬) ୟୁରୋପୀୟ ନଗର-ବିଶ୍ୱବିଦ୍ୟାଳୟ ସମକକ୍ଷ ଶିକ୍ଷା-ବିହାର ତଥା ଆଶ୍ରମ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । (୧୬)

ଉପର୍ଯ୍ୟୁକ୍ତ ଆଲୋଚନାରୁ ସୁସ୍ପଷ୍ଟ ଯେ ବୈଦିକ ଯୁଗରେ ରାଜାମାନଙ୍କର ମନୋନୟନ, ରାଜାଙ୍କ ପ୍ରତି ପ୍ରଜାଙ୍କର ସମର୍ଥନ, ରାଜ୍ୟାଭିଷେକକାଳୀନ ପ୍ରତିଜ୍ଞା, ସଭା ଓ ସମିତି ଦ୍ୱାରା ରାଜକାର୍ଯ୍ୟର ନିୟନ୍ତ୍ରଣ ତଥା ଅତ୍ୟାଚାରୀ ଶାସକର ବହିଷ୍କରଣ ଇତ୍ୟାଦି ବ୍ୟବସ୍ଥା ଉତ୍କୃଷ୍ଟ ଗଣତାନ୍ତ୍ରିକ ପରଂପରାର ଦୃଷ୍ଟାନ୍ତ । ଐତରେୟ ବ୍ରାହ୍ମଣ

---

(୧୪) (କ) Majumdar, Raya Chaudhuri & Datta—An Advanced History of India—P. 47

(ଖ) Mahajan : Ancient India—P. 107

(୧୫) Mahajan : Ancient India—P. 107

(୧୬) Sarkar, Sir Jadunath; India Through the Ages (M. C. Sarkar & Sons (P) Ltd., Calcutta,1990 ) P.9

( ୭ । ୩ । ୧୪ ) 'ବିରାଟ' ପଦ ଏକ ରାଜାଶୂନ୍ୟ ରାଜ୍ୟର ଅବସ୍ଥିତି ପ୍ରମାଣ କରେ ଏବଂ ଜଣେ ରାଜାଙ୍କ ପରିବର୍ତ୍ତେ ସମସ୍ତ ପ୍ରଜାଙ୍କର ଅଭିଷେକ ଘଟିଥିବାର ସୂଚନା ଦିଏ । ଏତଦ୍ ବ୍ୟତୀତ, ପରବର୍ତ୍ତୀ କାଳରେ ଉତ୍ତର କୁରୁ ଓ ପଞ୍ଜାବ ଅଞ୍ଚଳରେ ଶକ୍ତିଶାଳୀ ସାଧାରଣତନ୍ତ୍ର ରାଷ୍ଟ୍ର ଗଠିତ ହୋଇଥିବା ମଧ୍ୟ ଜଣାଯାଏ । (୧୭)

ଧମ୍ମପଦ, ଅପଦାନକାୟ, ମହାବସ୍ତୁ, ମହାବଂଶଟୀକା, ଜୈନସୂତ୍ର, ବୌଦ୍ଧାୟନ ଧର୍ମସୂତ୍ର, ଗୌତମ ଧର୍ମସୂତ୍ର, ଆପସ୍ତମ୍ବ ଧର୍ମସୂତ୍ର, ବୌଦ୍ଧଜାତକ ପ୍ରଭୃତି ମାଗଧୀ, ଅର୍ଦ୍ଧମାଗଧୀ, ପାଲି ଓ ସଂସ୍କୃତ ରଚନାରୁ ବୌଦ୍ଧଯୁଗୀୟ ଶାସନତାନ୍ତ୍ରିକ ପରଂପରାର ପରିଚୟ ମିଳେ । ଏସବୁ ଗ୍ରନ୍ଥ ଅନୁଧ୍ୟାନରୁ ଜଣାଯାଏ ଯେ ସେହି ସମୟରେ କପିଳବାସ୍ତୁ, କେଶପୁତ, ସୁଂସୁମରା, ପାବା, କୁଶୀନଗର, ମିଥିଳା, ବୈଶାଳୀ ପ୍ରଭୃତି ରାଜ୍ୟରେ ସାଧାରଣତନ୍ତ୍ର ପ୍ରଣାଳୀ ଅନୁସୃତ ହୋଇଥିଲି ଏବଂ ବିଧାନ ସଭା ମାଧ୍ୟମରେ ରାଜକାର୍ଯ୍ୟ ପରିଚାଳନା କରାଯାଉଥିଲା । ଏହା ବ୍ୟତୀତ, ସେତେବେଳେ ମତଦାନ ପଦ୍ଧତିରେ ଅଧିଭକ୍ତା ନିରୂପଣ, ନିରପେକ୍ଷ ନିର୍ବାଚନ ଅଧିକାରୀ ନିଯୁକ୍ତି, ଆବଶ୍ୟକ ସଂଖ୍ୟକ ସଭ୍ୟଙ୍କର ଉପସ୍ଥିତି (କୋରମ୍) ଇତ୍ୟାଦି ବ୍ୟବସ୍ଥା ପ୍ରଚଳିତ ଥିବା ଜଣାଯାଏ । (୧୮)

ପ୍ରାଚୀନ ଭାରତୀୟ ରାଜନୈତିକ ଆଦର୍ଶ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଯାହା କିଛି ଉଲ୍ଲେଖ କରାଗଲା, ସେସବୁ ମୁଖ୍ୟତଃ ପରୋକ୍ଷ ତଥ୍ୟ ସମ୍ବଳିତ । କିନ୍ତୁ ଭାରତୀୟ ଇତିହାସରେ ମୌର୍ଯ୍ୟଯୁଗଠାରୁ ହିଁ ରାଜନୀତି ଓ ରାଷ୍ଟ୍ରନୀତିର ପ୍ରତ୍ୟକ୍ଷ ବିବରଣୀ ଆମର ହସ୍ତଗତ ହୋଇପାରୁଛି । ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଶାସନ ବିବରଣୀ

---

(୧୭) Altekar, A. S.—Vedic Society; Radhakrishnan, Dr. S., Chatterjee, S. K. & others, Ed. The Cultural Heritage of India—Vol-I (Ram Kirshna Mission Institute of Culture, Calcutta, Ist Ed, 197) Print) pp. 170-171

(୧୮) ବୁଦ୍ଧଦେବଙ୍କ ପିତା ଶୁଦ୍ଧୋଦନଙ୍କ ବିଖ୍ୟାତ ଶାକ୍ୟ ବିଧାନ ସଭାର ସଭ୍ୟ ସଂଖ୍ୟା ଥିଲା ୫୦୦ ଏବଂ ସେହି ସାଧାରଣତନ୍ତ୍ରର ଜନସଂଖ୍ୟା ଥିଲା ପ୍ରାୟ ୫୦ ଲକ୍ଷ । ସେହିଭଳି ମିଥିଳା ଥିଲା ୧୬୦୦୦ ଗ୍ରାମ ବିଶିଷ୍ଟ ଓ ବୈଶାଳୀ ୪୨,୦୦୦ ଗୃହ ବିଶିଷ୍ଟ ସାଧାରଣତନ୍ତ୍ର । ( Mookherji — Hindu Civilization, pp. 193-212)

ମେଘାସ୍ଥନିସ୍‌ଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିବେଳେ ପ୍ରିୟଦର୍ଶୀ ଅଶୋକଙ୍କ ରାଜ୍ୟ ଶାସନ ବ୍ୟବସ୍ଥା ତାଙ୍କ ଶିଳାଲେଖମାନଙ୍କରେ ଲିପିବଦ୍ଧ ହୋଇ ରହିଛି ।

**ଅଶୋକଙ୍କ ଶାସନ ନୀତି**

ଅଶୋକ ( ଖ୍ରୀ: ପୂ: ୨୭୩-୨୩୨ )ଙ୍କ ଶାସନ କାଳର ପୂର୍ବାବସ୍ଥାରେ ତଥା ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ବେଳେ 'ରାଜ୍ୟ' ଓ 'ସ୍ୱରାଜ୍ୟ' ମାନଙ୍କରେ ରାଜସୂୟ ଓ ବାଜପେୟ ଯଜ୍ଞ ଅନୁଷ୍ଠିତ ହେଉଥିଲା ଏବଂ 'ସାର୍ବଭୌମ ରାଜ୍ୟ'ରେ ଅଶ୍ୱମେଧ ଯଜ୍ଞ କରାଯାଉଥିଲା । (୧୯) ଅଶ୍ୱମେଧ ଯଜ୍ଞରେ ପ୍ରତିବନ୍ଧକ ସୃଷ୍ଟି କଲେ ଅପରାଧୀର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତି କରିଦିଆ ଯାଉଥିଲା । (୨୦) ସେତେବେଳେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ତିନି ଜାତି ମଧ୍ୟରୁ ରାଜକର୍ମଚାରୀ ନିଯୁକ୍ତ ହେଉଥିଲେ । (୨୧) ପୁରୋହିତ ଥିଲେ ଶାସନର ଏକ ବିଶିଷ୍ଟ ଅଙ୍ଗ । ସେମାନେ ରାଜାଙ୍କର ଉପଦେଷ୍ଟା ଭଳି କାର୍ଯ୍ୟ କରୁଥିଲେ । ଚୋରି, ହତ୍ୟା ଓ ବ୍ୟଭିଚାର ଥିଲା ତତ୍‌କାଳୀନ ସମାଜରେ ଗୁରୁତର ଅପରାଧ ଏବଂ ରାଜା ନିଜେ ନ୍ୟାୟବିଧାନ ତଥା ଦଣ୍ଡବିଧାନ କରୁଥିଲେ । ଏହା ବ୍ୟତୀତ, ରାଜା ସ୍ୱୟଂ ଯୁଦ୍ଧଭୂମିରେ ଧନୁଶର ଧାରଣପୂର୍ବକ ଅବତୀର୍ଣ୍ଣ ହେଉଥିଲେ ମଧ୍ୟ ବିଷାକ୍ତ ଅସ୍ତ୍ର ପ୍ରୟୋଗ କିମ୍ବା ନାରୀ, ବୃଦ୍ଧ, ବାଳକ, ନିରସ୍ତ୍ର ଓ ଆତ୍ମସମର୍ପଣକାରୀଙ୍କୁ ଯୁଦ୍ଧବେଳେ ହତ୍ୟା କରିବା ନିଷିଦ୍ଧ ଥିଲା । (୨୨)

କିନ୍ତୁ ଅଶୋକଙ୍କ ରାଜତ୍ୱ ଧର୍ମ, ଶାସନ ଓ ରାଜନୀତି ସମସ୍ତ ଦିଗରୁ ଭାରତୀୟ ଇତିହାସରେ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଥିଲା । ସେ ଯୁଦ୍ଧ ଓ ରକ୍ତପାତର ଶେଷସୀମାରେ ପହଞ୍ଚିବା ପରେ ଶାନ୍ତ ଉପାସକ ତଥା ବୌଦ୍ଧଧର୍ମାବଲମ୍ବୀ ହୋଇ-

---

(୧୯) କାତ୍ୟାୟନ ଶ୍ରୌତସୂତ୍ର-୫।୧।୧—୨ ଓ ଅଶ୍ୱାଳାୟନ ଶ୍ରୌତସୂତ୍ର—୩।୩ ଓ ୪।୨୩

(୨୦) ବୌଦ୍ଧାୟନ ସୂତ୍ର—୧୫।୪

(୨୧) ଆପସ୍ତମ୍ବ କଳ୍ପସୂତ୍ର—୨।୧୦।୨୬

(୨୨) (କ) ବୌଦ୍ଧାୟନ ଧର୍ମସୂତ୍ର—୧ମ ଅଧ୍ୟାୟ

(ଖ) ଆପସ୍ତମ୍ବ କଳ୍ପସୂତ୍ର—୨।୫-୧୦

(ଗ) ଗୌତମ ଧର୍ମସୂତ୍ର—୭ ଷ୍ଠ, ୧୦ମ ଓ ୧୧ଶ ଅଧ୍ୟାୟ ।

ଥିଲେ । ତେଣୁ ତାଙ୍କୁ ପ୍ରଥମେ ଚଣ୍ଡାଶୋକ ଓ ପରେ ଧର୍ମାଶୋକ ଭାବରେ ଚିତ୍ରଣ କରାଯାଏ । ହିଂସା, ଅଧର୍ମ ଓ ପାପାଚାର ଉପରେ ଶାନ୍ତି, ଅହିଂସା ଓ ଧର୍ମର ବିଜୟ ପ୍ରତିଷ୍ଠାର ସେ ପ୍ରମୂର୍ତ୍ତି ପ୍ରତୀକ । ତାଙ୍କ ରାଜ୍ୟର ସୀମା କମ୍ବୋଜ, ଗାନ୍ଧାର ଓ କାଶ୍ମୀର ଠାରୁ ଆରମ୍ଭ କରି କୃଷ୍ଣା ଓ ଗୋଦାବରୀ ଉପକୂଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଚନ୍ଦ୍ରଗୁପ୍ତ ( ଖ୍ରୀ: ପୂ: ୩୨୬-୩୦୦ )ଙ୍କ ସମୟରୁ ଯେଉଁ ରାଜନୈତିକ ଚେତନାର ଉଦ୍ରେକ ହୋଇଥିଲା, ଅଶୋକଙ୍କ ଶାସନକାଳରେ ତାହା ଅଧିକ ତେଜୋଦୀପ୍ତ ହେଲା । ଚନ୍ଦ୍ରଗୁପ୍ତଙ୍କ ସିଂହାସନାରୋହଣ କାଳରୁ ଭାରତର ରାଜନୈତିକ ଶକ୍ତି ପରିପକ୍ୱ ହୋଇଥିଲେ ସୁଦ୍ଧା ଅଶୋକଙ୍କ ବୌଦ୍ଧଧର୍ମାବଲମ୍ବନ ପରେ ହିଁ ସେ ନିଜର ଶକ୍ତି ସମ୍ବନ୍ଧରେ ସଚେତନ ହୋଇପାରିଲା । (୧୩)

ଅଶୋକଙ୍କ ସର୍ବଶ୍ରେଷ୍ଠ କୃତିତ୍ୱ ଏହି ଯେ ସେ ପ୍ରଥମ ଥର ପାଇଁ ବିଶ୍ୱସ୍ତରରେ ଶାନ୍ତିବାଦର ଚିନ୍ତାଧାରାକୁ ପ୍ରସାରିତ କରିଥିଲେ ଏବଂ ବୌଦ୍ଧଧର୍ମର ପ୍ରଚାରକ ହିସାବରେ ସର୍ବପ୍ରଥମେ ଅହିଂସାପୂର୍ଣ୍ଣ, ବିଶ୍ୱମୈତ୍ରୀସମ୍ପନ୍ନ, ସଗ୍ରାମଶୂନ୍ୟ ମାନବ-ସମାଜର ପରିକଳ୍ପନା କରିଥିଲେ । ତାଙ୍କର ନୈତିକ ଓ ରାଜନୈତିକ ଆଦର୍ଶ ତାଙ୍କ ସମୟଠାରୁ ବହୁ ଅଗ୍ରଗାମୀ ଥିଲା ଏବଂ ସେହି ଆଦର୍ଶକୁ ଭିତ୍ତି କରି ହିଁ ବର୍ତ୍ତମାନ ଯୁଗର ରାଷ୍ଟ୍ରସଂଘ ଓ ଜାତିସଂଘ ପ୍ରତିଷ୍ଠା ଲାଭ କରିଛି । (୧୪) ଅଶୋକଙ୍କ ଆଦର୍ଶ ଆକବରଙ୍କ ଠାରୁ ଜବାହରଲାଲ ନେହେରୁଙ୍କ ପର୍ଯ୍ୟନ୍ତ ବହୁ ଶାସକଙ୍କୁ ପ୍ରଭାବିତ କରିଛି, କହିବା ବାହୁଲ୍ୟ ମାତ୍ର । ଏଥିପାଇଁ କେତେକ ସମାଲୋଚକ ତାଙ୍କୁ ରୋମାନ ସମ୍ରାଟ ଜୁଲିୟସ ସିଜର, ମାର୍କାସ ଅରେଲିୟାସ, କଂଷ୍ଟାଣ୍ଟାଇନ୍, ଧର୍ମଗୁରୁ ପଲ୍ ଏବଂ ଫରାସୀ ବୀର ନେପୋଲିୟନଙ୍କ ସହିତ ତୁଳନା କରିଛନ୍ତି । (୧୫)

ମୌର୍ଯ୍ୟଯୁଗ ( ଖ୍ରୀ: ପୂ: ୩୨୫ - ୧୮୭ )ର ଶାସନାଦର୍ଶ ସମ୍ବନ୍ଧରେ ଆଦି ରାମାୟଣ, ମୂଳ ମହାଭାରତ, ପାଣିନୀଙ୍କ ବ୍ୟାକରଣ, ତ୍ରିପିଟକ (ବୌଦ୍ଧଜାତକ)

(୧୩) Noble, M E (Sister Nivedita) : Footfalls of Indian History (Adwaita Ashram, Calcutta, 1956) P. 147

(୧୪) Mookerji, R. K. 'Ashoka; Munshi, K M & Diwakar, R. R. Ed. Pageant of Great Lives, Series I, 1964 ( Bharatiya Bidya Bhavan, Bombay ) P. 55

(୧୫) Bhasan, A. L.—The Wonder that was India, 1971 Print (Rupa & Co, India) pp. 4 & 9.

ମେଗାସ୍ଥିନିସ୍‌ଙ୍କ ଇଣ୍ଡିକା ଓ ଅଶୋକଙ୍କ ଶିଳାଲେଖ ପ୍ରଭୃତିରୁ ଯାହା ଜଣାଯାଏ, ସେତେବେଳେ ଭାରତୀୟ ରାଜନୀତିରେ ଏକାଧାରରେ ଯୁଦ୍ଧ ବିବାଦ, ସନ୍ଧି ଶାନ୍ତି, ଚକ୍ର କୂଟନୀତି, ଦୌତ୍ୟ ଗୁପ୍ତଚର ପ୍ରଥା, ଦିବ୍ୟରାଜତ୍ୱ ଚେତନା, ଦ୍ୱୈତଶାସନ ପ୍ରଥା, ସ୍ୱାୟତ୍ତଶାସନ ବ୍ୟବସ୍ଥା, ପ୍ରଜାନୁରଞ୍ଜନ ନୀତି ତଥା ପିତୃପ୍ରତିମ ପ୍ରଜାପାଳନ ପଦ୍ଧତି, ଗଣକଲ୍ୟାଣ ବ୍ରତ ତଥା ଗଣତାନ୍ତ୍ରିକ ଆଦର୍ଶ, ନ୍ୟାୟ ବିଚାର, ଦଣ୍ଡବିଧାନ, ଶୁଳ୍କ ନିୟନ୍ତ୍ରଣ, ରାଜକୋଷ ସଂରକ୍ଷଣାବେକ୍ଷଣ, ଦାନଧର୍ମ, ଯଜ୍ଞ ଯାଜନାଦି ବହୁବିଧ ରାଜନୈତିକ ଆଦର୍ଶର ସଫଳ ରୂପାୟନ ଘଟିଥିଲା । ବିଶ୍ୱଶାନ୍ତି ଓ ବିଶ୍ୱମୈତ୍ରୀ ଭାବନାର ପରିପ୍ରକାଶ ଏ ଯୁଗର ଶ୍ରେଷ୍ଠ ଆଦର୍ଶ ।

ଏ ସମୟର ଅନ୍ୟତମ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଗ୍ରୀକ ଓ ଭାରତୀୟ ଚିନ୍ତା ଓ ଚେତନାର ସଂଯୋଗ ଓ ସମନ୍ୱୟ । ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡର ଓ ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଶାସନ ପ୍ରଣାଳୀ ଏବଂ ଆରିଷ୍ଟୋଟଲଙ୍କ ଚିନ୍ତାଧାରା ସହିତ ଭାରତୀୟ ପାରଂପରିକ ରାଜଧର୍ମର ସମନ୍ୱୟ, ସେ ସମୟରେ ଭାରତୀୟ ରାଜନୈତିକ ଦର୍ଶନ କ୍ଷେତ୍ରରେ ଏକ ନୂତନ ଚିନ୍ତାଦର୍ଶର ଉଦ୍ରେକ କରାଇଥିଲା । ଏହି ଚିନ୍ତାଦର୍ଶର ଶ୍ରେଷ୍ଠ ଲିପିକାର ମନୁ ଓ କୌଟିଲ୍ୟଙ୍କ (୧୬) ସ୍ମୃତି ଓ ଅର୍ଥଶାସ୍ତ୍ର

---

(୧୬) ମନୁ ଓ କୌଟିଲ୍ୟଙ୍କ ସମୟ ସମ୍ପର୍କରେ ମତାନୈକ୍ୟ ପରିଦୃଷ୍ଟ ହୁଏ । ଉଇଲିୟମ ଜୋନ୍‌ସ୍ ମନୁଙ୍କ ସମୟ ଖ୍ରୀ: ପୂ: ୧୨୦୦ରେ ନିରୂପଣ କଲାବେଳେ ଅନ୍ୟ କେତେକ ତାଙ୍କୁ ଖ୍ରୀ: ୧୨୦୦ ବା ୧୩୦୦ର ବ୍ୟକ୍ତି ଭାବରେ ଗ୍ରହଣ କରିଛନ୍ତି । ସେହିପରି କୌଟିଲ୍ୟଙ୍କୁ କେତେକ ଖ୍ରୀଷ୍ଟପୂର୍ବ ୩ୟ ବା ଚତୁର୍ଥ ଶତାବ୍ଦୀର ବ୍ୟକ୍ତି ରୂପେ ଗ୍ରହଣ କରିଛନ୍ତି ତ, ଅନ୍ୟ କେତେକ 'ଅର୍ଥଶାସ୍ତ୍ର' ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀର ରଚନା ବୋଲି କହୁଛନ୍ତି । ବିଭିନ୍ନ ପ୍ରାଚୀନ ଗ୍ରନ୍ଥ ପୁନର୍ଲିଖନ କାଳରେ ତାତ୍କାଳିକ ଭାଷା ଓ ଘଟଣା ପ୍ରଭାବରେ ଖଣ୍ଡିତମଣ୍ଡିତ ହୋଇପଡିବା ଯୋଗୁଁ ଏଭଳି ମତଦ୍ୱୈଧ ସ୍ୱାଭାବିକ । ଏଣୁ ଏଠାରେ ଭଣ୍ଡାରକର, ବୁଲ୍‌ହର, ଜୋଲି, ବାଶମ, ବେଣୀପ୍ରସାଦ ପ୍ରମୁଖଙ୍କ ସୁଚିନ୍ତିତ, ଯୁକ୍ତିସମ୍ମତ ଓ ପ୍ରମାଣସିଦ୍ଧ ମତ ପ୍ରତି ସମ୍ମାନ ଦେଇ ମନୁସ୍ମୃତି ଓ ଅର୍ଥଶାସ୍ତ୍ରକୁ ଯଥାକ୍ରମେ ଖ୍ରୀଷ୍ଟୀୟ ୨ୟ ଓ ୩ୟ ଶତକର ରଚନା ରୂପେ ଗ୍ରହଣ କରାଯାଇଛି । ( **Basham—The wonder that was India pp. 51, 113 & 390** )

ଭାରତୀୟ ରାଜନୀତି କ୍ଷେତ୍ରରେ ଦୁଇଟି ଉଜ୍ଜ୍ୱଳ ରତ୍ନ । ଏହି ଦୁଇଟି ଗ୍ରନ୍ଥ ପ୍ରାୟତଃ ସମକାଳୀନ ରଚନା ହେଲେ ମଧ୍ୟ ମନୁସ୍ମୃତି ନୈତିକତାସମ୍ପନ୍ନ ଓ ଧର୍ମାନୁରଞ୍ଜିତ, ଅର୍ଥଶାସ୍ତ୍ର କୂଟନୀତି ସମ୍ମିଶ୍ରିତ ଓ ଧର୍ମ ନିରପେକ୍ଷ ଭାବାପନ୍ନ ଗ୍ରନ୍ଥ । (୨୭) ଏଣୁ ମନୁସ୍ମୃତିକୁ ମୌର୍ଯ୍ୟଯୁଗୀୟ ରାଜଧର୍ମ ଓ ମାନବଧର୍ମର ମୁକୁର ରୂପେ ଏବଂ ଅର୍ଥଶାସ୍ତ୍ରକୁ ସର୍ବକାଳୀନ ରାଜନୈତିକ ସଂହିତା ରୂପେ ଗ୍ରହଣ କରାଯାଇପାରେ । ପରବର୍ତ୍ତୀ କାଳର ରାଜନୈତିକ ଗ୍ରନ୍ଥ ଯାଜ୍ଞବଲ୍କ୍ୟ ସଂହିତା, ବୃହସ୍ପତି ସ୍ମୃତି ଓ କାମନ୍ଦକ ସୂତ୍ରରେ ମନୁଙ୍କ ଅବଦାନ ସ୍ୱୀକାର କରାଯିବା ସଙ୍ଗେ ସଙ୍ଗେ ଶେଷୋକ୍ତ ଗ୍ରନ୍ଥଦ୍ୱୟରେ କୌଟିଲ୍ୟଙ୍କ ପ୍ରତି ମାନ୍ୟତା ପ୍ରଦର୍ଶିତ ହୋଇଛି ।

## ସ୍ମୃତିକାର ମନୁ

ମନୁଙ୍କ ସମୟରେ ଭାରତର ଭୌଗୋଳିକ ବିଭାଜନ ତ୍ରିବିଧ ଥିଲା— (୧) ବ୍ରହ୍ମର୍ଷିଦେଶ (ବ୍ରହ୍ମାବର୍ତ୍ତ ସମୀପବର୍ତ୍ତୀ କୁରୁକ୍ଷେତ୍ର, ମତ୍ସ୍ୟ, ପାଞ୍ଚାଳ ଓ ଶୂରସେନ), (୨) ମଧ୍ୟଦେଶ (ପ୍ରୟାଗର ପଶ୍ଚିମବର୍ତ୍ତୀ ହିମାଳୟ ଓ ବିନ୍ଧ୍ୟାଚଳ ମଧ୍ୟବର୍ତ୍ତୀ ଅଞ୍ଚଳ) ଓ (୩) ଆର୍ଯ୍ୟାବର୍ତ୍ତ (ପୂର୍ବସାଗର ଠାରୁ ପଶ୍ଚିମସାଗର ପର୍ଯ୍ୟନ୍ତ ହିମାଚଳ ଓ ବିନ୍ଧ୍ୟାଚଳ ମଧ୍ୟବର୍ତ୍ତୀ ଦେଶ) । ଯଜ୍ଞୋପଯୋଗୀ ଅଞ୍ଚଳକୁ ଯଜ୍ଞୀୟ ଏବଂ ମୃଗଗଣ ବିଚରଣ କରୁଥିବା ଅଞ୍ଚଳକୁ ମ୍ଳେଚ୍ଛଦେଶ କୁହାଯାଉଥିଲା । (୨୮) ସେ ସମୟରେ ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ପ୍ରଥା ପ୍ରଚଳିତ ଥିଲା ଏବଂ ପିତୃଶ୍ରାଦ୍ଧ ଚାନ୍ଦ୍ରାୟଣ ବ୍ରତ ପାଳନ ଏବଂ ବେଦ ଅଧ୍ୟୟନ ଉପରେ ଗୁରୁତ୍ୱ ଦିଆଯାଉଥିଲା । ରାଜା, ଗୁରୁ, ପୁରୋହିତ, ଶ୍ୱଶୁର ଓ ମାତୁଳ ବିଶେଷ ସମ୍ମାନର ପାତ୍ର ଥିଲେ । ଚୋର, ନାସ୍ତିକ, ମଦ୍ୟପ, ଜୁଆଡ଼ି, ଗୋଳିଆ, କୁଳଟା, କପଟୀ, ଅହଙ୍କାରୀ, ଭିକ୍ଷାକାରୀ, ଚିକିତ୍ସକ, ଜ୍ୟୋତିଷୀ, ବୟନକାରୀ, ଗାୟକ, ନର୍ତ୍ତକ, ରଜକ, ଶୂଦ୍ରସେବୀ, ଶ୍ୱାନଜୀବୀ, ଶିକାରୀ, ମଦ୍ୟମାଂସ ବିକ୍ରେତା ପ୍ରମୁଖଙ୍କୁ ବିଦ୍ୱାନ ଜନ ଘୃଣା ଚକ୍ଷୁରେ ଦେଖୁଥିଲେ । (୨୯)

ରାଜଧର୍ମର ବ୍ୟାଖ୍ୟା କରିବାକୁ ଯାଇ ମନୁ ରାଜଦଣ୍ଡକୁ ଧର୍ମରୂପେ ଗ୍ରହଣ କରିଛନ୍ତି ଏବଂ ପ୍ରାଣୀମାନଙ୍କର ରକ୍ଷକ ଭାବେ ରାଜାଙ୍କର ଆବଶ୍ୟକତା ଉପଲବ୍ଧି

---

(୨୭) Prasad—The State in Ancient India— pp. 191·195

(୨୮) ମନୁ ସଂହିତା, ଅଧ୍ୟାୟ—୨, ଶ୍ଳୋକ ୧୯—୨୩

(୨୯) ତତ୍ରୈବ-୩।୧୧୯, ୧୫୦-୧୬୫ ଓ ୪।୨୦୨-୨୨୩

କରିଛନ୍ତି । ତାଙ୍କ ମତରେ ରାଜା ଶୌର୍ଯ୍ୟଯୁକ୍ତ, ସତ୍ୟବାଦୀ, ପ୍ରଜ୍ଞାଶୀଳ, ଦୃଢ଼ପ୍ରତିଜ୍ଞ, ଶାସ୍ତ୍ରାଧ୍ୟାୟୀ, ଉତ୍ତମ ସେନାପତିଯୁକ୍ତ, ଶିକ୍ଷିତ ଓ ଧର୍ମଶାସ୍ତ୍ରଜ୍ଞ ବ୍ରାହ୍ମଣମାନଙ୍କର ପରାମର୍ଶ ଗ୍ରହଣକାରୀ ହେବା ଉଚିତ । ବ୍ୟସନ ଗୁଣର ଆଧିକ୍ୟ ଓ ବିନୟ ଭାବର ଅଭାବରେ ବିଭବଶାଳୀ ରାଜା ମଧ୍ୟ ବିନଷ୍ଟ ହୁଅନ୍ତି ବୋଲି ସେ ସତର୍କବାଣୀ ଶୁଣାଇ-ଥିଲେ । ରାଜା ସମ୍ଭ୍ରାନ୍ତ କୁଳୋଦ୍ଭବ ଓ ଶାସ୍ତ୍ରଜ୍ଞ ବ୍ୟକ୍ତିଙ୍କ ମଧ୍ୟରୁ ୭।୮ ଜଣଙ୍କୁ ମନ୍ତ୍ରୀ ରୂପେ ନିଯୁକ୍ତ କରି ସେମାନଙ୍କ ପରାମର୍ଶରେ ସନ୍ଧି ବିଗ୍ରହାଦି ନୀତିରେ ପୁର, ରାଷ୍ଟ୍ର, କୋଷ ଓ ଦଣ୍ଡର ଶାସନ କରିବା ଆବଶ୍ୟକ ବୋଲି କହିଥିଲେ । ନିର୍ଭୀକ ଓ ଦେଶକାଳଜ୍ଞ ରାଜଦୂତ, ସୁପଣ୍ଡିତ ବ୍ରାହ୍ମଣ ମନ୍ତ୍ରୀ, ହସ୍ତ୍ୟଶ୍ୱରଥ ପଦାତିକାଦି ଚତୁର୍ବିଧ ସେନା ଓ ସୁଦୃଢ଼ ଦୁର୍ଗ ବ୍ୟବସ୍ଥା ଶାସନର ଅପରିହାର୍ଯ୍ୟ ଅଙ୍ଗ । ଧନ୍ୱଦୁର୍ଗ (ମରୁବେଷ୍ଟିତ), ମହୀଦୁର୍ଗ (ପ୍ରସ୍ତର ନିର୍ମିତ), ବାର୍କ୍ଷଦୁର୍ଗ (କଣ୍ଟକ ପରିବେଷ୍ଟିତ) ଅବ୍ଦୁର୍ଗ (ଜଳବେଷ୍ଟିତ) ନୃଦୁର୍ଗ (ସେନାବେଷ୍ଟିତ) ଓ ଗିରିଦୁର୍ଗ (ଦୁରାରୋହ ଗିରିଶ୍ରେଣୀ ପରିବେଷ୍ଟିତ) ଆଦି ଷଡ଼ବିଧ ଦୁର୍ଗ ମଧ୍ୟରୁ ଶେଷୋକ୍ତ ଦୁର୍ଗ ତାଙ୍କ ବିଚାରରେ ଥିଲା ଶ୍ରେଷ୍ଠ ଦୁର୍ଗ । (୩୦)

ମନୁଙ୍କ ନୀତି ଅନୁଯାୟୀ ରାଜ୍ୟ ପରିଚାଳନା ନିମିତ୍ତ ପ୍ରତି ଏକ, ଦଶ, ବିଂଶ, ଏକଶତ ଓ ଏକ ସହସ୍ର ଗ୍ରାମ ପାଇଁ ଜଣେ ଜଣେ ଅଧିପତି ନିଯୁକ୍ତ କରି ଗ୍ରାମାଧି-ପତିଙ୍କୁ ବିନାଦେୟରେ ଭୋଜନ, ଦଶଗ୍ରାମାଧିପତିଙ୍କୁ ଏକ କୁଳ (୩୧) ଜମି, ବିଂଶ ଗ୍ରାମାଧିପଙ୍କୁ ୫ କୁଳ, ଶତଗ୍ରାମାଧିପତିଙ୍କୁ ଗୋଟିଏ ଗ୍ରାମ ଏବଂ ସହସ୍ର ଗ୍ରାମାଧୀଶଙ୍କୁ ଗୋଟିଏ ନଗର ଉପଭୋଗ ସକାଶେ ପ୍ରଦାନ କରାଯିବା ଉଚିତ । ନଗରାଧୀଶ ଶତଗ୍ରାମାଧିପତିର, ଶତଗ୍ରାମାଧିପ ବିଂଶଗ୍ରାମାଧିପତିର ଏବଂ ବିଂଶଗ୍ରାମାଧିପତି ଦଶ ଗ୍ରାମପତିର କାର୍ଯ୍ୟ ତତ୍ତ୍ୱାବଧାନ କରିବା ଦ୍ୱାରା ଶାସନରେ ଶୃଙ୍ଖଳା ରକ୍ଷା କରାଯାଇ ପାରିବ ବୋଲି ସେ ଆଶା ପୋଷଣ କରିଥିଲେ । (୩୨) ସୁତରାଂ, ସେତେବେଳେ ଗ୍ରାମଶାସନ ଓ ସ୍ୱାୟତ୍ତଶାସନ ବ୍ୟବସ୍ଥା ପ୍ରଚଳିତ ଥିଲା ବୋଲି କୁହାଯାଇପାରେ ।

---

(୩୦) ତତ୍ରୈବ—୭।୧, ୧୫, ୩୨-୩୯, ୫୪-୬୫ ଓ ୭୦-୭୨ ।

(୩୧) ରାୟ, ରାମଶଙ୍କର—ମନୁ-ସଂହିତା (ଅ) (ଧର୍ମଗ୍ରନ୍ଥ ଷ୍ଟୋର, କଟକ, ୧୯୬୮) ପୃ. ୧୭୧ (ଛଅ ଗୋଟି ହଳରେ ଚାଷ କରାଯାଇ ପାରିବା ଜମିର ପରିମାଣକୁ ଏକ କୁଳ କୁହାଯାଏ ।)

(୩୨) ମନୁ-ସଂହିତା—୭ । ୧୧୫-୧୨୩

ଆଲୋଚ୍ୟ କାଳରେ ଯୁଦ୍ଧଥିଲା ରାଜ୍ୟ ଶାସନର ଏକ ବିଶିଷ୍ଟ ଅଙ୍ଗ । ଏହା କ୍ଷତ୍ରିୟ ଓ ରାଜାମାନଙ୍କର ପରମଧର୍ମ ରୂପେ ସ୍ୱୀକୃତ ହୋଇଥିଲା ଏବଂ ଯୁଦ୍ଧରେ ମୃତ୍ୟୁ ବରଣ କରିବା ବ୍ୟକ୍ତିକୁ ଅନନ୍ତ ସ୍ୱର୍ଗର ଅଧିକାରୀ ଭାବେ ଗ୍ରହଣ କରାଯାଉଥିଲା । ମନୁଙ୍କ ମତରେ ମାର୍ଗଶୀର, ଫାଲ୍‌ଗୁନ ବା ଚୈତ୍ର ମାସ ଯୁଦ୍ଧଯାତ୍ରା ନିମନ୍ତେ ଅନୁକୂଳ । ସର୍ବଦା ଶତ୍ରୁପକ୍ଷକୁ ଅଧିକ ବଳବାନ ଭାବି ସେନାକୁ ଦୁଇଭାଗରେ ବିଭକ୍ତ କରି ଯୁଦ୍ଧରେ ପ୍ରବୃତ୍ତ ହେବା ବିଧେୟ ବୋଲି କୁହାଯାଇଛି । ଯୁଦ୍ଧରେ ରଥ, ଗଜ, ଅଶ୍ୱ, ପଦାତିକ, ଭୃତ୍ୟବଳ ଓ ରାଜକୋଷ ଷଡ୍‌ବଳର ବିନିଯୋଗ ଓ ବ୍ୟୂହ ରଚନା ଉପରେ ପ୍ରାଧାନ୍ୟ ଦିଆଯାଇଛି । ମନୁସ୍ମୃତିରେ ଦଣ୍ଡାକାର ବ୍ୟୂହ, ଶକଟାକାର ବ୍ୟୂହ, ବରାହାକାର ବ୍ୟୂହ, ମକରାକାର ବ୍ୟୂହ, ସୂଚୀକାର ବ୍ୟୂହ, ଗରୁଡ଼ାକାର ବ୍ୟୂହ ଓ ବଜ୍ରାକାର ବ୍ୟୂହ ଏହି ସପ୍ତବିଧ ବ୍ୟୂହର ଉଲ୍ଲେଖ ଅଛି । (୩୩) ଏହା ବ୍ୟତୀତ, ଶତ୍ରୁପକ୍ଷର ଶକ୍ତି କଳନା ପରେ ପ୍ରଥମେ ଅନ୍ନ, ଜଳ ଓ ଜାଳେଣି (ତୃଣ, କୂପ, ତଡ଼ାଗ, ପରିଖାଦି) ନଷ୍ଟ କରିଦେଇ ଶତ୍ରୁପକ୍ଷକୁ କବଳିତ କରାଯିବା ଉଚିତ । ଯୁଦ୍ଧରେ ବିଜୟ ଅନିଶ୍ଚିତ ଜଣାଗଲେ ଯୁଦ୍ଧ ପରିତ୍ୟାଗ କରିବା ସପକ୍ଷରେ ମନୁଙ୍କ ମତ ସୁସ୍ପଷ୍ଟ । (୩୪)

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଏହି ଯେ ସେତେବେଳେ କେବଳ ଧର୍ମଯୁଦ୍ଧହିଁ ସ୍ପୃହଣୀୟ ଥିଲା । କୂଟାସ୍ତ୍ର (ଗୁପ୍ତି), କର୍ଣ୍ଣୀ, ବିଷାକ୍ତ ଅସ୍ତ୍ର ଓ ଅଗ୍ନିର ବ୍ୟବହାର ଅନ୍ୟାୟ ଯୁଦ୍ଧରୂପେ ବିବେଚିତ ହେଉଥିଲା । ସୁପ୍ତ, ନିରସ୍ତ୍ର, ଉଲଗ୍ନ, ଭଗ୍ନାସ୍ତ୍ରଧାରୀ, ଆର୍ତ୍ତ, ଆହତ, ଭୀତ, ପଳାତକ, ଯୋଡ଼ହସ୍ତ ତଥା ମୁକ୍ତକେଶ ବ୍ୟକ୍ତିଙ୍କୁ ଯୁଦ୍ଧରେ ହତ୍ୟା କରିବା ନିଷିଦ୍ଧ ଥିଲା । ବିଜୟ ଲବ୍‌ଧ ଧନ ମଧ୍ୟରୁ ଉତ୍ତମ ରତ୍ନାଭରଣ ଓ ବାହନ ବ୍ୟତୀତ ଅନ୍ୟ ସବୁ ଯୋଦ୍ଧାମାନଙ୍କ ମଧ୍ୟରେ ବିତରଣ କରିଦିଆ ଯାଉଥିଲା । ବିଜିତ ରାଜ୍ୟରେ ପ୍ରଚଳିତ ଥିବା ପ୍ରଥା ଓ ଧର୍ମର ସୁରକ୍ଷା ଥିଲା ବିଜୟୀ ରାଜାର କର୍ତ୍ତବ୍ୟ । (୩୫)

ମନୁଙ୍କ ବ୍ୟବସ୍ଥା ଅନୁଯାୟୀ ରାଜକର୍ମଚାରୀ ଥିଲେ ତ୍ରିବିଧ—ବେତନଭୋଗୀ, ବୃତ୍ତିଭୋଗୀ ଓ ଗୋଡ଼ି ବା ବେଠିଆ । ବେତନଭୋଗୀମାନଙ୍କୁ ଦୈନିକ ଦରମା

---

(୩୩) ତତ୍ରୈବ—୭।୮୮, ୮୯, ୯୮, ୧୭୩, ୧୮୨, ୧୮୫, ୧୮୭, ୧୯୨ ଓ ୧୯୪ ।

(୩୪) ତତ୍ରୈବ—୭।୧୯୫-୧୯୯ ।

(୩୫) ତତ୍ରୈବ—୭।୯୦-୯୩ ଓ ୨୦୩ ।

ଦଆଯାଉଥିଲା ଏବଂ ନିମ୍ନତମ କର୍ମଚାରୀର ପ୍ରାପ୍ୟ ସର୍ବୋଚ୍ଚ କର୍ମଚାରୀର ପ୍ରାପ୍ୟର ଏକ ଷଷ୍ଠାଂଶ ଥିଲା । ସର୍ବନିମ୍ନ ବେତନ ଥିଲା ଦୈନିକ ଏକ ପଣ ବା ମାସରେ ଏକ ଦ୍ରୋଣ (ପ୍ରାୟ ୭୫ କିଲୋଗ୍ରାମ) ଧାନ୍ୟ ଏବଂ ପ୍ରତି ଛ ମାସରେ ଦୁଇଟି ଲୁଗା । ରାଜକର୍ମଚାରୀ ଉତ୍କୋଚ ଗ୍ରହଣ କଲେ ତାଙ୍କଠାରୁ ସର୍ବସ୍ୱ ଆଦାୟ କରିନେଇ ଦେଶାନ୍ତର ଦଣ୍ଡ ଦିଆଯାଉଥିଲା । (୩୬)

ବାସ୍ତବରେ, ସେହି ସମୟରେ ଅପରାଧ ଅନୁଯାୟୀ ଦଣ୍ଡବିଧାନ ପଦ୍ଧତି ଥିଲା ଅତି କଠୋର । ମନୁ ସ୍ମୃତିରେ ୧୮ ପ୍ରକାର ବିବାଦର ଉଲ୍ଲେଖ ରହିଛି । ଏ ଗୁଡ଼ିକ ମଧ୍ୟରେ ସୀମାବିବାଦ, ପଶୁଜନିତ ବିବାଦ, ଋଣ ସମ୍ପର୍କୀୟ ବିବାଦ, ଚୌର୍ଯ୍ୟ, ସ୍ତ୍ରୀ ହରଣ, ଦାନ ଅପହରଣ, ପ୍ରତିଜ୍ଞା ଲଙ୍ଘନ ଇତ୍ୟାଦି ପ୍ରଧାନ । ଏହା ବ୍ୟତୀତ, ମିଥ୍ୟା ଶପଥ, ମିଥ୍ୟା ସାକ୍ଷ୍ୟ, ଖାଦ୍ୟ ଅପମିଶ୍ରଣ ଓ ଅପମାନ ଦେବା, ଏପରିକି କାଲି, ଅନ୍ଧ, ଖୋଞ୍ଚା, କଣା, କୁଜା ପ୍ରଭୃତି ବିକଳାଙ୍ଗ ବ୍ୟକ୍ତିଙ୍କୁ ସେହି ନାମରେ ଡ଼ାକିବା ମଧ୍ୟ ଅପରାଧ ବିବେଚିତ ହେଉଥିଲା । (୩୭) ନିମ୍ନରେ ପ୍ରଦତ୍ତ କେତେକ ଅପରାଧ ଓ ତାର ଦଣ୍ଡବ୍ୟବସ୍ଥାରୁ ତତ୍କାଳୀନ ଆଇନ ଓ ଶୃଙ୍ଖଳା ବିଧାନର ସମ୍ୟକ୍ ପରିଚୟ ମିଳିଥାଏ ।

| ବିଭିନ୍ନ ଅପରାଧ | ସମୁଚିତ ଦଣ୍ଡବ୍ୟବସ୍ଥା |
|---|---|
| ୧ । ଆଘାତ, ଅପମାନ ଓ ତିରସ୍କାର | |
| (କ) ନୀଚ ବ୍ୟକ୍ତିର ଦ୍ୱିଜ ପ୍ରତି ଆଘାତ | (କ) ଅପରାଧୀ ଯେଉଁ ଅଙ୍ଗକୁ ଆଘାତ କରିଥିବ, ସେହି ଅଙ୍ଗ କର୍ତ୍ତନ । |
| (ଖ) ହାତ ବା ଯଷ୍ଟିଦ୍ୱାରା ଆଘାତ | (ଖ) ହସ୍ତ ଛେଦନ । |
| (ଗ) ଗୋଇଠା ପ୍ରହାର | (ଗ) ଗୋଡ଼ କର୍ତ୍ତନ । |
| (ଘ) ଅହଙ୍କାରବଶତଃ କେଶ, ଶ୍ମଶ୍ରୁ, ଅଣ୍ଡକୋଷ ବା ଗଳା ଧାରଣ | (ଘ) ଦୁଇ ହସ୍ତ ଛେଦନ । |
| (ଙ) ନୀଚ ବ୍ୟକ୍ତି କ୍ରୋଧରେ ମୂତ୍ର ବା ଛେପ ନିକ୍ଷେପ କରିବା | (ଙ) ଶିଶ୍ନ ବା ଓଷ୍ଠ ଛେଦନ । |

(୩୬) ତତ୍ରୈବ—୭।୧୨୪, ୧୨୬, ୧୩୫ ଓ ୧୩୮ ଶ୍ଳୋକ ।
(୩୭) ତତ୍ରୈବ—୮।୪-୭ ।

| | |
|---|---|
| (ଚ) ବ୍ରାହ୍ମଣ ପ୍ରତି ତିରସ୍କାର | (ଚ) କ୍ଷତ୍ରିୟ ହୋଇଥିଲେ ୧୦୦ ପଣ, ବୈଶ୍ୟ ପାଇଁ ୨୦୦ ପଣ ଓ ବେତ୍ରାଘାତ । |
| (ଛ) ଶୂଦ୍ରର ବ୍ରାହ୍ମଣ ପ୍ରତି ଆକ୍ରୋଶ | (ଛ) ଦଶ ଅଙ୍ଗୁଳବିଶିଷ୍ଟ ତପ୍ତ ଲୌହଦଣ୍ଡ ଦ୍ୱାରା ମୁଖରେ ଦାଗ । |
| (ଜ) ଶୂଦ୍ରର ବ୍ରାହ୍ମଣ ପ୍ରତି ଉପଦେଶ | (ଜ) ମୁହଁ ଓ କାନରେ ତପ୍ତତୈଳ ନିକ୍ଷେପ । |
| (ଝ) ନୀଚ ବ୍ୟକ୍ତି ଉଚ୍ଚକୁଳ ବ୍ୟକ୍ତି ସହ ସମାନ ଆସନ ଦାବୀ କରିବା | (ଝ) ନିତମ୍ବ ଛେଦନ । |
| (ଞ) କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ରପ୍ରତି ବ୍ରାହ୍ମଣର ତିରସ୍କାର | (ଞ) ଯଥାକ୍ରମେ ୫୦ ପଣ, ୨୫ ପଣ ବା ୧୨ ପଣ ଅର୍ଥଦଣ୍ଡ । |
| (ଟ) ସ୍ତ୍ରୀ, ପୁତ୍ର, ଅନୁଜ ବା ଭୃତ୍ୟଦ୍ୱାରା ଅପରାଧ ହୋଇଥିଲେ | (ଟ) ରଜ୍ଜୁ ବା ବାଂଶକଣିକା ଦ୍ୱାରା ପୃଷ୍ଠଦେଶ ତାଡ଼ନ । |
| (ଠ) ବିକଳାଙ୍ଗଙ୍କ ପ୍ରତି ଅପମାନ | (ଠ) ଏକ କାର୍ଷାପଣ ଅର୍ଥଦଣ୍ଡ । |
| (ଡ଼) ଜଳାଶୟ ନଷ୍ଟ କରିବା | (ଡ଼) ଅନୁରୂପ ଜଳାଶୟ ନିର୍ମାଣ । |
| (ଢ଼) ଫୁଲ, ଫଳ, ମୂଳ, ସ୍କନ୍ଧ-ପାଦାଦି ନଷ୍ଟ | (ଢ) ନଷ୍ଟଦ୍ରବ୍ୟର ୫ ଗୁଣ |
| (ଣ) ପଶୁ ପ୍ରତି ପ୍ରହାର | (ଣ) ପଶୁ ସୁସ୍ଥ ହେବା ପର୍ଯ୍ୟନ୍ତ ସମସ୍ତ ବ୍ୟୟ ବହନ । |
| (ତ) ରଥଚାଳନାରୁ ଆହତ | (ତ) ସାରଥି ନିପୁଣ ଥିଲେ ୧୦୦ ପଣ, ନିପୁଣ ନଥିଲେ ୨୦୦ ପଣ, ରଥସ୍ୱାମୀ ପ୍ରତି ୨୦୦ ପଣ ଓ ପ୍ରତ୍ୟେକ ଆରୋହୀଙ୍କୁ ୧୦୦ ପଣ । |

୨ । ଚୋରି

| | |
|---|---|
| (କ) ସ୍ୱର୍ଣ୍ଣ ବା ରୌପ୍ୟ ଚୋରି | (କ) ୫୦ ପଲରୁ ଊଣା ହୋଇଥିଲେ ୧୧ ଗୁଣ, ଅଧିକା ହୋଇଥିଲେ ଶାରୀରିକ ଦଣ୍ଡ । |
| (ଖ) ଗୋରୁ ଚୋରି | (ଖ) ଅର୍ଦ୍ଧପାଦ ଛେଦନ |
| (ଗ) କୃଅଦ୍ରବ୍ୟ ବା ଘଡ଼ା ଚୋରି | (ଗ) କୃଅଦ୍ରବ୍ୟ ବା ଘଡ଼ା ପ୍ରତ୍ୟର୍ପଣ । |
| (ଘ) ଧାନ୍ୟ ଚୋରି | (ଘ) କୋଡ଼ିଏ କୁମ୍ଭ ବା ୨୦୦ ଦ୍ରୋଣୀଠୁଁ ଊଣା ହୋଇଥିଲେ ଧାନ୍ୟର ୧୧ଗୁଣ, ଅଧିକା ହୋଇଥିଲେ ଶାରୀରିକ ଦଣ୍ଡ । |

୩ । ଯୁବତୀ ପ୍ରତି ଅତ୍ୟାଚାର — ଶାରୀରିକ ଦଣ୍ଡ ।

୪ । ରାଜା ସ୍ୱୟଂ ଅପରାଧ କରିବା — ସହସ୍ର ଗୁଣ ଦଣ୍ଡ ।

ରାଜା ତିନି ଜଣ ନୀତିଜ୍ଞ ବ୍ରାହ୍ମଣଙ୍କ ସହିତ ଧର୍ମାଧିକରଣ (ଆଦାଲତ)ରେ ସମାବିଷ୍ଟ ହୋଇ ଦଣ୍ଡବିଧାନ କରୁଥିଲେ । (୩୮)

ମନୁଙ୍କ ମତରେ ପ୍ରଜାଙ୍କ ଠାରୁ କର ଆଦାୟ କରି ପ୍ରଜାଙ୍କୁ ପିତୃତୁଲ୍ୟ ପାଳନ କରିବା ହିଁ ରାଜଧର୍ମ । ଏହା 'ଅର୍କବ୍ରତ' ନାମରେ ଅଭିହିତ, କାରଣ ସୂର୍ଯ୍ୟ ଯେପରି ଆଠମାସ ଜଳ ଆକର୍ଷଣ କରି ଚାରି ମାସ ବାରିରାଶି ପ୍ରଦାନ କରେ, ରାଜା ଯେପରି କର ଗ୍ରହଣ କରି ପ୍ରଜାଙ୍କ ମଙ୍ଗଳବିଧାନ କରିବା ଉଚିତ । ପଶୁ ଓ ସୁବର୍ଣ୍ଣ ଲଭ କ୍ଷେତ୍ରରେ ୫୦ ଭାଗରୁ ଏକ ଭାଗ, ଧାନ୍ୟର ପରିଶ୍ରମ ଅନୁଯାୟୀ ୬, ୮ ବା ୧୨ ଭାଗରୁ ଏକଭାଗ ଓ ଘୃତ, ବୃକ୍ଷ, ଫଳପୁଷ୍ପାଦିର ୬ ଭାଗରୁ ଏକଭାଗ କର ରୂପେ ଧାର୍ଯ୍ୟ ହେବା ବିଧେୟ । ତେବେ, ଅର୍ଥାଭାବରୁ ରାଜା ମରଣାପନ୍ନ ହେଲେ ସୁଦ୍ଧା ଶ୍ରୋତ୍ରୀୟଙ୍କ ଠାରୁ କର ନେବା ନିଷିଦ୍ଧ ଥିଲା । ରାଜା କ୍ଷୀଣଧନ ହେଲେ ହେଁ ଅଯୋଗ୍ୟ ଧନ ନନେବା ଓ ବିତ୍ତଶାଳୀ ହେଲେ ମଧ୍ୟ ପ୍ରାପ୍ୟ ଧନ ନ ଛାଡ଼ିବା ଥିଲା ଶ୍ରେଷ୍ଠ ଅର୍ଥନୈତିକ ଆଦର୍ଶ । ପ୍ରଜାମାନଙ୍କ ସମ୍ପତ୍ତିର ସୁରକ୍ଷା, ସ୍ତ୍ରୀ ଧନ ଓ ଗୋଚର ଭୂମିର ରକ୍ଷଣାବେକ୍ଷଣ ଦାୟିତ୍ୱ ରାଜାଙ୍କର ଏକ ବିଶେଷ କର୍ତ୍ତବ୍ୟ ଥିଲା । (୩୯)

---

(୩୮) ତତ୍ରୈବ—୮ । ୧୦ ଓ ୭୫ ।

(୩୯) ତତ୍ରୈବ—୭ । ୧୨୯-୧୩୨, ୧୩୫, ୧୩୬, ୧୪୪ ଓ ୧୭୦ ।

ମନୁଙ୍କ ରାଜନୈତିକ ଆଦର୍ଶ ଧର୍ମାନୁସୃତ ହେଲେ ମଧ୍ୟ ତାହା ରାଷ୍ଟ୍ରୀୟ ଶାସନ ବ୍ୟବସ୍ଥା ପାଇଁ ଅପରିହାର୍ଯ୍ୟ । ଆଧୁନିକ ଯୁଗର ପାଶ୍ଚାତ୍ୟ ଶାସନନୀତିଜ୍ଞ ମେକ୍ୟାଭେଲ (୧୪୬୯-୧୫୨୭)ଙ୍କ ଭଳି ମନୁ ମଧ୍ୟ ଉପଲବ୍ଧି କରିଥିଲେ ଯେ ରାଜା ନିଜ ରାଜ୍ୟର ତଥ୍ୟମାନ କୂର୍ମଭଳି ଗୋପନ ରଖି ଅନ୍ୟ ରାଜ୍ୟର ଛିଦ୍ର ଜ୍ଞାତ ହେବା ଆବଶ୍ୟକ । ନିଜେ କପଟାଚରଣ ନକରି ମଧ୍ୟ ଅନ୍ୟର କପଟାଚରଣ ଜାଣିବା ଉଚିତ । ସର୍ବୋପରି, ରାଜା ସିଂହପରି ପରାକ୍ରମୀ, ବ୍ୟାଘ୍ର ଭଳି ଶିକାରୀ, ବକବତ୍ ଅର୍ଥାନ୍ୱେଷୀ ଓ ଶଶକ ତୁଲ୍ୟ ତତ୍ପରଶୀଳ ହେବା ଲାଗି ସେ ପରାମର୍ଶ ଦେଇଛନ୍ତି । (୪୦) ସମସ୍ତ ଦିଗରୁ ବିଚାର କଲେ ମନୁଙ୍କୁ ଯଥାର୍ଥରେ 'ପ୍ରାଚୀନ ଭାରତୀୟ ରାଷ୍ଟ୍ରନୀତିର ଜନକ' ଆଖ୍ୟା ଦିଆଯାଇଛି ।(୪୧)

### କୌଟିଲ୍ୟଙ୍କ ଶାସନାଦର୍ଶ

ମନୁଙ୍କ ସ୍ମୃତି ପରି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଥିଲା ପ୍ରାଚୀନ ଭାରତର ରାଜନୀତି ତଥା ଶାସନ ନୀତି କ୍ଷେତ୍ରରେ ଅନ୍ୟତମ ଶ୍ରେଷ୍ଠ ଗ୍ରନ୍ଥ । ଚନ୍ଦ୍ରଗୁପ୍ତଙ୍କ ସିଂହାସନାରୋହଣକାଳୀନ ଅନାର୍ଯ୍ୟ ପ୍ରଭାବ, ସାମ୍ପ୍ରଦାୟିକ ସଂଘର୍ଷ, ଦେଶଦ୍ରୋହୀ ଷଡ଼ଯନ୍ତ୍ର ତଥା ମୌର୍ଯ୍ୟ ଶାସନର ଅବସାନ ଠାରୁ ଗୁପ୍ତ ରାଜବଂଶର ଅଭ୍ୟୁଦୟ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ଅର୍ଦ୍ଧସହସ୍ରାବ୍ଦ କାଳ ( ଖ୍ରୀ: ପୂ: ୯୮୭ ଠାରୁ ଖ୍ରୀ ୩୨୦)ର ରାଜନୈତିକ ଅସ୍ଥିରତାର ପୃଷ୍ଠଭୂମିରେ ଏହା ପ୍ରଣୀତ ହୋଇଥିଲା । ଦେଶକୁ ସୁରକ୍ଷିତ ଓ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଏକ ସାର୍ବଭୌମ ରାଜ୍ୟଗଠନ ଥିଲା କୌଟିଲ୍ୟଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସଂକ୍ଷିପ୍ତ ଭାବରେ ପ୍ରକାଶ କଲେ, ଦେଶୋଦ୍ଧାର ଓ ଦେଶରକ୍ଷାର କଳ୍ପନା ଭିତରୁ ହିଁ 'ଅର୍ଥଶାସ୍ତ୍ର'ର ଜନ୍ମ । (୪୨)

ପ୍ରାଚୀନ କାଳରେ ଋଷିମୁନିଙ୍କ ଅମଳରେ ଶାସନ 'ବିଚାର କେନ୍ଦ୍ରିକ' ଥିଲା; ପରେ ରାଜାମାନଙ୍କ ଦ୍ୱାରା 'ଭୟଭକ୍ତିକ' ଶାସନ ପ୍ରତିଷ୍ଠିତ ହେଲା । ତାର ପରବର୍ତ୍ତୀ

---

(୪୦) "ବକବଚ୍ଚିନ୍ତୟେଦର୍ଥାନ୍ ସିଂହବଚ୍ଚ ପରାକ୍ରମେତ୍
ବୃକବାଚ୍ଚାବ ଲୁମ୍ପେତ ଶଶବଚ୍ଚ ବିନିଷ୍ପତେତ୍ ।
( ମନୁ ସ୍ମୃତି—୭ । ୧୦୬ ) ।

(୪୧) Pant : History of Western Political Thought, Vol-II, P. 506.

(୪୨) କର, ଅନନ୍ତରାମ (ସଂ) କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର (ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୩) ପ୍ରସ୍ତାବନା—ପୃ. ୨୨ ଓ ୨୮ ।

ପର୍ଯ୍ୟାୟରେ ଅତ୍ୟାଚାରୀ ରାଜାଙ୍କ ନିଷ୍ପେଷଣରେ ଅତିଷ୍ଠ ହୋଇ ପ୍ରଜା ଆନ୍ଦୋଳନ ଘଟିଥିଲା ଏବଂ ସ୍ଥାନେ ସ୍ଥାନେ ପ୍ରଜାତନ୍ତ୍ର ଗଠିତ ହୋଇଥିଲା ତଥା 'ଗଠନ କେନ୍ଦ୍ରିକ' ଶାସନ ଚାଲିଥିଲା । ଏହା ପରେ ଜଣେ ଜଣେ ପ୍ରବଳ ପ୍ରତାପଶାଳୀ ରାଜାଙ୍କର ଆବିର୍ଭାବ ଫଳରେ ବ୍ୟକ୍ତିକେନ୍ଦ୍ରିକ ବା ବଳକେନ୍ଦ୍ରିକ ଶାସନ ପ୍ରତିଷ୍ଠା ଲାଭ କଲା । ଏହି ପ୍ରାଚୀନ ଚତୁର୍ବିଧ ଶାସନ ପରଂପରାର ପୃଷ୍ଠଭୂମିରେ କୌଟିଲ୍ୟ ଗୋଟିଏ ସ୍ଥାୟୀ ସନାତନ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ ଉଦ୍ଦେଶ୍ୟରେ ତାଙ୍କ ଅର୍ଥଶାସ୍ତ୍ର ପ୍ରଣୟନ କରିଥିଲେ । ଏଣୁ ଯୁଗ ଯୁଗ ପାଇଁ ଏହା ଏକ ଆଦର୍ଶ ଶାସନତାନ୍ତ୍ରିକ ପଦ୍ଧତି ତଥା ଶାସକ ଓ ପ୍ରଶାସକମାନଙ୍କର ଏକ ନିତ୍ୟ ବ୍ୟବହାର୍ଯ୍ୟ ଗ୍ରନ୍ଥ ରୂପେ ସମ୍ମାନିତ ହୋଇ ଆସୁଛି । (୪୩)

ଅର୍ଥଶାସ୍ତ୍ର ସମ୍ବଳିତ ବିଭିନ୍ନ ବିଷୟରୁ ଜଣାଯାଏ ଯେ କୌଟିଲ୍ୟ ପୂର୍ବାଚାର୍ଯ୍ୟମାନଙ୍କର ଅନେକ ମତ ପ୍ରତ୍ୟାଖ୍ୟାନପୂର୍ବକ ସ୍ବମତର ପ୍ରାଧାନ୍ୟ ପ୍ରତିପାଦନ କରିଥିଲେ । ଦୁର୍ଗନିର୍ମାଣ, ରାଜକର୍ମଚାରୀଙ୍କ ନିୟନ୍ତ୍ରଣ, ଯୁଦ୍ଧ ପରିଚାଳନା, ଗୁପ୍ତଚର ବ୍ୟବସ୍ଥା, କର ଆଦାୟ ପଦ୍ଧତି, ଦଣ୍ଡବିଧାନ ଇତ୍ୟାଦି ବିଷୟରେ ସେ ସବିଶେଷ ପରାମର୍ଶ ଦେଇଛନ୍ତି । ଶତ୍ରୁଜୟ ନିମିତ୍ତ ମନ୍ତ୍ର ଓ ଔଷଧ ପ୍ରୟୋଗ ପରିକଳ୍ପନା କୌଟିଲ୍ୟଙ୍କ ବିଶେଷ ଜ୍ଞାନର ପରିଚାୟକ । ପ୍ରବଞ୍ଚକ ଓ ଉତ୍କୋଚ ଗ୍ରହୀତାଙ୍କ କବଳରୁ ପ୍ରଜାମାନଙ୍କୁ ରକ୍ଷା କରିବା ଦିଗରେ ସେ ଅତ୍ୟନ୍ତ ସଚେତନ ଥିଲେ ଏବଂ ଛଳନା-ଦ୍ୱାରା ବିଭିନ୍ନ ବ୍ୟକ୍ତିର ଚରିତ୍ର ଓ ମନୋଭାବ ବୁଝିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

କୌଟିଲ୍ୟଙ୍କ ପରିକଳ୍ପିତ ଚତୁର୍ବିଧ ଦୁର୍ଗ ମଧ୍ୟରୁ ଔଦକଦୁର୍ଗ (ଚତୁର୍ଦ୍ଦିଗ ନଦୀ ବା ସରୋବର ବେଷ୍ଟିତ) ଓ ପାର୍ବତ ଦୁର୍ଗ (ପର୍ବତ ବା ଗୁହା ମଧ୍ୟଗତ) ଦେଶ-ରକ୍ଷା ପାଇଁ ପ୍ରଶସ୍ତ ଏବଂ ଧାନ୍ୱନ (ନିର୍ଜଳ ଭୂମିସ୍ଥ) ଓ ବନ ଦୁର୍ଗ (କଣ୍ଟକାକୀର୍ଣ୍ଣ) ଆତ୍ମରକ୍ଷା ନିମିତ୍ତ ଉଦ୍ଦିଷ୍ଟ । ଏହା ବ୍ୟତୀତ, ସେ ଗଡ଼ଖାଇର ଆୟତନ, ପ୍ରାକାର ନିର୍ମାଣ, ପ୍ରତୋଲୀ (ଦ୍ୱିତଳ ମହଲ), ଗୁପ୍ତପଥ ବା ଦେବପଥ ବ୍ୟବସ୍ଥା, ଜାନୁଭଞ୍ଜନୀ (ଯନ୍ତ୍ରଫଳକ) ସ୍ଥାପନ, ଦ୍ୱାର ସ୍ତମ୍ଭ ପ୍ରଭୃତିର ଦୈର୍ଘ୍ୟ-ପ୍ରସ୍ଥ ନିର୍ଦ୍ଧାରଣ, ଗୋପୁର, ମଣିଦ୍ୱାର, ପାଣିଦ୍ୱାର, ତୋରଣ ପ୍ରଭୃତିର ସବିଶେଷ ବିବରଣୀ ପ୍ରଦାନ କରିଛନ୍ତି । (୪୪)

---

(୪୩) **Prasad—The State in Ancient India—P 194.**

(୪୪) ଅର୍ଥଶାସ୍ତ୍ର—୨ୟ ଅଧିକରଣ, ୩ୟ ଅଧ୍ୟାୟ, ୨୧ଶ ପ୍ରକରଣ ।

ମନ୍ତ୍ରୀ, ପୁରୋହିତ, ମହାମାତ୍ୟ, ସେନାପତି, ସମାହର୍ତ୍ତା (ରାଜସ୍ୱ ଅଧିକାରୀ), ସନ୍ନିଧାତା (ଭଣ୍ଡାର ରକ୍ଷକ), କର୍ମାନ୍ତିକ (ଖଣି ଅଧିକାରୀ), ଦୌବାରିକ (ଦ୍ୱାରପାଳ), ଦୁର୍ଗପାଳ, ଅନ୍ତପାଳ, ଦଣ୍ଡପାଳ, ପ୍ରଶସ୍ତା (ଛାଉଣୀ ପକାଇବା କର୍ମଚାରୀ), ପ୍ରଦେଷ୍ଟା (କଣ୍ଟକଶୋଧନ ଅଧିକାରୀ), ଆଟବିକ (ଅରଣ୍ୟ ଅଧିକାରୀ), ଅଧ୍ୟକ୍ଷ, ନାୟକ, ପରମୁଖ୍ୟ ପ୍ରମୁଖଙ୍କୁ ନେଇ ରାଜ୍ୟଶାସନ ପରିଚାଳିତ ହେଉଥିଲା । ତେଣୁ କୌଟିଲ୍ୟ ମତ ପୋଷଣ କରିଥିଲେ ଯେ ସ୍ୱଦେଶୀ, ଶୁଦ୍ଧ ବଂଶୋଦ୍ଭବ, ସୁବନ୍ଧୁଯୁକ୍ତ, ପ୍ରବୃତ୍ତି-ନିବାରଣ ସମର୍ଥ, ଯନ୍ତ୍ର-ଯାନ-ବାହନ-ଯୁଦ୍ଧ-ଆୟୁଧ ଓ ଗନ୍ଧର୍ବ ବିଦ୍ୟାପ୍ରବୀଣ, ପ୍ରାଜ୍ଞ, ଅର୍ଥଶାସ୍ତ୍ରାଭିଜ୍ଞ, ପ୍ରତିଭାବାନ୍, ବାଗ୍ମୀ, ଉତ୍ସାହୀ, ମିତବ୍ୟୟୀ ଓ କଷ୍ଟ ସହିଷ୍ଣୁ ବ୍ୟକ୍ତିଙ୍କୁ ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତ କରାଯିବା ଉଚିତ । ପୁଣି ଏହି ସମସ୍ତ ଗୁଣ ନିଯୁକ୍ତି ପୂର୍ବରୁ ଧର୍ମୋପଧା, ଅର୍ଥୋପଧା, କାମୋପଧା ଓ ଭୟୋପଧା ଦ୍ୱାରା ପରୀକ୍ଷିତ ହେବା ଆବଶ୍ୟକ । ଏହିଭଳି ସର୍ବଶ୍ରେଷ୍ଠ କୁଳୋତ୍ପନ୍ନ, ବେଦ-ଜ୍ୟୋତିଷ-ଶକୁନଶାସ୍ତ୍ର ଓ ଦଣ୍ଡନୀତିନିପୁଣ, ଶିଷ୍ଟାଚାରୀ ତଥା ଶୌଚପରାୟଣ ବ୍ୟକ୍ତିଙ୍କୁ ପୁରୋହିତ ରୂପେ ନିଯୁକ୍ତି ଦେବା ବିଧେୟ । ପ୍ରଧାନମନ୍ତ୍ରୀ ଓ ପୁରୋହିତଙ୍କ ସହଯୋଗରେ ରାଜା ଅନ୍ୟ ଅମାତ୍ୟମାନଙ୍କୁ ଏବଂ ଅମାତ୍ୟବର୍ଗଙ୍କ ସାହାଯ୍ୟରେ ବିଭିନ୍ନ ଗୁପ୍ତଚରଙ୍କୁ ନିଯୁକ୍ତ କରିବା ଲାଗି ସେ ପରାମର୍ଶ ଦେଇଛନ୍ତି । (୪୫)

କୌଟିଲ୍ୟ ବିଭିନ୍ନ ଗୁପ୍ତଚର ସଂସ୍ଥାର ବିଭାଗୀକରଣ କରି ପ୍ରତ୍ୟେକ ବିଭାଗ ଦାୟିତ୍ୱରେ ଜଣେ ଜଣେ ପ୍ରଧାନ ଗୁପ୍ତଚରଙ୍କୁ ନିଯୁକ୍ତି ଦେବାର ପକ୍ଷପାତୀ ଥିଲେ । ତାଙ୍କ ମତରେ ବିଭିନ୍ନ ଗୁପ୍ତଚର ସଂସ୍ଥା ହେଉଛି— (୧) କାପଟିକ (ଛାତ୍ର, ଶିକ୍ଷକ ତଥା ଅବିବାହିତ ବେଶ ଧରି ଅମାତ୍ୟମାନଙ୍କ ଦୋଷ, ବ୍ୟଭିଚାର ଜାଣିବା), (୨) ଉଦାସ୍ଥିତ (ସନ୍ନ୍ୟାସୀ ବେଶଧାରୀ), (୩) ଗୃହପତିକ (କୃଷକ ବେଶରେ କୃଷକ-ସମାଜରୁ ତଥ୍ୟ ସଂଗ୍ରହ), (୪) ବୈଦେହକ (ବେଶ୍ୟାଙ୍କ ମାଧ୍ୟମରେ ଗୁପ୍ତତଥ୍ୟ ସଂଗ୍ରହକାରୀ), (୫) ତାପସ (ଜଟାଧାରୀ ଭିକ୍ଷୁ ବେଶଧାରୀ) (୬) ସତ୍ରୀ (ହସ୍ତରେଖା, ଇନ୍ଦ୍ରଜାଲ, ବଶୀକରଣ ବିଦ୍ୟା, ଶକୁନବିଦ୍ୟା, କାମଶାସ୍ତ୍ର, ପକ୍ଷୀଶାସ୍ତ୍ର ଆଦିରେ ପାରଙ୍ଗମ), (୭) ରସଦ (ଆତ୍ମୀୟଙ୍କ ପ୍ରତି କ୍ରୂର, ସ୍ନେହଶୂନ୍ୟ ଓ ରସ ବା ବିଷ ପ୍ରୟୋଗ ଦ୍ୱାରା ନିହତ କରିବା ଲାଗି ଅକୁଣ୍ଠିତ), (୮) ତୀକ୍ଷ୍ଣ (ହସ୍ତୀ, ବ୍ୟାଘ୍ର, ସର୍ପାଦି ହିଂସ୍ରଜନ୍ତୁ ସହିତ ସଂଘର୍ଷ ପାଇଁ ପ୍ରସ୍ତୁତ) ଏବଂ (୯) ଭିକ୍ଷୁକୀ (ବୃଦ୍ଧା, ବ୍ରାହ୍ମଣୀ ଓ ସନ୍ନ୍ୟାସିନୀ ବେଶଧାରିଣୀ) । କେହି କାହାକୁ ଜାଣି ନଥିବା ତିନିଜଣ

---

(୪୫) ଅର୍ଥଶାସ୍ତ୍ର—୧।୯।୫ ଓ ୧।୧୦।୭ ।

ଗୁପ୍ତଚର ଯଦି ଅଭିନ୍ନ ଓ ଏକାର୍ଥବୋଧକ ସମ୍ବାଦ ଦିଅନ୍ତି, ତେବେ ତାହା ଠିକ୍ ବୋଲି ରାଜା ବିଶ୍ୱାସ କରିବା ଉଚିତ । (୪୬)

ରାଷ୍ଟ୍ରୀୟ ସମ୍ପତ୍ତିର ଅଭିବୃଦ୍ଧି, ରାଜସ୍ୱ ଅପହରଣ ତଥା ଉତ୍କୋଚ ଗ୍ରହଣ ବାରଣ ଏବଂ ଚୋରି ଅବରୋଧ ଉପରେ କୌଟିଲ୍ୟ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କ ମତରେ, ଉପଯୁକ୍ତ ତଦନ୍ତ କରି ଅସାଧୁ କର୍ମଚାରୀଙ୍କୁ କର୍ମଚ୍ୟୁତ କରାଯିବା ଉଚିତ । ରାଜକୋଷ ବୃଦ୍ଧି ତଥା ରାଜସ୍ୱ ଆଦାୟ ନିମିତ୍ତ ସେ ବିଭିନ୍ନ କର୍ମଚାରୀ ଓ ସେମାନଙ୍କର କାର୍ଯ୍ୟାବଳୀ ନିର୍ଦ୍ଦେଶ କରିଛନ୍ତି । (୪୭)

୧ । ସନ୍ନିଧାତା (କୋଷାଗାର ଓ ପଣ୍ୟାଗାର ପରିଚାଳକ)
୨ । ସମାହର୍ତ୍ତା (ଦୁର୍ଗ, ଖଣି, ସେତୁ ବାବଦ କର ଆଦାୟକାରୀ)
୩ । ନାଗରିକ (ନଗର ଅଧିକାରୀ)
୪ । ଲକ୍ଷଣାଧ୍ୟକ୍ଷ (ଭୂମି ସୀମା ଚିହ୍ନଟକାରୀ)
୫ । ମୁଦ୍ରାଧ୍ୟକ୍ଷ (ରାଜମୋହର ଅଧିକାରୀ)
୬ । ସୂତ୍ର (ବୟନ ବିଭାଗ ଅଧ୍ୟକ୍ଷ)
୭ । ବାସ୍ତୁକ (ଗୃହନିର୍ମାଣକାରୀ)
୮ । ଦେବତାଧ୍ୟକ୍ଷ (ଦେବାଳୟ ତତ୍ତ୍ୱାବଧାରକ)
୯ । ନାବାଧ୍ୟକ୍ଷ (ଘାଟ ଓ ନୌକା ମାହାସୁଲ ଆଦାୟକାରୀ)
୧୦ । ଅନ୍ତପାଳ (ରାଜମୋହର ବିନା ବର୍ଜିତ ପଦାର୍ଥରୁ ଶୁଳ୍କ ଆଦାୟକାରୀ)
୧୧ । ପୌତବାଧ୍ୟକ୍ଷ (ମାପ, ଓଜନ ଅଧିକାରୀ)
୧୨ । ଅଟବୀପାଳ (ଜଙ୍ଗଲ ରକ୍ଷକ)
୧୩ । କୁପ୍ୟାଧ୍ୟକ୍ଷ (ଉତ୍ତମ ଜଙ୍ଗଲଗୁଡ଼ିକର ରକ୍ଷକ)
୧୪ । ଗୋ-ଅଧ୍ୟକ୍ଷ (ପଶୁ ଓ ଦୁଗ୍ଧଘୃତାଦି ରକ୍ଷକ)
୧୫ । ଗ୍ରାମାଧ୍ୟକ୍ଷ (ଗ୍ରାମସ୍ୱାମୀ ବା ଗ୍ରାମ ରକ୍ଷକ)
୧୬ । ବିବୀତାଧ୍ୟକ୍ଷ (ଗ୍ରାମ ସୀମାନ୍ତ ରକ୍ଷକ) ।

---

(୪୬) ଅର୍ଥଶାସ୍ତ୍ର—୧।୧୧।୭ ଓ ୧।୧୨।୮ ।
(୪୭) ତତ୍ରୈବ—୨ୟ ଅଧିକରଣ ୮ମ, ୯ମ ଓ ୧୦ମ ଅଧ୍ୟାୟ ।

କୌଟିଲ୍ୟଙ୍କ ମତରେ, ରାଜାମାନେ ପ୍ରତ୍ୟେକ ବିଷୟରେ ବିଭାଗୀୟ ମନ୍ତ୍ରୀଙ୍କ ମତାମତ ତଥା ମନ୍ତ୍ରିପରିଷଦର ପରାମର୍ଶ ନେଇ କାର୍ଯ୍ୟ ସଂପାଦନ କରିବା ଉଚିତ । ଅବଶ୍ୟ ମନୁ, ବୃହସ୍ପତି ଓ ଶୁକ୍ରାଚାର୍ଯ୍ୟ ଯଥାକ୍ରମେ ୧୨ ଜଣ, ୧୬ ଜଣ ଓ ୨୦ ଜଣ ସଦସ୍ୟବିଶିଷ୍ଟ ମନ୍ତ୍ରିପରିଷଦର ପକ୍ଷପାତୀ ଥିବା ସ୍ଥଳେ, କୌଟିଲ୍ୟ ସ୍ଥଳ-ବିଶେଷର ଆବଶ୍ୟକତା ଅନୁଯାୟୀ ମନ୍ତ୍ରିପରିଷଦର ସଂଖ୍ୟା ନିରୂପିତ ହେବା ସପକ୍ଷରେ ମତ ଆରୋପ କରିଛନ୍ତି । (୪୮)

ନିଜ ପୁତ୍ର ତଥା ବନ୍ଧୁବାନ୍ଧବଙ୍କ ଷଡ଼ଯନ୍ତ୍ରରୁ ରାଜା ନିଜକୁ ରକ୍ଷା କରିବା ବିଷୟରେ କୌଟିଲ୍ୟଙ୍କ ମତ ନିତାନ୍ତ ଉଲ୍ଲେଖଯୋଗ୍ୟ । ଦ୍ରୋଣାଚାର୍ଯ୍ୟ, ବିଶାଳାକ୍ଷ, ପରାଶର, ପିଶୁନ, ଖଣ୍ଡ ପ୍ରମୁଖ ରାଜଦ୍ରୋହର ପ୍ରତିରୋଧ ଲାଗି ରାଜପୁତ୍ରମାନଙ୍କ ହତ୍ୟା, ବନ୍ଦୀ, ଦେଶାନ୍ତର ବା ଭବନାନ୍ତର କରିବା ସପକ୍ଷରେ ଯେଉଁସବୁ ମତ ଦେଇଥିଲେ, ତାକୁ ଯୁକ୍ତିହୀନ, ଅସଙ୍ଗତ ଓ ଅବାଞ୍ଛିତ ବିବେଚନା କରି ରାଣୀଙ୍କ ଗର୍ଭବାସକାଳୀନ ଆୟୁର୍ବେଦୀୟ ଓ ତନ୍ତ୍ରାନୁସାରୀ ଚିକିତ୍ସା ତଥା ପୁରୋହିତ କର୍ତ୍ତୃକ ଉପଯୁକ୍ତ ଜାତ-ସଂସ୍କାର ବିଧି ପାଳନ ଦ୍ୱାରା ରାଜପୁତ୍ରମାନଙ୍କୁ ଗୁଣବାନ୍ ଓ ବୁଦ୍ଧିମାନ୍ କରାଯାଇ ପାରିବ ବୋଲି କୌଟିଲ୍ୟ କହିଛନ୍ତି । (୪୯) ଏହା ବ୍ୟତୀତ, ରାଜାଙ୍କର ଦେହରକ୍ଷୀ, ପାକଶାଳାର ଗୋପନୀୟତା, ଯାନବାହନ ପରୀକ୍ଷା, ଦୁର୍ଗରେ ନିରାପତ୍ତା ରକ୍ଷାଦି ଉପରେ ସେ ପ୍ରାଧାନ୍ୟ ଆରୋପ କରିଛନ୍ତି ।

ରାଜାମାନଙ୍କର ଦିନଚର୍ଯ୍ୟା ଅର୍ଥଶାସ୍ତ୍ରର ଅନ୍ୟତମ ବିଶେଷତ୍ୱ । କୌଟିଲ୍ୟ ରାଜାଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରିବାକୁ ଯାଇ ଦିନକୁ ଆଠ ଭାଗ ଓ ରାତ୍ରିକୁ ଆଠ ଭାଗରେ ବିଭକ୍ତ କରି ପ୍ରତ୍ୟେକ ଭାଗର କାର୍ଯ୍ୟ ନିର୍ଣ୍ଣୟ କରିଛନ୍ତି । ତାଙ୍କ ମତରେ, ଦିବସର ପ୍ରଥମ ଭାଗରେ ରାଜ୍ୟରକ୍ଷା ଓ ଆୟବ୍ୟୟ ବିଚାର, ଦ୍ୱିତୀୟ ଭାଗରେ ପ୍ରଜାଙ୍କ ଆପତ୍ତି ଅଭିଯୋଗ ଶ୍ରବଣ, ତୃତୀୟ ଭାଗରେ ସ୍ନାନ, ବେଦାଧ୍ୟୟନ ଓ ଭୋଜନ ଏବଂ ତତ୍ପରେ କ୍ରମାନୁସାରେ ରାଜସ୍ୱ ଗ୍ରହଣ ଓ କର୍ମଚାରୀ ନିଯୁକ୍ତି, ମନ୍ତ୍ରୀଙ୍କ ସହିତ ଭାବ ଆଦାନପ୍ରଦାନ, ସ୍ୱଚ୍ଛନ୍ଦ ବିହାର, ସୈନ୍ୟ ରକ୍ଷଣାବେକ୍ଷଣ ତଥା ଦିନର ଅନ୍ତିମ ଭାଗରେ ସେନାପତିଙ୍କ ସହ ଯୁଦ୍ଧ ଓ ରାଜ୍ୟରକ୍ଷା ସମ୍ବନ୍ଧରେ ଆଲୋଚନା କରାଯିବା ଉଚିତ । ସେହିଭଳି ରାତ୍ରିର ପ୍ରଥମ ଭାଗରେ ଗୁପ୍ତଚରଙ୍କ ଠାରୁ ସମ୍ବାଦ ସଂଗ୍ରହ,

(୪୮) ତତ୍ରୈବ—୧।୧୫।୧୧

(୪୯) ତତ୍ରୈବ—୧।୧୭।୧୩

ଦ୍ୱିତୀୟ ଭାଗରେ ସ୍ନାନ, ଭୋଜନ ଓ ବେଦପାଠ, ତୃତୀୟରେ ନୃତ୍ୟସଙ୍ଗୀତାଦି ଆୟୋଜନପୂର୍ବକ ଚତୁର୍ଥ ଓ ପଞ୍ଚମ ଭାଗରେ ଶୟନ, ଷଷ୍ଠ ଭାଗରେ ଶଯ୍ୟାତ୍ୟାଗ ଓ କାର୍ଯ୍ୟ ବିଚାର, ସପ୍ତମ ଭାଗରେ ଗୁପ୍ତଚର ପ୍ରେରଣ ଓ ଅଷ୍ଟମ ଭାଗରେ (ସୂର୍ଯ୍ୟୋଦୟ ପରେ ମଣିଷର ଛାଇ ତାହାଠାରୁ ଲମ୍ବା ଥିବା ସମୟ ପର୍ଯ୍ୟନ୍ତ) ଋତ୍ୱିକ, ଆଚାର୍ଯ୍ୟ, ପୁରୋହିତ, ଚିକିତ୍ସକ, ଜ୍ୟୋତିଷୀଙ୍କ ସହ ପରାମର୍ଶ କରିବା ବିଧେୟ । (୫୦)

ଅର୍ଥଶାସ୍ତ୍ରରେ ଉଭୟ ଦୈବୀବିପତ୍ତି ଓ ମନୁଷ୍ୟକୃତ ବିପତ୍ତିର ପ୍ରତିକାର ଉପାୟ ମଧ୍ୟ ନିର୍ଦ୍ଦେଶିତ ହୋଇଅଛି । କୌଟିଲ୍ୟ ଅଗ୍ନି, ଜଳ, ବ୍ୟାଧି, ମୂଷିକ, ସର୍ପ, ହିଂସ୍ରଜନ୍ତୁ, ଦୁର୍ଭିକ୍ଷ ଓ ରାକ୍ଷସୀ ବିପତ୍ତିକୁ ଦୈବୀକଷ୍ଟ ରୂପେ ଗ୍ରହଣ କରି ସେସବୁର ପ୍ରତିକାର ପାଇଁ ମାନ୍ତ୍ରିକ, ପ୍ରାକୃତିକ, ଭୈଷଜିକ, ଶିକାର ଓ ବିଭିନ୍ନ ପୂଜାବିଧି ନିର୍ଦ୍ଦେଶ କରିଛନ୍ତି । ତାହା ସଙ୍ଗେ ସଙ୍ଗେ ଠକ, ଭଣ୍ଡ, ଚୋର, ତସ୍କର, ବ୍ୟଭିଚାରୀ; ଶୋଷଣକାରୀ, ବିଶ୍ୱାସଘାତକମାନଙ୍କ ପାଇଁ ବିଶେଷ ଦଣ୍ଡବିଧାନ ଲାଗି ପରାମର୍ଶ ଦେଇଛନ୍ତି । ତେବେ, ଅଦଣ୍ଡ୍ୟ ଯେପରି ଦଣ୍ଡିତ ନହୁଏ, ସେଥିପାଇଁ ପ୍ରକୃତ ପରୀକ୍ଷା ଶେଷରେ ହିଁ ଦଣ୍ଡ ଦିଆଯିବା ଉଚିତ ବୋଲି ସେ କହିଛନ୍ତି । ଅର୍ଥଶାସ୍ତ୍ରରେ ୧୭ପ୍ରକାର ଶାରୀରିକ ଦଣ୍ଡର ବର୍ଣ୍ଣନା ପ୍ରଦତ୍ତ ହୋଇଛି । (୫୧) ବ୍ରାହ୍ମଣ ଓ ଅନ୍ୟ ଜନଜାତି ପାଇଁ ମନୁଙ୍କ ଭଳି କୌଟିଲ୍ୟ ମଧ୍ୟ ଭିନ୍ନ ଦଣ୍ଡ ବ୍ୟବସ୍ଥା କରିଛନ୍ତି । ଏହା ବ୍ୟତୀତ, ଆକସ୍ମିକ ମୃତ୍ୟୁ ଲଭିବା ବ୍ୟକ୍ତି ସ୍ୱୟଂ ମୃତ ନା ଅନ୍ୟ ଦ୍ୱାରା ନିହତ ତାର ଯେଉଁ ସୂକ୍ଷ୍ମ ପରୀକ୍ଷା ଧାରା କୌଟିଲ୍ୟ ଦର୍ଶାଇଛନ୍ତି, ତାହା ଆଜିର ଅନୁସନ୍ଧାନକାରୀ ଆରକ୍ଷୀଙ୍କ ପାଇଁ ମଧ୍ୟ ଉପଯୋଗୀ ବୋଲି କୁହାଯାଇପାରେ । (୫୨)

---

(୫୦) ଋଗ୍ବେଦ— ୧।୧୪।୧୭

(୫୧) ଅଙ୍ଗୁଳି, ହସ୍ତ, ନାକ, ଜିହ୍ୱାଦି ଛେଦନ, ଶୂଳାରୋପଣ, ଅଗ୍ନିରେ ନିକ୍ଷେପଣ, ରଜ୍ଜୁ ବନ୍ଧନ, ଅନ୍ଧକାର ଗୃହରେ ଆବଦ୍ଧ, ଶସ୍ତ୍ରଦ୍ୱାରା ପ୍ରହାର, ନଖଦ୍ୱାରା ବିଦାରଣ ପ୍ରଭୃତି ।

(୫୨) ଶବକୁ ତୈଳ ବିଲେପିତ କଲେ ମୃତ୍ୟୁ ଆଘାତ ଜନିତ କି ବୁଝେଁ ଜାଣିହେବ, ଶବଦାହ ବେଳେ ହୃଦୟର ଅଂଶ ନ ପୋଡ଼ିଲେ ବିଷ ପ୍ରୟୋଗ ହୋଇଛି ବୋଲି ବୁଝିବାକୁ ହେବ । (ଅର୍ଥଶାସ୍ତ୍ର—୪।୭।୮୨) ।

ସର୍ବୋପରି, ଅର୍ଥଶାସ୍ତ୍ର ଯୁଦ୍ଧବିଜ୍ଞାନ ସମ୍ବନ୍ଧୀୟ ଏକ ଶ୍ରେଷ୍ଠ ଗ୍ରନ୍ଥ । କୌଟିଲ୍ୟ ଯୁଦ୍ଧପାଇଁ ଷଡ଼ବିଧ ବଳ (୫୩)ର ପ୍ରୟୋଜନୀୟତା ସ୍ୱୀକାର କରିଛନ୍ତି । ତାଙ୍କ ମତରେ, ଗ୍ରୀଷ୍ମ ଓ ଶୀତକାଳ ଯୁଦ୍ଧଯାତ୍ରା ପାଇଁ ପ୍ରକୃଷ୍ଟ ସମୟ । ସେ ଉଭୟ ଧର୍ମଯୁଦ୍ଧ ଓ କୂଟଯୁଦ୍ଧର ସମର୍ଥକ ଥିଲେ । ଏଣୁ ସେ ମକରବ୍ୟୂହ, ଶକଟବ୍ୟୂହ, ବଜ୍ରବ୍ୟୂହ, ସୂଚୀବ୍ୟୂହ, ଦଣ୍ଡବ୍ୟୂହ, ମଣ୍ଡଳବ୍ୟୂହ, ସଂହତବ୍ୟୂହ, ଅସଂହତବ୍ୟୂହ, ସର୍ପବ୍ୟୂହ, ଭୋଗବ୍ୟୂହ, ସର୍ବତୋଭଦ୍ର ବ୍ୟୂହାଦି ବ୍ୟୂହଯୁକ୍ତ ଏବଂ ମନ୍ତ୍ର, ଅଞ୍ଜନ, ସ୍ତମ୍ଭନ, ବଶୀକରଣ, ମୋହନ, ଉଚ୍ଚାଟନ, ବିଷାକ୍ତଜଳ, ବିଷାକ୍ତ ବାଷ୍ପ ପ୍ରୟୋଗାଦି ଷଡ଼ଯନ୍ତ୍ରମୂଳକ କୂଟଯୁଦ୍ଧର ସୂଚନା ଦେଇଛନ୍ତି । ତେବେ, ତାଙ୍କ ମତରେ କୂଟଯୁଦ୍ଧ କେବଳ ଅଧାର୍ମିକ ଶତ୍ରୁ ପ୍ରତି ପ୍ରଯୁଜ୍ୟ । ଶତ୍ରୁପକ୍ଷର ଅଧର୍ମଯୁଦ୍ଧର ପ୍ରତିକାର ନିମିତ୍ତ ବହୁ ଔଷଧ ଓ ଉପଚାରର ବିଷୟ ମଧ୍ୟ ସେ ଉଲ୍ଲେଖ କରିଛନ୍ତି । (୫୪) ଏହା ବ୍ୟତୀତ, ବିଭିନ୍ନ ସନ୍ଧି (ମିତ୍ର ସନ୍ଧି, ହିରଣ୍ୟ ସନ୍ଧି, ଭୂମିସନ୍ଧି, କର୍ମସନ୍ଧି ପ୍ରଭୃତି), ବିଜିତ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା ପଦ୍ଧତି ତଥା ବିଜିଗୀଷୁଙ୍କ ବ୍ୟବହାର ନିରୂପଣ ମଧ୍ୟ ଏହାର ପ୍ରତିପାଦ୍ୟ ବିଷୟ । ଧର୍ମଯୁଦ୍ଧରେ ପ୍ରାଣବଳି ଦେଲେ ଶୂରଗଣ କ୍ଷଣକାଳ ମଧ୍ୟରେ ତପସ୍ୟା ଓ ଦାନଫଳ ଠାରୁ ଉଚ୍ଚତର ପୁଣ୍ୟପ୍ରାପ୍ତ ହୋଇ ଅଭୀଷ୍ଟ ଲାଭ କରନ୍ତି ବୋଲି ଏଥିରେ ଉଲ୍ଲେଖ କରାଯାଇଛି । (୫୫)

ସ୍ଥୂଳତଃ, ଅର୍ଥଶାସ୍ତ୍ର ପ୍ରାଚୀନ ଶାସନତନ୍ତ୍ର ସମ୍ବନ୍ଧରେ ଏକ ଅଦ୍ୱିତୀୟ ଗ୍ରନ୍ଥ । ଆଧୁନିକ ଯୁଗର ମେକ୍ୟାଭେଲିଙ୍କ ଭଳି କୌଟିଲ୍ୟ ରାଜ୍ୟର ସୁରକ୍ଷା, ଅଭିବୃଦ୍ଧି, କୂଟନୀତି ଓ ଶାସନ ବ୍ୟବସ୍ଥାର ଦୃଢ଼ୀକରଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ରଚନା ପରବର୍ତ୍ତୀ କାଳରେ ବାତ୍ସାୟନ, ବିଷ୍ଣୁଶର୍ମା, କାଳିଦାସ, ବାଣଭଟ୍ଟ, ମାଘ, ଶ୍ରୀହର୍ଷ, ଭାରବି, ଦଣ୍ଡୀ, ହେମଚନ୍ଦ୍ର, ଚଣ୍ଡେଶ୍ୱର ପ୍ରମୁଖଙ୍କୁ ପ୍ରଭାବିତ କରିଛି । (୫୬)

---

(୫୩) ମୌଳବଳ (ଜନପଦୁରୁଷ ଧର ସୈନିକ ବୃତ୍ତିଧାରୀ), ଭୃତକବଳ (ବେତନ ଭୋଗୀ), ଶ୍ରେଣୀବଳ, ମିତ୍ରବଳ, ଅମିତ୍ରବଳ ଓ ଅଟବୀବଳ—ଏହା ଷଡ଼ବଳ ।

(୫୪) କର ଶର୍ମା, ଅର୍ଥଶାସ୍ତ୍ର ୧୪ଶ ଅଧିକରଣ, ୧ମ, ୨ୟ ଓ ୩ୟ ଅଧ୍ୟାୟ ।

(୫୫) ତତ୍ରୈବ—୧୦ମ ଅଧିକରଣ, ୧ମ, ୨ୟ ଓ ୩ୟ ଅଧ୍ୟାୟ ।

(୫୬) (କ) ଶର୍ମା, ପଣ୍ଡିତ ଅନନ୍ତରାମ (ଖ) କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର (ପୂର୍ବାର୍ଦ୍ଧ) ପ୍ରସ୍ତାବନା-ପୃ ୧' ଓ ୪୩ ।

ମୌର୍ଯ୍ୟ ଶାସନର ଅବସାନଠାରୁ ଗୁପ୍ତରାଜବଂଶର ଅଭ୍ୟୁତ୍ଥାନ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀକାଳୀନ ରାଜନୈତିକ ଅସ୍ଥିରତାପୂର୍ଣ୍ଣ ସମସ୍ୟାସଙ୍କୁଳ ଭାରତରେ ଶାସନ-ତାନ୍ତ୍ରିକ ଶୃଙ୍ଖଳା ଓ ସହ୍ରତି ପୁନଃସ୍ଥାପନା ଦିଗରେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ପଛକୁ ଯାଜ୍ଞବଲ୍କ୍ୟ ସହିତା (୪ର୍ଥ ଶତାବ୍ଦୀ) ଓ ବୌଦ୍ଧଜାତକ (୫ମ ଶତାବ୍ଦୀ)ର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ ।

## ଯାଜ୍ଞବଲ୍କ୍ୟ ସଂହିତା

ଯାଜ୍ଞବଲ୍କ୍ୟ ସହିତାରେ ମନୁ, ଅତ୍ରି, ଉଶନ, ଆପସ୍ତମ୍ବ, କାତ୍ୟାୟନ ଓ ପରାଶରଙ୍କ ଅବଦାନକୁ ସ୍ୱୀକୃତି ପ୍ରଦାନପୂର୍ବକ ତତ୍କାଳୀନ ସାମାଜିକ ପରିବେଶର ପୃଷ୍ଠଭୂମିରେ ବିଭିନ୍ନ ବିଧିନିର୍ଦ୍ଦେଶ କରାଯାଇଛି । ଏଥିରେ ରାଜାମାନଙ୍କୁ ଦୀର୍ଘଦର୍ଶୀ, ବିନମ୍ରୀ, ବୃଦ୍ଧସେବୀ, ସତ୍ୟବାଦୀ, ସଦ୍‌ବଂଶଜ, ପବିତ୍ର, ଧାର୍ମିକ, ଶାସ୍ତ୍ରବେତ୍ତା ଏବଂ କ୍ରୋଧ, ଲୋଭ ଓ ବ୍ୟସନଶୂନ୍ୟ ହେବା ଉଚିତ ବୋଲି କୁହାଯାଇଛି । ବେଦଜ୍ଞ, ଧର୍ମଶାସ୍ତ୍ରପ୍ରବୀଣ ଓ ସତ୍ୟନିଷ୍ଠ ବ୍ରାହ୍ମଣମାନଙ୍କୁ ସଭାସଦ୍ ନିଯୁକ୍ତ କରିବା; ବ୍ରାହ୍ମଣଙ୍କ ନିବାସ ନିମନ୍ତେ ପୁର ନିର୍ମାଣ କରିବା; ଉନ୍ନତଭୂମି, ଉଇହୁଙ୍କା, ତଡ଼ାଗ, ବୃକ୍ଷାଦି-ଦ୍ୱାରା ସୀମାନିର୍ଦ୍ଧାରଣ କରିବା; କୁଳ, ଶ୍ରେଣୀ, ଜାତି ଓ ଜାନପଦଗଣ ସ୍ୱଧର୍ମରୁ ଚ୍ୟୁତ ହେଲେ ଦଣ୍ଡବିଧାନ କରିବା; ପଣ୍ୟଦ୍ରବ୍ୟର ମୂଲ୍ୟ ଓ ଶୁଲ୍କ ନିରୂପଣ କରିବା ପ୍ରଭୃତି ଥିଲା ପ୍ରକୃତ ରାଜଧର୍ମ । (୫୭)

ଏହା ବ୍ୟତୀତ, ସାକ୍ଷ୍ୟଦାନ ନିୟମ, ନ୍ୟାୟବିଚାର ପଦ୍ଧତି ଓ ବିଭିନ୍ନ ଦଣ୍ଡ-ବ୍ୟବସ୍ଥା ବିଷୟରେ ମଧ୍ୟ ଏଥିରେ ପୂର୍ବାଚାର୍ଯ୍ୟମାନଙ୍କ ଭଳି ନିର୍ଦ୍ଦେଶ ରହିଛି । ଦ୍ରବ୍ୟ ଅପହରଣ, ନରହତ୍ୟା, ଗର୍ଭପାତ, ପରପୁରୁଷ ସହିତ ସ୍ତ୍ରୀର ସମ୍ଭାଷଣ, କନ୍ୟାହରଣ, ଅପ୍ରାକୃତିକ ସହବାସ, ରାଜ୍ୟଶାସନ ବା ନ୍ୟାୟବିଚାରରେ ପକ୍ଷପାତ କାର୍ଯ୍ୟ ପ୍ରଭୃତି ଏଥିରେ ଦଣ୍ଡନୀୟ ଅପରାଧ ରୂପେ ବର୍ଣ୍ଣିତ ।(୫୮)

---

(୫୬) Gairola, Vachaspati & Jha, Tarinis—Rajanitiratnakara of Sri Chandesvara (Chowkhamba Sanskrit Series, Varanasi, 1970) pp. 5-26

(୫୭) କର ଶର୍ମା, ଗୋପୀନାଥ—(ଅ) ଯାଜ୍ଞବଲ୍କ୍ୟ ସ୍ମୃତି ( ଧର୍ମଗ୍ରନ୍ଥ ଷ୍ଟୋର, କଟକ—୧୯୮୪ ମୁଦ୍ରଣ ) ୧ମ କାଣ୍ଡ, ୩୧୧ ଓ ୩୬୧ ଶ୍ଳୋକ ଏବଂ ୨ୟ କାଣ୍ଡ, ୨, ୩, ୧୫୪, ୧୮୮ ଓ ୨୬୪ ଶ୍ଳୋକ ।

(୫୮) ତତ୍ରୈବ—୩।୨୬୧ ଠାରୁ ୩୦୮ ଶ୍ଳୋକ ।

## ବୌଦ୍ଧଜାତକର ରାଜନୈତିକ ଆଦର୍ଶ

ତ୍ରିପିଟକ ତଥା ବୌଦ୍ଧଜାତକରୁ ମଧ୍ୟ ତତ୍କାଳୀନ ରାଜନୈତିକ ଆଦର୍ଶ ସମ୍ବନ୍ଧରେ କେତେକ ସୂଚନା ମିଳେ । 'ଶିବ ଜାତକ'ରୁ ଜଣାଯାଏ ଯେ ସେତେବେଳେ ରାଜ୍ୟଶାସନର ଆଦର୍ଶ ଥିଲା ଦଶବିଧ—ଦାନ, ଶୀଳ, ତ୍ୟାଗ, ଆର୍ଜବ, ମାର୍ଦ୍ଦବ, ତପ, ଅକ୍ରୋଧ, ଅହିଂସା, କ୍ଷାନ୍ତି ଓ ଅବିରୋଧନ । (୬୯) ଆଶ୍ରିତଜନଙ୍କ ଉଦ୍ଧାର କରିବା ଥିଲା ରାଜାର ପରମ କର୍ତ୍ତବ୍ୟ । (୭୦) ରାଜା ନିର୍ଭୀକ, ନିରପେକ୍ଷ ଓ ଜ୍ଞାନୀ ହେବା ଏବଂ ଦୋଷୀକୁ ଦଣ୍ଡଦେଇ ନିର୍ଦ୍ଦୋଷକୁ ଦଣ୍ଡ ନଦେବା ଥିଲା ବାଞ୍ଛିତ ରାଜଧର୍ମ । (୭୧) ମନ୍ତ୍ରୀ, ଗ୍ରାମାଧ୍ୟକ୍ଷ (ଗ୍ରାମଣୀ) ଓ ସଭାସଦମାନଙ୍କ ନିଯୁକ୍ତି ତଥା ଯୁବରାଜମାନଙ୍କ ଅଭିଷେକ ପୂର୍ବରୁ ସେମାନଙ୍କର ବୁଦ୍ଧି ଓ ବିଚକ୍ଷଣତା ପରୀକ୍ଷା ଅପରିହାର୍ଯ୍ୟ ଥିଲା । (୭୨) ପ୍ରଜାମାନଙ୍କର ସନ୍ତୋଷବିଧାନ ଓ ପ୍ରଜାଙ୍କ ପ୍ରତି ଉଚିତ ନ୍ୟାୟ ପ୍ରଦର୍ଶନ ଥିଲା ରାଜାର ଶ୍ରେଷ୍ଠ କର୍ତ୍ତବ୍ୟ । (୭୩)

ସେତେବେଳେ 'ବୁଦ୍ଧିବଳ'କୁ ଶ୍ରେଷ୍ଠ ବଳ ରୂପେ ସ୍ୱୀକାର କରାଯାଉଥିଲା ଏବଂ 'ଜାତିବଳ', 'ଧନବଳ' ଓ 'ଶାରୀରିକବଳ'କୁ କ୍ରମାନ୍ୱୟରେ ହୀନବଳ ବୋଲି ବୁଝାଯାଉଥିଲା । ଯେଉଁ ରାଜା ବୁଦ୍ଧିମାନ୍ ଓ ରାଜ୍ୟର ସ୍ୱାର୍ଥ ପ୍ରତି ସଚେତନ, ସେ ଶ୍ରେଷ୍ଠ ରାଜା ରୂପେ ବିବେଚିତ ହେଉଥିଲେ । ମଦ୍ୟ ପାନ, ଦ୍ୟୂତକ୍ରୀଡ଼ା, ମିଥ୍ୟା, ଘୃଣା ଓ କ୍ରୋଧ ପରିତ୍ୟାଗ କରି ଧର୍ମ ଓ ନ୍ୟାୟ ମାର୍ଗରେ ପ୍ରଜାପାଳନ ଉପରେ ପ୍ରାଧାନ୍ୟ ଦିଆଯାଉଥିଲା । ପୁରୋହିତ, ଜ୍ୟୋତିଷୀ, ଭବିଷ୍ୟବକ୍ତା, ବ୍ରାହ୍ମଣ ଓ ଗୁରୁଜନ ସମ୍ମାନାସ୍ପଦ ଥିଲେ । (୭୪)

ବିଭିନ୍ନ ଜାତକ କାହାଣୀରେ ତତ୍କାଳୀନ ବର୍ଣ୍ଣାଶ୍ରମ, ଜାତିପ୍ରଥା, ରାଜ୍ୟଶାସନ ବ୍ୟବସ୍ଥା, ଉତ୍ତରାଧିକାରୀ ନିଯୁକ୍ତି, ରାଜାମାନଙ୍କର ଜୀବନଚର୍ଯ୍ୟା, ପ୍ରଜାପ୍ରିୟତା,

---

(୬୯) ଦାସ, ଶ୍ରୀଧର (ଅ)—ଜାତକ କାହାଣୀ—୧ମ ଖଣ୍ଡ, (ଶିବ ଜାତକ) ( ଗ୍ରନ୍ଥ ମନ୍ଦିର, କଟକ, ୧୯୮୩ ମୁଦ୍ରଣ ) ପୃ. ୫୧

(୭୦) ତତ୍ରୈବ (ମହାକପି ଜାତକ) ପୃ ୪୯-୫୦

(୭୧) ତତ୍ରୈବ (କୁକ୍କୁର ଜାତକ) ପୃ ୫୯-୬୫

(୭୨) ଜାତକ କାହାଣୀ—୨ୟ ଖଣ୍ଡ (ଗାମଣିଚଣ୍ଡ ଜାତକ) ପୃ. ୪୫-୬୦

(୭୩) ଜାତକ କାହାଣୀ—୩ୟ ଖଣ୍ଡ (ଧର୍ମଦ୍ଧଜ ଜାତକ) ପୃ· ୫୭-୭୭

(୭୪) ଜାତକ କାହାଣୀ—୪ର୍ଥ ଖଣ୍ଡ (ତେଶକୁଣ ଜାତକ) ପୃ· ୬୧-୬୯

ନ୍ୟାୟପରାୟଣା, ଗ୍ରାମ୍ୟ ଶାସନ, ପ୍ରାଦେଶିକ ଶାସନ, ସାମ୍ରାଜ୍ୟ ଶାସନ, ନଗର ଶାସନ, ନ୍ୟାୟ ଶାସନ, କରଦାୟ, ଯୁଦ୍ଧଯାତ୍ରା ବୈଦେଶିକ ସମ୍ପର୍କ ପ୍ରଭୃତି ଅନେକ ବିଷୟ ଉଲ୍ଲେଖ ଅଛି । (୭୫)

ଜୁନାଗଡ଼ ଶିଳାଲେଖରୁ ଜଣାଯାଏ ଯେ ଆଲୋଚ୍ୟ କାଳରେ ଶକବଂଶୀୟ ରୁଦ୍ରଦମନ (ଖ୍ରୀ ୧୩୦-୧୫୦) କେବଳ ଥିଲେ ଶାନ୍ତିପ୍ରିୟ, ହତ୍ୟା ବିରୋଧୀ, ବିଜ୍ଞ-ଶାସ୍ତ୍ରଜ୍ଞ ଓ ସଙ୍ଗୀତ କଳାପ୍ରେମୀ । (୭୬) ଅନ୍ୟଥା, ସେତେବେଳେ ସାମନ୍ତ ପ୍ରଥାର ପ୍ରଭାବରେ ଗଣବିପ୍ଳବର ପୂର୍ବାଭାସ ମିଳିଥିଲା ଏବଂ ଭାରତରେ ରୋମ ସାମ୍ରାଜ୍ୟର ପତନକାଳୀନ ପରିବେଶ ସୃଷ୍ଟି ହୋଇଥିଲା । (୭୭) ତେବେ, ପରବର୍ତ୍ତୀ ଗୁପ୍ତ ଯୁଗରେ ଦେଶର ରାଜନୈତିକ ସ୍ଥିତି, ବିକାଶ ଓ ଆଦର୍ଶ ଉଲ୍ଲେଖଯୋଗ୍ୟ ସଫଳତା ହାସଲ କରିଥିଲା ।

## ଗୁପ୍ତଯୁଗୀୟ ଆଦର୍ଶ

ବ୍ୟବସ୍ଥାପକ ପରିଷଦ ମାଧ୍ୟମରେ ନୀତି ନିର୍ଦ୍ଧାରଣ ଥିଲା ମହାରାଜାଧିରାଜ ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ଶାସନ କାଳ (ଖ୍ରୀ ୩୨୦-୩୩୦)ର ବିଶେଷତ୍ୱ । ସମୁଦ୍ର ଗୁପ୍ତ (୩୩୦-୩୭୫) ବଙ୍ଗ, ପଞ୍ଜାବ, ଆସାମ ପ୍ରଭୃତି ଅଞ୍ଚଳ ନିଜ ଶାସନାଧୀନରେ ରଖିଥିଲେ ହେଁ କୋଶଳ, କୁରାଳ, କୃଷ୍ଣା, ଗୋଦାବରୀ, କାଞ୍ଚି, ନେଲୋର ପ୍ରଭୃତି ଅଞ୍ଚଳ ଜୟକରି ପୁଣି ମୁକ୍ତ କରିଦେଇଥିଲେ । ଯୁଦ୍ଧାଭିଯାନ କ୍ଷେତ୍ରରେ ସେ ଅଶୋକଙ୍କ ଆଦର୍ଶ ଅନୁସରଣ କରିଥିଲେ ସୁଦ୍ଧା ତାଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା ଜାତୀୟତା ଭାବର ପ୍ରସାର ଓ ଆର୍ଯ୍ୟାବର୍ତ୍ତର ରାଜନୈତିକ ଏକୀକରଣ । ଅଶ୍ୱମେଧ ଯଜ୍ଞ ସମ୍ପାଦନ କରି ସେ 'ଅଶ୍ୱମେଧ ପରାକ୍ରମ' ଉପାଧିରେ ଭୂଷିତ ହୋଇଥିଲେ । କେତେକ ଐତିହାସିକ ତାଙ୍କୁ 'ଭାରତୀୟ ନେପୋଲିୟନ' ନାମରେ ମଧ୍ୟ ଅଭିହିତ କରିଛନ୍ତି ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବା ବିକ୍ରମାଦିତ୍ୟ (୩୭୫-୪୧୪) ମାଳବ, ବାହ୍ଲିକ, ସୌରାଷ୍ଟ୍ର, କାଥିଆବାଡ଼ ପ୍ରଭୃତି ଜୟକରି 'ପରମ ଭାଗବତ' ଓ 'ମହାରାଜାଧିରାଜ'

---

(୭୫) Prasad—The State in Ancient India pp. 91-114.
(୭୬) Mahajan—Ancient India P. 338
(୭୭) Ghosh, N. N. — Early History of India, 1981 Print (The Indian Press (P) Ltd, Allahabad) pp 360-363

ଉପାଧିରେ ଭୂଷିତ ହୋଇଥିଲେ । ପାଟଳିପୁତ୍ର ଓ ଉଜ୍ଜୟିନୀ ଉଭୟସ୍ଥ ତାଙ୍କର ରାଜଧାନୀ ପ୍ରତିଷ୍ଠିତ ହୋଇଥିଲା । 'ନବରତ୍ନ' ନାମରେ ନଅଜଣ ବିଶିଷ୍ଟ ପଣ୍ଡିତ କାଳିଦାସ, ବରାହମିହିର, ଧନ୍ୱନ୍ତରୀ, ଘଟକର୍ପର, କ୍ଷପଣକ, ଶଙ୍କୁ, ଅମରସିଂହ, ବେତାଳଭଟ୍ଟ ଓ ବରରୁଚି ତାଙ୍କ ଦରବାର ମଣ୍ଡନ କରିଥିଲେ । ସେତେବେଳେ କଳା ଓ ସାହିତ୍ୟ ତଥା ସଂସ୍କୃତ ଭାଷାର ବିଶେଷ ଉନ୍ନତି ସାଧିତ ହୋଇଥିଲା ।

କାବ୍ୟ, ନାଟକ, ଜ୍ୟୋତିଷ, ଗଣିତ ପ୍ରତ୍ୟେକ କ୍ଷେତ୍ରରେ ଗୁପ୍ତଯୁଗ ଐତିହାସିକ ପ୍ରାଧାନ୍ୟ ପ୍ରତିଷ୍ଠା କରିଥିଲା । ଏହି ଯୁଗରେ କେବଳ ରାମାୟଣ ଓ ମହାଭାରତ ପରିମାର୍ଜିତ ହୋଇନଥିଲା ବା ଅଷ୍ଟାଦଶ ପୁରାଣର ଅଭ୍ୟୁଦୟ ଘଟିନଥିଲା, ତାହା ସଙ୍ଗେ ସଙ୍ଗେ ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର', ଭାସଙ୍କ 'ପ୍ରତିଜ୍ଞା ଯୌଗନ୍ଧରାୟଣ' ଓ 'ସ୍ୱପ୍ନବାସବଦତ୍ତ', ବିଶାଖ ଦତ୍ତଙ୍କ 'ମୁଦ୍ରାରାକ୍ଷସ' ଓ 'ଦେବୀଚନ୍ଦ୍ରଗୁପ୍ତମ୍' ଶୂଦ୍ରକଙ୍କ 'ମୃଚ୍ଛକଟିକ' ପ୍ରଭୃତି ବହୁ କୃତିରେ ତତ୍କାଳୀନ ଶାସନ ଓ ରାଜନୀତିର ଚିତ୍ର ପ୍ରତିଫଳିତ ହୋଇଥିଲା (୭୮) ଏସବୁ ଗ୍ରନ୍ଥ, ବିଭିନ୍ନ ମୋହର, ମୁଦ୍ରା ଓ ଶିଳାଲେଖରୁ ଜଣାଯାଏ, ସେ ସମୟରେ ପୂର୍ବ ପ୍ରଚଳିତ ଗ୍ରାମ, ବିଶ, ନଗର, ଶୁଳ୍କ, ଦୂତ, ସୀମା ଇତ୍ୟାଦି ବ୍ୟବସ୍ଥା ରହିଥିଲା ଏବଂ ସେନାପତି, ଭଣ୍ଡାରିକ, ଦଣ୍ଡନାୟକ, ନ୍ୟାୟିକ, ରକ୍ଷକ, ଭୋଜକ, ମନ୍ତ୍ରୀ, ଅମାତ୍ୟ ପ୍ରଭୃତି ପଦବୀ ପ୍ରଚଳିତ ଥିଲା । ରାଜାମାନଙ୍କୁ ପ୍ରଜାରକ୍ଷଣ ନିମନ୍ତେ ଦେବାନୁପ୍ରେରିତ ପୁରୁଷ ରୂପେ ଗ୍ରହଣ କରାଯାଉଥିଲା ଏବଂ ସେମାନେ ପରମ ଦେବତା, ପରମ ଭଟ୍ଟାରକ, ପରମେଶ୍ୱର, ପୃଥିବୀପାଳ, ଚକ୍ରବର୍ତ୍ତୀ, ସମ୍ରାଟ, ମହାରାଜାଧିରାଜ ଆଦି ଉପାଧିରେ ଭୂଷିତ ହେଉଥିଲେ । ଏହା ସତ୍ତ୍ୱେ, ପଞ୍ଜାବ, ରାଜପୁତାନା ଓ ରାଜସ୍ଥାନର କେତେକ ସ୍ଥାନରେ ସାଧାରଣତନ୍ତ୍ର ଶାସନ ପ୍ରଚଳିତ ଥିଲା । (୭୯)

---

(୭୮) କାଳିଦାସଙ୍କ ରଘୁବଂଶ (୧।୭, ୧୪, ୬୦; ୨।୧୬; ୩।୫, ୧୯-୩୫, ୪।୪୩), ମାଳବିକାଗ୍ନିମିତ୍ର ( ୧।୨-୪), ଅଭିଜ୍ଞାନ ଶାକୁନ୍ତଳମ୍ (୧ମ, ୨ୟ, ୪ର୍ଥ ଓ ୫ମ ଅଙ୍କ) ପ୍ରଭୃତି ଏବଂ ଅନ୍ୟାନ୍ୟ ଗ୍ରନ୍ଥର ବିଭିନ୍ନ ବିଷୟବସ୍ତୁ । ବିଶାଖଦତ୍ତଙ୍କୁ 'ରାଜନୈତିକ ନାଟ୍ୟକାର' (Dramatist of Politics) ଆଖ୍ୟା ଦିଆଯାଇଛି ।

(Bhasan—Wonder that was India—P. 443)

(୭୯) Mahajan—Ancient India—P. 440.

ସେତେବେଳେ ବେସାମରିକ ରାଜକର୍ମଚାରୀଙ୍କ ମଧ୍ୟରେ ଅଙ୍ଗରକ୍ଷୀ, କଞ୍ଚୁକୀ, ବିଦୂଷକ, ମାତଳ, ପ୍ରତିହାର, କୋଠପାଳ, କ୍ଷେତ୍ରପାଳ, ପ୍ରାନ୍ତପାଳ, ବନପାଳ, ଅଯୁକ୍ତକ, ବିନୟୁକ୍ତକ, ଚୌରଧାରଣୀକ ପ୍ରଭୃତି ରହୁଥିଲେ ଏବଂ ସାମରିକ କ୍ଷେତ୍ରରେ ସେନାପତି, ମହାସେନାପତି, ସନ୍ଧିବିଗ୍ରହ, ମହାସନ୍ଧିବିଗ୍ରହ, ରଣଭଣ୍ଡାରିକ ପ୍ରଭୃତି ନିଯୁକ୍ତ ଥିଲେ । ସେହି ଯୁଗର ରାଜାମାନଙ୍କ ଧର୍ମାନୁରାଗୀ, ବିନମ୍ରୀ, ସହିଷ୍ଣୁ ଓ ସେବା ପରାୟଣ କରିବା ଦିଗରେ ତତ୍କାଳୀନ ପୁରାଣକାର ଓ ନାଟ୍ୟକାରଗଣ ବଳିଷ୍ଠ ଭୂମିକା ନେଇଥିଲେ । ପରିଣାମତଃ, ଗୁପ୍ତଯୁଗରେ କୌଣସି ପ୍ରକାର ସାମ୍ପ୍ରଦାୟିକ ବିଦ୍ୱେଷ ନଥାଇ ବିଷ୍ଣୁ, ଶିବ, ସୂର୍ଯ୍ୟ, ଦୁର୍ଗା, ଲକ୍ଷ୍ମୀ, ପାର୍ବତୀ ପ୍ରଭୃତି ଦେବଦେବୀଙ୍କ ପୂଜା ପ୍ରତି ବ୍ୟାପକ ଆଗ୍ରହ ପ୍ରକାଶ ପାଇଥିଲା । ସଂକ୍ଷେପରେ ପ୍ରକାଶ କଲେ, ଭକ୍ତି-ବାଦର ପ୍ରସାର ଏବଂ ଧର୍ମ, ଦର୍ଶନ, ଇତିହାସ ଓ ପରଂପରାର ସମ୍ମିଶ୍ରଣରେ ଜାତୀୟତାବାଦର ପ୍ରତୀକ ସ୍ୱରୂପ ବ୍ରାହ୍ମଧର୍ମ ବା ହିନ୍ଦୁବାଦର ଉନ୍ମେଷ ଏହି ଯୁଗର ଶ୍ରେଷ୍ଠଦାନ । (୭୦)

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ପରେ ଏକ ଶତାବ୍ଦୀ ଧରି ଗୁପ୍ତବଂଶୀୟ ରାଜତ୍ୱ ପ୍ରଚଳିତ ଥିଲେ ହେଁ ହୁନ୍ ଆକ୍ରମଣ, ଗୌଡ଼ମାନଙ୍କ ପ୍ରତିପତ୍ତି ଓ କେତେକ ସାମନ୍ତ ରାଜାଙ୍କ ସ୍ୱାଧୀନତା ଘୋଷଣା ଫଳରେ ପ୍ରବଳ ରାଜନୈତିକ ଅସ୍ଥିରତା ଦେଖା ଦେଇଥିଲା । ସେହି ଶତାବ୍ଦୀବ୍ୟାପୀ ବିଶୃଙ୍ଖଳା ଓ ସମସ୍ୟାସଙ୍କୁଳ ପରିସ୍ଥିତିର ସମାଧାନ ଘଟିଥିଲା ହର୍ଷବର୍ଦ୍ଧନଙ୍କ ରାଜତ୍ୱରେ । ତାଙ୍କ ରାଜତ୍ୱ କାଳ ( ୬୦୬-୬୪୭)ରେ ଗୁପ୍ତଯୁଗୀୟ ଶାସନ ପରଂପରା ଅକ୍ଷୁର୍ଣ୍ଣ ରହିଥିଲା । ସେ ଜନକଲ୍ୟାଣ ସାଧନ ଲକ୍ଷ୍ୟରେ ମନ୍ତ୍ରିପରିଷଦର ପରାମର୍ଶରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ ଓ କଠୋର ଦଣ୍ଡବ୍ୟବସ୍ଥା ପ୍ରଚଳନ ଫଳରେ ଅପରାଧ ସଂଖ୍ୟା ହ୍ରାସ ପାଇଥିଲା । (୭୧)

ହର୍ଷବର୍ଦ୍ଧନଙ୍କ ତିରୋଧାନ କାଳଠାରୁ ମୁସଲମାନମାନଙ୍କ ଆଧିପତ୍ୟ ବିସ୍ତାର ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ସମୟ (୬୪୭-୧୬୨) ଥିଲା ପୁଣି ଏକ ରାଜନୈତିକ ଅସ୍ଥିରତାର

---

(୭୦) **Nehru : Jawaharlal : The Discovery of India, 1960 Print, (Asia Publishing House, India) P. 127**

(୭୧) ଗୁରୁତର ଅପରାଧ ପାଇଁ ହର୍ଷବର୍ଦ୍ଧନ ଅଙ୍ଗଛେଦନ ବ୍ୟବସ୍ଥା କରିଥିଲେ ଏବଂ ଫାଶୀଦଣ୍ଡ ପରିବର୍ତ୍ତେ ହତ୍ୟାକାରୀଙ୍କୁ ନିର୍ବାସନ ବା ଦେଶାନ୍ତର ଦଣ୍ଡ ଦେଉଥିଲେ ।

ଯୁଗ । ଅବଶ୍ୟ, ରାଜପୁତ ଶକ୍ତିର ଅଭ୍ୟୁଦୟ ଆଲୋଚ୍ୟ କାଳର ଉଲ୍ଲେଖଯୋଗ୍ୟ ଘଟଣା । ତେବେ, ରାଜପୁତ ଶାସନ କାଳ (୬୪୭-୧୨୦୦) ମଧ୍ୟ ଉତ୍ଥାନ ପତନ, ଆକ୍ରମଣ ପ୍ରତ୍ୟାକ୍ରମଣ ସଙ୍ଘର୍ଷଜନିତ ରାଜନୈତିକ ଅସ୍ଥିରତାର ଅନ୍ୟତମ ଅଧ୍ୟାୟ । ସେମାନଙ୍କର କାର୍ଯ୍ୟକଳାପ ପରୋକ୍ଷରେ ମୁସଲମାନ ଶକ୍ତିର ପ୍ରାଧାନ୍ୟ ପ୍ରତିଷ୍ଠା ଲାଗି ସହାୟକ ହୋଇଥିଲେ । ଏଥିପାଇଁ ପଣ୍ଡିତ ନେହେରୁ ଯଥାର୍ଥରେ ଅନୁଭବ କରିଥିଲେ ଯେ ପ୍ରଥମ ସହସ୍ରାବ୍ଦୀର ଶେଷବେଳକୁ ପ୍ରଭାତର ଶୁଭ୍ରାଲୋକ ଅପସାରିତ ହୋଇ ପ୍ରଖର ମଧ୍ୟାହ୍ନ ଅତୀତ ହୋଇଥିଲା ଏବଂ ସଭ୍ୟତାର ସାୟଂକାଳ ଉପସ୍ଥିତ ହେବାଭଳି ପ୍ରତୀତ ଜନ୍ମିଥିଲା । ସେ ସମୟରେ ବୌଦ୍ଧିକ, ଦାର୍ଶନିକ, ରାଜନୈତିକ ଚିନ୍ତା ଏବଂ ଯୁଦ୍ଧବିଦ୍ୟା, ବୈଦେଶିକ ସମ୍ପର୍କ ଆଦି ସମସ୍ତ କ୍ଷେତ୍ରରେ ଅଧଃପତନ ଘଟିଥିଲା । (୭୨)

ଏହା ସତ୍ତ୍ୱେ, ରାଜପୁତ ଯୁଗରେ ଭାରତୀୟ ରାଜନୀତିର ପରଂପରା ଅବଲୁପ୍ତ ହୋଇନଥିଲା । ବରଂ ରାଜ୍ୟଶାସନ ଓ ଆଞ୍ଚଳିକ ଶାସନର ସମନ୍ୱୟ ସ୍ଥାପନ ଏହି ଯୁଗର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ରାଜନୈତିକ ଅବଦାନ । ଏହି କାଳରେ ସଭାସମିତି ମାଧ୍ୟମରେ ଗ୍ରାମଶାସନ ପରିଚାଳିତ ହେଉଥିଲା ଏବଂ ରାଜାମାନେ କେବଳ ତତ୍ତ୍ୱାବଧାରକ ଥିଲେ । ସେତେବେଳେ ଗ୍ରାମ୍ୟ ସ୍ୱାୟତ୍ତଶାସନ ଥିଲା ଏକ କାର୍ଯ୍ୟକ୍ଷମ ବାସ୍ତବତା । (୭୩) ଏହା ବ୍ୟତୀତ, ଆର୍ଥିକ ବ୍ୟବଧାନ ମଧ୍ୟ ହ୍ରାସ ପାଉଥିଲା । ଉଚ୍ଚସ୍ତରୀୟ ବ୍ୟକ୍ତିର ହାରାହାରି ମାସିକ ଆୟ ଷୋହଳ ଟଙ୍କା ଥିଲାବେଳେ ନିମ୍ନ ସ୍ତରର ବ୍ୟକ୍ତି ପକ୍ଷରେ ତାହା ଆଠଟଙ୍କା ଥିଲା । ଉଦଣ୍ଡପୁର (ବିହାର), ମାଳବ, ବିକ୍ରମଶିଳା (ଭାଗଲପୁର), ପଣ୍ଡିଚେରୀ, କାଞ୍ଚି, ଅମରାବତୀ, ଦେବଗିରି ପ୍ରଭୃତି ସ୍ଥାନରେ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠିତ ହେବା ଦ୍ୱାରା ଶିକ୍ଷାର ବହୁଳ ପ୍ରସାର ଘଟିଥିଲା । ତେବେ, ସେ ସମୟରେ ବେଶ୍ୟା ଓ ଦାସତ୍ୱ ପ୍ରଥା ଅବ୍ୟାହତ ରହିଥିଲା ଏବଂ ଚତୁର୍ବିଧ ଜାତି ପ୍ରଥା ବହୁଧା ବିଭକ୍ତ ହୋଇ ନାନା ଜାତି ଓ ଉପଜାତି ସୃଷ୍ଟି ହୋଇଥିଲା । (୭୪)

---

(୭୨) Nehru : The Discovery of India—pp. 217 & 220

(୭୩) Shastri, Neelakanth : Administration in India—A Historical Review, 1967 Print (Bharatiya Bidya Bhavan, Bombay ) P. 27.

(୭୪) Mahajan : Ancient India—pp 668-669

ଏହାପରେ ଗୁପ୍ତରାଜାଙ୍କର ପରବର୍ତ୍ତୀ କାଳରେ ହର୍ଷବର୍ଦ୍ଧନ ତଥା ମୁଖରି, ପାଳ, ପଲ୍ଲବ ଓ ପ୍ରତିହାର ବଂଶୀୟ ଶାସକଙ୍କ ଅମଳରେ ଭାରତର ରାଜନୈତିକ ଅବସ୍ଥା ବହୁ ଉତ୍ଥାନ ପତନ ମଧ୍ୟରେ ଗତି କରିଛି । ଏହି ସମୟରେ ମାଘ, ଭାରବି, ଭର୍ତ୍ତୃହରି, ଦଣ୍ଡୀ, ଭଟ୍ଟୀ, ଭଟ୍ଟନାରାୟଣ, ଭବଭୂତି, ମୁରାରି, ରାଜଶେଖର ପ୍ରମୁଖ କାବ୍ୟକାର ଓ ନାଟ୍ୟକାର ଚନ୍ଦ୍ରାରାଜ୍ୟରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି କରିଥିଲେ । ବୃହସ୍ପତି ସୂତ୍ର, କାମନ୍ଦକୀ ନୀତିସାର, ପରାଶର ସଂହିତା, ନାରଦୀୟ ସୂତ୍ର, ଶୁକ୍ର ନୀତି-ସାର ପ୍ରଭୃତି ଗ୍ରନ୍ଥରୁ ଏହି ସମୟର ସ୍ଥୂଳ ରାଜନୈତିକ ତଥ୍ୟ ମିଳୁଅଛି । (୭୪ 'କ')

## ଗୁପ୍ତଯୁଗ ପରବର୍ତ୍ତୀ ରାଷ୍ଟ୍ରୀୟ ଶାସନ ବ୍ୟବସ୍ଥା

ଉପରୋକ୍ତ ଗ୍ରନ୍ଥଗୁଡ଼ିକ ଅନୁଧ୍ୟାନ କଲେ ଜଣାଯାଏ ଯେ ପରାଶର ସଂହିତାର କେବଳ ପ୍ରଥମ, ପଞ୍ଚମ ଓ ଅଷ୍ଟମ ଅଧ୍ୟାୟରେ ରାଜସ୍ୱ ଆଦାୟ, ରାଜକର୍ତ୍ତବ୍ୟ ପାଳନ, ଦଣ୍ଡଦାନ, ଧର୍ମପରିଷଦ ଗଠନ ଓ ମିଥ୍ୟାସାକ୍ଷ୍ୟ ଦାନର ଫଳାଫଳ ବର୍ଣ୍ଣିତ ହୋଇଛି । ଏହା ବ୍ୟତୀତ, ଏଥିରେ ଧର୍ମ, ଆଚାର ଓ ଶୌଚାଶୌଚ ବିଚାର ଉପରେ ହିଁ ପ୍ରାଧାନ୍ୟ ଦିଆଯାଇଛି । (୭୫) ନାରଦୀୟ ସୂତ୍ରରେ ମଧ୍ୟ ବିଶେଷ ମୌଳିକ ରାଜନୈତିକ ଉପାଦାନ ପରିଦୃଷ୍ଟ ହୁଏ ନାହିଁ । ଏହା ମନୁ ଓ ଗୌତମଙ୍କ ଆଦର୍ଶର ନୂତନ ରୂପାୟନ ମାତ୍ର । ତେବେ, ବାର୍ହସ୍ପତ୍ୟ ଶାସନ ବ୍ୟବସ୍ଥା ଏଥିରେ ଅନୁସୃତ ହୋଇ-ଅଛି । (୭୬) ବୃହସ୍ପତି ସୂତ୍ର, କାମନ୍ଦକୀ ନୀତିସାର ଓ ଶୁକ୍ର ନୀତିସାର ଗ୍ରନ୍ଥରେ ମନୁ କୌଟିଲ୍ୟଙ୍କ ପ୍ରଭାବ ଅନୁଭୂତ ହେଲେ ହେଁ ଏହି ଗ୍ରନ୍ଥତ୍ରୟରେ କେତେକ ମୌଳିକ ବିଚାର ପରିଲକ୍ଷିତ ହେବା ଦୃଷ୍ଟିରୁ ପ୍ରାଚୀନ ଭାରତୀୟ ରାଜନୈତିକ ତତ୍ତ୍ୱସମୂହର ଏକ ସାମଗ୍ରିକ ମୂଲ୍ୟାୟନ ନିମନ୍ତେ ଏଗୁଡ଼ିକର ଆଲୋଚନା ଆବଶ୍ୟକ ମନେହୁଏ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବୃହସ୍ପତିଙ୍କ ନାମ ଓ ପରଂପରା ଋଗ୍‌ବେଦରୁ ସୂଚିତ ହୁଏ ଏବଂ କୌଟିଲ୍ୟ ମଧ୍ୟ ବୃହସ୍ପତି ଓ ଶୁକ୍ରଙ୍କ ଅର୍ଥଶାସ୍ତ୍ରର ପ୍ରାରମ୍ଭରେ ପ୍ରଣତି

---

(୭୪) (କ) ଯାଜ୍ଞବଲ୍କ୍ୟ ସ୍ମୃତି ଆଧାରରେ, ବିଶ୍ୱରୂପାଙ୍କ 'ବାଲକ୍ରୀଡ଼ା' ଓ ମନୁସ୍ମୃତି ଉପରେ ମେଧାତିଥିଙ୍କ ସମାଲୋଚନା ଗ୍ରନ୍ଥ ଏହି ସମୟରେ ରଚିତ ।

(୭୫) ଧର, ଆର୍ତ୍ତତ୍ରାଣ; (ଅ) : ପରାଶର ସଂହିତା ( ଧର୍ମଗ୍ରନ୍ଥ ଷ୍ଟୋର, କଟକ, ୧୯୮୪ ମୁଦ୍ରଣ ) ୧।୬୮-୭୮, ୫।୪୬-୫୩ ଓ ୮।୩୦-୪୯ ।

(୭୬) d— The State in Ancient India—pp 246-247.

ଜ୍ଞାପନ କରିଛନ୍ତି । ଏଥିରୁ ପ୍ରମାଣିତ ହୁଏ ଯେ ପ୍ରାଚୀନ ଋଷି ବୃହସ୍ପତି ବା ଶୁକ୍ର ନିଜେ ତାଙ୍କର ଗ୍ରନ୍ଥ ପ୍ରଣୟନ କରି ନାହାନ୍ତି, ତାଙ୍କର ଆଦର୍ଶମାନ ପରବର୍ତ୍ତୀ କାଳରେ ହିଁ ଅନ୍ୟମାନଙ୍କ ଦ୍ୱାରା ଗ୍ରନ୍ଥରୂପ ଲାଭ କରିଅଛି । ପ୍ରାଚୀନ କାଳରେ ଲେଖକମାନେ ନିଜ ନିଜର ମତ ପ୍ରତିଷ୍ଠା କରିବାକୁ ଯାଇ ନିଜ ନାମ ଲୁକ୍କାୟିତ ରଖି ପ୍ରତିଷ୍ଠିତ ମୁନିଋଷିମାନଙ୍କ ନାମରେ ଗ୍ରନ୍ଥମାନ ପ୍ରଣୟନ କରୁଥିଲେ । (୭୭) ବୃହସ୍ପତି ସୂତ୍ର ମଧ୍ୟଯୁଗରେ (ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ) ପ୍ରଣୀତ ହେଲେହେଁ, ଏହାର ଲେଖକ ପ୍ରାଚୀନ ଋଷି ବୃହସ୍ପତିଙ୍କ ଆଦର୍ଶ ସମ୍ବନ୍ଧରେ ଅବହିତ ଥିବା ନିଃସନ୍ଦେହ, ଏଣୁ ପ୍ରାଚୀନ ବିଷୟବସ୍ତୁ ଦୃଷ୍ଟିରୁ ଏହା ମହତ୍ତ୍ୱପୂର୍ଣ୍ଣ । (୭୮)

କାମନ୍ଦକୀ ନୀତିସାର ମଧ୍ୟ ୭ମ ବା ୮ମ ଶତାବ୍ଦୀର ରଚନା । ଏହା ବୃହସ୍ପତି ସୂତ୍ରର ପରବର୍ତ୍ତୀ ଏବଂ ଏଥିରେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରର କେତେକ ଅଂଶ କାବ୍ୟ ଆକାରରେ ପରିବେଷିତ । (୭୯) ପ୍ରାଚୀନ ଋଷି ଶୁକ୍ରଙ୍କ ଆଦର୍ଶ ସାଙ୍ଗକୁ ବାରୁଦର ବ୍ୟବହାର ଭଳି ସମସାମୟିକ କେତେକ ବିଷୟବସ୍ତୁର ସଂଯୋଗରେ ଶୁକ୍ର ନୀତିସାର ପ୍ରଣୀତ । ଏହା ଏକ ନିର୍ଦ୍ଦିଷ୍ଟ ସମୟର ରଚନା ନୁହେଁ; ତେବେ ଏହା ୯ମ ରୁ ୧୧ଶ ଶତାବ୍ଦୀ ମଧ୍ୟରେ ପ୍ରଣୀତ ହୋଇଥିବା ଜଣାଯାଏ । (୮୦)

**ବାର୍ହସ୍ପତ୍ୟ ଶାସନ ବ୍ୟବସ୍ଥା**—ଧର୍ମ, ଅର୍ଥ, କାମ ଓ ମୋକ୍ଷ ଚତୁର୍ବର୍ଗ ମଧ୍ୟରୁ ବାର୍ହସ୍ପତ୍ୟ ନୀତିର ଉଦ୍ଦେଶ୍ୟ ଥିଲା ପ୍ରଥମ ତ୍ରିବର୍ଗର ସିଦ୍ଧି, କାରଣ ତା ଉପରେ ହିଁ ଚତୁର୍ଥ ବର୍ଗର ସିଦ୍ଧି ନିର୍ଭରଶୀଳ । ଏହା ଅନୁଯାୟୀ ରାଜ୍ୟ ଓ ସମାଜର ଉଦ୍ଦେଶ୍ୟ ଅଭିନ୍ନ ଏବଂ ଆଦର୍ଶ ଜୀବନର ସିଦ୍ଧିହିଁ ମୂଳ ଲକ୍ଷ୍ୟ । ବୃହସ୍ପତିଙ୍କ ଆଦର୍ଶର ବିଶେଷତ୍ୱ

(୭୭) (a) Ayengar, K. V. Rangaswami : Brihaspati Smriti (Gaekewad Oriental series, Baroda, 1941) Introduction—P. 79

(b) Banerjee, Dr. Jitendranath : The development of Hindi Iconography ( Calcutta, 1965) pp. 13-18

(୭୮) (a) ବାଜପେୟୀ, ଡ଼: ରାଘବେନ୍ଦ୍ର : ବାର୍ହସ୍ପତ୍ୟ ରାଜ୍ୟ ବ୍ୟବସ୍ଥା (ହିନ୍ଦୀ) (ଚଉଖମ୍ବା ବିଦ୍ୟା ଭବନ, ବାରାଣସୀ, ୧୯୬୬) ପୃ-୧୫

(b) Prasad : The State in Ancient India—P. 247

(୭୯) Ibid—(b) - P. 213

(୮୦) Pant : History of Western Political Thought, Supplement to Vol. II pp. 510-511

ଏହି ଯେ— (୧) ସେ ଧର୍ମଠାରୁ ରାଜନୀତିକୁ ପୃଥକ କରି ଏହାକୁ ଏକ ସ୍ୱତନ୍ତ୍ର ଶାଖା ରୂପେ ଗ୍ରହଣ କରିଥିଲେ, (୨) ପ୍ରଶାସନ କ୍ଷେତ୍ରରେ ଧର୍ମୀୟ ବିଗ୍ରହକୁ ଗୌଣ କରି ଦଣ୍ଡନୀତି ଉପରେ ପ୍ରାଧାନ୍ୟ ଦେଇଥିଲେ ଏବଂ (୩) ବୈଜ୍ଞାନିକ ପ୍ରଣାଳୀରେ ଅର୍ଥନୀତିର ପରିବେକ୍ଷଣ କରିଥିଲେ । ଧର୍ମକୁ ଅସ୍ୱୀକାର କରିଥିବା ଯୋଗୁଁ କେତେକ ସମାଲୋଚକ ତାଙ୍କୁ 'ଲୋକାୟତ ଚାର୍ବାକ' ଆଖ୍ୟା ମଧ୍ୟ ଦେଇଛନ୍ତି । (୮୧)

ବୃହସ୍ପତି ନୀତିଶାସ୍ତ୍ରରେ ରାଜ୍ୟଯୁଗ ଓ ଅରାଜ୍ୟଯୁଗର ପରିକଳ୍ପନା କରାଯାଇ ରାଜ୍ୟବ୍ୟବସ୍ଥାର ପୂର୍ବବର୍ତ୍ତୀ କାଳକୁ ଅରାଜକତା ଯୁଗ କୁହାଯାଇଛି । ଯୁଗଭେଦ କ୍ରମେ ଏଥିରେ ଉଲ୍ଲେଖ ଅଛି ଯେ କୃତଯୁଗରେ ସାମାଜିକତାକୁ ଭିତ୍ତିକରି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପ୍ରଚଳିତ ଥିଲା । ପରବର୍ତ୍ତୀ ତ୍ରେତା ଓ ଦ୍ୱାପର ଯୁଗରେ 'ମାତ୍ସ୍ୟନ୍ୟାୟ' ଓ ଶକ୍ତିପ୍ରାବଲ୍ୟ ଦେଖାଦେଇଥିଲା । [ପାଳବଂଶୀୟ ରାଜା ଗୋପାଳଙ୍କ (ଖ୍ରୀ: ୭୫୦) ପର୍ଯ୍ୟନ୍ତ 'ମାତ୍ସ୍ୟନ୍ୟାୟ' ପ୍ରଚଳିତ ଥିଲା, ଗୋପାଳଙ୍କ ଦ୍ୱାରା ଏହା ଲୋପ ପାଇଥିଲା । ] ଦଣ୍ଡଯୋଗ୍ୟ ବ୍ୟକ୍ତିକୁ ଦଣ୍ଡ ନଦେବା ଓ ଅଦଣ୍ଡନୀୟକୁ ଦଣ୍ଡ ଦେବା ଥିଲା 'ମାତ୍ସ୍ୟନ୍ୟାୟ' । (୮୨)

ଯେପରି ମାନବ ଶରୀରର ସ୍ଥିତି ସକାଶେ ଜଳ, ବାୟୁ, ଅଗ୍ନି, ପୃଥିବୀ ଓ ଆକାଶ ଏ ପଞ୍ଚତତ୍ତ୍ୱ ଅପରିହାର୍ଯ୍ୟ, ସେହିପରି ରାଜ୍ୟର ସ୍ଥିତି ପାଇଁ ଅମାତ୍ୟ, ପୃଥିବୀ-ପତି, ରାଷ୍ଟ୍ର, ଦୁର୍ଗ, କୋଷ, ଦଣ୍ଡ ଓ ମିତ୍ର ସପ୍ତପ୍ରକୃତିର ପ୍ରୟୋଜନୀୟତା ବୃହସ୍ପତି ସ୍ୱୀକାର କରିଛନ୍ତି । ଅର୍ଥଶାସ୍ତ୍ର ଓ କାମନ୍ଦକୀ ନୀତିସାରରେ ମଧ୍ୟ ଅନୁରୂପ ଚିନ୍ତାଧାରା ପରିଦୃଷ୍ଟ ହୁଏ । (୮୩)

---

(୮୧) ବାଜପେୟୀ : ବାର୍ହସ୍ପତ୍ୟ ରାଜ୍ୟ ବ୍ୟବସ୍ଥା - ଆମୁଖ—ପୃ. ୨୩-୨୪

(୮୨) (କ) ତତ୍ରୈବ—୧ମ ଅଧ୍ୟାୟ ପୃ. ୧୩

(ଖ) ବୃହସ୍ପତି ସ୍ମୃତି—ବ୍ୟାବହାରିକ କାଣ୍ଡ-୧୧୧-୪ ଓ ସଂସ୍କାର କାଣ୍ଡ—୧।୮ ଓ ୭।୮ ।

(୮୩) (କ) ଅମାତ୍ୟ ରାଷ୍ଟ୍ର ଦୁର୍ଗାଣି କୋଷୋ ଦଣ୍ଡଶ୍ଚ ପଞ୍ଚମଃ

ଏତାଃ ପଞ୍ଚ ତଥା ମିତ୍ରଂ ସପ୍ତମଃ ପୃଥିବୀପତିଃ

ସପ୍ତପ୍ରକୃତିକମ୍ ରାଜ୍ୟମିତ୍ୟୁବାଚ ବୃହସ୍ପତିଃ । (ବୃ: ବ୍ୟା: କା: ୮।୪-୫)

(ଖ) ସ୍ୱାମ୍ୟମାତ୍ୟ ଜନପଦ ଦୁର୍ଗ କୋଷ ଦଣ୍ଡ ମିତ୍ରାଣି ପ୍ରକୃତୟଃ ।

( ଅର୍ଥଶାସ୍ତ୍ର—୬।୧।୧୬।୧)

(ଗ) ସପ୍ତ ପ୍ରକୃତିକମ୍ ରାଜ୍ୟମିତ୍ୟୁବାଚ ବୃହସ୍ପତି ।

(କାମନ୍ଦକୀ ନୀତିସାର —୮।୫)

ଆଲୋଚ୍ୟ କାଳରେ ରାଜ୍ୟ ବ୍ୟବସ୍ଥାରେ ରାଜା ପ୍ରଧାନ ସ୍ଥାନ ଅଧିକାର କରୁଥିଲେ । ତତ୍ପରେ ମନ୍ତ୍ରୀ ବା ମନ୍ତ୍ରଣାଦାତା । ଅମର କୋଷ ଅନୁଯାୟୀ ମନ୍ତ୍ରୀ ଥିଲେ ଦ୍ୱିବିଧ—କର୍ମସଚିବ ଓ ଧୀସଚିବ । ମୋନିୟର ଉଇଲିୟମସ୍‌ଙ୍କ ପରିଭାଷା (ପୃ· ୮୭୯) ଅନୁସାରେ ମନୁଙ୍କ ସମୟ ପର୍ଯ୍ୟନ୍ତ ରାଷ୍ଟ୍ର ଶବ୍ଦ ରାଜ୍ୟ, ସାମ୍ରାଜ୍ୟ, କ୍ଷେତ୍ର, ଦେଶ, ଜିଲ୍ଲା, ଜନତା ତଥା ପ୍ରଜାଙ୍କ ଅର୍ଥରେ ପ୍ରୟୋଗ କରାହେଉଥିଲା । ମନୁସ୍ମୃତି, ମହାଭାରତ, ଅମର କୋଷ, ଅର୍ଥଶାସ୍ତ୍ର ସମସ୍ତ ଗ୍ରନ୍ଥରେ ଦୁର୍ଗର ପ୍ରାଧାନ୍ୟ ସ୍ୱୀକୃତ । ରାଜକୋଷର ଆବଶ୍ୟକତା ସମ୍ବନ୍ଧରେ ମତଦ୍ୱୈଧ ନଥିଲା । ଅପରାଧୀକୁ ଦଣ୍ଡଦେବା ରାଜାର ଏକ ବିଶେଷ ଅଧିକାର ଥିଲା । ବିଜିଗୀଷୁ ଭାବନା ଓ ଶତ୍ରୁମିତ୍ର ଭେଦଭାବ ବିଷୟରେ ବୃହସ୍ପତି ଓ କୌଟିଲ୍ୟ ଏକମତ । ବୃହସ୍ପତିଙ୍କ ମତାନୁସାରେ ଦଣ୍ଡ ଅଭାବରେ ପବିତ୍ର ମନୁଷ୍ୟ ଅକଳ୍ପନୀୟ । ବୃହସ୍ପତି, ତୈତିରୀୟ ବ୍ରାହ୍ମଣ ପରଂପରାଗତ ଭୋଜ୍ୟ, ସ୍ୱରାଜ୍ୟ, ବୈରାଜ୍ୟ, ସାମ୍ରାଜ୍ୟାଦି ଭୌଗୋଳିକ ବର୍ଗୀକରଣକୁ ସ୍ୱୀକାର ନକରି, କେବଳ ଚତୁର୍ବିଧ ରାଜ୍ୟ ( ଭୋଜ୍ୟ, ବୈରାଜ୍ୟ, ସାମ୍ରାଜ୍ୟ ଓ ରାଜ୍ୟ ) ପରିକଳ୍ପନା କରିଥିଲେ । (୮୪)

ବୃହସ୍ପତି ରାଜତନ୍ତ୍ରର ପୃଷ୍ଠପୋଷକ ଥିଲେ ମଧ୍ୟ ଗଣତାନ୍ତ୍ରିକ ପରଂପରା ଦ୍ୱାରା ପ୍ରଭାବିତ ହୋଇଥିଲେ । ତେଣୁ ସେ ରାଜପଦର ମହତ୍ତ୍ୱ ସହିତ ରାଜକର୍ତ୍ତବ୍ୟ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ବୃହସ୍ପତି 'ରାଜା' ଶବ୍ଦର ବ୍ୟୁତ୍ପତ୍ତି 'ରାଜ୍' ଶବ୍ଦରୁ ନୁହଁ, 'ରାନ୍' ( ପ୍ରସନ୍ନ କରିବା )ରୁ ବୋଲି ଧରି ନେଇଥିଲେ । ତାଙ୍କ ମତରେ, ପରଚକ୍ରାକ୍ରମ, ବଳବାନର ଦୌରାତ୍ମ୍ୟ ଓ ଚୋରର ଭୟରୁ ରକ୍ଷା କରିବା ରାଜାଙ୍କ ପ୍ରଜାପାଳନର ତ୍ରିବିଧ ଲକ୍ଷ୍ୟ । (୮୫)

ବୃହସ୍ପତି ରାଜାଙ୍କର ଦୈନନ୍ଦିନ କାର୍ଯ୍ୟକଳାପ ନିରୂପଣ କ୍ଷେତ୍ରରେ କୌଟିଲ୍ୟଙ୍କ ଠାରୁ ଭିନ୍ନ ମତ ପୋଷଣ କରିଥିବା ସ୍ଥଳେ ବୃହସ୍ପତି ଦିବସକୁ ୫୨ ନାଡ଼ିକାରେ ଭାଗ କରି ତଦନୁଯାୟୀ ରାଜାଙ୍କ ଲାଗି ନିମ୍ନ କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ କରିଛନ୍ତି ।

୧ । ସାମାୟିକ କାଳରେ ଆସ୍ଥାନ ମଣ୍ଡପ ମଣ୍ଡନ —୫ ନାଡ଼ିକା
( ବୃ : ବ୍ୟା : କା : ୧।୫୧ )

୨ । ଇଷ୍ଟଦେବତା ସ୍ମରଣ —୫ ନାଡ଼ିକା ( ,, ୧।୫୧ )

---

(୮୪) ବାଜପେୟୀ : ବାର୍ହସ୍ପତ୍ୟ ରାଜ୍ୟ ବ୍ୟବସ୍ଥା—ପୃ ୨୦-୨୭
(୮୫) ବୃ : ବ୍ୟା : କା : ୧।୩୧ ଓ ୧।୬୭

୩ । ଦୈନନ୍ଦିନ ବିଧି ଓ ବ୍ୟବହାର —୧୦ ନାଡ଼ିକା (ବୃ. ବ୍ୟା. କା. ୧୬୦)
୪ । ସ୍ନାନ —୫ ,, ( ,, ୧୬୧)
୫ । ଭୋଜନ —୩ ,, ( ,, ୧୬୨)
୬ । ମିତ୍ରାଳାପ —୫ ,, ( ,, ୧୬୩)
୭ । ସନ୍ଧ୍ୟା (ତର୍ପଣ) —୨ ,, ( ,, ୧୬୩)
୮ । ନୃତ୍ୟ ମନୋରଞ୍ଜନ —୭ ,, ( ,, ୧୬୪)
୯ । ରାତ୍ରି ଭୋଜନ ଓ ମୈଥୁନ —୭ ,, ( ,, ୧୬୫)
୧୦ । ଶୟନ —୭ ,, ( ,, ୧୬୬)

ସାମରିକ ଆବଶ୍ୟକତା ଦୃଷ୍ଟିରୁ ବଳବାନ୍ ସନ୍ତାନ ଉତ୍ପାଦନ ନିମିତ୍ତ ବହୁପତ୍ନୀ ପ୍ରଥାର ଅପରିହାର୍ଯ୍ୟତା ସ୍ୱୀକାର କରି ବୃହସ୍ପତି ରାଜାମାନେ ଛଅଟି ରାଣୀ ଗ୍ରହଣ କରିବା ସପକ୍ଷରେ ମତ ଦେଇଛନ୍ତି । ଏହା ସତ୍ତ୍ୱେ, ସେ ରାଜାମାନଙ୍କୁ ଅତ୍ୟଧିକ ସ୍ତ୍ରୀ ସଙ୍ଗମରୁ ନିବୃତ୍ତ ରହିବା ଲାଗି ସଚେତନ କରାଇଛନ୍ତି । (୮୬) କାଳିଦାସଙ୍କ ରଚନାରୁ ମଧ୍ୟ ବହୁପତ୍ନୀ ଗ୍ରହଣ ପରଂପରାର ସୂଚନା ମିଳେ । (୮୭)

ମନୁ, ପାଣିନୀ ଓ କୌଟିଲ୍ୟଙ୍କ ଭଳି ବୃହସ୍ପତି ମଧ୍ୟ ସପ୍ତାଙ୍ଗ ରାଜତନ୍ତ୍ରର ସମର୍ଥକ ଥିଲେ ଓ ମନ୍ତ୍ରୀମାନେ ଉତ୍ତମ ବଂଶ ପ୍ରଭବ ଓ କୁଳୀନ ହେବା ଉଚିତ ବୋଲି କହୁଥିଲେ । ତାଙ୍କ ମତରେ, ରାଜା ଶରୀର, ମନ୍ତ୍ରୀ ନେତ୍ର ଓ ପୁରୋହିତ ରାଜାଙ୍କର ପିତାମାତା ତୁଲ୍ୟ ଅଟନ୍ତି । (୮୮) ଅବଶ୍ୟ, ଶୁକ୍ରନୀତିରେ ଜାତି ଓ କୁଳ ଉପରେ ଗୁରୁତ୍ୱ ଦିଆ ନ ଯାଇ ମନ୍ତ୍ରୀମାନେ ସର୍ବବିଦ୍ୟାକୁଶଳୀ ଓ ଶ୍ରେଷ୍ଠ ମନ୍ତ୍ରଣାଦାତା ହେବା ଆବଶ୍ୟକ ବୋଲି ଉଲ୍ଲେଖ କରାଯାଇଛି । (୮୯) ଯେହେତୁ ଜଣେ ମନ୍ତ୍ରୀଙ୍କ ପରାମର୍ଶ ମହତ୍ତ୍ୱପୂର୍ଣ୍ଣ ବିଷୟରେ ନିଷ୍ପତ୍ତି ନେବା ପାଇଁ ଯଥେଷ୍ଟ ନୁହେଁ ଏବଂ ଦୁଇଜଣ ହେଲେ ମିଳିମିଶି କ୍ଷତି ପହଞ୍ଚାଇ ପାରନ୍ତି, ବୃହସ୍ପତି ୩ ଜଣ ବା ୫ ଜଣଙ୍କ ଠାରୁ ମନ୍ତ୍ରଣା ଗ୍ରହଣ କରାଯିବାର ପକ୍ଷପାତୀ । ତେବେ, ସେ ମନ୍ତ୍ରିପରିଷଦରେ ୧୬ ଜଣ ସଦସ୍ୟଙ୍କ ନିଯୁକ୍ତି ସପକ୍ଷରେ ମତ ଦେଇଛନ୍ତି । ଏ କ୍ଷେତ୍ରରେ ମନୁ ୧୨ ଜଣ, ଶୁକ୍ର ଓ ଉଶନ

---

(୮୬) ବାଜପେୟୀ : ବାର୍ହସ୍ପତ୍ୟ ରାଜ୍ୟ ବ୍ୟବସ୍ଥା—ପୃ. ୭୫-୭୬
(୮୭) କାଳିଦାସ : ମାଳବିକାଗ୍ନିମିତ୍ର—୪ର୍ଥ ଅଙ୍କ—୧୪ ଶ୍ଳୋକ
(୮୮) ବୃ : ବ୍ୟା : କା : ୨୧୬୦-୬୧
(୮୯) ଶୁକ୍ରନୀତି—୨।୨ ଓ ୨।୫୪ ୫୬

୨୦ ଜଣ ଏବଂ 'ନୀତି ବାକ୍ୟାମୃତ'ର ପ୍ରଣେତା ସୋମଦେବ ସୂରୀ ୭ ଜଣଙ୍କର ଆବଶ୍ୟକତା ଉପଲବ୍ଧି କରିଛନ୍ତି ।

ବୃହସ୍ପତି ମାତୃକଳ୍ପ ରାଜ୍ୟଭାବନା ( ଗର୍ଭବତୀ ସ୍ତ୍ରୀ ଯେପରି ଗର୍ଭସ୍ଥ ଶିଶୁର ମଙ୍ଗଳ ପାଇଁ କେତେକ ଆକାଂକ୍ଷିତ କାର୍ଯ୍ୟ ଓ ପଦାର୍ଥ ତ୍ୟାଗ କରିଥାଏ) ଉପରେ ଗୁରୁତ୍ୱ ଦେଇ ରାଜା ପ୍ରଜାଙ୍କ ସୁଖ ସମୃଦ୍ଧି ସକାଶେ କେତେକ ସ୍ୱାର୍ଥ ତ୍ୟାଗ କରିବା ଉଚିତ ବୋଲି ମତ ବ୍ୟକ୍ତ କରିଥିଲେ । ଏହି ମାତୃଭାବାତ୍ମକ ରାଜ୍ୟ ପରିକଳ୍ପନା ମହାଭାରତ ଶାନ୍ତିପର୍ବରେ ମଧ୍ୟ ସୂଚିତ ହୋଇଛି । (୯୦) ତେବେ, ବୃହସ୍ପତିଙ୍କ 'ଦୂଷୟେତ୍ ନ ପ୍ରଜାତି ଜୀବସ୍ତୁ' ( ପ୍ରଜାତି ଓ ଜୀବଜଗତକୁ ଦୂଷିତ କରିବା ନିଷେଧ ) ଆଦର୍ଶରୁ କଲ୍ୟାଣବ୍ରତୀ ରାଷ୍ଟ୍ରାଦର୍ଶର ଆଭାସ ମିଳେ । (୯୧)

ଭୂମିର ମର୍ଯ୍ୟାଦା କ୍ଷୁଣ୍ଣ ହେଲେ ରାଜ୍ୟ ଅରଣ୍ୟରେ ପରିଣତ ହେବା ଅବଶ୍ୟମ୍ଭାବୀ । ଏଣୁ ବୃହସ୍ପତି ହୃତ ପ୍ରାକୃତିକ ସୀମା ନିର୍ଦ୍ଧାରଣ ଓ ସୀମା-ସୁରକ୍ଷା ଉପରେ ଗୁରୁତ୍ୱ ଦେଇ କଡ଼ା ପ୍ରହରୀ ଓ ଗୁପ୍ତଚର ଦ୍ୱାରା ଶତ୍ରୁସ୍ଥିତିର ସୂଚନା ସଂଗ୍ରହ ଉପରେ ପ୍ରାଧାନ୍ୟ ଆରୋପ କରିଛି । ସାମ, ଦାନ, ଦଣ୍ଡ, ଭେଦ ନୀତିର ଅତ୍ୟଧିକ ପ୍ରୟୋଗ ନିଷିଦ୍ଧ କରାଯିବା ଏ ଗ୍ରନ୍ଥର ଅନ୍ୟତମ ବିଶେଷତ୍ୱ । (୯୨) ବିଭିନ୍ନ ବିଭାଗ ମଧ୍ୟରେ କୋଷ, ସୈନ୍ୟ, ଚର, ନ୍ୟାୟ ଓ ବୈଦେଶିକ ବିଭାଗ ଗୁରୁତ୍ୱପୂର୍ଣ୍ଣ ବୋଲି କୁହାଯାଇଛି । କୌଟିଲ୍ୟଙ୍କ 'କୋଷାଧ୍ୟକ୍ଷ' ପରିବର୍ତ୍ତେ ବୃହସ୍ପତି 'ଧନାଧ୍ୟକ୍ଷ' ଶବ୍ଦ ବ୍ୟବହାର କରି ରାଜକୋଷ ପାଇଁ ନିର୍ଦ୍ଦିଷ୍ଟ ଧନ ଓ ନିର୍ଦ୍ଦିଷ୍ଟ ଅବଶେଷ ଧନର ସୂଚନା ଦେଇଛନ୍ତି । ଅର୍ଥନୀତି ବ୍ୟାଖ୍ୟାନ କ୍ଷେତ୍ରରେ ବୃହସ୍ପତି 'ଅର୍ଥଶାସ୍ତ୍ର' ଓ 'ଶୁକ୍ରନୀତି' ଠାରୁ ଭିନ୍ନ ମତ ପୋଷଣ କରିଛନ୍ତି । ବୃହସ୍ପତିଙ୍କ ରାଜସ୍ୱର ପରିକଳ୍ପନା ନିମ୍ନରେ ପ୍ରଦତ୍ତ ସାରଣୀରୁ ସ୍ପଷ୍ଟ ବୋଧଗମ୍ୟ ।

---

(୯୦) ମହାଭାରତ—ଶାନ୍ତିପର୍ବ - ୪୨।୨-୫

(୯୧) ବୃ : ବ୍ୟା : କା : ୧୭, ୮ ଓ ୪୩

(୯୨) ତତ୍ରୈବ—୨।୩ ଓ ୫୧

## ବୃହସ୍ପତି ସ୍ମୃତି ଅନୁଯାୟୀ ରାଜସ୍ୱର ସ୍ୱରୂପ




ଏହା ବ୍ୟତୀତ, ମୃତ ବ୍ୟବସାୟୀଙ୍କ ଲବ୍ଧ ଧନରୁ ଜାତି ଅନୁସାରେ (ବ୍ରାହ୍ମଣ ଠାରୁ ୧/୨୦, ଶୂଦ୍ରଠାରୁ ୧/୬, ବୈଶ୍ୟଠାରୁ ୧/୯ ଓ କ୍ଷତ୍ରିୟଠାରୁ ୧/୧୦) ନିର୍ଦ୍ଦିଷ୍ଟ ଅଂଶ ରାଜାଙ୍କର ପ୍ରାପ୍ୟ ବୋଲି କୁହାଯାଇଛି । (୯୩)

**ଶୁକ୍ର, କାମନ୍ଦକ ଓ ପାରାଶରୀ ଆଦର୍ଶ**—ଶୁକ୍ରନୀତିରେ ରାଜସ୍ୱର ଭିନ୍ନ ଶ୍ରେଣୀ ବିଭାଜନ ପରିଦୃଷ୍ଟ ହୁଏ । ଶୁକ୍ର କ୍ରେତା ଓ ବିକ୍ରେତାଙ୍କ ଠାରୁ ସଂଗୃହୀତ ରାଜଭାଗକୁ ଶୁଳ୍କ ଆଖ୍ୟା ଦେଇଛନ୍ତି । ଏଭଳି ସୂଚନା ବୃହସ୍ପତି ସ୍ମୃତିରୁ ମିଳେ ନାହିଁ । ତେବେ, ଭୂରାଜସ୍ୱ ଓ ବନିକରରୁ ଆଦାୟ ହେଉଥିବା ଅର୍ଥରେ ଶାସନ କାର୍ଯ୍ୟ ସମାହିତ ହେଉଥିବା କଥା ମେଘାସ୍ଥିନିସ୍‌ଙ୍କ 'ଇଣ୍ଡିକା'ରେ ଉଲ୍ଲେଖ ଅଛି । (୯୪)

---

(୯୩) ବୃ. ବ୍ୟା. କା. ୧୩।୧୨-୧୩

(୯୪) Mahajan : Ancient India—pp. 247-249

ବୃହସ୍ପତି ବାଣିଜ୍ୟରୁ ଲବ୍ଧ ଧନର ଏକ-ଦଶମାଂଶ ରାଜାଙ୍କର ପ୍ରାପ୍ୟ ବୋଲି ମତ ପ୍ରଦାନ କରିଛନ୍ତି । (୯୫) ଶୁକ୍ର ରାଜସ୍ୱର ଯେଉଁ ଶ୍ରେଣୀ ବିଭାଜନ କରିଛନ୍ତି, ନିମ୍ନ ସାରଣୀରେ ତାହା ପ୍ରଦତ୍ତ ହେଲା ।

## ଶୁକ୍ରନୀତି ଅନୁଯାୟୀ ରାଜସ୍ୱର ଶ୍ରେଣୀ-ବିଭାଗ




ଏହା ବ୍ୟତୀତ, ଶୁକ୍ରନୀତିରେ ବିଭିନ୍ନ ଶ୍ରେଣୀସ୍ଥ ରାଜାମାନଙ୍କର ବାର୍ଷିକ ଆୟର ପରିମାଣ ସମ୍ବନ୍ଧରେ ମଧ୍ୟ ସବିଶେଷ ବିବରଣୀ ପ୍ରଦତ୍ତ ହୋଇଅଛି । ଯଥା—

ସାମନ୍ତ ରାଜା — ଏକ ଲକ୍ଷରୁ ତିନି ଲକ୍ଷ କର୍ଷ
ମାଣ୍ଡଳିକ — ତିନି ଲକ୍ଷରୁ ଦଶ ଲକ୍ଷ କର୍ଷ

(୯୫) ବୃ. ବ୍ୟା. କା. ୧୩।୧୬

ରାଜା — ଦଶ ଲକ୍ଷରୁ ବିଂଶ ଲକ୍ଷ କର୍ଷ
ମହାରାଜା — ବିଂଶ ଲକ୍ଷରୁ ପଚିଶ ଲକ୍ଷ କର୍ଷ
ସ୍ୱରାଟ — ପଚିଶ ଲକ୍ଷରୁ ଏକ କୋଟି କର୍ଷ
ସମ୍ରାଟ — ଏକ କୋଟିରୁ ଦଶ କୋଟି କର୍ଷ
ବିରାଟ — ଦଶ କୋଟିରୁ ପଚିଶ କୋଟି କର୍ଷ
ସାର୍ବଭୌମ — ସମସ୍ତ ଦେଶର ସର୍ବାଧିପତି

ପରାଶରଙ୍କ ମତରେ, ମାଳୀ ବୃକ୍ଷ ଉତ୍ପାଟନ ନକରି ପୁଷ୍ପଚୟନ କଲା ଭଳି ରାଜା ପ୍ରଜାମାନଙ୍କଠାରୁ ଏକ-ଷଷ୍ଠାଂଶ ରାଜସ୍ୱ ନେବେ, କିନ୍ତୁ ସର୍ବସ୍ୱ ହରଣ କରିବେ ନାହିଁ । ଶତ୍ରୁ ଜୟକରି ପ୍ରଜାପାଳନ କରିବା କ୍ଷତ୍ରିୟର ଧର୍ମ ଏବଂ ପୃଥିବୀ ବୀରଭୋଗ୍ୟା ହେତୁ ଯୁଦ୍ଧ କରିବା ରାଜାମାନଙ୍କର କର୍ତ୍ତବ୍ୟ ବୋଲି ସେ ମତ ପୋଷଣ କରିଛନ୍ତି । (୯୬)

ବୃହସ୍ପତି ଓ ଶୁକ୍ର ଉଭୟ କୌଟିଲ୍ୟଙ୍କ ଭଳି ରାଜ୍ୟର ଦୃଢ଼ତା ପାଇଁ ସୈନ୍ୟବଳର ଆବଶ୍ୟକତା ଉପଲବ୍ଧି କରିଛନ୍ତି । ତେବେ କୌଟିଲ୍ୟ ଚତୁରଙ୍ଗ ବଳ ଉପରେ ପ୍ରାଧାନ୍ୟ ଦେଇଥିବା ସ୍ଥଳେ ବୃହସ୍ପତି ବୃକ୍ଷ ଓ ପର୍ବତ ଉପରେ ନିଯୁକ୍ତ ଦ୍ୱିବିଧ ସେନାର ଅଧିକ ସୂଚନା ଦେଇ ଷଡ଼ଙ୍ଗବଳର ଆବଶ୍ୟକତା ଦର୍ଶାଇଛନ୍ତି । ଶୁକ୍ରନୀତିରେ ସ୍ଥାୟୀ ରାଜକୀୟ ସେନା ଓ ବେତନଭୋଗୀ ସୈନିକ—କେବଳ ଦ୍ୱିବିଧ ସେନାର ସୂଚନା ରହିଛି । (୯୭) ସମାୟୁକ୍ତ ବା ବଳଶାଳୀ ରାଜା ସହିତ ଯୁଦ୍ଧ ନକରି କେବଳ ଦୁର୍ବଳ ସହ ଯୁଦ୍ଧ କରିବା ସପକ୍ଷରେ ବୃହସ୍ପତି ମଧ୍ୟ ମନୁଙ୍କ ଅନୁରୂପ ମତ ଦେଇଛନ୍ତି ।

ନ୍ୟାୟ ଶାସନ କ୍ଷେତ୍ରରେ ବୃହସ୍ପତିଙ୍କ ନିର୍ଦ୍ଦେଶିତ ଧର୍ମ, ବ୍ୟବହାର, ଚରିତ୍ର ଓ ନୃପାଜ୍ଞା ଚତୁର୍ବିଧ ପଦ୍ଧତିକୁ ଶୁକ୍ର ସମର୍ଥନ କରିଛନ୍ତି । ଏହା ବ୍ୟତୀତ, ଆନ୍ତଃରାଜ୍ୟ ସମ୍ପର୍କ ନିୟନ୍ତ୍ରଣ କ୍ଷେତ୍ରରେ ମଧ୍ୟ ସେ ବୃହସ୍ପତିଙ୍କ ଭଳି ସନ୍ଧି, ବିଗ୍ରହ, ସ୍ଥାନ (ଆସନ), ଯାନ, ସଂଶ୍ରୟ ଓ ଦ୍ୱୈଧୀଭାବ—ଷଡ଼ଗୁଣକୁ ପ୍ରାଧାନ୍ୟ ଦେଇଛନ୍ତି । (୯୮) ତେବେ, ଶୁକ୍ର 'ସଂଶ୍ରୟ' ପରିବର୍ତ୍ତେ 'ସମାଶ୍ରୟ' ଶବ୍ଦ ବ୍ୟବହାର କରିଛନ୍ତି । କାମନ୍ଦକୀ ନୀତିରେ

(୯୬) ପରାଶର ସଂହିତା-୧।୬୮-୭୦
(୯୭) ଶୁକ୍ରନୀତି-୪।୮।୭୨
(୯୮) ଅର୍ଥଶାସ୍ତ୍ର-୭।୧, ଶୁକ୍ରନୀତି ୧।୧୦୬୫

ମଧ୍ୟ ଏହି ସଂଶୟ ବା ଅବିଶ୍ୱାସ ନୀତି ଉପରେ ଗୁରୁତ୍ୱ ଆରୋପିତ ହୋଇଛି । (୯୯) ବୃହସ୍ପତି ଶାସନର ସଫଳତା ପାଇଁ କୃଷି, ପଶୁପାଳନ, ବାଣିଜ୍ୟ ଓ ଦଣ୍ଡନୀତି ଉପରେ ପ୍ରାଧାନ୍ୟ ଦେଉଥିବେଳେ ଶୁକ୍ର କେବଳ ଦଣ୍ଡନୀତି ଉପରେ ଗୁରୁତ୍ୱ ଦେଇ ଏହା ଦ୍ୱାରା ଧର୍ମାନୁମୋଦିତ ପବିତ୍ର ଜୀବନ ଯାପନ ସମ୍ଭବ ବୋଲି ମତ ପୋଷଣ କରିଛନ୍ତି ।

ବୃହସ୍ପତି ରାଜାଙ୍କର ବ୍ୟକ୍ତିତ୍ୱ, ପ୍ରତିଭା, କୁଶଳତା ଓ ବୁଦ୍ଧିମତ୍ତା ଉପରେ ଗୁରୁତ୍ୱ ଦେବା ଭଳି ଶୁକ୍ର ମଧ୍ୟ ମେଧାଶକ୍ତି, ବିଚାର କ୍ଷମତା, ଜିତେନ୍ଦ୍ରିୟତା ଓ ନିରପେକ୍ଷ ଗୁଣର ପ୍ରାଧାନ୍ୟ ସ୍ୱୀକାର କରିଛନ୍ତି । ଶୁକ୍ରନୀତି ଅନୁଯାୟୀ ରାଜାମାନଙ୍କର ଅଷ୍ଟବିଧ କର୍ତ୍ତବ୍ୟ ହେଉଛି—(୧) ଦୋଷୀପ୍ରତି ଦଣ୍ଡବିଧାନ, (୨) ପ୍ରଜାମାନଙ୍କ ମଙ୍ଗଳ ସାଧନ, (୩) ରାଜ୍ୟର ଆର୍ଥିକ ଉନ୍ନୟନ (୪) ରାଜସୂୟ ଯଜ୍ଞ ସମ୍ପାଦନ, (୫) ସାମନ୍ତ ରାଜାମାନଙ୍କ ଠାରୁ ପ୍ରାପ୍ୟ ସଂଗ୍ରହ (୬) ଶତ୍ରୁ କ୍ଷୟ, (୭) ଜମି ନିର୍ଦ୍ଧାରଣ (ବନ୍ଦୋବସ୍ତ) ଓ (୮) ରାଷ୍ଟ୍ରର ସର୍ବବିଧ ଉନ୍ନତି ସାଧନ । ଶୁକ୍ରନୀତିରେ ରାଜ୍ୟକୁ ଏକ ବୃକ୍ଷ ସହ ତୁଳନା କରାଯାଇ ରାଜା ଓ ମନ୍ତ୍ରୀଙ୍କୁ ବୃକ୍ଷର କାଣ୍ଡ, ସେନାଧ୍ୟକ୍ଷଙ୍କୁ ଶାଖା, ସୈନିକମାନଙ୍କୁ ପତ୍ରପୁଷ୍ପ, ପ୍ରଜାବୃନ୍ଦ ହେଉଥିବ ଫଳ ଏବଂ ଭୂମିକୁ ବୀଜ ରୂପେ ଗ୍ରହଣ କରାଯାଇଛି । (୧୦୦)

**ବିଭିନ୍ନ ପୁରାଣ ଓ ସାହିତ୍ୟକୃତିର ଆଦର୍ଶ**—ମୂଳ ସଂସ୍କୃତ ମହାଭାରତର ଶାନ୍ତି ପର୍ବରେ (୧୦୧) ରାଜାର ଯେଉଁ କର୍ତ୍ତବ୍ୟ ନିର୍ଦ୍ଦେଶିତ ହୋଇଛି, ତଦ୍ୱାରା ପରବର୍ତ୍ତୀକାଳୀନ ପୁରାଣ କର୍ତ୍ତା ଓ ଲେଖକଗଣ ବିଶେଷ ଭାବେ ପ୍ରଭାବିତ ହୋଇଛନ୍ତି । ଅଗ୍ନି ପୁରାଣରେ ମହାଭାରତର ପ୍ରଭାବ ଓ କାମନ୍ଦକୀ ନୀତିସାରରେ ବର୍ଣ୍ଣିତ ଆଦର୍ଶର ପ୍ରତିଫଳନ ସୁସ୍ପଷ୍ଟ । ଏଥିରେ ମନ୍ତ୍ରୀମାନଙ୍କର କର୍ତ୍ତବ୍ୟ ସମ୍ପର୍କରେ ଉଲ୍ଲେଖ ଅଛି ଯେ ସେମାନେ ମନ୍ତ୍ରଣା ଦେବେ, ଅନୁଷ୍ଠିତ କାର୍ଯ୍ୟର ସଫଳତା ପାଇଁ ଯତ୍ନ ନେବେ, ଭବିଷ୍ୟତ ପାଇଁ ଯୋଜନା କରିବେ ଏବଂ ଅର୍ଥ ସଂଗ୍ରହ, ଉପଦ୍ରବ

---

(୯୯) କାମନ୍ଦକୀ ନୀତିସାର—୫।୮୭

(୧୦୦) **Pant . History of Western Political Thought Vol. II Supplement pp. 511-513**

(୧୦୧) ମହାଭାରତ - ଶାନ୍ତିପର୍ବ—୬୮।୩୦-୩୬

ନିବାରଣ ଓ ଶତ୍ରୁର ପ୍ରତିରୋଧ କରି ରାଜ୍ୟର ସୁରକ୍ଷା ପ୍ରତି ଧ୍ୟାନଦେବେ । ଅଗ୍ନିପୁରାଣ କରଦାୟ, ଦଣ୍ଡବିଧାନ ଓ ଯୁଦ୍ଧକାଳରେ ରାଜାଙ୍କ ପ୍ରତି ସାମନ୍ତ ରାଜାମାନଙ୍କର ସମର୍ଥନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛି । (୧୦୨) ମତ୍ସ୍ୟ ପୁରାଣ ଓ ବିଷ୍ଣୁ ପୁରାଣରେ ମଧ୍ୟ କାମନ୍ଦକୀ ନୀତି ଓ ମହାଭାରତର ଆଦର୍ଶ ପ୍ରତିଫଳିତ । ବରାହ ପୁରାଣରେ ବ୍ରାହ୍ମଣମାନଙ୍କୁ ପ୍ରାଧାନ୍ୟ ଦିଆଯାଉଥିବାବେଳେ କୂର୍ମ ପୁରାଣରେ ନ୍ୟାୟ ସମ୍ମୁଖରେ ଶୂଦ୍ରମାନଙ୍କୁ ସମାନ ସ୍ଥାନ ପ୍ରଦତ୍ତ ହୋଇଛି । ମାର୍କଣ୍ଡେୟ ପୁରାଣରେ ରାଜାମାନଙ୍କର ଏକାଧିପତ୍ୟ ସ୍ୱୀକୃତ । ପଦ୍ମ ପୁରାଣରେ ମଧ୍ୟ ରାଜ୍ୟ ବ୍ୟବସ୍ଥା ସମ୍ପର୍କରେ ଗତାନୁଗତିକ ବର୍ଣ୍ଣନା ପରିଦୃଷ୍ଟ ହୁଏ । (୧୦୩) କିନ୍ତୁ ବାୟୁପୁରାଣ, ବ୍ରହ୍ମାଣ୍ଡପୁରାଣ, ଗରୁଡ଼ପୁରାଣ, ନୃସିଂହପୁରାଣ, ଲିଙ୍ଗ ପୁରାଣ ବ୍ରହ୍ମବୈବର୍ତ୍ତପୁରାଣ ପ୍ରଭୃତିରେ ବିଶେଷ ରାଜନୈତିକ ବର୍ଣ୍ଣନା ପରିଲକ୍ଷିତ ହୁଏ ନାହିଁ । (୧୦୪)

ବିଭିନ୍ନ ପୁରାଣ ବ୍ୟତୀତ, ଦଣ୍ଡୀଙ୍କ ଦଶକୁମାର ଚରିତ, ମାଘଙ୍କ ଶିଶୁପାଳ ବଧ, ଭାରବୀଙ୍କ କିରାତାର୍ଜ୍ଜୁନୀୟ, ଭବଭୂତିଙ୍କ ମାଲତୀ ମାଧବ ଓ ଉତ୍ତର ରାମଚରିତ, ବାଣଭଟ୍ଟଙ୍କ ହର୍ଷଚରିତ, ଭର୍ତ୍ତୃହରିଙ୍କ ନୀତିଶତକ ପ୍ରଭୃତି ଗ୍ରନ୍ଥରୁ ତତ୍କାଳୀନ ରାଜନୈତିକ ଆଦର୍ଶ ସମ୍ପର୍କରେ କେତେକ ସୂଚନା ମିଳେ । ଏହା ବ୍ୟତୀତ, କ୍ଷେମେନ୍ଦ୍ରଙ୍କ ବୃହତ୍ କଥା ମଞ୍ଜରୀ, ସୋମଦେବଙ୍କ କଥା ସରିତ ସାଗର, ବିଦ୍ୟାପତି ବିହ୍ଲଣଙ୍କ ବିକ୍ରମାଙ୍କ ଦେବ ଚରିତ ଓ କର୍ଣ୍ଣ ସୁନ୍ଦରୀ, କହ୍ଲଣଙ୍କ ରାଜତରଙ୍ଗିଣୀ,

---

(୧୦୨) ଅଗ୍ନିପୁରାଣ—୨୪୧।୧୬-୧୮; ୨୦୩।୧୪-୧୬, ୨୩, ୩୨; ୨୬୧।୧୬-୨୮; ୨୨୬।୧ ୧୬, ୪୦-୪୮

(୧୦୩) (କ) ମତ୍ସ୍ୟ ପୁରାଣ—୧୪୪।୩୦-୪୭.
(ଖ) ବିଷ୍ଣୁ ପୁରାଣ—୭।୧୬-୨୦
(ଗ) ବରାହ ପୁରାଣ—୨୫୮।୧୨-୨୦
(ଘ) କୂର୍ମ ପୁରାଣ—୨୯-୩୦ ଅଧ୍ୟାୟ
(ଙ) ମାର୍କଣ୍ଡେୟ ପୁରାଣ —୨୮।୩୩-୩୬
(ଚ) ପଦ୍ମ ପୁରାଣ—୨୧୬-୨୧୯ଅଧ୍ୟାୟ
(ଛ) ଗରୁଡ଼ ପୁରାଣ—୧୧୧-୧୧୪ ଅଧ୍ୟାୟ
(ଜ) ବାୟୁ ପୁରାଣ—୮।୬୦-୬୫ ଓ ୧୬୧-୧୬୪ ।

(୧୦୪) Prasad : The State in Ancient India—pp. 254-257.

ଭୋଜରାଜଙ୍କ ଯୁକ୍ତିକଲ୍ପତରୁ, ରାଜଶେଖରଙ୍କ କର୍ପୂରମଞ୍ଜରୀ ଓ ପ୍ରଚଣ୍ଡ ପାଣ୍ଡବ ଇତ୍ୟାଦି ଗ୍ରନ୍ଥରେ ସମସାମୟିକ (ଖ୍ରୀଷ୍ଟୀୟ ୯ମ ଶତାବ୍ଦୀ ଠାରୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ) ରାଜନୈତିକ ଆଦର୍ଶ ଓ ଶାସନ ପଦ୍ଧତି ସମ୍ବନ୍ଧୀୟ କେତେକ ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ ।

ରାଜତରଙ୍ଗିଣୀରୁ ଜଣାଯାଏ ଯେ କାଳକ୍ରମେ କାଶ୍ମୀରରେ ଜାତିଭେଦ ପ୍ରଥାର ଉଗ୍ରତା ହ୍ରାସ ପାଇଥିଲା । ବ୍ରାହ୍ମଣମାନଙ୍କ ପ୍ରାଧାନ୍ୟ ଅବ୍ୟାହତ ରହିବା ସତ୍ତ୍ୱେ ଜଣେ ବୈଶ୍ୟ ପ୍ରଧାନ ସଚିବ ହୋଇପାରିଥିଲେ । ରାଜା ଚକ୍ରବର୍ମଣ ଜଣେ ନୀଚ ଜାତିର ମହିଳାଙ୍କୁ ମହାରାଣୀ ଆସନ ଦେଇଥିଲେ । ଦିଗ୍‌ବିଜୟ ବିଶେଷ ରାଜକର୍ତ୍ତବ୍ୟ ରୂପେ ପରିଗଣିତ ହେଉଥିଲା । ରାଜାମାନଙ୍କ ମଧ୍ୟରେ ଲଳିତାଦିତ୍ୟ (୮ମ ଶତାବ୍ଦୀ)ଙ୍କ ଭଳି ପ୍ରଜାବତ୍ସଳ, ବଦାନ୍ୟ ଓ ସୁଶାସକଙ୍କ ପାଖରୁ ଶଙ୍କର ବର୍ମଣ (୯ମ ଶତାବ୍ଦୀ) ଙ୍କ ଭଳି ଅତ୍ୟାଚାରୀ ଓ ଲୁଣ୍ଠନକାରୀ ମଧ୍ୟ ରହିଥିଲେ । ଅନ୍ୟାୟ ବିରୁଦ୍ଧରେ ଅନଶନ ଧର୍ମଘଟ ହେଉଥିବାର ଦୃଷ୍ଟାନ୍ତ ମଧ୍ୟ ଏଥିରୁ ମିଳେ । (୧୦୫) କହ୍ଲଣଙ୍କ ମତରେ ଅରାଜକତା ଓ ଅତ୍ୟାଚାରର ଉଭୟ ଦୂଷଣୀୟ । ଏଣୁ ରାଜା ଶକ୍ତିଶାଳୀ ଓ ପ୍ରଜାବତ୍ସଳ ତଥା ଗଣହିତ ସାଧକ ହେବା ଉଚିତ ବୋଲି ସେ ମତ ପୋଷଣ କରିଥିଲେ । (୧୦୬)

ରାଜାମାନଙ୍କର ବିଳାସ ବ୍ୟସନ, ମୃଗୟା, ଯୁଦ୍ଧଯାତ୍ରା, ଦରବାର, ଦଣ୍ଡବିଧାନ, ଗୁପ୍ତଚର ବ୍ୟବସ୍ଥା ଓ ଧର୍ମାନୁରାଗ ପ୍ରଭୃତି ବିଷୟରେ ସବିଶେଷ ବର୍ଣ୍ଣନା କଥାସରିତ ସାଗରର ବିଭିନ୍ନ କାହାଣୀରୁ ଉପଲବ୍ଧ ହୁଏ । (୧୦୭) ବୃହତ୍ କଥା

---

(୧୦୫) (କ) କହ୍ଲଣ : ରାଜତରଙ୍ଗିଣୀ—୪।୬୭, ୧୮୯, ୩୭୮; ୫।୧୬-୨୯, ୧୭୪, ୩୮୯; ୭।୨୦୬; ୭।୧୦୮

(ଖ) ଧର, ସୋମନାଥ — କହ୍ଲଣ (ଅନୁ—ଶିଉପଥୀ, ଡ଼: ପ୍ରତିଭା) (ସାହିତ୍ୟ ଏକାଡେମୀ ନୂଆଦିଲ୍ଲୀ, ୧୯୮୮) ପୃ. ୧୪-୩୮ ଓ ୭୫-୮୦ ।

(୧୦୬) Luniya, B. N. - Some Historians of Medieval India (Laxminarayan Agrawalla, Agra, 1969 Print) P. 9

(୧୦୭) ଆଚାର୍ଯ୍ୟ, ଡ଼: ସୁଦର୍ଶନ (ଅ) - କଥାସରିତ ସାଗର -୧ମ ଖଣ୍ଡ (ଦାସବ୍ରଦର୍ସ, ବ୍ରହ୍ମପୁର, ୧୯୬୯) ୧।୬; ୨।୧ ଓ ୩; ୨।୪; ୩।୧; ୩।୪; ୪।୧; ୬।୧; ୨ୟ ଖଣ୍ଡ - ( ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର, ୧୯୮୨ ) ୭।୧; ୭।୩; ୮।୨ ଓ ୭ ଏବଂ ୩ୟ ଖଣ୍ଡ ( ଶ୍ରୀମତୀ ବିନୋଦିନୀ ଆଚାର୍ଯ୍ୟ, ସତ୍‌ଗୃହ ନିକେତନ, ବ୍ରହ୍ମପୁର, ୧୯୮୩ ) ୯।୧-୫

ମନ୍ତ୍ରାଙ୍କରେ ମଧ୍ୟ ରାଜନୀତି ଓ ଧର୍ମନୀତିର ସମନ୍ୱୟ ଚିତ୍ର ଦେଖିବାକୁ ମିଳେ । (୧୦୮) ବହ୍ଲଣଙ୍କ କୃତିରୁ ଜଣାଯାଏ ଯେ କାଶ୍ମୀର ନରେଶ ଅନନ୍ତଦେବ ସବିନତା, ବଦାନ୍ୟତା ଓ ସଚ୍ଚରିତ୍ରତାର ପ୍ରତୀକ ଥିଲେ ଓ କବିଙ୍କୁ ରାଜକୁମାରଙ୍କର ଗୃହଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । (୧୦୯) ବ୍ରାହ୍ମଣମାନଙ୍କୁ ମନ୍ତ୍ରୀରୂପେ ନିଯୁକ୍ତ କରାଯାଉଥିବା ବିଷୟରେ ପ୍ରଚଣ୍ଡପାଣ୍ଡବ ନାଟକ ସୂଚନା ଦିଏ । (୧୧୦) ଯୁକ୍ତିକଳ୍ପତରୁ ଗ୍ରନ୍ଥରେ ଆଇନ, ଦଣ୍ଡବିଧାନ, ଶାସନ ପଦ୍ଧତି, ଯୁଦ୍ଧନୀତି, ବୈଦେଶିକ ନୀତି, ଦୁର୍ଗ ରକ୍ଷା, ପୋତନିର୍ମାଣ, ଦୂତ ଓ ଗୁପ୍ତଚର ବ୍ୟବସ୍ଥାଦି ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା ପରିଦୃଷ୍ଟ ହୁଏ । (୧୧ )

ଅଲ୍‌ବେରୁନି (୯୭୨-୧୦୪୮)ଙ୍କ ଅଶୀତି ଅଧ୍ୟାୟ ବିଶିଷ୍ଟ 'ତହ୍‌କି-ଇ-ହିନ୍ଦ୍' ପୁସ୍ତକରୁ ତତ୍କାଳୀନ ଧର୍ମ, ଶାସନ, ସମାଜ ଓ ରାଜନୀତି ସମ୍ପର୍କରେ ଯଥେଷ୍ଟ ସୂଚନା ମିଳିଥାଏ । ଏଥିରୁ ଜଣାଯାଏ ଯେ ସେତେବେଳେ ସମାଜରେ ରଜକ, ମୋଚି, ତନ୍ତ୍ରୀ, ବ୍ୟାଧ, ନାବିକ, କୈବର୍ତ୍ତ, ବାଜିକର ଓ ବେଣା (ମେଦର) — ଅଷ୍ଟବିଧ ଅନ୍ତ୍ୟଜ ଜାତି ରହିଥିଲେ ଏବଂ ବ୍ରାହ୍ମଣ ଓ ପୁରୋହିତଙ୍କୁ ଉଚ୍ଚସ୍ଥାନ ଦିଆଯାଇଥିଲା । ହାଡ଼ି, ଡ଼ମ ଓ ଚଣ୍ଡାଳମାନଙ୍କୁ ଅତି ନୀଚ ବୋଲି ଧରାଯାଉଥିଲା । ହିନ୍ଦୁମାନେ ମାଂସାହାର କରୁଥିଲେ ହେଁ ଅଣ୍ଡା ଓ ମଦ୍ୟ ସ୍ପର୍ଶ କରୁ ନଥିଲେ । ସାଧାରଣତଃ ଆୟର ଏକନବମାଂଶ ଦାନ ଧର୍ମରେ ବ୍ୟୟିତ ହେଉଥିଲା । ଧର୍ମାର୍ଥୀଗଣ ବାରାଣସୀ, ପୁଷ୍କର, ମଥୁରା ଓ କୁରୁକ୍ଷେତ୍ରକୁ ତୀର୍ଥାଟନ କରୁଥିଲେ । ଚରାଚର ସମ୍ପତ୍ତି ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ହେଉଥିଲା ଏବଂ କନ୍ୟାମାନେ ମଧ୍ୟ ଭ୍ରାତାର ଅଂଶରୁ ଏକଚତୁର୍ଥାଂଶ ଭାଗ ପାଉଥିଲେ । (୧୧୨) ବେଶ୍ୟାଙ୍କ ସମେତ ସମସ୍ତଙ୍କ ଠାରୁ ଏକଷଷ୍ଠାଂଶ ରାଜସ୍ୱ ବାବଦରେ ଆଦାୟ କରାଯାଉଥିଲେ ହେଁ ବ୍ରାହ୍ମଣମାନେ ସେଥିରୁ ମୁକ୍ତ ଥିଲେ । (୧୧୩)

---

(୧୦୮) Prasad - The State in Ancient India—P. 333

(୧୦୯) ବହ୍ଲଣ : ବିକ୍ରମାଙ୍କ ଦେବ ଚରିତ - ୧୮।୩୫–୩୯ ଓ ୧୦୬-୧୦୭

(୧୧୦) Prasad - The State in Ancient India—P. 299

(୧୧୧) Ibid - P. 349

(୧୧୨) Luniya : Some Historians of Medieval India—pp. 17-24

(୧୧୩) Ibid —pp. 32-35

ଏହା ବ୍ୟତୀତ, ଉଦୟମଣିଙ୍କ କୃଷ୍ଣପାଣି (ମଗଧ) ଶିଳାଲେଖରୁ ସେ ସମୟର ଗ୍ରାମ୍ୟ ଶାସନ; ଧର୍ମପାଳଙ୍କ ଖାଲିମପୁର ତାମ୍ରଫଳକ ଓ ଶିଳାଦିତ୍ୟଙ୍କ ଆଲିନା ତାମ୍ରଲେଖରୁ 'ପରମ ଭଟ୍ଟାରକ' ପ୍ରଭୃତି ପଦବୀ ତଥା ତାଙ୍କର ଖାଲିମପୁର ଶିଳାଲେଖରୁ ମହାସାମନ୍ତାଧିପତି ଉପାଧିଧାରୀ ସାମନ୍ତ ରାଜାଙ୍କ ରାଜ୍ୟଶାସନ ବିଷୟରେ ସୂଚନା ମିଳେ । ନାରାୟଣ ପାଳଙ୍କ ଭଗଲପୁର ତାମ୍ରଫଳକରୁ ମଧ୍ୟ 'ମହାସାମନ୍ତ', ରାଜାରାଜାନକ, କ୍ଷେତ୍ରପାଳ, ପ୍ରାନ୍ତପାଳ, କୋଠାରକ୍ଷ, ଖଣ୍ଡାରକ୍ଷ, ଦୂତ ପ୍ରେଷଣିକ, ବଶ୍ୟପତି, ଦ୍ୱାରପତି ପ୍ରଭୃତିଙ୍କ ନିଯୁକ୍ତି ବିଷୟ ଜଣାଯାଏ । ଦେବପାଳଙ୍କ ନାଳନ୍ଦା ତାମ୍ରଲେଖରୁ ରାଜାମାତ୍ୟ, ଉପରିକ, ଦଣ୍ଡପରାଧିକ ପ୍ରମୁଖ କର୍ମଚାରୀଙ୍କ ପ୍ରାଧାନ୍ୟ, ମାରୱାର ତାମ୍ରଲେଖରୁ ପ୍ରଶାସନିକ ବ୍ୟବସ୍ଥା, ଜୟସିଂହଙ୍କ ବସ୍ତର ଶିଳାଲେଖରୁ ସର୍ବବାଦୀ ନାୟକଙ୍କ ଶାସନ, ବାକ୍‌ପତିରାଜଙ୍କ ତାମ୍ରଲେଖରୁ ମହାମଣ୍ଡଳେଶ୍ୱର ଉପାଧିର ପ୍ରଚଳନ ଏବଂ ମଦନଦେବଙ୍କ ରାଜୋର ଶିଳାଲିପିରୁ ଶୁଳ୍କ ବ୍ୟବସ୍ଥା ସମ୍ବନ୍ଧୀୟ କେତେକ ବିବରଣୀ ମିଳିଥାଏ । (୧୧୪) କେବଳ ଶିଳାଲେଖ ନୁହେଁ, ପରବର୍ତ୍ତୀ ସମୟର ଇତିହାସରୁ ମଧ୍ୟ ମୁସଲମାନ, ଖିଲିଜି, 'ଦାସ ଓ ମୋଗଲମାନଙ୍କ ଶାସନକାଳୀନ ଭାରତୀୟ ରାଜନୈତିକ ପଦ୍ଧତିର ବହୁବିଧ ଚିତ୍ର ଦେଖିବାକୁ ମିଳେ ।

କିନ୍ତୁ, ସାହିତ୍ୟ, ଶିଳାଲେଖ କିମ୍ବା ଐତିହାସିକ ରଚନାରୁ ସମସାମୟିକ ଶାସନ ପ୍ରଣାଳୀ ସମ୍ପର୍କରେ ବହୁ ମୂଲ୍ୟବାନ ତଥ୍ୟ ଉପଲବ୍ଧ ହେଉଥିଲେ ସୁଦ୍ଧା ସେଗୁଡ଼ିକୁ ରାଜନୀତିଶାସ୍ତ୍ର ରୂପେ ଗ୍ରହଣ କରିବା ସମ୍ଭବ ନୁହେଁ । ଏଣୁ ପୂର୍ବୋକ୍ତ କେତୋଟି ଗ୍ରନ୍ଥ ବ୍ୟତୀତ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ଆଉ ସେଭଳି ମୌଳିକ ରାଜନୈତିକ ଶାସ୍ତ୍ର ପ୍ରଣୀତ ହୋଇଥିବା ଦୃଷ୍ଟିଗୋଚର ହୁଏ ନାହିଁ । ହରିହର ଚତୁରଙ୍ଗ, ସାରସର୍ବସ୍ୱ, ସୂକ୍ତିସର୍ବସ୍ୱ ପ୍ରଭୃତି ଗ୍ରନ୍ଥ ପୂର୍ବବର୍ତ୍ତୀ ଗ୍ରନ୍ଥଗୁଡ଼ିକର ପ୍ରକାରାନ୍ତରେ ପୁନରାବୃତ୍ତି ମାତ୍ର । ଭାରତୀୟ ମନୀଷୀମାନେ ପ୍ରଣୟନ କରିଥିବା ବିଭିନ୍ନ ଗ୍ରନ୍ଥରେ ରାଜନୈତିକ ଆଦର୍ଶର ଯେଉଁ ବିସ୍ତୃତ ବିଶ୍ଳେଷଣ ପରିଦୃଷ୍ଟ ହୁଏ, ତାର କେତୋଟି ବୈଶିଷ୍ଟ୍ୟ ହେଉଛି—(୧) ପ୍ରଜାକଲ୍ୟାଣ (ଗର୍ଭଧାରିଣୀ ମାତା ତଥା ପିତା ତାର ସନ୍ତାନର ଲାଳନପାଳନ କଲାଭଳି ପ୍ରଜାପାଳନ), (୨) ଶତ୍ରୁ ଆକ୍ରମଣରୁ (ଅନ୍ତଃଶତ୍ରୁ, ବାହ୍ୟଶତ୍ରୁ ତଥା ବିଭିନ୍ନ ଉପଦ୍ରବରୁ) ପ୍ରଜାଙ୍କର ସୁରକ୍ଷା, (୩) ଉଚ୍ଚ ବଂଶଜ ତଥା ଶାସ୍ତ୍ରଜ୍ଞ ବ୍ୟକ୍ତିର ଶାସନ, (୪) ମନ୍ତ୍ରୀ, ପୁରୋହିତ ତଥା ମନ୍ତ୍ରିପରିଷଦର ପରାମର୍ଶ ପ୍ରତି ମାନ୍ୟତା, (୫) ରାଜ୍ୟର ସୁରକ୍ଷା ନିମନ୍ତେ ସେନାଧ୍ୟକ୍ଷଙ୍କ

(୧୧୪) **Prasad : The State in Ancient India—pp. 307 315.**

ପରାମର୍ଶରେ ଦୁର୍ବଳ ରାଜାସହ ଯୁଦ୍ଧ ରଚନା, (୬) ଗୁପ୍ତଚର ମାଧ୍ୟମରେ ବିଭିନ୍ନ ତଥ୍ୟ ସଂଗ୍ରହ, (୭) ନ୍ୟାୟାଧୀଶ ଓ ଦଣ୍ଡାଧୀଶଙ୍କ ଦ୍ୱାରା ନ୍ୟାୟ ବିଧାନ, (୮) ରାଜ୍ୟର କଲ୍ୟାଣ କଳ୍ପେ ବିଭିନ୍ନ ଯଜ୍ଞାନୁଷ୍ଠାନ, (୯) ଯଥାବିଧି ଅଭିଷେକ ଓ ତତ୍କାଳୀନ ଶପଥ ପାଳନ, (୧୦) ଯଥୋଚିତ କର୍ମଚାରୀ ନିଯୁକ୍ତ (ବ୍ରାହ୍ମଣଙ୍କୁ ମନ୍ତ୍ରୀ, ପୁରୋହିତ, କ୍ଷତ୍ରିୟଙ୍କୁ ସେନାଧ୍ୟକ୍ଷ ଇତ୍ୟାଦି), (୧୧) ମାଳିକାର ପୁଷ୍ପଚୟନ କଲାଭଳି ପ୍ରଜାଙ୍କୁ କଷ୍ଟ ନଦେଇ ରାଜସ୍ୱ ବା କର ଆଦାୟ ଏବଂ (୧୨) କୃଷି, ବାଣିଜ୍ୟ, କଳା, ସାହିତ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଶିଳ୍ପର ବିକାଶ ସାଧନ ।

ଏହିପରି ଭାବେ ବିଚାର କଲେ, ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଉଭୟ ପାଶ୍ଚାତ୍ୟ ଓ ପ୍ରାଚ୍ୟ ଜଗତରେ ରାଜନୀତି ବିଜ୍ଞାନ ଏକ ସୁସ୍ଥିର ରୂପ ପରିଗ୍ରହ କରିସାରିଥିଲା ବୋଲି ନିର୍ବିବାଦରେ କୁହାଯାଇପାରେ । ମାନବ ସଭ୍ୟତାର ଆଦିମ ପର୍ଯ୍ୟାୟରେ ରାଷ୍ଟ୍ରଗଠନର ଯେଉଁ ପରିକଳ୍ପନା ଅଙ୍କୁରିତ ହୋଇଥିଲା, ବିଭିନ୍ନ ରାଷ୍ଟ୍ରର ଉତ୍ଥାନ ପତନ, ସେ ସବୁର ଶାସନ ବ୍ୟବସ୍ଥାର ସୁ ଓ କୁ ପରିଣାମ ଅନୁଧ୍ୟାନ, ଆଦର୍ଶ ରାଷ୍ଟ୍ରନୀତି, ପ୍ରଜାପାଳନ ଓ ରାଷ୍ଟ୍ରରକ୍ଷା ପ୍ରଭୃତି ସମ୍ପର୍କରେ ବିଭିନ୍ନ ରାଜନୈତିକ ଚେତନାର ସଂଘର୍ଷ, ବିଶିଷ୍ଟ ଚିନ୍ତାଶୀଳ ଶାସକ, ଜନନାୟକ ଓ ରାଜନୀତି ବୈଜ୍ଞାନିକମାନଙ୍କ ପରିଶ୍ରମିତ ଅନୁଶୀଳନ ତଥା ଯୁଗୋପଯୋଗୀ ରାଷ୍ଟ୍ରନୀତିର ଉଦ୍ଭାବନ ପ୍ରଭୃତି ଫଳରେ ତାହା ଏକ ପଲ୍ଲବିତ ଓ ପୁଷ୍ପିତ ଲତାରେ ପରିଣତ ହେଲା । କିନ୍ତୁ କୌଣସି ରାଷ୍ଟ୍ର କିମ୍ବା ଶାସକ ପୂର୍ବ ପରିକଳ୍ପିତ ରାଜନୈତିକ ଆଦର୍ଶ ସମୂହକୁ ବିଶ୍ୱସ୍ତ ଭାବେ ସମ୍ପୂର୍ଣ୍ଣ ରୂପେ ଅନୁସରଣ କରିବା ସମ୍ଭବପର ନୁହେଁ । ରାଷ୍ଟ୍ରୀୟ ଆବଶ୍ୟକତା, ସାମାଜିକ ପୃଷ୍ଠଭୂମି, ଭୌଗୋଳିକ ପରିବେଶ, ଜାତିଗତ ଚରିତ୍ର ପ୍ରଭୃତିକୁ ଭିତ୍ତି କରି ଗୋଟିଏ ଗୋଟିଏ ରାଷ୍ଟ୍ର ବା ରାଜ୍ୟର ଏକ ନିର୍ଦ୍ଦିଷ୍ଟ ସମୟର ରାଜନୈତିକ ଆଦର୍ଶ ସ୍ୱୀକୃତ ହୋଇଥାଏ । ଏଥିପାଇଁ ହମୁରାବିଙ୍କ ଠାରୁ ଆରିଷ୍ଟୋଟଲ, ଆରିଷ୍ଟୋଟଲଙ୍କ ଠାରୁ ସିସେରୋ, ସିସେରୋଙ୍କ ଠାରୁ ଅଗଷ୍ଟାଇନ୍, ଅଗଷ୍ଟାଇନ୍‌ଙ୍କ ଠାରୁ ମେକ୍ୟାଭେଲି, ମେକ୍ୟାଭେଲିଙ୍କ ଠାରୁ ମନୁ କିମ୍ବା କୌଟିଲ୍ୟ ପ୍ରଭୃତିଙ୍କ ରାଷ୍ଟ୍ରାଦର୍ଶ ସ୍ୱତନ୍ତ୍ର । ଏଣୁ ଏକ ନିର୍ଦ୍ଦିଷ୍ଟ ସମୟର କିମ୍ବା ଜଣେ ବିଶିଷ୍ଟ ଚିନ୍ତାନାୟକଙ୍କ ରାଜନୈତିକ ଆଦର୍ଶ ସମ୍ପର୍କରେ ଚିନ୍ତା କଲାବେଳେ ସେହି ଯୁଗର କିମ୍ବା ସେହି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କର ସମସାମୟିକ ପରିବେଶର ପର୍ଯ୍ୟାଲୋଚନା ଏକାନ୍ତ ଅପରିହାର୍ଯ୍ୟ । ସୁତରାଂ, ସାରଳା ଦାସଙ୍କ ରାଜନୈତିକ ଆଦର୍ଶର ଯଥାର୍ଥ ରୂପାୟନ ନିମିତ୍ତ ସମକାଳୀନ ରାଜନୈତିକ ପରିବେଶ ତଥା ଚିନ୍ତାଧାରାର ଏକ ସାମଗ୍ରିକ ବିଶ୍ଳେଷଣ ଆବଶ୍ୟକ ।



ଦ୍ୱିତୀୟ ପରିଚ୍ଛେଦ

# ସାରଳାଙ୍କ ରାଜନୈତିକ ଚେତନା : ପରମ୍ପରା ଓ ପରିବେଶ

**ବ୍ୟ**କ୍ତିର ମାନସିକ ଓ ବୌଦ୍ଧିକ ବିକାଶ ପାଇଁ ପରମ୍ପରା ଓ ପରିବେଶର ପ୍ରଭାବ ଯେ ବହୁ ପରିମାଣରେ ଦାୟୀ, ଏହା ଅନସ୍ୱୀକାର୍ଯ୍ୟ । ପରମ୍ପରାର ପ୍ରଚ୍ଛେଦନା ଯେପରି ତାର ଚିନ୍ତବୃତ୍ତିକୁ ନିୟନ୍ତ୍ରଣ କରେ, ପ୍ରଚଳିତ ସାମାଜିକ ଚଳଣି କରଣି, ନୀତିନିୟମ, ଆଶାବିଶ୍ୱାସ ପ୍ରଭୃତି ସେପରି ତାର ମାନସ ରାଜ୍ୟରେ ଗଭୀର ରେଖାପାତ କରିଥାଏ । ଏଣୁ ମାନବ ପରିସ୍ଥିତିର ଦାସ ବୋଲି ଯାହା କୁହାଯାଇଥାଏ, ତାର ତାତ୍ପର୍ଯ୍ୟ ଅତ୍ୟନ୍ତ ଗଭୀର ଓ ବ୍ୟାପକ । ଗ୍ରୀସ୍‌ର ଉନ୍ନତ ନଗର-ରାଷ୍ଟ୍ର ସଭ୍ୟତା କିମ୍ବା ସକ୍ରେଟିସ ଓ ପ୍ଲାଟୋଙ୍କ ଚିନ୍ତାଧାରା ଉପରେ ଯେପରି ଆରିଷ୍ଟୋଟଲଙ୍କ ରାଷ୍ଟ୍ରାଦର୍ଶ ଆଧାରିତ, ସେହିପରି ମୌର୍ଯ୍ୟୋତ୍ତର କଳଙ୍କିତ ଶାସନ ବ୍ୟବସ୍ଥା ତଥା ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ସୁଶାସନ ପ୍ରଣାଳୀ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ପାଇଁ ପ୍ରେରଣାର ଉତ୍ସ । ସେଥିପାଇଁ ପ୍ରସ୍ତୁତ ପରିଚ୍ଛେଦରେ ସାରଳା ଦାସଙ୍କର ସମକାଳୀନ ଓଡ଼ିଶା ଓ ଭାରତ ବର୍ଷର ରାଜନୈତିକ ପରିବେଶ ତଥା ଓଡ଼ିଶାର ରାଜନୈତିକ ପରମ୍ପରା ସମ୍ପର୍କରେ ବିଶ୍ଳେଷଣ କରିବା ଆମର ଲକ୍ଷ୍ୟ । ପୁନଶ୍ଚ, ମାନବୀୟ ଚିନ୍ତା ଓ ଚେତନାର ରୂପାୟନରେ ସମୟର ଏକ ବିଶିଷ୍ଟ ଭୂମିକା ଲକ୍ଷ୍ୟ କରାଯାଇପାରେ । ଏକ ନିର୍ଦ୍ଦିଷ୍ଟ କାଳରେ ବିଶ୍ୱର ବିଭିନ୍ନ ସ୍ଥାନରେ ପରସ୍ପର ସମ୍ପର୍କହୀନ ବିଭିନ୍ନ ପ୍ରତିଭାଧର ମନୀଷୀମାନଙ୍କ ମଧ୍ୟରେ ଚିନ୍ତାସାମ୍ୟ ପରିଲକ୍ଷିତ ହୋଇଥାଏ । ଏଥିପାଇଁ କୁହାଯାଏ ଯେ ମହାମନୀଷୀମାନେ ସମଚିନ୍ତାଧାରା ପୋଷଣ କରିଥାନ୍ତି ( Great men think alike ) । ସେ ଦୃଷ୍ଟିରୁ ସାରଳା ଦାସଙ୍କ ସମସାମୟିକ କାଳରେ ବିଶ୍ୱର ଅନ୍ୟାନ୍ୟ ଚିନ୍ତାଶୀଳ ରାଜନୀତି ଦାର୍ଶନିକମାନେ ଯେଉଁ ସବୁ ରାଜନୈତିକ ମତବାଦ ପ୍ରଖ୍ୟାପନ କରିଥିଲେ, ତାର ସମ୍ୟକ୍ ସୂଚନା ଦେବା ସମୀଚୀନ ହେବ । ଏ ସମସ୍ତର ସୁସଂହତ ଉପସ୍ଥାପନା ପାଇଁ ପରିଧିରୁ କେନ୍ଦ୍ରକୁ ଆସିବା ପରିବର୍ତ୍ତେ କେନ୍ଦ୍ରରୁ ପରିଧିକୁ ଯିବା ପାଇଁ ପ୍ରୟାସ କରାଯାଇଛି । ଅର୍ଥାତ୍, ସାରଳା ଦାସଙ୍କ ସମସାମୟିକ ଓଡ଼ିଶାରୁ ଆରମ୍ଭ କରି ବିଶ୍ୱଚେତନାକୁ ସ୍ପର୍ଶ କରିବା ଏହି ପରିଚ୍ଛେଦର ଲକ୍ଷ୍ୟ ।

ଓଡ଼ିଶାର ଇତିହାସରେ ପଞ୍ଚଦଶ ଶତାବ୍ଦୀ ଏକାନ୍ତ ସ୍ମରଣୀୟ । ଏହି ଶତାବ୍ଦୀରେ ଓଡ଼ିଶାର ସୀମାରେଖା ଯେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପ୍ରଲମ୍ବିତ ହୋଇ-ପାରିଥିଲା, ତାହା ନୁହେଁ; ସାହିତ୍ୟ ସଂସ୍କୃତି, କଳା ସ୍ଥାପତ୍ୟ, ଧର୍ମ ରାଜନୀତି ପ୍ରଭୃତି ସମସ୍ତ କ୍ଷେତ୍ରରେ ଓଡ଼ିଶାର ଉତ୍କର୍ଷ ଚରମସୀମା ସ୍ପର୍ଶ କରିପାରିଥିଲା । ଏହା ଥିଲା ସୂର୍ଯ୍ୟବଂଶୀ ଗଜପତିମାନଙ୍କର ଶାସନକାଳ । ଏ ବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ରଦେବ କେବଳ ଦିଗ୍‌ବିଜୟୀ ବୀର ଭାବରେ ନୁହେଁ, ଧର୍ମ, ସାହିତ୍ୟ ଓ ସଂସ୍କୃତିର ପୃଷ୍ଠପୋଷକ ରୂପେ ବିପୁଳ ଖ୍ୟାତି ଅର୍ଜନ କରିପାରିଥିଲେ । ଏହି ମହା-ମହିମ ସମ୍ରାଟଙ୍କ ରାଜତ୍ୱ କାଳରେ ହିଁ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଣ ପ୍ରତିଷ୍ଠାତା ଶୂଦ୍ରମୁନି ସାରଳା ଦାସଙ୍କର ଆବିର୍ଭାବ ଘଟିଥିଲା । ସାରଳା ଦାସଙ୍କ ଜନ୍ମ ଓ ତିରୋଧାନର ନିର୍ଦ୍ଦିଷ୍ଟ ବର୍ଷ ବା ତିଥି ନିର୍ଦ୍ଧାରିତ ହୋଇପାରି ନଥିଲେ ମଧ୍ୟ ସେ ଯେ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ତାଙ୍କର ସୁବିଶାଳ ମହାଭାରତ ଗ୍ରନ୍ଥକୁ ରୂପ-ଦେବା ପାଇଁ ପ୍ରୟାସ କରିଥିଲେ, ଏହା ସମସ୍ତ ସମାଲୋଚକ (୧) ଏକ ସ୍ୱରରେ ସ୍ୱୀକାର କରିଅଛନ୍ତି ।

ସାରଳା ମହାଭାରତ ଯେ ମୂଳ ସଂସ୍କୃତ ମହାଭାରତର ଏକ ଆକ୍ଷରିକ ଅନୁବାଦ ନୁହେଁ, (୨) ଏହା କହିବା ବାହୁଲ୍ୟ ମାତ୍ର । ନିଜର ପରମ୍ପରା ଓ ପରିବେଶକୁ

---

(୧) ଚଳିତ ଶତାବ୍ଦୀର ଆଦ୍ୟ ତିନି ଦଶକରେ ସାରଳା ଦାସଙ୍କ କାଳନିରୂପଣ ସଂକ୍ରାନ୍ତରେ ନାନା ତର୍କବିତର୍କରେ ସୂତ୍ରପାତ ପରେ ସମ୍ପ୍ରତି ଭାଷାଭିତ୍ତିକ ବିଚାର ଓ ଇତିହାସର ବୈଜ୍ଞାନିକ ବିଶ୍ଳେଷଣ ବଳରେ ୰ ମୃତ୍ୟୁଞ୍ଜୟ ରଥ, ୰ ତାରିଣୀ ଚରଣ ରଥ, ୰ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା, ୰ ମାୟାଧର ମାନସିଂହ, ୰ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ୰ ଡ଼କ୍ଟର ହରେକୃଷ୍ଣ ମହତାବ, ୰ ଡ଼କ୍ଟର ପ୍ରଭାତ କୁମାର ମୁଖାର୍ଜୀ, ଡ଼କ୍ଟର କୃଷ୍ଣଚରଣ ସାହୁ, ୰ ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡ଼କ୍ଟର ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ସୁରେନ୍ଦ୍ର ମହାନ୍ତି ପ୍ରମୁଖ ବହୁ ସମାଲୋଚକ ସିଦ୍ଧାନ୍ତରେ ଉପନୀତ ହୋଇ ସାରିଛନ୍ତି ଯେ ସାରଳା ୧୫ଶ ଶତାବ୍ଦୀର ବ୍ୟକ୍ତି ଏବଂ କପିଳେନ୍ଦ୍ର ଦେବଙ୍କ ଶାସନକାଳ (୧୪୩୫-୬୭)ର ଦ୍ୱିତୀୟାର୍ଦ୍ଧ ତଥା ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ (୧୪୬୭-୯୭) କାଳର ପ୍ରଥମାର୍ଦ୍ଧରେ ତାଙ୍କର ମହାଭାରତ ଗ୍ରନ୍ଥ ରଚିତ ।

(୨) ପରବର୍ତ୍ତୀ ଉକ୍ତ ପରିଚ୍ଛେଦରେ ଏ ବିଷୟ ବିଶେଷ ଆଲୋଚିତ ହୋଇଛି ।

ଉପଜୀବ୍ୟ କରି ସାରଳା ବ୍ୟାସଦେବଙ୍କ ମହାଭାରତର କଥାବସ୍ତୁକୁ ଏକ ଅଭିନବ ରୂପ ପ୍ରଦାନ କରିଛନ୍ତି । ଏଣୁ ସାରଳା ଦାସଙ୍କ ମହାଭାରତର ଯେ କୌଣସି ବିଭାଗ ଉପରେ ଆଲୋଚନା କରିବାକୁ ହେଲେ ଏହି ପରଂପରା ଓ ପରିବେଶ ସମ୍ପର୍କରେ ଅବହିତ ହେବା ଆବଶ୍ୟକ । ବିଶେଷତଃ ସାରଳା ମହାଭାରତରେ ରାଜନୀତି ଭଳି ଏକ ବିଷୟର ପର୍ଯ୍ୟାଲୋଚନା ପାଇଁ ଏହାର ଆବଶ୍ୟକତା ସର୍ବାଧିକ ।

## (କ) ଓଡ଼ିଶାର ରାଜନୈତିକ ପରମ୍ପରା ଓ ସାରଳା ଦାସ

ଭାରତର ରାଜନୈତିକ ମାନଚିତ୍ରରେ ଆଧୁନିକ ଓଡ଼ିଶାର ସୀମାରେଖା ନିର୍ଦ୍ଧାରଣ ଏକ ଅର୍ବାଚୀନ ଘଟଣା । କିନ୍ତୁ ଓଡ଼ିଶା ସୁଦୂର ଅତୀତରୁ ଭାରତର ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ଆସିଛି । କାଳର ବିବର୍ତ୍ତନରେ ଏହା ଯଥା କଳିଙ୍ଗ, ତ୍ରିକଳିଙ୍ଗ, ଓଡ୍ର, ଉତ୍କଳ, ତୋଷାଳି, କୋଶଳ ପ୍ରଭୃତି ନାମରେ ବିଭିନ୍ନ ସମୟରେ ପରିଚିତ ଲାଭ କରିଛି, କିମ୍ବା ସୀମାରେଖାର ସଙ୍କୋଚନ ବା ପ୍ରସାରଣ ଫଳରେ ନିଜର ରାଜନୈତିକ ରୂପକୁ ସୀମିତ ବା ବିସ୍ତୃତ କରିଛି; ତଥାପି ତାର ମୌଳିକ ବିଶେଷତ୍ୱ କୌଣସି ସମୟରେ କ୍ଷୁଣ୍ଣ ହୋଇନାହିଁ । ଅତୀତରେ ଏହି ଭୂମିରେ ପଦାର୍ପଣ କରି ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ; ବୁଦ୍ଧଦେବଙ୍କ ପବିତ୍ର ଦନ୍ତ ଏହି ସ୍ଥାନରୁ ସିଂହଳକୁ ପ୍ରେରିତ ହୋଇଥିଲା; ଏଠାରେ ପ୍ରତିଷ୍ଠିତ ପୁଷ୍ପଗିରି ବିହାର ଯୀଶୁଖ୍ରୀଷ୍ଟଙ୍କୁ ଆକୃଷ୍ଟ କରିଥିଲା (ଘ); ସର୍ବୋପରି, ଏହି ଭୂମିରେ ହିଁ ମହାଭାରତର ମହାନ ଚରିତ୍ର ଭଗବାନ ଶ୍ରୀକୃଷ୍ଣ ଜଗନ୍ନାଥ ରୂପେ

---

(ଘ) ଯୋସେଫ ଓ ଯୀଶୁଖ୍ରୀଷ୍ଟଙ୍କ ଭାରତ ତଥା ଓଡ଼ିଶା ଆଗମନ ସମ୍ବନ୍ଧରେ ଡକ୍ଟର ମିଙ୍ଗାନାଙ୍କର 'Early Spread of Christianity.' ଡକ୍ଟର ଲାଟୋରେଟଙ୍କର 'A History of the Expansion of Christianity', ଫାରୁକସାମ୍ବାରଙ୍କ 'The Apostle Thomas in South India,' ଜି. ଏଲ୍ କାଉଲଙ୍କ 'Kashmir through the Ages', ସେଭିସ୍ ସେଭିମ ପ୍ରଣୀତ The Mysticism in the Temple of Jagannath at Puri (pp 161-164) Rao, Elizabeth—New Thinking in Christianity (Essay) Kamath M. V. (Ed) The Illustrated Weekly of India, Bombay (Dec. 21-27, 1930)-pp. 8-13 R. K. Das ଙ୍କ Legends of Jagannath Puri ପ୍ରଭୃତି ଅନେକ ଗ୍ରନ୍ଥରୁ ଏବଂ ତିବ୍ବତର ହେମିସ୍ ମଠରେ ସୁରକ୍ଷିତ ପ୍ରାଚୀନ ଧର୍ମଗ୍ରନ୍ଥରୁ ବହୁ ପ୍ରାମାଣିକ ତଥ୍ୟ ମିଳିସାଲେଣି ।

ଆବର୍ତ୍ତିତ ହୋଇଛନ୍ତି । ମହାମେଘବାହନ ଖାରବେଳ କଳିଙ୍ଗର ସୀମାକୁ ମହାରାଷ୍ଟ୍ର ଠାରୁ ମଥୁରା ପର୍ଯ୍ୟନ୍ତ ବିସ୍ତୃତ କରିଥିବା ଇତିହାସପ୍ରସିଦ୍ଧ । ତାଙ୍କ ପରବର୍ତ୍ତୀ ସମୟରେ ସାତବାହନ, କୁଷାଣ, ଗୁପ୍ତ, ମାଠର, ପୂର୍ବଗଙ୍ଗ, ନଳ, ବିଗ୍ରହ, ମୁଦ୍‌ଗଲ, ଶରଭପୁରୀୟ, ଶୈଳୋଦ୍‌ଭବ, ଭୌମକର, ସୋମ, ନାଗ ଓ ହୈହୟ ଆଦି ବିଭିନ୍ନ ରାଜବଂଶର ଶାସକଗଣ ରାଜନୀତି ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ବହୁ ଶାସକ ଆଜି ଇତିହାସ ଗର୍ଭରେ ବିଲୀନ, କିନ୍ତୁ ଅନ୍ୟ କେତେକ ବିଶିଷ୍ଟ ରାଜା ନିଜ ନିଜର କୀର୍ତ୍ତି ପାଇଁ ଓଡ଼ିଆ ଜାତିର ସ୍ମୃତିପଟରେ ଉଜ୍ଜୀବିତ ହୋଇ ରହିଛନ୍ତି । (୪) ତଥାପି, ଏହି ପରବର୍ତ୍ତୀ ରାଜାମାନଙ୍କ ଶାସନ ପ୍ରଣାଳୀ ସମ୍ପର୍କରେ ଅବହିତ ହେବା ସାରଳା ଦାସଙ୍କ ପକ୍ଷରେ ସମ୍ଭବପର ହୋଇଥିବ ବୋଲି ମନେ ହୁଏ ନାହିଁ । କିନ୍ତୁ ସେ ଯେ ଏହି ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଦେବଦେବୀ ଓ ସେମାନଙ୍କ ଦ୍ୱାରା ନିର୍ମିତ ମନ୍ଦିରରାଜି ମାଧ୍ୟମରେ ଅତୀତ ରାଜନୀତିର ପରଂପରା ସହିତ ପରିଚିତ ହୋଇ ପାରିଛନ୍ତି, ଏହା ତାଙ୍କ ମହାଭାରତରୁ ସୁସ୍ପଷ୍ଟ ।

ସୂର୍ଯ୍ୟବଂଶୀ ରାଜାମାନଙ୍କର ଠିକ୍ ପୂର୍ବରୁ ଗଙ୍ଗବଂଶୀୟ ରାଜାମାନେ ଓଡ଼ିଶାର ଶାସନ ଦାୟିତ୍ୱ ବହନ କରିଥିଲେ । ସେମାନଙ୍କର ସୁଶାସନ ଫଳରେ ଓଡ଼ିଶାର ପରିସୀମା ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତାରିତ ହୋଇଥିଲା ଓ କଳା, ସ୍ଥାପତ୍ୟ, ଧର୍ମ, ସାହିତ୍ୟ ପ୍ରଭୃତି କ୍ଷେତ୍ରରେ ଚରମ ଉତ୍କର୍ଷ ଘଟିଥିଲା । ସୀମାଚଳର ନୃସିଂହନାଥ ମନ୍ଦିର, (୪କ) ଶ୍ରୀ କ୍ଷେତ୍ରର ଜଗନ୍ନାଥ ମନ୍ଦିର ଏବଂ କୋଣାର୍କର ସୂର୍ଯ୍ୟ ମନ୍ଦିର ଏହି ରାଜବଂଶର କୀର୍ତ୍ତି ଯଶୋଗାଥା ଗାନ କରେ । ଏହି ରାଜବଂଶର ଅବସାନ ବେଳକୁ ସାରଳା ଦାସ ଜନ୍ମ ଗ୍ରହଣ କରିଥିବା ସମ୍ଭବପର । ଏଣୁ ଗଙ୍ଗ ରାଜାମାନଙ୍କର ଉତ୍ଥାନ ପତନ, ସେମାନଙ୍କର ଶାସନ ପ୍ରଣାଳୀ, ଧର୍ମ ଓ ଦର୍ଶନ ସମ୍ପର୍କରେ ସାରଳା ସମ୍ପୂର୍ଣ୍ଣ ଅବହିତ ହୋଇଥିବା ଅସ୍ୱୀକାର କରାଯାଇ ନପାରେ ।

---

(୪) ସିଂହ, ଜଗବନ୍ଧୁ—ପ୍ରାଚୀନ ଉତ୍କଳ (ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ୧୯୬୪) ପୃ. ୨୯୦-୩୦୮ ଏବଂ ସାହୁ, ଡକ୍ଟର ନବୀନକୁମାର—ଓଡ଼ିଆ ଜାତିର ଇତିହାସ (ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର—୧୯୭୪ ମୁଦ୍ରଣ ) ପୃ ୧୧୦-୧୭୯

(୪-କ) **Sundaram, Dr. K.—The Simhachalam Temple, Simhachalam Devasthanam, 2nd Ed 1984 P. 17,**

ଏହି ଦୃଷ୍ଟିରୁ ଏଠାରେ ମହାନନ୍ଦ ସାରଳା ତଥା କପିଳେନ୍ଦ୍ର ଦେବଙ୍କ ପୂର୍ବବର୍ତ୍ତୀ କାଳର ଶାସନ ପ୍ରଣାଳୀ ସମ୍ପର୍କରେ ଆଲୋଚନା କରାଯାଉଛି ।

**ପ୍ରାଚୀନ ଉତ୍କଳର ଶାସନ ବ୍ୟବସ୍ଥା**

ଅନୁଧ୍ୟାନ କଲେ ଜଣାଯାଏ ଯେ ବିଗତ ସହସ୍ର ଶତାବ୍ଦୀ ଧରି ଓଡ଼ିଶା ବା କଳିଙ୍ଗରେ ସାଧାରଣତନ୍ତ୍ର ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇ ନଥିଲା । ବିଭିନ୍ନ ରାଜବଂଶର ଶାସକବୃନ୍ଦ ମନ୍ତ୍ରୀ, ଅମାତ୍ୟ, ପୁରୋହିତ, ସେନାଧ୍ୟକ୍ଷ ତଥା ଗ୍ରାମମୁଖ୍ୟଙ୍କ ପରାମର୍ଶ ଗ୍ରହଣ କରୁଥିଲେ ମଧ୍ୟ ରାଜାମାନେ ସର୍ବୋଚ୍ଚ କ୍ଷମତାଧାରୀ ଭାବରେ ଆଧିପତ୍ୟ ବଜାୟ ରଖିଥିଲେ । ରାଜପଦ ଅଧିକାର ଥିଲା ମୁଖ୍ୟତଃ ବଂଶପରଂପରାନୁକ୍ରମିକ । ତେବେ, ରାଜାଗଣ ସାଧାରଣତଃ ଥିଲେ କଲ୍ୟାଣବ୍ରତୀ ଓ ପ୍ରଜାବତ୍ସଳ । ଜନସାଧାରଣଙ୍କର ମଙ୍ଗଳ ବିଧାନ ତଥା ଜଳାଶୟ ଖନନ, ବୃକ୍ଷରୋପଣ, କରଭାର ଲାଘବ, ଗଣମନୋରଞ୍ଜନ ଇତ୍ୟାଦି ଆଦର୍ଶ ରାଜକାର୍ଯ୍ୟର ନମୁନା ରୂପେ ପରିଗଣିତ ହେଉଥିଲା । ବ୍ୟାପକ ଦୃଷ୍ଟିରୁ ଶାସନପ୍ରଥା ରାଜତାନ୍ତ୍ରିକତାର ରୂପ ପରିଗ୍ରହ କରିଥିଲେ ମଧ୍ୟ ଗ୍ରାମ୍ୟ ସ୍ତରରେ ତାହା ଥିଲା ଲୋକମତଭିତ୍ତିକ ବା ଗଣତାନ୍ତ୍ରିକ ଧାରାର ଅନୁପୂରକ । ପ୍ରତ୍ୟେକ ଗ୍ରାମ ଥିଲା ଜଣେ ଗ୍ରାମିକଙ୍କ ଅଧୀନରେ ସ୍ୱାୟତ୍ତଶାସିତ । ପଞ୍ଚାୟତ, ଜନସଭା ବା ଗ୍ରାମସଭା ଯେ କୌଣସି ନାମରେ ହେଉନା କାହିଁକି, ଗ୍ରାମ୍ୟ ସ୍ତରରେ କ୍ଷମତାର ବିକେନ୍ଦ୍ରୀକରଣ ନୀତି ଅନୁସୃତ ହେଉଥିଲା ଏବଂ ଏହାଦ୍ୱାରା ବାଦ ବିବାଦର ସମାଧାନ, ଶିକ୍ଷା-ପ୍ରସାର, ପରିମଳ ବ୍ୟବସ୍ଥାଦି ସୁଚାରୁ ରୂପେ ସମ୍ପନ୍ନ ହୋଇପାରୁଥିଲା । (୫-କ)

ମୌସୁମୀ ପ୍ରବାହର ଅନିଶ୍ଚିତତାଜନିତ ଦୁର୍ଭିକ୍ଷର ପ୍ରତିକାର ନିମିତ୍ତ ନନ୍ଦବଂଶ ରାଜତ୍ୱ କାଳରୁ କୃଷିର ବିକାଶ କଳ୍ପେ କେନାଲ ଖନନ ଉପରେ ପ୍ରାଧାନ୍ୟ ଆରୋପ କରାଯାଇଛି ଏବଂ ବାଣିଜ୍ୟର ପ୍ରସାର ଦିଗରେ ଦୃଷ୍ଟି ଦିଆଯାଇଛି । ମହାପଦ୍ମ ନନ୍ଦ ବାଣିଜ୍ୟର ସୁନିୟନ୍ତ୍ରଣ ଉଦ୍ଦେଶ୍ୟରେ ନୂତନ ମାପ, ଓଜନ ଓ ପରିମାଣ ସ୍ଥିର କରିଥିଲେ । (୫-ଖ) ନନ୍ଦବଂଶ ଓ ମୌର୍ଯ୍ୟ ଶାସନର ମଧ୍ୟବର୍ତ୍ତୀ

---

(୫-କ) ସାହୁ, ଡ଼କ୍ଟର ନବୀନକୁମାର : ଓଡ଼ିଆ ଜାତିର ଇତିହାସ ପୃ. ୩୬

(୫-ଖ) Panigrahy, Dr. K. C.—History of Orissa (Kitab Mahal, Cuttack, 1st Ed. 1981) P. 254

କାଳରେ ରାଜନୈତିକ ଅସ୍ଥିରତା ସତ୍ତ୍ୱେ ସମ୍ରାଟ ଅଶୋକଙ୍କ ଆକ୍ରମଣର ସମ୍ମୁଖୀନ ହେବା ଲାଗି କଳିଙ୍ଗର ଦେଢ଼ ଲକ୍ଷ ବୀରସେନା ଯେଉଁଭଳି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ସେଥିରୁ ତତ୍କାଳୀନ ଓଡ଼ିଶାରେ ଦୃଢ଼ ଓ ସୁଶୃଙ୍ଖଳିତ ଶାସନ ବ୍ୟବସ୍ଥା ରହିଥିବା ସ୍ପଷ୍ଟ ଅନୁମେୟ । ଖାରବେଳଙ୍କ ସମୟରେ ରାଜ୍ୟବିସ୍ତାର ଓ ସମରସଜ୍ଜା ଉପରେ ଗୁରୁତ୍ୱ ଦିଆଯାଉଥିଲେ ମଧ୍ୟ କେନାଲ ଖନନ, ଜଳାଶୟ ପ୍ରତିଷ୍ଠାଦି ବହୁ ଜନକଲ୍ୟାଣକର କାର୍ଯ୍ୟ ସମ୍ପାଦିତ ହୋଇଥିଲା ।

ମାଠରମାନଙ୍କ ରାଜତ୍ୱ କାଳରେ କଳିଙ୍ଗକୁ କେତୋଟି ପଞ୍ଚାଳିରେ ବିଭକ୍ତ କରାଯାଇଥିଲା ଏବଂ ପରେ 'ପଞ୍ଚାଳି' ପରିବର୍ତ୍ତେ 'ଭୋଗ' ଶବ୍ଦ ବ୍ୟବହୃତ ହୋଇଥିଲା । କାଳକ୍ରମେ 'ବିଷୟ' ନାମରେ ବିଭାଗ ଗଠିତ ହୋଇ ପୂର୍ବ ଗଙ୍ଗ ବଂଶୀୟ ଶାସନର ଅଭ୍ୟୁଦୟ ବେଳକୁ ପଞ୍ଚାଳି, ଭୋଗ ଓ ବିଷୟ ସାଙ୍ଗକୁ ଭୁକ୍ତି, ବର୍ତ୍ତିନୀ ଓ ରାଷ୍ଟ୍ର ନାମରେ ପ୍ରଶାସନିକ ବିଭାଜନ ଘଟିଥିଲା । (୬) ଶୈଳୋଦ୍ଭବ ରାଜ୍ୟ କଙ୍ଗୋଦ ମଣ୍ଡଳର ପ୍ରଶାସନିକ ବିଭାଗଗୁଡ଼ିକ କୃଷ୍ଣଗିରି ବିଷୟ, ଯୋଗଣ ବିଷୟ, ଦେବଗ୍ରାମ ବିଷୟ, ଗଡ଼ ବିଷୟ, ଉଜଝଳକ ବିଷୟ, କଟକ ଭୁକ୍ତି ବିଷୟ, ବର୍ତ୍ତିନୀ ବିଷୟ ପ୍ରଭୃତି ନାମରେ ପରିଚିତ ଥିଲା । ତତ୍କାଳୀନ ରାଜକର୍ମଚାରୀଙ୍କ ମଧ୍ୟରେ ଅମାତ୍ୟ, କୁମାରାମାତ୍ୟ, ତଳବାର, ଦେଶାକ୍ଷପଟଳ ମହାପ୍ରତିହାର, ଦଣ୍ଡନେତା, ଦୂତକ, ଅଙ୍କଭୋଗିକ, ଦଣ୍ଡନାୟକ ଓ ମହାଦଣ୍ଡନାୟକ ପ୍ରଭୃତି ପ୍ରଧାନ ସ୍ଥାନ ଅଧିକାର କରିଥିଲେ ।

ଭୌମ ରାଜତ୍ୱରେ କେନ୍ଦ୍ର ଶାସନ ଦାୟିତ୍ୱରେ ନିଯୁକ୍ତ ସର୍ବୋଚ୍ଚ ରାଜକର୍ମଚାରୀ ଥିଲେ ମହାସାମନ୍ତ, ତାଙ୍କ ପରେ ମହାରାଜ (ବା ଗଭର୍ଣ୍ଣର) ଏବଂ ତାଙ୍କ ପରେ କ୍ରମାନ୍ୱୟରେ ରହିଥିଲେ କୁମାରାମାତ୍ୟ, ଉପରିକ, ତଦାୟୁକ୍ତକ ଓ ବୈଶୟିକ । ବିଷୟର ଶାସନକର୍ତ୍ତା ଥିଲେ ବିଷୟପତି; ପୋଲିସ ବିଭାଗର ଅଧିପତିଙ୍କୁ ଦଣ୍ଡପାଶିକ ଏବଂ ତାଙ୍କ ସହକାରୀଙ୍କୁ ସ୍ଥାନାନ୍ତରିକ କୁହାଯାଉଥିଲା ।

---

(୬) ଗଙ୍ଗଶାସିତ କଳିଙ୍ଗର ପ୍ରଶାସନିକ ବିଭାଗମାନଙ୍କ ମଧ୍ୟରେ ଦେବପଞ୍ଚାଳି, ଚିକଳି ପଞ୍ଚାଳି, ମହେନ୍ଦ୍ର ଭୋଗ, ଦନ୍ତୟବାଗୁ ଭୋଗ, ଭୁଲଙ୍ଗ ଭୋଗ, ଦେବଦାମଧର ବିଷୟ, ଗ୍ରୈପ୍ୟାବଳି ବିଷୟ, ଉଶକେଣ୍ଟୁ ବିଷୟ, ବରାହବର୍ତ୍ତିନୀ, କୋଷ୍ଟକବର୍ତ୍ତିନୀ, କୋଲୁବର୍ତ୍ତିନୀ, ଫରେସ୍ତଭୁକ୍ତି, ମଧ୍ୟଭୁକ୍ତି, ପୂରକ ରାଷ୍ଟ୍ର ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ସେତେବେଳେ ଜନସାଧାରଣ କୃଷି ଓ ବାଣିଜ୍ୟ ଉପରେ ନିର୍ଭରଶୀଳ ଥିଲେ। ଶାସକଗଣ ମୁଖ୍ୟତଃ ବହୁମୁଖିକ ଥିଲେ ଏବଂ ଷାନଧର୍ମ ଶ୍ରେଷ୍ଠ ବିବେଚିତ ହେଉଥିଲ।

ଗଙ୍ଗ ସାମ୍ରାଜ୍ୟ ବିଭିନ୍ନ ମହାମଣ୍ଡଳରେ ବିଭକ୍ତ ଥିଲା ଏବଂ ପ୍ରତ୍ୟେକ ମହାମଣ୍ଡଳ ଜଣେ ମହାରାଣକ ବା ମହାମଣ୍ଡଳିକଙ୍କ ଅଧୀନରେ ଶାସିତ ହେଉଥିଲା। ମହାମଣ୍ଡଳଗୁଡ଼ିକୁ ଭିନ୍ନ ଭିନ୍ନ ମଣ୍ଡଳରେ ଏବଂ ମଣ୍ଡଳଗୁଡ଼ିକୁ ଭୋଗ, ବିଷୟ ଓ ନାଡ଼ୁ ଭାବରେ ବିଭକ୍ତ କରାଯାଇଥିଲା। ମଣ୍ଡଳର ଶାସନ ଦାୟିତ୍ୱରେ ମଣ୍ଡଳିକ ବା ରାଣକ, ଭୋଗ ଓ ବିଷୟ ଦାୟିତ୍ୱରେ ଭୋଗପତି ଓ ବିଷୟପତି ଏବଂ ନାଡ଼ୁ (ବହୁ ଗ୍ରାମର ସମାହାରରେ ଗଠିତ ଅଞ୍ଚଳ) ଦାୟିତ୍ୱରେ ଗ୍ରାମିକମାନେ ନିଯୁକ୍ତ ଥିଲେ। ଗ୍ରାମ ଶାସନ ପରିଚାଳନା କ୍ଷେତ୍ରରେ ଗ୍ରାମିକଙ୍କୁ ସାହାଯ୍ୟ କରିବା ସକାଶେ ପୁରୋହିତ, ତଳବାର୍ଗ ବା ଦଣ୍ଡପାଶୀ, କରଣ, ଗ୍ରାମଭଟ, ଦଣ୍ଡନାୟକ ପ୍ରମୁଖ ରହିଥିଲେ। ଏହି ସମୟରେ କେତେକ ବଡ଼ ଗ୍ରାମ ବିଭିନ୍ନ ପଲ୍ଲୀରେ ବିଭକ୍ତ ହୋଇଥିଲା ବେଳେ ଅନ୍ୟ କେତେକ ସହର (ନଗର ବା ପୁର)ରେ ପରିଣତ ହୋଇଥିଲା। ତତ୍କାଳୀନ ନଗରମାନଙ୍କ ମଧ୍ୟରେ କଳିଙ୍ଗ ନଗର, ଦନ୍ତପୁର, ସିଂହପୁର, କୋଲାହଳପୁର, ପିଷ୍ଟପୁର (ପିଠାପୁର) ପ୍ରଭୃତି ପ୍ରଧାନ ଏବଂ କଳିଙ୍ଗ ପଟ୍ଟନ, ବିଶାଖାପଟ୍ଟନ ଓ ଭିମଲିପଟ୍ଟନ ପ୍ରଧାନ ବନ୍ଦର ଭାବେ ପ୍ରଖ୍ୟାତ ଥିଲା। (୭)

ଆଲୋଚ୍ୟ କାଳରେ ଅଧିକରଣ ଶୁଲ୍କ (କୋର୍ଟ ଫି), ମାର୍ଗ ଶୁଲ୍କ (ଟୋଲ ଫି), ଅପରାଧ ଶୁଲ୍କ (ଜରିମାନା), ଦାନ ଶୁଲ୍କ, ଜଙ୍ଗଲ ଓ ଖଣି ଶୁଲ୍କ ପ୍ରଭୃତି ରାଜସ୍ୱର ଅନ୍ତର୍ଭୁକ୍ତ ଥିଲା। ଏହା ବ୍ୟତୀତ, ଉତ୍ପାଦିତ ଶସ୍ୟର ଏକ-ଷଷ୍ଠାଂଶ ରାଜସ୍ୱ ରୂପେ ନିର୍ଦ୍ଧାରିତ ହୋଇଥିଲା। ଶିକ୍ଷା ଓ ଧର୍ମର ପ୍ରସାର, ରାସ୍ତାଘାଟ ନିର୍ମାଣ, ଶାସନ ପରିଚାଳନାଦି କାର୍ଯ୍ୟରେ ରାଜସ୍ୱକୁ ବିନିଯୋଗ କରାଯାଉଥିଲା। କୃଷି, ବାଣିଜ୍ୟ ଓ ବ୍ୟବସାୟର ସୁନିୟନ୍ତ୍ରଣ ଉଦ୍ଦେଶ୍ୟରେ ମୁଦ୍ରା, ମାପ, ଓଜନ ଓ ଭୂବନ୍ଦୋବସ୍ତ ବ୍ୟବସ୍ଥା ପ୍ରଚଳନ କରାଯାଇଥିଲା। ସେନାଧ୍ୟକ୍ଷ, ବ୍ରାହ୍ମଣ ଓ ଦେବାନୁଷ୍ଠାନମାନଙ୍କୁ ନିଷ୍କର ଜମି ଦାନପତ୍ରରେ ପ୍ରଦାନ କରାଯାଇ ସେଗୁଡ଼ିକୁ ସମସ୍ତ ପ୍ରକାର କର ଦେୟରୁ ମୁକ୍ତ ରଖାଯାଇଥିଲା। ବିଭିନ୍ନ ଶାସନ-

(୭) Rajguru, S. N—History of the Gangas (Part-1) (Orissa State Museum, Bhubaneswar, 1968)—P. 2

କାର୍ଯ୍ୟ ପରିଚାଳନା ପାଇଁ ଗଙ୍ଗବଂଶୀୟ ରାଜଦରବାରରେ ୧୬ ଜଣ ମନ୍ତ୍ରୀ ନିଯୁକ୍ତ ଥିଲେ । ଏହି ସମୟରେ ଓଡ଼ିଶାରେ ଶୈବ, ଶାକ୍ତ ଓ ବୌଦ୍ଧଧର୍ମର ପ୍ରଭାବ ସତ୍ତ୍ୱେ ଜଗନ୍ନାଥ ଉପାସନା ପ୍ରାଧାନ୍ୟ ଲାଭ କରିଥିଲା ଏବଂ ପରେ ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ସେଥିରେ ବ୍ୟତିକ୍ରମ ପରିଲକ୍ଷିତ ହେବା ଫଳରେ ତାହା ଗଙ୍ଗବଂଶ ପତନର ପ୍ରଧାନ କାରଣ ହୋଇଥିଲା । (୮)

ଅବକ୍ଷୟକାଳୀନ ଗଙ୍ଗ ସମ୍ରାଟମାନଙ୍କର ଦୁର୍ବଳ ଶାସନଶୃଙ୍ଖଳା ପ୍ରପୀଡ଼ିତ ଉତ୍କଳ ରାଜ୍ୟ ଯେତେବେଳେ ଚତୁର୍ଦ୍ଦିଗରୁ ବହିରାକ୍ରମଣର ସମ୍ମୁଖୀନ ହୋଇଥିଲା, ସେତେବେଳେ ନିଜର ପରାକ୍ରମ ପ୍ରଦର୍ଶନ କରି ଜଣେ ସାଧାରଣ ଅଶ୍ୱାରୋହୀ ସୈନିକରୁ ମହାପାତ୍ର ପଦବୀକୁ ଉନ୍ନୀତ ହୋଇଥିବା କ୍ଷତ୍ରିୟ ସନ୍ତାନ କପିଳେଶ୍ୱର କପିଳେନ୍ଦ୍ର ନାମରେ ଖ୍ରୀ: ୧୪୩୫ ରେ ଓଡ଼ିଶାର ରାଜସିଂହାସନ ଆରୋହଣ କରିଥିଲେ । (୯) ତାଙ୍କ ରାଜତ୍ୱ କାଳରେ ରଣରଙ୍ଗ ଓଡ଼ିଆ ପାଇକ ଓ ଶ୍ରମଜୀବୀ କୃଷକମାନଙ୍କର ଏକ ସୁସଙ୍ଗଠିତ ସେନାବାହିନୀ ସାହାଯ୍ୟରେ ଓଡ଼ିଶାକୁ ଏକ ମହାନ ସାମ୍ରାଜ୍ୟରେ ପରିଣତ କରାଯାଇଥିଲା । ତାଙ୍କର ଦୀର୍ଘ ୩୩ ବର୍ଷର ରାଜତ୍ୱକାଳ ଓଡ଼ିଶାର ଇତିହାସରେ ଚିର ଦେଦୀପ୍ୟମାନ । ଏହି କାଳରେ ହିଁ ଓଡ଼ିଆ ଜାତି ଅବିରାମ ଜୈତ୍ରଯାତ୍ରା ଓ ଅନାହତ ସାମ୍ରାଜ୍ୟ ବିସ୍ତାର ଅନୁଭୂତ ବଳରେ ସ୍ୱୀୟ ଆତ୍ମବୈଶିଷ୍ଟ୍ୟ ସମ୍ପର୍କରେ ସଚେତନଶୀଳ ହୋଇପାରିଥିଲା ଏବଂ ତାର ପରିଣତି ସ୍ୱରୂପ ଏହି ସ୍ୱାଧୀନ ମନୋବୃତ୍ତିସମ୍ପନ୍ନ, ନିର୍ଭୀକଚେତା, ସ୍ୱାଭିମାନୀ ଓ ବଳିଷ୍ଠ ଆତ୍ମପ୍ରତ୍ୟୟଶୀଳ ଓଡ଼ିଆ ଜାତିର ଆଭିଜାତ୍ୟମୂର୍ତ୍ତି ବାଣୀ-ସୌରଭ ବିକଶିତ ହୋଇ ଏକ ସମୃଦ୍ଧ ସାରସ୍ୱତ ଭଣ୍ଡାର ଗଢ଼ି ଉଠିଥିଲା । (୧୦) କହିବା ବାହୁଲ୍ୟ ଯେ ସାରଳାଙ୍କ ମହାଭାରତ ଏ ସମୟର ଚିନ୍ତା ଓ ଚେତନାର ଏକ ଅମର ସ୍ମାରକୀ ତଥା ସମକାଳୀନ ଜୀବନଧାରାର ନିଚ୍ଛକ ଚିତ୍ରପଟ ।

---

(୮) Panigrahy: History of Orissa, P. 254

(୯) Subramanyam, R.-The Suryavansi Gajapatis of Orissa ( Andhra University, 1951 ) P. 131

(୧୦) ଆଗ୍ରହୀ, ଡ଼କ୍ଟର ସୁଦର୍ଶନ— ଓଡ଼ିଆ ଜାତି କୌଶଳ (ସତ୍ୟାଗ୍ରହୀ ନିକେତନ, ବ୍ରହ୍ମପୁର, ୧୯୮୩) ପୃ. ୧୩

## କପିଳେନ୍ଦ୍ରଦେବଙ୍କ ରାଜ୍ୟବିସ୍ତାର ବିବରଣୀ

ପୁରୀ, ଭୁବନେଶ୍ୱର, ସିଂହାଚଲମ୍, ଶ୍ରୀକୂର୍ମ, କୋଣ୍ଡାଭିଡୁ ଓ ଦ୍ରାକ୍ଷାରାମଠାରେ ଆବିଷ୍କୃତ କପିଳେନ୍ଦ୍ର ଦେବଙ୍କ ବିଭିନ୍ନ ଶିଳାଲେଖରୁ ତାଙ୍କ ରାଜତ୍ୱ କାଳର ରାଜନୈତିକ କୃତିତ୍ୱ ତଥା ଧାର୍ମିକ ଓ ସାମାଜିକ କାର୍ଯ୍ୟକଳାପର ସୂଚନାମାନ ମିଳେ । (ଏହି ସମସ୍ତ ଶିଳାଲେଖରେ କପିଳାବ୍ଦ ବା ସୌର ମାସାନୁସାରେ ସମୟ ନିର୍ଦ୍ଧାରିତ ହୋଇଥିଲେ ହେଁ ପ୍ରଭାତ ମୁଖାର୍ଜୀଙ୍କ 'The History of the Gajapati Kings of Orissa' ଗ୍ରନ୍ଥରେ ନିର୍ଦ୍ଦିଷ୍ଟ ଇଂରାଜୀ ତାରିଖର ସୂଚନା ପ୍ରଦତ୍ତ ହୋଇଛି ।) ଏଥିରୁ ପ୍ରତୀୟମାନ ହୁଏ ଯେ କପିଳେନ୍ଦ୍ରଙ୍କ ସିଂହାସନାରୋହଣ କାଳରେ ଓଡ଼ିଶା ଉଭୟ ଅନ୍ତଃଶତ୍ରୁ ଓ ବହିଃଶତ୍ରୁଙ୍କ ଦ୍ୱାରା କବଳିତ ହୋଇଥିବା ଯୋଗୁଁ ସେ ପ୍ରଥମେ ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଖ୍ରୀ ୧୪୩୬ରେ ଲବଣ ଶୁଳ୍କ ହାରରେ ରିହାତି ଘୋଷଣା କରିଥିଲେ । ଏହାପରେ ବଙ୍ଗ ସୁଲତାନ ଅହମ୍ମଦ ଶାହଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ବିଶ୍ୱସ୍ତ ପ୍ରତିନିଧି ଭାବରେ ଗୋପୀନାଥ ମହାପାତ୍ରଙ୍କୁ ନିଯୁକ୍ତ କରି ନିଜେ ବିଭିନ୍ନ ସାମନ୍ତ ରାଜାମାନଙ୍କୁ ଦମନ କରିବାରେ ପ୍ରବୃତ୍ତ ହୋଇଥିଲେ । ଖ୍ରୀ: ୧୪୩୭ ରେ ବିଦ୍ରୋହୀ ସାମନ୍ତ ରାଜାମାନଙ୍କୁ ବହିଷ୍କାର କରାଯାଇ ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରାଯିବ ବୋଲି ଘୋଷଣା କଲା ପରେ ସେ ଗୋଟିକ ପରେ ଗୋଟିଏ କରି ଖେମିଣ୍ଡିର ଗଙ୍ଗ, ନନ୍ଦପୁରର ଶୈଳୋଦ୍ଭବ, ଓଡ଼ାଡ଼ିର ମତ୍ସ୍ୟ ଓ ପଞ୍ଚଧାରା ଅଞ୍ଚଳର ବିଷ୍ଣୁବର୍ଦ୍ଧନମାନଙ୍କୁ ଦୃଢ଼ ହସ୍ତରେ ଦମନ କରି ଖ୍ରୀ: ୧୪୪୩ ବେଳକୁ ବିଶାଖାପାଟଣା ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଏହା ଫଳରେ ସିଂହାଚଳ ଅଞ୍ଚଳରୁ ରାଜମହେନ୍ଦ୍ରୀର ରେଡ୍ଡି ରାଜତ୍ୱ ପ୍ରତ୍ୟାହୃତ ହୋଇଥିଲା ଏବଂ କପିଳେନ୍ଦ୍ରଙ୍କ ଦାକ୍ଷିଣାତ୍ୟ ଅଭିଯାନ ନିମନ୍ତେ ପଥ ସୁଗମ ହୋଇଯାଇଥିଲା ।

ଖ୍ରୀ ୧୪୪୬ରେ ବିଜୟନଗର ରାଜା ଦ୍ୱିତୀୟ ଦେବରାୟଙ୍କ ଦେହାନ୍ତ ପରେ ମଲ୍ଲିକାର୍ଜୁନଙ୍କ ଦୁର୍ବଳତାର ସୁଯୋଗ ନେଇ କପିଳେନ୍ଦ୍ର ରାଜମହେନ୍ଦ୍ରୀ ଅଧିକାର କରିଥିଲେ ଏବଂ ରଘୁଦେବ ନରେନ୍ଦ୍ର ମହାପାତ୍ରଙ୍କୁ ସେଠାରେ ଗଭର୍ଣ୍ଣର ପଦବୀରେ ନିଯୁକ୍ତି ଦେଇଥିଲେ । ଖ୍ରୀ ୧୪୪୮ ରେ କଳିଙ୍ଗ ଦଣ୍ଡପାଟର ଦୁଇଜଣ ଗଭର୍ଣ୍ଣର ମଧୁକେଶ୍ୱର ସନ୍ଧିବିଗ୍ରହୀ ଓ ମହାପାତ୍ର ଶ୍ରୀ ସାଦମଲ୍ଲଙ୍କୁ ଶ୍ରୀକୂର୍ମ ମନ୍ଦିରର ପରିଚାଳନା ଦାୟିତ୍ୱ ଅର୍ପଣ କରାଯାଇଥିଲା । ଏହି ସମୟରେ ବଙ୍ଗର ଗୌଡ଼ ଦେଶ ମଧ୍ୟ ମୁସଲମାନ ରାଜତ୍ୱରୁ ବିଚ୍ଛିନ୍ନ ହୋଇ କଳିଙ୍ଗର ଶାସନାଧୀନକୁ ଆସିଥିଲା । ଫଳରେ

ଖ୍ରୀ ୧୪୫୦ ବେଳକୁ କପିଳେନ୍ଦ୍ର 'ଗଜପତି ଗୌଡ଼େଶ୍ୱର' ଉପାଧିରେ ଭୂଷିତ ହୋଇଥିଲେ । (୧୧) *

ଦ୍ୱିତୀୟ ଦେବରାୟଙ୍କ ପରେ କୋଣ୍ଡାବିଡ଼ୁରେ ବିଜୟନଗର ସାମ୍ରାଜ୍ୟର କର୍ତ୍ତୃତ୍ୱ ହ୍ରାସ ଘଟିବା ଫଳରେ ପରିସ୍ଥିତିର ସଦୁପଯୋଗପୂର୍ବକ କପିଳେନ୍ଦ୍ର ଖ୍ରୀ ୧୪୫୪ ରେ ସେହି ଦୁର୍ଗ ଦଖଲ କରିଥିଲେ ଏବଂ ଗଣଦେବ ରାଉତରାୟ ଆଡ଼ାଙ୍କି, ବିନୁକୋଣ୍ଡା ଓ କୋଣ୍ଡାବିଡ଼ୁର ଗଭର୍ଣ୍ଣର ରୂପେ ଅବସ୍ଥାପିତ ହୋଇଥିଲେ । କୃଷ୍ଣା-ଗୋଦାବରୀ ଭୂଖଣ୍ଡରେ ଅଖଣ୍ଡ ଆଧିପତ୍ୟ ବିସ୍ତାର କଲାପରେ କପିଳେନ୍ଦ୍ର ବାହମନୀ ସାମ୍ରାଜ୍ୟ ଅନ୍ତର୍ଗତ ରଅକୋଣ୍ଡା, ଦେବରକୋଣ୍ଡା ଓ ଓ୍ୱାରଙ୍ଗଲ ପ୍ରଭୃତି ତେଲେଙ୍ଗାନା ଅଞ୍ଚଳ ପ୍ରତି ଆକୃଷ୍ଟ ହୋଇ ପୁତ୍ର ହମ୍ବୀରଙ୍କ ସେନାପତିତ୍ୱରେ ଉପରୁକ୍ତ ଅଞ୍ଚଳ ଅଧିକାର କରିଥିଲେ । ଏହାପରେ ତେଲେଙ୍ଗାନାର ଜମିଦାର ଓ ଦେବର-କୋଣ୍ଡାର ବେଲମା ସୈନ୍ୟଙ୍କ ସହାୟତାରେ ଖ୍ରୀ ୧୪୫୮ ସୁଦ୍ଧା ବାହମନୀ ସୁଲତାନଙ୍କୁ ପରାସ୍ତ କଲାପରେ କଲବର୍ଗ ( ବା ଗୁଲ୍‌ବର୍ଗ ) ଦୁର୍ଗ ତାଙ୍କର ହସ୍ତଗତ ହୋଇଥିଲା । ସେହିବର୍ଷ ଦାକ୍ଷିଣାତ୍ୟର ନଅଟି (୧୨) ଦୁର୍ଗର ବିଜେତା ଭାବରେ ସେ ନିଜକୁ 'ନବକୋଟି କର୍ଣ୍ଣାଟ କଲବର୍ଗେଶ୍ୱର' ଭାବରେ ପରିଚିତ କରାଇଥିଲେ ।

ଏହାପରେ ଖ୍ରୀ ୧୪୬୨ ରେ ଉଦୟଗିରି ଓ ଖ୍ରୀ ୧୪୬୪ରେ ଚନ୍ଦ୍ରଗିରି ରାଜ୍ୟ କପିଳେନ୍ଦ୍ରଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ହମ୍ବୀରଙ୍କ ପୁତ୍ର କୁମାର

---

(୧୧) Mukherjee, Pravat : The History of the Gajapati Kings of Orissa (Kitab Mahal, Cuttack, 2nd Ed. 1981) pp. 36-45

* ପରବର୍ତ୍ତୀ ବ୍ରିଟିଶ ଶାସନ କାଳରେ ବଙ୍ଗ, ଉତ୍କଳ, ମୈଥିଳୀ, କାନ୍ୟକୁବ୍ଜ ଓ ମଧ୍ୟପ୍ରଦେଶ ପଞ୍ଚଗୌଡ଼ ନାମରେ ପରିଚିତ । ( The Oriya Movement, Oriya Samaj, Ganjam—Aska, 1919-P. 10) ଓ 'ଶବ୍ଦ କଳ୍ପଦ୍ରୁମ' ଦ୍ରଷ୍ଟବ୍ୟ )

(୧୨) ଏହି ନଅଟି ଦୁର୍ଗ (କୋଟ ବା କୋଟି) ହେଉଛି—(୧) ବଲମକୋଣ୍ଡା (୨) କୋଣ୍ଡାବିଡୁ ( କୋଣ୍ଡାବିଡ଼ୁ ), (୩) ନାଗାର୍ଜ୍ଜୁନ କୋଣ୍ଡା (୪) ରାଜ-ମହେନ୍ଦ୍ର, (୫) ପେଦାପୁରମ୍, (୬) କଲୁବଲପଲ୍ଲୀ, (୭) ଉଦାଦ, (୮) ବିନୁ-କୋଣ୍ଡା ଓ (୯) ପଦ୍ମନୁରୁ (ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ—୨ୟ ଭାଗ (ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୬୩ ପୃ: ୩୮ )

କପିଳେଶ୍ୱର ମହାପାତ୍ରଙ୍କୁ ଚନ୍ଦ୍ରଗିରି, ଉଦୟଗିରି, ଉଦୟଗିରି, ଧାର୍ମିକଙ୍କ ପଢ଼ାଇବାକୁ, ଉଣ୍ଡାବାଡ଼ି ଓ ଭେଲୁଣ୍ଡ ଲମ୍ବାଏର ଗଭର୍ଣ୍ଣର ନିଯୁକ୍ତ କରାଯାଇଥିଲା । ତତ୍ପୂର୍ବରୁ ସେ କୋଣ୍ଡାବିଡ଼, ଆଡ଼ାଙ୍କି, କୋଣ୍ଡାପଲ୍ଲୀ ଓ ବିନୁକୋଣ୍ଡାରେ ପରିଚ୍ଛା ଥିବାରୁ ସେସବୁ ଅଞ୍ଚଳ ମଧ୍ୟ ତାଙ୍କ ଦାୟିତ୍ୱରେ ରହିଥିଲା । ସେହି ବର୍ଷ (୧୪୬୪) କପିଳେନ୍ଦ୍ର ପୁରୀକୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଗି ଆସି ଖ୍ରୀ ୧୪୬୬ ରେ ଦାକ୍ଷିଣାତ୍ୟର ଅଧୀନ ରାଜ୍ୟମାନଙ୍କରେ ଉପୁଜିଥିବା ଆଭ୍ୟନ୍ତରୀଣ ବିଦ୍ରୋହ ଦମନ ଉଦ୍ଦେଶ୍ୟରେ ପୁଣିଥରେ କୃଷ୍ଣା ଉପକୂଳ ପର୍ଯ୍ୟନ୍ତ ଯୁଦ୍ଧାଭିଯାନରେ ଯାଇଥିଲେ । ସେଠାରେ ଖ୍ରୀ ୧୪୬୭ ମସିହା (ଫେବୃୟାରୀ ମାସ)ରେ ତାଙ୍କର ଦେହାବସାନ ଘଟିଥିଲା । (୧୩)

ବ୍ୟାପକ ସାମ୍ରାଜ୍ୟ ବିସ୍ତାର ଦୃଷ୍ଟିରୁ ଐତିହାସିକମାନେ ପ୍ରଥିତଯଶା ଦିଗ୍ବିଜୟୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କୁ ଓଡ଼ିଶାର ବିକ୍ରମାଦିତ୍ୟ ତଥା ଦ୍ୱିତୀୟ ଖାରବେଳ ରୂପେ ଅଭିହିତ କରିଥାନ୍ତି । (୧୪) ଏପରିକି କେତେକ ସମାଲୋଚକ ତାଙ୍କୁ ନେପୋଲିୟନଙ୍କ ସହିତ ତୁଳନା କରି ମତବ୍ୟକ୍ତ କରିଛନ୍ତି ଯେ ନେପୋଲିୟନ ନିଜ ଜୀବଦ୍ଦଶାରେ ବ୍ୟର୍ଥ ମନୋରଥ ହୋଇଥିଲା ବେଳେ କପିଳେନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ବିଶାଳ ସାମ୍ରାଜ୍ୟ ତାଙ୍କ ପରବର୍ତ୍ତୀ ଶତାବ୍ଦୀ କାଳରେ ମଧ୍ୟ ଅକ୍ଷୁଣ୍ଣ ଓ ଅବିଚ୍ଛିନ୍ନ ରହିଥିବାରୁ ସେ ସମଧିକ ଗୌରବର ଅଧିକାରୀ । ଅକାଳରେ ମୃତ୍ୟୁବରଣ କରି ନଥିଲେ ସେ ହୁଏତ ସମଗ୍ର ଭାରତ ବର୍ଷରେ ଏକ ବିଶାଳ ହିନ୍ଦୁ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ସମର୍ଥ ହୋଇପାରିଥାନ୍ତେ । (୧୫)

## କପିଳେନ୍ଦ୍ରଙ୍କ ଶାସନାଦର୍ଶ

କପିଳେନ୍ଦ୍ର ଦେବ ଯେ ଜଣେ ରଣକୁଶଳୀ ବିଜୟୀ ସମ୍ରାଟ ଥିଲେ ତାହା ନୁହେଁ, ସେ ଥିଲେ ଜଣେ ପ୍ରଜାବତ୍ସଳ ରାଜା ତଥା ରାଜନୀତିନିପୁଣ ଆଦର୍ଶ ଶାସକ । ତାଙ୍କ ସାମ୍ରାଜ୍ୟ 'ମହାରାଜ୍ୟ' ନାମରେ ବିଦିତ ଥିଲା ଏବଂ ତାହା ମୁଖ୍ୟତଃ

---

(୧୩) Mukherjee ; History of the Gajapati Kings of Orissa— pp. 33-47.

(୧୪) Subramanyam : The Suryavansi Gajapatis of Orissa— P. 131.

(୧୫) Mohanty, Prananath : The main currents of the History of Orissa—( Prachi - Vol. II, 1932 ) pp. 7-8.

ଉତ୍ତର ଓ ଦକ୍ଷିଣ ଦୁଇଟି ମଣ୍ଡଳରେ ବିଭକ୍ତ ହୋଇଥିଲା । କେତେଗୋଟି ଗ୍ରାମକୁ ନେଇ ଗଠିତ 'ବିଶୀ' ବା 'ଖଣ୍ଡ'ର ସମଷ୍ଟିରେ 'ଦଣ୍ଡପାଟ' ଏବଂ ଦଣ୍ଡପାଟଗୁଡ଼ିକର ସମ୍ମିଶ୍ରଣରେ ରାଜ୍ୟ ଗଠନ କରାଯାଇଥିଲା । ପ୍ରତି ରାଜ୍ୟର ଶାସନ ଦାୟିତ୍ୱରେ ଜଣେ ଗଭର୍ଣ୍ଣର ନିଯୁକ୍ତ ଥିଲେ ଏବଂ ତାଙ୍କୁ ରାଜା ଭାବରେ ଅଭିହିତ କରାଯାଉଥିଲା । ଦଣ୍ଡପାଟ ଦାୟିତ୍ୱରେ ରହୁଥିଲେ ଅଧକ୍ଷ, ପ୍ରତିପାଳକ, ପରିଚ୍ଛା ବା ଦଣ୍ଡପରିଚ୍ଛା । ବିଶୀ ବା ଖଣ୍ଡର ଅଧିପତିଙ୍କୁ ବିଶୋୟୀ ବା ଖଣ୍ଡାଧିପତି କୁହାଯାଉଥିଲା ଏବଂ ଗ୍ରାମ ମୁଖିଆ ଭୋଇ ବା ପ୍ରଧାନ ନାମରେ ପରିଚିତ ଥିଲେ । ସ୍ୱୟଂ ଗଜପତି ଥିଲେ 'ମହାରାଜାଧିରାଜ' ତଥା ଶାସନର ସାର୍ବଭୌମ ଅଧିକାରୀ ବା ସର୍ବମୟ କର୍ତ୍ତା । ସେତେବେଳେ ଉତ୍ତର ମଣ୍ଡଳରେ ଥିବା ବିଭିନ୍ନ ରାଜ୍ୟ ଓ ଦଣ୍ଡପାଟଗୁଡ଼ିକ ଥିଲା— ନିଗ୍ରାମ ( କଳିଙ୍ଗ ଓ ଆସିକ୍ରିଆ ଦଣ୍ଡପାଟ ), ପୁରୀ (ଲେମ୍ବାଇ, ଦକ୍ଷିଣଦିଗ, କୋଠଦେଶ, ସିରାଇ ଓ ଛବିଶକୁଦ ଦଣ୍ଡପାଟ), କଟକ (ଆହିର, ବାରଙ୍ଗ, ଶରଗଡ଼, ଆଲି ଓ ପୂର୍ବଦିଗ ଦଣ୍ଡପାଟ), ଢେଙ୍କାନାଳ (ଭୀମନଗର, ଆଠଗଡ଼ ଓ ପଶ୍ଚିମଦିଗ ଦଣ୍ଡପାଟ), ବାଲେଶ୍ୱର (ଭଦ୍ରକ, ସୋର ଓ ରେମୁଣା ଦଣ୍ଡପାଟ) ଏବଂ ମେଦିନୀପୁର (ଜଳେଶ୍ୱର ଓ ମୂଳଯାଠ ଦଣ୍ଡପାଟ) । ଅନ୍ୟ ଦିଗରେ, ଦକ୍ଷିଣ ମଣ୍ଡଳର ବିଭିନ୍ନ ରାଜ୍ୟଗୁଡ଼ିକ ଥିଲା ରାଜମହେନ୍ଦ୍ରୀ (ବିଶାଖାପାଟଣା ଠାରୁ ଗୋଦାବରୀ ପର୍ଯ୍ୟନ୍ତ), କୋଣ୍ଡାବିଡ଼ୁ ( କୃଷ୍ଣା ଉପକୂଳବର୍ତ୍ତୀ ଅଞ୍ଚଳ ) ଏବଂ ଉଦୟଗିରି (ଗୁଣ୍ଡାଲକାମାଠାରୁ ପେନାର [ତାମିଲନାଡ଼ୁ] ପର୍ଯ୍ୟନ୍ତ) । (୧୬)

ଆଲୋଚ୍ୟ କାଳରେ ବିଭିନ୍ନ ବେସାମରିକ କର୍ମକର୍ତ୍ତାଙ୍କ ପଦବୀମାନଙ୍କ ମଧ୍ୟରେ ପ୍ରଧାନ ଥିଲା—ମନ୍ତ୍ରୀ, ଅମାତ୍ୟ, ମହାପାତ୍ର, ବୁଢ଼ାଲେଙ୍କା (ମୁଖ୍ୟ ପୂଜକ), ମୁଦ୍ରାହସ୍ତ (ମୋହରଧାରୀ), କରଣ, ନାଇଡ଼ୁ ପ୍ରଭୃତି । ଅନ୍ୟ ପକ୍ଷରେ, ସାମରିକ ପଦବୀଧାରୀମାନଙ୍କ ମଧ୍ୟରେ ମହାସେନାପତି, ସନ୍ଧିବିଗ୍ରହୀ, ସେନାନରେନ୍ଦ୍ର, ମାଝି, ବାହିନୀପତି, ପାଇକଖେଦା, ଇତକାର (ଅଶ୍ୱାରୋହୀ), ପଡ଼ୀକାର (ଖଡ଼୍ଗଧାରୀ), ଧନୁକା (ଧନୁର୍ଦ୍ଧାରୀ) ପ୍ରଭୃତି ରହୁଥିଲେ । ସେତେବେଳେ ଓଡ଼ିଶା ସାମ୍ରାଜ୍ୟରେ ବାର ବାଟି (ପ୍ରାୟ ୯୬ ଏକର ଆୟତନ ବିଶିଷ୍ଟ) ଜମି ଉପରେ ନିର୍ମିତ ବିଖ୍ୟାତ ବାରବାଟି ଦୁର୍ଗ ସମେତ ମୋଟ ୧୭ ଗୋଟି ଦୁର୍ଗ ଅନ୍ତର୍ଭୁକ୍ତ ଥିଲା (୧୭) ଏବଂ

(୧୬) Mukherjee : History of the Gajapati Kings of Orissa— pp. 137-138

(୧୭) Ibid—pp. 137-138

ଷାସବଳ ବ୍ୟତୀତ କୃଷକସମାଜ ମଧ୍ୟ ମୁଦ୍ଧାଭିଯାନ କାଳରେ ବୀର ବେଶରେ ରଣାଙ୍ଗନରେ ଅବତୀର୍ଣ୍ଣ ହେଉଥିଲେ । (୧୮) କହିବା ବାହୁଲ୍ୟ ଯେ କେବଳ କେତେକ ବ୍ରାହ୍ମଣଙ୍କ ବ୍ୟତୀତ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତ ସକ୍ଷମ ପ୍ରଜାକୁଳ ସୈନ୍ୟବାହିନୀରେ ଯୋଗଦାନ କରିବା ସୂର୍ଯ୍ୟବଂଶ ରାଜତ୍ୱ କାଳରେ ବାଧ୍ୟତାମୂଳକ ଥିଲା । (୧୯) ଏଥିପାଇଁ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରୁ ଅଧିକ ସଂଖ୍ୟକ ବ୍ୟକ୍ତି ଅଦ୍ୟାବଧି ସେନାପତି, ଚମୂପତି, ଚମ୍ପତି, ଚମ୍ପତିରାୟ, ରାଉତ, ରାଉତରାୟ, ଦଣ୍ଡପାଟ, ଦଣ୍ଡସେନା, ଦକ୍ଷିଣ କବାଟ, ଉତ୍ତର କବାଟ, ପଶ୍ଚିମ କବାଟ, ସାମନ୍ତ, ସାମନ୍ତରାୟ, ସାମନ୍ତରାୟ ମହାପାତ୍ର, ସାମନ୍ତ ସିଂହାର, ସିଂହ, ମାନସିଂହ, ପାହାଡ଼ସିଂହ, ରାୟ, ରାୟସିଂହ, ରାୟ ମହାପାତ୍ର, ବଳିଆର ସିଂହ, ନାୟକ, ପଟ୍ଟନାୟକ, ଦଣ୍ଡନାୟକ, ଗଡ଼ନାୟକ, ପରିହାରୀ, ପ୍ରଧାନ, ପାତ୍ର, ମହାପାତ୍ର, ଖଣ୍ଡାଏତ, ବେହେରା, ଦଳବେହେରା, ଜେନା, ବଡ଼ଜେନା, ସାମଲ, ସାସମଲ, ପରିଜା, ପରିଚ୍ଛା, ଜଗଦେବ, ମର୍ଦ୍ଦରାଜ, ହରିଚନ୍ଦନ, ଭ୍ରମରବର, ମାଝି, ବାହିନୀପତି ପ୍ରଭୃତି ସାମରିକ ସଂଜ୍ଞା ଧାରଣ କରିଛନ୍ତି ।

## ଅର୍ଥନୈତିକ ବ୍ୟବସ୍ଥା

କପିଳେନ୍ଦ୍ରଦେବ ଆପାତ ଦୃଷ୍ଟିରେ କ୍ଷମତାଲିପ୍ସୁ ଓ ରାଜ୍ୟଲିପ୍ସୁ ଶାସକ ଭାବରେ ପ୍ରତୀୟମାନ ହେଲେ ମଧ୍ୟ ପ୍ରକୃତରେ ଥିଲେ ଜଣେ ସମୃଦ୍ଧିସ୍ୱାର୍ଥାଭିଳାଷୀ, ଜନହିତାକାଂକ୍ଷୀ, ସମାଜକଲ୍ୟାଣକାମୀ, ବଦାନ୍ୟ ଓ ଧର୍ମାନୁରକ୍ତ ଜନସେବକ । ତାଙ୍କ ରାଜତ୍ୱ କାଳରେ ଗଙ୍ଗବଂଶୀୟ ଅର୍ଥନୀତି ପ୍ରାୟତଃ ଅପରିବର୍ତ୍ତିତ ରହିଥିଲେ ମଧ୍ୟ ସେ ଅଧିକ ଉଦାରତାର ପରିଚୟ ଦେଇଥିଲେ । ଲବଣ ଶୁଳ୍କ କର ରହିତ ଘୋଷଣା, ଦକ୍ଷିଣ ଦଣ୍ଡପାଟରେ ବ୍ରାହ୍ମଣମାନଙ୍କ ଉପରୁ ଚୌକିଦାରୀ ଟିକସର ଉଚ୍ଛେଦନ, ତୁଳସୀପୁର, ଦାମୋଦରପୁର, କପିଳେଶ୍ୱରପୁର ପ୍ରଭୃତି ସ୍ଥାନରେ ବ୍ରାହ୍ମଣ ଶାସନ ପ୍ରତିଷ୍ଠା ଇତ୍ୟାଦି ତାଙ୍କ ଉଦାର ଅର୍ଥନୈତିକ ଆଦର୍ଶର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ସେତେବେଳେ ସମରପ୍ରସ୍ତୁତି ସମେତ କୃଷିର ଉନ୍ନତି, ଦେବଦେଉଳପୀଠ ପ୍ରତିଷ୍ଠା ଓ ସଂସ୍କାର, ରାସ୍ତାଘାଟ ନିର୍ମାଣ, କୂପ-ତଡ଼ାଗ-ବାପୀ, ପୁଷ୍କରିଣୀ ଖନନାଦି ପୂର୍ତ୍ତିକର୍ମ ଓ ନୃତ୍ୟସଙ୍ଗୀତାଦି ଜନ ମନୋରଞ୍ଜନ କାର୍ଯ୍ୟରେ ଅଜସ୍ର ଅର୍ଥ ବ୍ୟୟିତ ହେଉଥିଲେ

---

(୧୮) Panigrahy : History of Orissa P. 269

(୧୯) ପାଣିଗ୍ରାହୀ, ଡକ୍ଟର କୃଷ୍ଣଚନ୍ଦ୍ର : ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ତଥ୍ୟ (ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ୧୯୭୬) ପୃ: ୬୬୦

ମଧ୍ୟ ରାଜକୋଷର କ୍ଷୟ ଘଟି ନଥିଲା କିମ୍ବା ପ୍ରଜାକୁଳ ଅଭାବର ସମ୍ମୁଖୀନ ହେଉ ନଥିଲେ । ତତ୍କାଳୀନ ଓଡ଼ିଶା ସାମ୍ରାଜ୍ୟରେ ଭୂମିର ପରିମାଣ ଥିଲା ୬୨,୨୮, ୦୦୦ ବାଟି (ବା ଚାଳିଶ ହଜାର ବର୍ଗମାଇଲ) ଏବଂ ରାଜସ୍ୱ ବାବଦରେ ବାର୍ଷିକ ପନ୍ଦର ଲକ୍ଷ ମାଢ଼ ସୁନା ଆଦାୟ ହେଉଥିଲା । ( ୨୦ ) ପୂର୍ବରୁ ପ୍ରଚଳିତ ନିଷ୍କ (ବା ମାଢ଼), କର୍ଷ (କାର୍ଷାପଣ ବା କାହାଣ), ରତି, କାଉଡ଼ି ଓ ଧାନ ସାଙ୍ଗକୁ 'ତୋଲା' ଓ ରୌପ୍ୟ ମୁଦ୍ରାର ପ୍ରଚଳନ କପିଳେନ୍ଦ୍ରଙ୍କ ଅନ୍ୟତମ ଅବଦାନ । ତେବେ, ସେ ସମୟରେ କଉଡ଼ି ଥିଲା ବିନିମୟର ପ୍ରଧାନ ମାଧ୍ୟମ । ଗୋଟିଏ ରୌପ୍ୟ ମୁଦ୍ରାର ମୂଲ୍ୟ ଥିଲା ୮ କାହାଣ ଏବଂ କାହାଣକ ଥିଲା ୧୨୮୦ କଉଡ଼ି । ସୁନା ଓ ରୂପାର ଆନୁପାତିକ ହାର ଥିଲା ୧ ଓ ୫ । ଅର୍ଥାତ୍, ଏକ ମାଢ଼ ସୁନା ପାଞ୍ଚ ମାଢ଼ ରୂପା ସହିତ ସମାନ ଥିଲା । ଭୂ-ପରିମାପ କ୍ଷେତ୍ରରେ ଦକ୍ଷିଣ ଓ ଉତ୍ତରାଞ୍ଚଳ ମଧ୍ୟରେ ସାମାନ୍ୟ ତାରତମ୍ୟ ରହିଥିଲା । ଦକ୍ଷିଣାଞ୍ଚଳରେ ୨୦ ବର୍ଗ ହାତରେ ଗୋଟିଏ ଗୁଣ୍ଠ, ୨୫ ଗୁଣ୍ଠରେ ଗୋଟିଏ ମାଣ ଏବଂ ୨୦ ମାଣରେ ଗୋଟିଏ ବାଟି ବା ପୁଟି ପ୍ରଚଳିତ ଥିଲାବେଳେ ଉତ୍ତରାଞ୍ଚଳରେ ୧୪ ବର୍ଗ ହାତରେ ଏକ ଗୁଣ୍ଠ ଏବଂ ଗୁଣ୍ଠକ ଦୁଇ ଏକଚତୁର୍ଥାଂଶ ମାଣ ବା ଏକ ଏକର ବୋଲି ଧରାଯାଉଥିଲା । ଦକ୍ଷିଣାଞ୍ଚଳରେ ଏକ ବାଟିର ଆୟତନ ୫.୦ ଏକର ଥିଲାବେଳେ ଉତ୍ତରାଞ୍ଚଳରେ ତାହା ୮୩ ଏକର ରୂପେ ଗୃହୀତ ହୋଇଥିଲା । (୨୧)

**ଧର୍ମାଦର୍ଶ**

ବିଭିନ୍ନ ଶିଳାଲେଖରୁ ଜଣାଯାଏ ଯେ ଦେବତା ଓ ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରିବା ଥିଲା କପିଳେନ୍ଦ୍ର ଦେବଙ୍କ ରାଜଧର୍ମର ଶ୍ରେଷ୍ଠ ଆଦର୍ଶ । ସେ ଶ୍ରୀକୂର୍ମ ଓ ସିଂହାଚଳର ବିଷ୍ଣୁ ମନ୍ଦିର, ମୁନ୍ନୂରଙ୍କ ଶିବ ମନ୍ଦିର, କୋଣ୍ଡାପଲ୍ଲୀର ପାପବିନାଶିନୀ ମନ୍ଦିର, ଜେୟପୁରଡ଼ାର ଅନାସି ଦେବୀ ମନ୍ଦିର ପ୍ରଭୃତି ଦେବାନୁଷ୍ଠାନମାନଙ୍କର ଉନ୍ନତି ବିଧାନ ସାଙ୍ଗକୁ ପୁରୀ ଶ୍ରୀମନ୍ଦିରରେ ପାର୍ଶ୍ୱ ପ୍ରାଚୀର ନିର୍ମାଣପୂର୍ବକ ପୂଜାସେବା ନୀତିର ଉତ୍କର୍ଷ ସାଧନ କରିଥିଲେ । ତାଙ୍କ ସମୟରେ ପ୍ରଚଳିତ ହୁର୍ମ୍ୟାର ଭୋଗ ଏ ଯାବତ୍ ଅବ୍ୟାହତ ଅଛି । ସେ ନିଜକୁ ଓଡ଼ିଶାର ସାର୍ବଭୌମ ଗଜପତି ମନେ ନକରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପ୍ରଥମ ସେବକ ଭାବେ ପରିଚୟ ଦେଉଥିଲେ । ବ୍ୟକ୍ତିଗତ

---

(୨୦) ରଥ, ମୃତ୍ୟୁଞ୍ଜୟ : ଶାରଳା ଚରିତ (ମୁକୁର ପ୍ରେସ, କଟକ, ୧୯୧୧) ପୃ: ୨୮-୨୯ ।

(୨୧) Mukherjee : History of the Gajapati Kings of Orissa. pp. 129-30

ଓ ରାଜସ୍ୱ ତୋଷରପାତକାରୀ ପ୍ରଭୃତି ଜଘନ୍ୟ ଅପରାଧୀମାନଙ୍କ ପାଇଁ ଗୃହଡ଼ାଲଆ ଥିଲା ଭଳି ସେ ଯେଉଁ କଠୋର ଦଣ୍ଡବ୍ୟବସ୍ଥା କରିଥିଲେ, ତାହା ସ୍ୱୟଂ ରାଷ୍ଟ୍ରଦେବତା ଜଗନ୍ନାଥଙ୍କ ନାମରେ ହିଁ କାର୍ଯ୍ୟକାରୀ ହେଉଥିଲା । ଗଜପତି ରାଜାଙ୍କର ଏତାଦୃଶ ଏକନିଷ୍ଠ ଧର୍ମନୀତିରେ ଅନୁପ୍ରାଣିତ ହୋଇ ବହୁ ଅଧସ୍ତନ ଶାସକ (ଦଣ୍ଡପାଟ, ପରିଛା, ବଂଶୋସ୍ଥୀ ପ୍ରଭୃତି) ଓ ବିତ୍ତଶାଳୀ ସାଧାରଣ ଜନତା ବିଭିନ୍ନ ଦେବଦେବୀ ପୀଠ ତଥା ଧର୍ମାନୁଷ୍ଠାନର ଉନ୍ନତି ନିମନ୍ତେ ବିପୁଳ ପରିମାଣରେ ଭୂମି, ସୁବର୍ଣ୍ଣ ଓ ଅର୍ଥଦାନ କରୁଥିଲେ । ବ୍ରାହ୍ମଣ ଶାସନ ପ୍ରତିଷ୍ଠା, ବ୍ରାହ୍ମଣଙ୍କ ପାଇଁ ଦାନ ବ୍ୟବସ୍ଥା ଓ ବ୍ରାହ୍ମଣ-ମାନଙ୍କର ଧନ, ଜମି, ସ୍ତ୍ରୀ ଓ ଜୀବନର ସୁରକ୍ଷା ରାଜକାର୍ଯ୍ୟର ଅଙ୍ଗୀଭୂତ ଥିଲା ଏବଂ ସୁରକ୍ଷାର ପ୍ରତିଦାନରେ ବ୍ରାହ୍ମଣମାନେ ବିଭିନ୍ନ କର୍ମକର୍ମାଣି, ଯଜ୍ଞଯାଜନାଦି ବୈଦିକ ପୂଜାପାଠ ସୁଚ୍ଚାରୁ ରୂପେ ସମ୍ପାଦନ କରୁଥିଲେ । (୨୨)

## ଓଡ଼ିଆ ଭାଷାପ୍ରୀତି

କପିଳେନ୍ଦ୍ର ନିଜେ ଜଣେ ସଂସ୍କୃତବିଦ୍ ଓ ସୁପଣ୍ଡିତ ଥିଲେ । ମାତୃଭାଷା ପ୍ରତି ତାଙ୍କର ପ୍ରଗାଢ଼ ମମତା ରହିଥିଲା । ତେଣୁ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ବିଧାନ ଦିଗରେ ମନୋନିବେଶ କରି ସେ ଓଡ଼ିଆ ଭାଷାକୁ ଉପଯୁକ୍ତ ରାଜକୀୟ ସ୍ୱୀକୃତି ପ୍ରଦାନ କରିଥିଲେ । ସ୍ୱପ୍ରଣୀତ 'ପର୍ଶୁରାମ ବିଜୟ' ସଂସ୍କୃତ ନାଟକରେ ଓଡ଼ିଆ ସଙ୍ଗୀତ ସଂଯୋଜନା ଦ୍ୱାରା କେବଳ ସେ ମାତୃଭାଷାର ଗୌରବ ବୃଦ୍ଧି କରିନଥିଲେ, ତାଙ୍କର ଅନେକ ଶିଳାଲେଖ ମଧ୍ୟ ଓଡ଼ିଆ ଭାଷାରେ ଲିପିବଦ୍ଧ ହୋଇଥିଲା । ଉକ୍ତ ବ୍ୟାୟୋଗରେ ରାଣୀ ଚନ୍ଦ୍ରବଦନାଙ୍କ ମୁଖରେ ଯେଉଁ ଗୀତଟି ପ୍ରଦତ୍ତ ହୋଇଛି, ତାର କିୟଦଂଶ ନିମ୍ନରେ ଉଦ୍ଧାର କରାଗଲା ।

"କେବଣ ମୁନିକୁମାର          ପରଶୁ ଦକ୍ଷିଣ କର
                    ବାମେଣ ଶୋହେ ଧନୁଶର ନା
କୋପେଣ ବୋଲଇ ବୀର          ତ ରୂ ଜେ ମୋ ବଧିଲୁ ତାତ
          ଆଜ ତୋର ଛେଦିବଇଁ ମାଥ ନା
ଶୁଣ ରାଜନ ହୋ ! କିଏ ତୋର ରାଜ୍ୟେ ବ୍ରହ୍ମ ବଧେ ନା ।
ଏ ତୋର ଚନ୍ଦ୍ରବଦନ          ମେଘେ କି ଢ଼ାଙ୍କିଲା ଜହ୍ନ
          ତାହା ଦେଖି ବ୍ୟାକୁଳ ମୋ ମନ ନା

---

(୨୨) Ibid-pp. 36-47 & 150.

ଆବର ଦେଖଇ ଅରିଷ୍ଟି     ରାଜ୍ୟେ ତୋ ରୁଧିର ବୃଷ୍ଟି

ପୁର ବେଢ଼ି ରୋଦନ୍ତି ଶୃଗାଳ ନା

ଶୁଣ ରାଜନ ହୋ ! କେବେ ତୋର ରାଜ୍ୟେ ବୃଦ୍ଧି ବଢେ ନା ।"

ସମ୍ରାଟ କପିଳେନ୍ଦ୍ର ମାତୃଭାଷାକୁ ସଂସ୍କୃତ ପ୍ରଭାବରୁ ମୁକ୍ତ କରି ଓଡ଼ିଆ ସାହିତ୍ୟର ଭୂୟୋଭିକାଶ ସାଧନ ଦିଗରେ ଅନୁକୂଳ ପରିବେଶ ସୃଷ୍ଟି କରିଥିବାରୁ ସେହି ସମୟରେ ସାରଳାଙ୍କ ଅମରକୃତି ବିଶାଳ ମହାଭାରତ ରଚନା ସମ୍ଭବ ହୋଇ ପାରିଥିଲା ।

## ସାମାଜିକ ପରିବେଶ

ତଦାନୀନ୍ତନ ତତ୍କାଳୀୟ ସମାଜ ଥିଲା ମୁଖ୍ୟତଃ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ ବା ଧର୍ମଭିତ୍ତିକ । ବହୁ ଦେବପ୍ରାସାଦ ନିର୍ମାଣ ଓ ବ୍ରାହ୍ମଣ ଶାସନ ପ୍ରତିଷ୍ଠା ଦ୍ୱାରା ରାଜ୍ୟବାସୀଙ୍କ ଧର୍ମଭାବନା ଉତ୍ତରୋତ୍ତର ବୃଦ୍ଧି ଲାଭ କରୁଥିଲା । ସମାଜରେ ସଂସ୍କୃତ ଶିକ୍ଷାର ବହୁଳ ପ୍ରଚଳନ ସତ୍ତ୍ୱେ ଓଡ଼ିଆ ଭାଷାର ଅଭିବୃଦ୍ଧି ପାଇଁ ବିଶେଷ ପ୍ରୋତ୍ସାହନ ଦିଆଯିବା ଫଳରେ ସାରଳାଙ୍କ ଭଳି ପ୍ରଖ୍ୟାତଯଶା କବିଙ୍କର ଆବିର୍ଭାବ ଘଟିଥିଲା । ବ୍ରାହ୍ମଣେତର ଜାତିପାଇଁ ସାମରିକ ଶିକ୍ଷାଥିଲା ବାଧ୍ୟତାମୂଳକ । ଧ୍ୟାନ, ଧାରଣ, ଯୋଗ ସାଧନାଦି ମଧ୍ୟ ତତ୍କାଳୀନ ସମାଜରେ ଗୁରୁତ୍ୱ ଲାଭ କରିଥିଲା । ସାଧାରଣ ଜନତା ଜ୍ୟୋତିଷ ଓ ଶକୁନ ଶାସ୍ତ୍ରରେ ବିଶ୍ୱାସ ସ୍ଥାପନ କରୁଥିଲେ; ବିବାହ, ବ୍ରତାଦି ଶୁଭ କର୍ମରୁ ଆରମ୍ଭ କରି ଯାତ୍ରା ତଥା ବୀଜବପନ ପରି ନିତ୍ୟନୈମିତ୍ତିକ କାର୍ଯ୍ୟରେ ମଧ୍ୟ ଯୋଗ, ଲଗ୍ନ, କରଣାଦି ଜ୍ୟୋତିଷିକ ନିର୍ଦ୍ଦେଶକୁ ମାନି ଚାଲୁଥିଲେ । (୧୩)

ସେହି କାଳରେ ନାରୀର ବେଶଭୂଷା ଓ ଅଳଙ୍କାର ଥିଲା—ବଳା, ବାହୁଟି, ଚୂଡ଼ି, ବିନ୍ଦ, କଙ୍କିଣୀ, ନୂପୁର, ଝୁମ୍ପା, କଞ୍ଚୁଳୀ, ବେଣ୍ଟୁଳା, ତାଟଙ୍କ, ତୋଡ଼ର, ମୁଦ୍ରିକା, ମୋତିଜାଲି, କଣ୍ଠିମାଳି, କଟିମେଖଳା, ପଦପଲ୍ଲବ, ମାଣିକ୍ୟସୂତା, ରତ୍ନହାର ପ୍ରଭୃତି ଆଭରଣ । (ପୁରୁଷମାନେ ମଧ୍ୟ କଙ୍କଣ, ମୁକୁଟ, ବାହୁଟି ମୁଦ୍ରିକା,

(୧୩) ଋଥ : ଶାରଳା ଚରିତ—ପୃ. ୨୯-୩୩

କୁଣ୍ଡଳାଦି ପରିଧାନ କରୁଥିଲେ ।) ସିନ୍ଦୂର ଓ ଅଲତା ଗ୍ରହଣ, ଗୋରଚନା ଟୀକା ମଣ୍ଡନ ଏବଂ ହଳଦୀ ଓ ଚନ୍ଦନରେ ଗାତ୍ର ଲେପନ ଅଥବା ନାସ୍ତିର ପ୍ରାକୃତିକ ସୌନ୍ଦର୍ଯ୍ୟବର୍ଦ୍ଧନ କର୍ମରେ ଉଦ୍ଦିଷ୍ଟ ଥିଲା । ଝୀନବାସ, ରଙ୍ଗପାଟ ଓ କାଞ୍ଚୁଲି ପ୍ରଭୃତି ଥିଲା ପ୍ରଧାନ ପରିଧେୟ । ବିଧବାମାନେ ନୂପୁର, ବସଣୀ ଆଦି ଅଲଙ୍କାର କିମ୍ବା କଜଳ, ସିନ୍ଦୂର, ଫୁଲ, ଚନ୍ଦନାଦି ବ୍ୟବହାର କରୁ ନଥିଲେ । ଅଙ୍ଗରେ ପତ୍ରାବଳୀ ଅଙ୍କନ, ଅଲତା ମଣ୍ଡନ ଓ ତାମ୍ବୁଲ ସେବନ ସେମାନଙ୍କ ଲାଗି ନିଷିଦ୍ଧ ଥିଲା । ଉନ୍ନତ ପରିପାଟୀବିହୀନ ଶ୍ୱେତବର୍ଣ୍ଣର ଲୁଗା ଥିଲା ବିଧବାମାନଙ୍କର ପରିଧେୟ । (୧୪)

ସେହି ସମାଜରେ ବାଲ୍ୟବିବାହ ପ୍ରଚଳିତ ଥିଲା ଏବଂ କନ୍ୟାମାନଙ୍କୁ ସାଧାରଣତଃ ୭ ବର୍ଷରୁ ୯ ବର୍ଷ ମଧ୍ୟରେ ବୈବାହିକ ବନ୍ଧନରେ ଆବଦ୍ଧ କରାଯାଉଥିଲା । ପିତା ଘରେ ଦୁହିତା ଅବିବାହିତା ଅବସ୍ଥାରେ ପୁଷ୍ପବତୀ ହେବା ଦୋଷାବହ ଘଟଣା ରୂପେ ପରିଗଣିତ ହେଉଥିଲା । ରଜୋବତୀ ବିବାହିତା କନ୍ୟାର ପ୍ରଥମ ପତିଗୃହ ଯାତ୍ରା ପରେ ଶୁଭ ମୁହୂର୍ତ୍ତରେ ନିଷେକ ହୋମ ବା ପୁଆଣୀ ପ୍ରଥା ପାଳନ କରାଯାଉଥିଲା । ହାଦୋଲା, ହଂସୁଲୀ (ପଲଙ୍କ), ତୂଳିକା, ସୁପାଦ, ଆଲଟ ଚାମର, ଛତ୍ରବାସ, ଦର୍ପଣ, ଉପାଧାନାଦି ଥିଲା ତତ୍କାଳୀନ ଆଭିଜାତ୍ୟର ନିଦର୍ଶନ । ସେତେବେଳେ ବିଜୟନଗର ସାମ୍ରାଜ୍ୟ ସମେତ କେତେକ ରାଜ୍ୟରେ ସତୀପ୍ରଥା ( ପତିର ଚିତାଗ୍ନିରେ ଆତ୍ମବିସର୍ଜନ ) ପ୍ରବଳ ଭାବେ ପ୍ରଚଳିତ ଥିଲେ ହେଁ କପିଳେନ୍ଦ୍ରଙ୍କ ଶାସିତ ଓଡ଼ିଶାରେ ତାର ପ୍ରଭାବ ବିଶେଷ ଅନୁଭୂତ ହୋଇନଥିଲା । (୧୫) ତେବେ, ରକ୍ଷଣଶୀଳତା ଓ ପରଦାପ୍ରଥାର ଅନ୍ତରାଳରେ ସହଜିଆ ସାଧକର ସ୍ୱୈରାଚାର ଓ ବ୍ୟଭିଚାର ତଦାନୀନ୍ତନ ସମାଜର ଆଧ୍ୟାତ୍ମିକ ଭିତ୍ତିକୁ ଦୋଦୁଲ୍ୟମାନ କରିଦେବା ସଙ୍ଗେ ସଙ୍ଗେ ସାମାଜିକ ମୂଲ୍ୟବୋଧକୁ ପଙ୍କିଳ ଓ ଶିଥିଳ କରି ଦେଇଥିଲା । ଏଥିପାଇଁ ସାରଳା ଦାସ ଏକ ନୂତନ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରିବା ଉଦ୍ଦେଶ୍ୟରେ ତାଙ୍କ ମହାଭାରତରେ ଛନ୍ଦେ ଛନ୍ଦେ ସଂଯମ, ଆତ୍ମର

---

(୧୪) Mukherjee : History of the Gajapati Kings of Orissa pp. 147-150

(୧୫) Sharma, Yogesh & Narayan, Gita : The Return of Sati (Essay), Hattangadi, Shekhar-Ed, Mirror (Vol. XX, No 3, Bombay, January 1981 ) pp. 19-26

ଶକ୍ତି ଓ ଗୁଣର୍ବିକ ପବିତ୍ରତାର ଆଦର୍ଶବାଣୀ ପ୍ରଚାର କରିବାକୁ ବାଧ୍ୟ ହୋଇଥିଲେ । (୨୬)

ଉପର୍ଯ୍ୟୁକ୍ତ ବିଶ୍ଳେଷଣରେ ପ୍ରାକ୍-ସାରଳା ଓ ସାରଳାଯୁଗୀୟ ଓଡ଼ିଶାର ରାଜନୈତିକ, ସାମାଜିକ ଓ ଧାର୍ମିକ ପରିବେଶର ଯେଉଁ ସଂକ୍ଷିପ୍ତ ଚିତ୍ର ଉପସ୍ଥାପନ କରାଗଲା, ତାର ପୃଷ୍ଠଭୂମି ଉପରେ ସାରଳା ମହାଭାରତର ରାଜନୈତିକ ଆଦର୍ଶ ଯେ ପ୍ରତିଷ୍ଠିତ, କହିବା ବାହୁଲ୍ୟ ମାତ୍ର । ମୂଳ ମହାଭାରତରୁ ଦୂରେଇ ଯାଇ ନିଜ ମହାଭାରତକୁ ଏକ ସ୍ୱତନ୍ତ୍ର ରୂପ ପ୍ରଦାନ କରିବାକୁ ଯିବାବେଳେ ସାରଳା ଦାସ ସମସାମୟିକ ପରିବେଶର ବହୁ ଉପାଦାନକୁ ଗ୍ରହଣ କରିବା ସ୍ୱାଭାବିକ । ଏହି ଉପାଦାନଗୁଡ଼ିକ ଭିତ୍ତିରେ ହିଁ ସେ ନିଜର ମୌଳିକ ଚିନ୍ତାଧାରା ପରିବେଷଣ କରିଛନ୍ତି । କିନ୍ତୁ, ସାରଳା ଦାସଙ୍କ ଦୃଷ୍ଟି ଥିଲା ସୁଦୂରପ୍ରସାରୀ । ସମସାମୟିକ ଭାରତ ବର୍ଷର ରାଜନୈତିକ ପରିବେଶ ସମ୍ପର୍କରେ ସେ ଯେ ବହୁ ପରିମାଣରେ ସଚେତନ ଥିଲେ, ଏହା ତାଙ୍କ ରଚନାବଳୀରୁ ସୁସ୍ପଷ୍ଟ । ଏଣୁ ସାରଳାଙ୍କ ରାଜନୈତିକ ଆଦର୍ଶ ଚିନ୍ତା କଲାବେଳେ ସମସାମୟିକ ଭାରତୀୟ ରାଜନୈତିକ ପରିବେଶ ସମ୍ପର୍କରେ ଅବହିତ ହେବା ଆବଶ୍ୟକ ।

## (ଗ) ସାରଳାଯୁଗୀୟ ଭାରତର ରାଜନୈତିକ ପରିବେଶ

ସାରଳାଙ୍କ ସମୟ ତଥା ପଞ୍ଚଦଶ ଶତାବ୍ଦୀର ଭାରତୀୟ ରାଜନୈତିକ ପରିବେଶ ଅନୁଶୀଳନ ପୂର୍ବରୁ ଏକଥା ସ୍ପଷ୍ଟ ସ୍ମରଣଯୋଗ୍ୟ ଯେ ମାର୍ଚ୍ଚ ୧୨୦୬ରେ କୁତବୁଦ୍ଦିନ୍ ଆଇବାକ୍ କ୍ଷମତାକୁ ଆସିବା ଠାରୁ ଏପ୍ରିଲ ୧୫୨୬ରେ ପ୍ରଥମ ପାନିପଥ ଯୁଦ୍ଧ ପରେ ବାବରଙ୍କ ଦିଲ୍ଲୀ ସିଂହାସନାରୋହଣ ପର୍ଯ୍ୟନ୍ତ ପାଖ ୩୨୦ ବର୍ଷର ଭାରତୀୟ ରାଜନୈତିକ ଇତିହାସ ସ୍ଥାନ ବା କାଳ ବିଚାରରେ ବିଶେଷ ଉଲ୍ଲେଖନୀୟ ଅବଦାନ ଯୋଗାଇ ପାରିନାହିଁ । ଏହି ସମୟ ମଧ୍ୟରେ ଶାସନାସୀନ ୩୨ ଜଣ ସୁଲ୍‌ତାନଙ୍କ ମଧ୍ୟରୁ ଅଳ୍ପ କେତେ ଜଣ ନିଜର ବ୍ୟକ୍ତିତ୍ୱ ଓ ଗୁଣର୍ବିକ ଗୁଣବଳରେ ଶାସନ କ୍ଷେତ୍ରରେ ଦକ୍ଷତା ପ୍ରଦର୍ଶନ କରିଥିଲେ ସିନା, ପୂର୍ବବର୍ତ୍ତୀ ହିନ୍ଦୁ ପରମ୍ପରାର ଅବିଚ୍ଛିନ୍ନ ଧାରା ଭଳି କୌଣସି ନିର୍ଦ୍ଦିଷ୍ଟ ଶାସନ ଧାରା ବା ରାଜତ୍ୱ ପ୍ରଣାଳୀ ଅନୁସୃତ ହୋଇ-

---

(୨୬) ମହାନ୍ତି, ସୁରେନ୍ଦ୍ର : ଓଡ଼ିଆ ସାହିତ୍ୟର ଆଦିପର୍ବ— (କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ, ୪ର୍ଥ ସଂସ୍କରଣ, ୧୯୮୩) ପୃ· ୪-୬

ନଥିଲା । ଯଦିଓ ସୁଲତାନଗଣଙ୍କ ମଧ୍ୟରୁ ଅନେକ ସଫଳ ରାଜ୍ୟବିଜୟୀ ଥିଲେ ଓ ସଂଗ୍ରାମ କ୍ଷେତ୍ରରେ ଅଦମ୍ୟ ବୀରତ୍ୱର ପରିଚୟ ପ୍ରଦାନ କରିଥିଲେ, ସେମାନେ ଶ୍ରେଷ୍ଠ ଶାସକ ନଥିଲେ । ରାଜ୍ୟବିଜୟ ଶାସନର ଏକ ଅଙ୍ଗ ହୋଇପାରେ, କିନ୍ତୁ ସୁଶାସନ ପରମ୍ପରା ପ୍ରତିଷ୍ଠା ବିନା ତାର ମହତ୍ତ୍ୱ ନଗଣ୍ୟ । (୬୭)

ଏକ ସାମଗ୍ରିକ ଅନୁଧ୍ୟାନରୁ ଜଣାଯାଏ ଯେ ପ୍ରାକ୍-ସାରଳା-କାଳୀନ ଜୀବନଧାରା ମୁଖ୍ୟତଃ ଚାରୋଟି ଭୌଗୋଳିକ ପରିସୀମା ଭିତରେ ପରିବେଷ୍ଟିତ ଥିଲା । ଯଥା (୧) ହିମାଳୟ ଖଣ୍ଡ (କାଶ୍ମୀର, ନେପାଳ ଓ ଆସାମ), (୨) ସିନ୍ଧୁ ଗାଙ୍ଗେୟ ଉପତ୍ୟକା ଅଞ୍ଚଳ (ସିନ୍ଧୁ, ମାଳବ, ଗାନ୍ଧାର, କନୌଜ, ଗୁଜରାଟ, ଉଜ୍ଜୟିନୀ, ଅବନ୍ତୀ, ଆଜମୀର, ଚେଦୀ, କମ୍ବୋଜ, ମଗଧ, ବଙ୍ଗ, କଳିଙ୍ଗ ପ୍ରଭୃତି), (୩) ଦାକ୍ଷିଣାତ୍ୟ ଅଞ୍ଚଳ (ଦେବଗିରି, ମାଲ୍‌ଖେଦ୍ ବା ମାନ୍ୟଖେତ, ବାତାପି ବା ବାଦାମୀ, କଲ୍ୟାଣୀ, ଭେଙ୍ଗି, ଓ୍ୱାରଙ୍ଗଲ୍ ଓ ମହୀଶୂର), ଏବଂ (୪) ଦକ୍ଷିଣ ଉପକୂଳ ଅଞ୍ଚଳ (କାଞ୍ଚି, ତାଞ୍ଜୋର, ମଦୁରା, ମାଲବାର୍, ଦ୍ୱାରସମୁଦ୍ର ପ୍ରଭୃତି) । (୬୮) ପଞ୍ଚଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ଅର୍ଦ୍ଧସହସ୍ରାବ୍ଦ କାଳ ଏ ସମଗ୍ର ଅଞ୍ଚଳରେ ନ୍ୟାୟ ଓ ଆଇନର ଶାସନ ପରିବର୍ତ୍ତେ କେବଳ ଜିଗୀଷୁ ଓ ଜିଘାଂସୁ ବିଜେତାଗଣଙ୍କର ପାଶବିକ ପରାକ୍ରମର ରାଜତ୍ୱ ଅବ୍ୟାହତ ରହିଥିଲା । ପାରିବାରିକ ସ୍ନେହ ସୌହାର୍ଦ୍ଦ୍ୟ ବା ବଂଶ ଆଭିଜାତ୍ୟପ୍ରୀତି ପ୍ରତି କୌଣସି ମୋହ ମମତାର ପ୍ରଶ୍ନ ନଥିଲା । ଶାସନ ଅଧିକାର ଉଦ୍ଦେଶ୍ୟରେ ଭ୍ରାତା, ପିତା ବା ପିତୃବ୍ୟମାନଙ୍କର ନିର୍ମମ ହତ୍ୟା ସାଧାରଣ ନିୟମରେ ପରିଣତ ହୋଇଥିଲା । ଏଥିପାଇଁ ଆଲାଉଦ୍ଦିନ ଖିଲ୍‌ଜୀ ବା ମହମ୍ମଦ ବିନ୍ ତୋଗଲକ୍ ନିନ୍ଦାର ପାତ୍ର ହୋଇ ନଥିଲେ; ଆଇବାକ୍, ବଲବନ୍ ଓ ଇଲ୍‌ତୁତ୍‌ମିସ କ୍ରୀତଦାସ ହେଲେ ମଧ୍ୟ ସୁଲତାନ ରୂପେ ସମ୍ମାନ ଭାଜନ ହୋଇଥିଲେ ଏବଂ ରେଜିୟା ନାରୀ ହୋଇ ମଧ୍ୟ ଶ୍ରେଷ୍ଠ ସାମ୍ରାଜ୍ଞୀଭାବେ ଗୌରବ ଅର୍ଜନ କରିଥିଲେ । ସୁତରାଂ ନାରୀ ହେଉ କି ପୁରୁଷ ହେଉ; ତୁର୍କ, ଆରବ ବା ପାର୍ଶୀ ହେଉ ଅଥବା ହିନ୍ଦୁ, ଆଫଗାନ୍ ବା ମୋଗଲ ହେଉ, ଯିଏ ଶକ୍ତି ବଳରେ ବିଜୟୀ ହୋଇପାରିଲା, ସେ ହିଁ ଶାସକରୂପେ ଅଧିଷ୍ଠିତ ହେଉଥିଲା । ଏହା ବ୍ୟତୀତ, ଉତ୍ତରାଧିକାର ସୂତ୍ରରେ କ୍ଷମତା ହାସଲ ନିମିତ୍ତ ଅନ୍ୟ କୌଣସି ନିୟମକୁ ମାନ୍ୟତା ପ୍ରଦର୍ଶନ କରାଯାଉ ନଥିଲା । (୬୯)

---

(୬୭) Sharma, S. R: The Crescent in India ( L. N. Agrawal, Agra, 1983) pp. 157-158

(୬୮) Ibid-pp. 2-12

(୬୯) Ibid-pp. 154-155

ରାଜ୍ୟ ବିଜୟ ତଥା ଯୁଦ୍ଧାଭିଯାନ ଥିଲା ଆଲୋଚ୍ୟ ସମୟର ସର୍ବପ୍ରଧାନ ରାଜକର୍ତ୍ତବ୍ୟ । ମହମ୍ମଦ ଘୋରୀଙ୍କ ଲାହୋର ଆକ୍ରମଣ (ଖ୍ରୀ ୧୧୮୬) ଠାରୁ ଆରମ୍ଭ କରି ଇଲ୍‌ତୁତ୍‌ମିଶ୍‌ଙ୍କ ମାଳବ ଅଭିଯାନ (ଖ୍ରୀ ୧୨୩୫), ଆଲାଉଦ୍ଦିନ ଖିଲିଜୀଙ୍କ ଦେବଗିରି ଦଖଲ (ଖ୍ରୀ ୧୨୯୪) ଏବଂ ଦିଲ୍ଲୀ ସୁଲତାନମାନଙ୍କର ଗୁଜରାଟ (ଖ୍ରୀ ୧୨୯୭), ମେବାର (ଖ୍ରୀ ୧୩୦୩), ଓ୍ୱାରଙ୍ଗଲ (ଖ୍ରୀ ୧୩୦୭), ଦ୍ୱାରସମୁଦ୍ର (ଖ୍ରୀ ୧୩୧୦), ମଦୁରା (ଖ୍ରୀ ୧୩୧୧, ଯାଜନଗର ବା ଯାଜପୁର (ଖ୍ରୀ ୧୩୨୨), ଦୌଲତାବାଦ (ଖ୍ରୀ ୧୩୪୭) ଓ ଜୁନାଗଡ଼ (ଖ୍ରୀ ୧୩୫୦) ବିଜୟ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ କ୍ଷମତା ବିସ୍ତାର ଲିପ୍‌ସା ଅକ୍ଷୁଣ୍ଣ ରହିଥିଲା ।

ଏହା ସତ୍ତ୍ୱେ, ସାରଳାଙ୍କ ପୂର୍ବବର୍ତ୍ତୀ ସମୟରେ ଗିଆସୁଦ୍ଦିନ ବଲବନ୍ (୧୨୬୬-୧୨୮୬), ଗିଆସୁଦ୍ଦିନ ତୋଗଲକ (୧୩୨୦-୧୩୨୫), ଆଲାଉଦ୍ଦିନ ଖିଲିଜୀ (୧୨୯୬-୧୩୧୬), ଫିରୋଜଶାହ ୧୩୫୧-୧୩୮୮) ପ୍ରମୁଖ କେତେ ଜଣ ସୁଲତାନ ନିଜର ବ୍ୟକ୍ତିତ୍ୱ ବଳରେ ଶାସନ କ୍ଷେତ୍ରରେ ରାଜନୈତିକ ଆଦର୍ଶର ପ୍ରବହମାନ ସ୍ରୋତକୁ ସମ୍ପୂର୍ଣ୍ଣ ଅବରୁଦ୍ଧ ନକରି ବଞ୍ଚାଇ ରଖିଥିଲେ ଏବଂ ରାଜ-ସିଂହାସନର ସମ୍ମାନ ଓ ମର୍ଯ୍ୟାଦା ରକ୍ଷାକରି ଶାସନ କାର୍ଯ୍ୟ ନିର୍ବାହ କରିଥିଲେ । ଏମାନଙ୍କ ରାଜତ୍ୱ କାଳରେ କର ବୋଝ ଲାଘବ ହୋଇଥିଲା; ଡ଼ାକ ବିଭାଗ, ପୋଲିସ ବିଭାଗ ଓ ବିଚାର ବିଭାଗର ଉନ୍ନତି ଘଟିଥିଲା ଏବଂ ସତୀପ୍ରଥାର ଉଚ୍ଛେଦ, ଦାରିଦ୍ର୍ୟ ଦୂରୀକରଣ ଯୋଜନା, ଶିକ୍ଷାନୁଷ୍ଠାନ ଓ ଚିକିତ୍ସାଳୟ ସ୍ଥାପନ ତଥା ବାଣିଜ୍ୟ, ଶିଳ୍ପ ଓ କଳାର ବିକାଶ ସାଧନ ଦିଗରେ ପଦକ୍ଷେପମାନ ଗ୍ରହଣ କରାଯାଇଥିଲା ।

କିନ୍ତୁ ସାରଳାଙ୍କ ଆବିର୍ଭାବ ବେଳକୁ ଭାରତର ରାଜନୈତିକ ଏକାଗ୍ରତା ସମ୍ପୂର୍ଣ୍ଣ ଛିନ୍ନବିଚ୍ଛିନ୍ନ ହୋଇ ପଡ଼ିଥିଲା । ନେପାଳ, ମୁଙ୍ଗେର, କଙ୍କଣ ପ୍ରଭୃତି କେତୋଟି କ୍ଷୁଦ୍ର ରାଜ୍ୟ ବ୍ୟତୀତ କାବୁଲ, ପଞ୍ଜାବ, କାଶ୍ମୀର, କନୌଜ ପ୍ରଭୃତି ବିଶାଳ ସାମ୍ରାଜ୍ୟଗୁଡ଼ିକ ପୂରାପୂରି ଭୂଲୁଣ୍ଠିତ ପଡ଼ିଥିଲା । ଅର୍ଦ୍ଧପାଗଳ କଳ୍ପନାବିଳାସୀ ମହମ୍ମଦ ତୋଗଲକ (୧୩୨୫-୧୩୫୧)ଙ୍କ ଉତ୍ତରାଧିକାରୀ ଫିରୋଜ କୋରାନସମ୍ମତ କରଧାର୍ଯ୍ୟ ନୀତି ପ୍ରଚଳନ ଦ୍ୱାରା ଶୁଳ୍କ ବୋଝ ଲାଘବ କରି ନ୍ୟାୟ ଶାସନକୁ କୋହଳ ଓ ମାନବଧର୍ମୀ କରିବା ଦିଗରେ ଚେଷ୍ଟିତ ହୋଇଥିଲେ ହେଁ ହିନ୍ଦୁ ବିଦ୍ୱେଷ ନୀତି ଅନୁସରଣ, ମନ୍ଦିର ଦେବାଳୟର ଧ୍ୱଂସସାଧନ, ହିନ୍ଦୁ ବ୍ରାହ୍ମଣଙ୍କ ଉପରେ ଜିଜିୟା କର ପ୍ରବର୍ତ୍ତନ ଓ କ୍ରୀତଦାସ ପ୍ରଥାର ସମର୍ଥନ ଦ୍ୱାରା ପାରମ୍ପରିକ ରାଜନୈତିକ ଆଦର୍ଶକୁ କଳଙ୍କିତ କରି ଦେଇଥିଲେ ଏବଂ ସୁଲତାନୀ ସାମ୍ରାଜ୍ୟର

ବଳପୂ ପ୍ରତିଷ୍ଠା ହ୍ରାସ ହୋଇଥିଲା । ଫିରୋଜ ଶାହଙ୍କ ପୁତ୍ର (ମହମ୍ମଦ), ପୌତ୍ର (ତୋଗଲକ ଖାଁ, ହୁମାୟୁନ, ନାସିରୁଦ୍ଦିନ ଓ ମାମୁଦ) ଓ ଭ୍ରାତୃଷ୍ପୁତ୍ର (ଆବୁବେକର)ଙ୍କ ମଧ୍ୟରେ ସିଂହାସନାଧିକାର ନେଇ ଉତ୍ତମୂଳ କନ୍ଦଳ ସୃଷ୍ଟି ହୋଇଥିଲା ଏବଂ ପରସ୍ଥିତିର ସୁଯୋଗକ୍ରମେ ତୁର୍କବଂଶୀ ତୈମୁରଲଙ୍ଗ ସମରକନ୍ଦରୁ ଆସି ଭାରତ ଆକ୍ରମଣ କରି ଦିଲ୍ଲୀ ସିଂହାସନ ଅଧିକାର କରି ନେଇଥିଲେ ।

ତୋଗଲକ ରାଜବଂଶର ଧ୍ୱଂସସ୍ତୂପ ଉପରେ ପ୍ରତିଷ୍ଠିତ ସୟଦ ବଂଶର ରାଜତ୍ୱ ଖ୍ରୀ ୧୪୧୩ ଠାରୁ ୧୪୫୧ ପର୍ଯ୍ୟନ୍ତ ପୁରୁଷାନୁକ୍ରମେ ପ୍ରଚଳିତ ହୋଇଥିଲେ ହେଁ ସମ୍ପୃକ୍ତ ଶାସକତ୍ରୟ (ମୁବାରକ ଶାହ, ମହମ୍ମଦ ଶାହ ଓ ଆଲାଉଦ୍ଦିନ ଆଲମ୍) ରାଜନୈତିକ କୃତିତ୍ୱ ପ୍ରଦର୍ଶନ ତଥା ଶାସନଗତ ଆଦର୍ଶ ପ୍ରତିଷ୍ଠା ଦିଗରେ କୌଣସି ପଦକ୍ଷେପ ଗ୍ରହଣ କରିପାରି ନଥିଲେ । ବରଂ ଶେଷୋକ୍ତ ଆଲମ ଶାହ ଲୋଦୀବଂଶୀୟ ବହଲୁଲ୍‌ଙ୍କ ହସ୍ତରେ ରାଜ୍ୟଭାର ସମର୍ପି ଦେଇ ଶାସନ ଦାୟିତ୍ୱ ପାଳନରୁ କ୍ଷାନ୍ତ ହୋଇଥିଲେ । ପରବର୍ତ୍ତୀ ଲୋଦୀବଂଶୀୟ ବହଲୁଲ୍, ସିକନ୍ଦର ଓ ଇବ୍ରାହିମ ପୁରୁଷାନୁକ୍ରମେ ଖ୍ରୀ ୧୪୫୧ ଠାରୁ ଖ୍ରୀ ୧୫୨୬ ପର୍ଯ୍ୟନ୍ତ ଶାସନ କ୍ଷେତ୍ରରେ ଅଧିଷ୍ଠିତ ହୋଇଥିଲେହେଁ ଲୋଭବ୍ୟସନ, ଔଦ୍ଧତ୍ୟ ଓ ନିଷ୍ଠୁରତାର ବଶବର୍ତ୍ତୀ ହୋଇ ରାଜନୈତିକ ସଂହତି ଓ ଶାସନ ଶୃଙ୍ଖଳା ରକ୍ଷା ଦିଗରେ ଆଦୌ ସଚେଷ୍ଟ ହୋଇ ନଥିଲେ । ଫଳତଃ, ଅମିରମାନଙ୍କର ବିରାଗଭାଜନ ହେବା ଦ୍ୱାରା ପଞ୍ଜାବର ଶାସକ ଦୌଲତ ଖାଁ ଓ ସ୍ୱୟଂ ଇବ୍ରାହିମଙ୍କ ପିତୃବ୍ୟ ଆଲମ ଖାଁଙ୍କ ମିଳିତ ଷଡ଼ଯନ୍ତ୍ରରେ ଲାହୋର, ଦିଲ୍ଲୀ ଓ ଆଗ୍ରାରେ ମୋଗଲ ବାଦଶାହ ବାବରଙ୍କ ଆଧିପତ୍ୟ ବିସ୍ତାର ଲାଗି ପଥ ସୁଗମ ହୋଇ ପାରିଥିଲା ।

ଅବଶ୍ୟ ଏଠାରେ ନିତାନ୍ତ ସ୍ମରଣଯୋଗ୍ୟ ଯେ ସୁଲତାନୀ ଶାସକମାନଙ୍କର ଦୁର୍ବଳ ରାଜତ୍ୱ ଫଳରେ ସାମଗ୍ରିକ ସଂହତି ଓ ଦୃଢ଼ ଶାସନ ସଙ୍ଗଠନ ବ୍ୟାହତ ହୋଇଥିଲେ ମଧ୍ୟ କେନ୍ଦ୍ରାପସାରୀ ପ୍ରବୃତ୍ତିର ସମ୍ପ୍ରସାରଣ ଯୋଗୁଁ ସୁଲତାନୀ ସାମ୍ରାଜ୍ୟର ଭଗ୍ନସ୍ତୂପ ଉପରେ ବହୁ ସ୍ୱାଧୀନ ରାଜ୍ୟ ଗଢ଼ି ଉଠିଥିଲା ଏବଂ ବିଚ୍ଛିନ୍ନତାବାଦର ପ୍ରସାର ମାଧ୍ୟମରେ ସ୍ୱାଧୀନ ଚେତନା ବିକାଶକୁ ନୂତନ ପ୍ରେରଣା ଯୋଗାଇଥିଲା । ଆଲୋଚ୍ୟ କାଳରେ ଯେଉଁ ସବୁ ସ୍ୱାଧୀନ ରାଜ୍ୟଗୁଡ଼ିକର ଅଭ୍ୟୁତ୍ଥାନ ଘଟିଥିଲା ସେ ମଧ୍ୟରେ ବଙ୍ଗ, ମାଳବ, ଗୁଜରାଟ, ବାହମନୀ ଓ ବିଜୟନଗର ସାମ୍ରାଜ୍ୟର ନାମ ଉଲ୍ଲେଖଯୋଗ୍ୟ । ଏ ସବୁ ସ୍ୱାଧୀନ ରାଜ୍ୟର କ୍ରମବିକାଶ ତଥା ଶାସନ ପଦ୍ଧତି ସମ୍ପର୍କରେ କିଂଚିତ ଅବହିତ ହେଲେହେଁ ସାରଲାଙ୍କ ସମସାମୟିକ

ଭାରତର ରାଜନୈତିକ ଅବସ୍ଥା ସମ୍ବନ୍ଧରେ ସମ୍ୟକ୍ ଧାରଣା କରିବା ସମ୍ଭବପର ହେବ ।

## ସାରଳାଙ୍କ ସମକାଳୀନ ଭାରତର ବିଭିନ୍ନ ସ୍ୱାଧୀନ ରାଜ୍ୟ

ସିକନ୍ଦର ଶାହଙ୍କ ପୁତ୍ର ଗିଆସୁଦ୍ଦିନ ବଙ୍ଗରେ ଅଠର ବର୍ଷ ରାଜତ୍ୱ କରି ଖ୍ରୀ ୧୪୧୧ ରେ ମୃତ୍ୟୁବରଣ କଲାପରେ ତାଙ୍କ ପୁତ୍ର ସଇଫୁଦ୍ଦିନଙ୍କୁ ବଳାତ୍କାର ପୂର୍ବକ ଗାଦିଚ୍ୟୁତ କରି ଦିନାଜପୁରର ଗଣେଶ ନାମକ ଜନୈକ ବ୍ରାହ୍ମଣ ଜମିଦାର ବଙ୍ଗର ସ୍ୱାଧୀନ ରାଜା ରୂପେ ଅଧିଷ୍ଠିତ ହୋଇଥିଲେ । ତାଙ୍କ ସମୟରୁ ୧୫୩୮ ରେ ଶେରଶାହଙ୍କ ଦ୍ୱାରା ମୋଗଲ ସାମ୍ରାଜ୍ୟଭୁକ୍ତ ହେବା ପର୍ଯ୍ୟନ୍ତ ବଙ୍ଗର ସ୍ୱାଧୀନତା ଅକ୍ଷୁଣ୍ଣ ରହିଥିଲା । ଏପରିକି ହୁସେନ୍ ଶାହଙ୍କ ରାଜତ୍ୱ କାଳ (୧୪୯୩-୧୫୧୮)ରେ ମଗଧ, କଚ୍ଛ, ବିହାର ଓ ଆସାମ ସ୍ୱାଧୀନ ବଙ୍ଗର ଶାସନାଧୀନ ହୋଇଥିଲା । ଶ୍ୟାମସୁଦ୍ଦିନ ଅହମ୍ମଦ (୧୪୩୧-୩୬)ଙ୍କ ବ୍ୟତୀତ ସ୍ୱାଧୀନ ବଙ୍ଗର ଅନ୍ୟ ସମସ୍ତ ମୁସଲମାନ ଶାସକ ହିନ୍ଦୁମାନଙ୍କ ପ୍ରତି ସଦୟ ତଥା ବଙ୍ଗଳା ସାହିତ୍ୟର ବିକାଶ ପ୍ରତି ଅନୁକୂଳ ମନୋଭାବ ପୋଷଣ କରିଥିଲେ ।

ଖ୍ରୀ ୧୪୦୧ ରେ ତୈମୁରଙ୍କ ଆକ୍ରମଣର ଅବ୍ୟବହିତ ପରେ ମାଳବର ଗଭର୍ଣ୍ଣର ଦିଲ୍‌ବାର ଖାଁ ନିଜକୁ ସ୍ୱାଧୀନ ରାଜା ରୂପେ ଘୋଷଣା କଲା ଠାରୁ ଖ୍ରୀ ୧୫୩୧ ପର୍ଯ୍ୟନ୍ତ ମାଳବ ସ୍ୱାଧୀନ ରାଜ୍ୟ ଭାବରେ ଶାସିତ ହେଉଥିଲା । ସେଠାରେ ଶାସନ କାର୍ଯ୍ୟ ନିର୍ବାହ କରିଥିବା ସାତଜଣ ରାଜାଙ୍କ ମଧ୍ୟରେ କ୍ଷମା, ବୀର, ଭଦ୍ର ଓ ପ୍ରଜାବତ୍ସଳ ତଥା ଧର୍ମନିରପେକ୍ଷ ଶାସକ ହିସାବରେ ମାମୁଦ ଖିଲିଜି (୧୪୩୬-୬୯)ଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଗୁଜରାଟର ତତ୍‌କାଳୀନ ଗଭର୍ଣ୍ଣର ଜାଫର ଖାଁ ନିଜକୁ 'ମୁଜାଫର ଶାହ' ଉପାଧିରେ ଭୂଷିତ କରି ଖ୍ରୀ ୧୪୦୧ ରେ ଗୁଜରାଟକୁ ସ୍ୱାଧୀନ ରାଜ୍ୟ ରୂପେ ଘୋଷଣା କରିବା ଠାରୁ ଖ୍ରୀ ୧୫୩୭ ପର୍ଯ୍ୟନ୍ତ ତାର ସ୍ୱାଧୀନତା ବଜାୟ ରହିଥିଲା । ମୁଜାଫରଙ୍କ ପୁତ୍ର ଅହମ୍ମଦ ଶାହ (୧୪୧୧-୪୧) ବିଖ୍ୟାତ ଅହମଦାବାଦ ନଗରୀ ପ୍ରତିଷ୍ଠା କରିଥିଲେ ଏବଂ ତାଙ୍କ ପୌତ୍ର ମାମୁଦ (୧୪୯୫-୧୫୧୧)ଙ୍କ ଦ୍ୱାରା ପର୍ତ୍ତୁଗୀଜ ଆକ୍ରମଣ ପ୍ରତିହତ ହୋଇଥିଲା । ଏପରିକି ବାହାଦୁର ଶାହଙ୍କ ଅମଳରେ ଖ୍ରୀ ୧୫୩୧ ରେ ମାଳବର ଚିତୋର ଦୁର୍ଗ ଗୁଜରାଟର ହସ୍ତଗତ ହୋଇପାରିଥିଲା ।

ଅନ୍ୟାନ୍ୟ ଉତ୍ତରାଞ୍ଚଳ ସ୍ୱାଧୀନ ରାଜ୍ୟ ମଧ୍ୟରେ କାଶ୍ମୀର (୧୩୪୯ରୁ ୧୫୮୬), ମେବାର (୧୩୬୫ ରୁ ୧୫୨୭) ଓ ଖାନ୍ଦେଶ (୧୩୮୮ରୁ ୧୬୦୧) ଅପେକ୍ଷାକୃତ ଅଧିକ କାଳ ସ୍ୱାଧୀନତା ଅକ୍ଷୁର୍ଣ୍ଣ ରଖିଥିଲେ । ଏଣୁ କାଶ୍ମୀରର ସ୍ୱାଧୀନ ରାଜାମାନଙ୍କର ଧର୍ମନିରପେକ୍ଷତା ଓ ସାହିତ୍ୟକଳାନୁରାଗ ଏବଂ ମେବାରର ବୀରତ୍ୱ ତଥା ସେନାବାହିନୀ ଗଠନ କୌଶଳ ଜାତୀୟ ରାଜନୈତିକ ଇତିହାସରେ ସ୍ମରଣୀୟ ହୋଇ ପାରିଛି । ଦଶମ ଶତାବ୍ଦୀରୁ ଚିନର କବଳରୁ ମୁକ୍ତିଲାଭ କରି ସ୍ୱାଧୀନ ରାଜ୍ୟ ରୂପେ ମୁଣ୍ଡ ଟେକିଥିବା ନେପାଳ ମଧ୍ୟ ଏହି ସମୟରେ ଯକ୍ଷମଲ୍ଲଙ୍କ ରାଜତ୍ୱ କାଳ (୧୪୨୬-୭୯) ରେ ସୁଶାସନ ପାଇଁ ସୁଖ୍ୟାତି ଅର୍ଜନ କରିଥିଲା । ଏହା ବ୍ୟତୀତ, କାମରୂପ ଓ ଆସାମ ମଧ୍ୟ ତ୍ରୟୋଦଶ ଶତାବ୍ଦୀ ଠାରୁ ପଞ୍ଚଦଶ ଶତାବ୍ଦୀର ଶେଷକାଳ ପର୍ଯ୍ୟନ୍ତ ସ୍ୱାଧୀନ ରାଜ୍ୟ ରୂପେ ସେମାନଙ୍କର ସ୍ଥିତି ବଜାୟ ରଖିଥିଲେ ।

## ବାହମନୀ ଓ ବିଜୟନଗର ସାମ୍ରାଜ୍ୟ

ଭାରତର 'ଉତ୍ତର ପଶ୍ଚିମାଞ୍ଚଳ ବ୍ୟତୀତ ଦାକ୍ଷିଣାତ୍ୟର ସ୍ୱାଧୀନ ରାଜ୍ୟ ବାହମନୀ ଓ ବିଜୟନଗର ସାମ୍ରାଜ୍ୟର ଇତିବୃତ୍ତ ଅଧିକ ରୋମାଞ୍ଚକର । ଦିଲ୍ଲୀ ସୁଲତାନୀ ସାମ୍ରାଜ୍ୟର ଭଗ୍ନସ୍ତୂପ ଉପରେ ଗଢ଼ି ଉଠିଥିବା ବିଭିନ୍ନ ସ୍ୱାଧୀନ ରାଜ୍ୟ-ଗୁଡ଼ିକ ମଧ୍ୟରେ ବାହମନୀ ସାମ୍ରାଜ୍ୟ ଥିଲା ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ । ମହମ୍ମଦ ବିନ୍ ତୋଗଲକଙ୍କ ରାଜତ୍ୱ କାଳରେ ତାଙ୍କର ଜନୈକ କର୍ମଚାରୀ ହାସନ୍ ଗାଙ୍ଗୁ ୧୩୪୭ ମସିହା ଅଗଷ୍ଟ ୩ ତାରିଖରେ ଦୌଲତାବାଦକୁ ସ୍ୱାଧୀନ ରାଜ୍ୟ ରୂପେ ଘୋଷଣା କଲା ପରେ ଏହାର ସୀମା ଉତ୍ତରରେ ବେରାରଠାରୁ ଦକ୍ଷିଣରେ କୃଷ୍ଣାନଦୀ ତଥା ପୂର୍ବରେ ଓ୍ୱାରଙ୍ଗଲଠାରୁ ପଶ୍ଚିମକୁ ଗୋଆ ପର୍ଯ୍ୟନ୍ତ ସମ୍ପ୍ରସାରଣ କରିଥିଲେ । ଖ୍ରୀ ୧୫୨୬ରେ ବାହମନୀ ସାମ୍ରାଜ୍ୟ ସମ୍ପୂର୍ଣ୍ଣ ଭାବେ ଖଣ୍ଡବିଖଣ୍ଡିତ ହୋଇଯିବା ପର୍ଯ୍ୟନ୍ତ ସେଠାରେ ସ୍ୱାଧୀନତାର ଆଲୋକ ପ୍ରଜ୍ଜ୍ୱଳିତ ରହିଥିଲେ ହେଁ ଆଲୋଚ୍ୟ କାଳର ପ୍ରାୟ ସମସ୍ତ ଶାସକ ପ୍ରାୟତଃ ନିଷ୍ଠୁର, ଅତ୍ୟାଚାରୀ, ଅବିବେକୀଭାବାପନ୍ନ ଓ ନିକୃଷ୍ଟ ଧରଣର ଶାସନନୀତି ପ୍ରବର୍ତ୍ତନ କରିବା ଫଳରେ ରାଜନୈତିକ ଆଦର୍ଶର ପରମ୍ପରାକୁ ଆଦୌ ସମୁଜ୍ଜ୍ୱଳ କରିପାରି ନଥିଲେ । ସେ ସମୟରେ ବାହମନୀ ଶାସକମାନଙ୍କ ଅତ୍ୟାଚାରରେ ବହୁ ହିନ୍ଦୁ ଇସଲାମଧର୍ମ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଧର୍ମାନ୍ଧ ଅହମ୍ମଦ ଶାହ (୧୪୨୨-୩୫)ଙ୍କ ରାଜତ୍ୱ କାଳରେ ବିଂଶ ସହସ୍ର ହିନ୍ଦୁଙ୍କୁ ହତ୍ୟା କରିବା ଲାଗି ଲକ୍ଷ୍ୟ ଧାର୍ଯ୍ୟ କରା-ଯାଇଥିଲା ଏବଂ ଧାର୍ଯ୍ୟ ସଂଖ୍ୟା ପୂର୍ତ୍ତି ହେବା ଦିନ ଏକ ବିରାଟ ଉତ୍ସବ ଓ ପଂକ୍ତି ଭୋଜନ ଆୟୋଜିତ ହୋଇଥିଲା ।

ଏତାଦୃଶ ଅତ୍ୟୁଗ୍ର ଶାସନବ୍ୟବସ୍ଥାର ପ୍ରତିକ୍ରିୟା ସ୍ୱରୂପ ସେଠାରେ ସେତେବେଳେ ଯେଉଁ ଆଭ୍ୟନ୍ତରୀଣ ଅଶାନ୍ତି ଓ ଅନ୍ତର୍ବିବାଦ ଦେଖା ଦେଇଥିଲା ତାର ଅବଶ୍ୟମ୍ଭାବୀ ପରିଣତି ସ୍ୱରୂପ ସାମ୍ରାଜ୍ୟାନ୍ତର୍ଗତ ବିଭିନ୍ନ ପ୍ରଦେଶ ଗୋଟିକ ପରେ ଗୋଟିଏ ବାହ୍ମନୀ ଶାସନ କର୍ତ୍ତୃତ୍ୱରୁ ଉଦ୍ଧାର ଯାଇଥିଲେ । ବିଶାଳ ବାହ୍ମନୀ ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇ ପଡ଼ିଥିବା ବିଭିନ୍ନ ପ୍ରଦେଶ ସମୂହକ୍ରମେ ପାଞ୍ଚୋଟି ସ୍ୱାଧୀନ ରାଜ୍ୟ ରୂପେ ପ୍ରତିଷ୍ଠା ଲାଭ କରିଥିଲେ । ଫଳତଃ, ଖ୍ରୀ ୧୪୦୯ରେ ଅହମ୍ମଦନଗର, ଖ୍ରୀ ୧୪୮୪ ରେ ବେରାର, ଖ୍ରୀ ୧୪୮୯ ରେ ବିଜାପୁର, ଖ୍ରୀ ୧୫୧୭ ରେ ବିଦର ଓ ଖ୍ରୀ ୧୫୧୮ରେ ଗୋଲକୁଣ୍ଡା ସ୍ୱାଧୀନ ରାଜ୍ୟ ରୂପେ ଆତ୍ମପ୍ରକାଶ କରିପାରିଥିଲେ । ବାହ୍ମନୀ ସାମ୍ରାଜ୍ୟରୁ ବିଚ୍ଛିନ୍ନ ଏହି ସ୍ୱାଧୀନ ଶାଖା ରାଜ୍ୟଗୁଡ଼ିକ ମଧ୍ୟରେ ସର୍ବଦା ପାରସ୍ପରିକ ସଂଘର୍ଷ ଲାଗି ରହିଥିଲା ଏବଂ ତତ୍ ସଙ୍ଗେ ସଙ୍ଗେ ଏମାନଙ୍କର ଚିର ଶତ୍ରୁ ସ୍ୱରୂପ ବିଜୟନଗର ହିନ୍ଦୁ ସାମ୍ରାଜ୍ୟ ଦଣ୍ଡାୟମାନ ଥିଲା ।

ବାସ୍ତବତଃ ବିଜୟନଗର ସାମ୍ରାଜ୍ୟ ଥିଲା ଦାକ୍ଷିଣାତ୍ୟରେ ହିନ୍ଦୁମାନଙ୍କ ଉପରେ ମୁସଲମାନ ଆକ୍ରମଣର ଅବରୋଧ ତଥା ଇସଲାମ ପ୍ରଭାବ ବିସ୍ତାରର ପ୍ରତିରୋଧ ଜନିତ ଏକ ପ୍ରବଳ ଜାତୀୟ ଜାଗରଣର ପରିଣାମ । ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ଭାରତୀୟ ଇତିହାସର ସନ୍ଧିସନ୍ଧି ମୁହୂର୍ତ୍ତରେ ସଙ୍ଗଠିତ ସେହି ବୈପ୍ଳବିକ ଗଣ-ଆନ୍ଦୋଳନର ନେତୃତ୍ୱ ନେଇ ସମ୍ରାଟ ସଙ୍ଗମ ସୁଖ୍ୟାତି ଅର୍ଜନ କରିଥିଲେ । ସାମୟିକଭାବେ ଅଧଃପତନରେ କ୍ଷୟବୃଦ୍ଧି ଘଟିଥିଲେ ସୁଦ୍ଧା ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଦୀର୍ଘ ଅତିଶଳ ଶହ ବର୍ଷ କାଳ ଦାକ୍ଷିଣାତ୍ୟରେ ମୁସଲିମ ବିଜୟ ବାତ୍ୟାର ପ୍ରକୋପକୁ ପ୍ରତିହତ କରି ହିନ୍ଦୁଧର୍ମ ଓ ସଂସ୍କୃତିର ସୁରକ୍ଷା ଦିଗରେ ବିଜୟନଗର ସାମ୍ରାଜ୍ୟର ଅବଦାନ ଅନସ୍ୱୀକାର୍ଯ୍ୟ ।

ଦ୍ୱିତୀୟ ହରିହର (୧୩୭୯-୧୪୦୪)ଙ୍କ ସମୟରେ ମହୀଶୂର, କନଡ଼, ତ୍ରିଚନାପଲ୍ଲୀ, କାଞ୍ଚିବରମ୍ ପ୍ରଭୃତି ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ଏବଂ ଦ୍ୱିତୀୟ ଦେବରାୟ (୧୪୨୨-୪୬) ସାମ୍ରାଜ୍ୟର ସୀମା ସିଂହଳ ପର୍ଯ୍ୟନ୍ତ ପରିବ୍ୟାପ୍ତ କରିଥିଲେ । ସଙ୍ଗମ ବଂଶର ଶେଷ ସମ୍ରାଟ ମଲ୍ଲିକାର୍ଜ୍ଜୁନ (୧୪୪୬-୬୫)ଙ୍କ ପରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ଫଳରେ ବିଜୟନଗର ସାମ୍ରାଜ୍ୟର ପତନ ଆସନ୍ନ ହୋଇ ପଡ଼ିଥିଲେ ହେଁ ଚନ୍ଦ୍ରଗିରିର ଶାସକ ଶାଲ୍ୱ ନରସିଂହ ତତ୍କାଳୀନ ଅଯୋଗ୍ୟ ରାଜା ବିରୂପାକ୍ଷ (୧୪୬୫-୮୬)ଙ୍କୁ ଗାଦିଚ୍ୟୁତ କରି ପତନୋନ୍ମୁଖୀ ସାମ୍ରାଜ୍ୟର ପୁନରୁଦ୍ଧାର ଘଟାଇଥିଲେ । ଖ୍ରୀ ୧୪୮୬ ଠାରୁ ୧୪୯୩ ପର୍ଯ୍ୟନ୍ତ ସେ ଜଣେ କୁଶଳୀ ଓ ଚତୁର

ଶାସକ ଭାବେ କାର୍ଯ୍ୟ ନିର୍ବାହ କରିବା ଫଳରେ ସାମ୍ରାଜ୍ୟର ହୃତଗୌରବ ପୁନଃ ପ୍ରତିଷ୍ଠିତ ହୋଇ ପାରିଥିଲା ।

ଦ୍ୱିତୀୟ ଦେବରାୟ, ମଲ୍ଲିକାର୍ଜ୍ଜୁନ, ବିରୂପାକ୍ଷ, ଶାଲୁ ନରସିଂହ ପ୍ରମୁଖ ସମ୍ରାଟଗଣ ଥିଲେ ସାରଳାଙ୍କ ସମକାଳୀନ ଶାସକ । ସେମାନଙ୍କ ସମୟରେ ବିଜୟ-ନଗର ସାମ୍ରାଜ୍ୟ କେବଳ ଦକ୍ଷିଣ ଭାରତରେ ମୁସଲମାନ ଶକ୍ତି ପ୍ରସାରର ପ୍ରତିରୋଧ ଦିଗରେ ଦୃଷ୍ଟି ନିବଦ୍ଧ କରି ନଥିଲା, ତତ୍ ସଙ୍ଗେ ସଙ୍ଗେ ଶାସନ, ସାହିତ୍ୟ ଓ କଳାର ବିକାଶ ସାଧନ ନିମିତ୍ତ କ୍ଷେତ୍ର ପ୍ରସ୍ତୁତ ମଧ୍ୟ କରିଥିଲା । ସେ ସାମ୍ରାଜ୍ୟର ତଦାନିନ୍ତନ ଶାସକଗଣ ଏକଛତ୍ରବାଦୀ ଥିଲେ ସୁଦ୍ଧା ପ୍ରଜାମାନଙ୍କର ସ୍ୱାର୍ଥବିରୋଧୀ ନଥିଲେ । ଭୂରାଜସ୍ୱ ଥିଲା ଆୟର ପ୍ରଧାନ ମାଧ୍ୟମ ଏବଂ ରାଜ୍ୟର ସୁରକ୍ଷା ସକାଶେ ରହିଥିଲା ଦୃଢ଼ ସାମରିକ ସଙ୍ଗଠନ । ବହିର୍ବାଣିଜ୍ୟ ପ୍ରସାର ନିମନ୍ତେ ବିଜୟନଗର ସାମ୍ରାଜ୍ୟରେ ଅନ୍ୟୁନ ତିନିଶତ ସାମୁଦ୍ରିକ ବନ୍ଦର ଗଢ଼ି ଉଠିଥିଲା (୩୧) ଏବଂ ମାଳୟ, ବ୍ରହ୍ମଦେଶ, ଚୀନ, ପର୍ସିଆ, ଆବିସିନିଆ, ଆରେବିଆ ଓ ପର୍ତ୍ତୁଗାଲ ପ୍ରଭୃତି ଦେଶ ସହିତ ବାଣିଜ୍ୟିକ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ୧୫ଶ ଶତାବ୍ଦୀର ଆଦ୍ୟ ଭାଗରେ ବିଜୟନଗର ସାମ୍ରାଜ୍ୟ ପରିଦର୍ଶନରେ ଆସିଥିବା ଇଟାଲୀୟ ପରିବ୍ରାଜକ ନିକୋଲେ କୋଣ୍ଟି କ ବିଜୟନଗର ସମ୍ରାଟଙ୍କୁ ଭାରତର ଅନ୍ୟାନ୍ୟ ରାଜାମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ଏବଂ ପରବର୍ତ୍ତୀ ପର୍ତ୍ତୁଗୀଜ ପରିବ୍ରାଜକ ଡମିଂଗୋସ୍ ପେସ୍ (Domingos Paes) ବିଜୟନଗରକୁ ପୃଥିବୀର ଶ୍ରେଷ୍ଠ ସମୃଦ୍ଧିଶାଳୀ ନଗରୀ ବୋଲି ଅଭିହିତ କରିଥିବା ଏକାନ୍ତ ଉଲ୍ଲେଖଯୋଗ୍ୟ । (୩୨)

ସେହି ସାମ୍ରାଜ୍ୟର ଶାସନବ୍ୟବସ୍ଥାରେ ନାରୀମାନେ ସମୁଚିତ ସମ୍ମାନର ଅଧିକାରିଣୀ ଥିଲେ । ବହୁବିଧ ଅଳଙ୍କାର ବିଭୂଷିତା ହୋଇ ନୃତ୍ୟ, ଗୀତ, ସଙ୍ଗୀତ ଚର୍ଚ୍ଚାରେ ମନୋନିବେଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରୁ କେତେକ ଯୁଦ୍ଧବିଦ୍ୟାରେ ମଧ୍ୟ ନିପୁଣା ଥିଲେ । ଶୈବ, ବୈଷ୍ଣବ, ବୌଦ୍ଧ, ଜୈନାଦି ସମସ୍ତ ଧର୍ମ ସମ୍ପ୍ରଦାୟ ପ୍ରତି ବିଜୟନଗରର ଶାସକଗଣ ଉଦାର ମନୋଭାବ ପୋଷଣ କରୁଥିଲେ । ଅବଶ୍ୟ ସେହି ସମୟରେ ସେଠାରେ ସତୀଦାହ ପ୍ରଥା ଓ

---

(୩୧) Majumdar, Rayachaudhuri & Datta—An Advanced History of India—P. 369

(୩୨) Ibid—P. 368

ବଳଦାନ ବିଶ୍ୱାସ ଅତି ପ୍ରବଳ ଥିଲା ଏବଂ ତାକୁ ବ୍ରାହ୍ମଣ ସମାଜ ଉତ୍ସାହିତ କରୁଥିଲା । (୩୩)

ସାରଳା ଦାସଙ୍କ ମହାଭାରତରେ ତତ୍କାଳୀନ ବିଜୟନଗର ସାମ୍ରାଜ୍ୟର ଏହି ରାଜନୈତିକ ଓ ସାମାଜିକ ଚିତ୍ରର ପ୍ରତିଫଳନ ଆଦୌ ଅସ୍ୱାଭାବିକ ନୁହେଁ । ସେତେବେଳେ ବିଜୟନଗର ଓ ଓଡ଼ିଶା ମଧ୍ୟରେ ସାମରିକ ପ୍ରତିଦ୍ୱନ୍ଦ୍ୱିତା ଅବ୍ୟାହତ ରହିଥିଲା । ବିଜୟନଗର ସମ୍ରାଟ ମଲ୍ଲିକାର୍ଜୁନ କପିଳେନ୍ଦ୍ର ଦେବଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ହେଁ ଶାଲ୍ୱ ନରସିଂହ ଓଡ଼ିଶା ପୁନରାକ୍ରମଣ ପୂର୍ବକ ଚନ୍ଦ୍ରଗିରି, ଉଦୟଗିରି ଓ କାଞ୍ଚି ପ୍ରଭୃତି ଅଞ୍ଚଳ ପୁନର୍ଦଖଲ କରିନେଇଥିଲେ । କପିଳେନ୍ଦ୍ରଙ୍କ ଉତ୍ତରାଧିକାରୀ ପୁରୁଷୋତ୍ତମ ଦେବ (୧୪୬୭-୧୪୯୭) କାଞ୍ଚି ପ୍ରତ୍ୟାକ୍ରମଣ କରି ଶାଲ୍ୱ ନରସିଂହଙ୍କୁ ବନ୍ଦୀ କରିବା ପରେ ତାଙ୍କ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହୋଇ ଉଦୟଗିରି ରାଜ୍ୟ ଲାଭ କରିବା ସଙ୍ଗେ ସଙ୍ଗେ କାଞ୍ଚି ରାଜକେମା ପଦ୍ମାବତୀଙ୍କର ପାଣିଗ୍ରହଣ କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଓଡ଼ିଶା ସହିତ ଦାକ୍ଷିଣାତ୍ୟ ଓ ବିଜୟନଗର ସାମ୍ରାଜ୍ୟର ଏକ ପ୍ରତ୍ୟକ୍ଷ ସମ୍ପର୍କ ସେତେବେଳେ ସ୍ଥାପିତ ହୋଇ-ସାରିଥିଲା । ଏ ଉଭୟ ସାମ୍ରାଜ୍ୟର ରାଜନୈତିକ ଉତ୍ଥାନ ପତନ, ଶାସନ ପ୍ରଣାଳୀ ତଥା ଶାସକମାନଙ୍କର ସ୍ୱୈରାଚାର ଓ ସୁଶାସନ ସମ୍ପର୍କରେ ତତ୍କାଳୀନ ଓଡ଼ିଶାର ବୁଦ୍ଧିଜୀବୀଗୋଷ୍ଠୀ ସଚେତନ ଥିଲେ । ଏହି ସଚେତନଶୀଳତାର ସାର୍ଥକ ପରିପ୍ରକାଶ ସାରଳାଙ୍କ ମହାଭାରତରେ ଦେଖିବାକୁ ମିଳିଥାଏ ।

ଓଡ଼ିଶାର ସମସାମୟିକ ପରିସ୍ଥିତି ସହିତ ତତ୍କାଳୀନ ଭାରତ ବର୍ଷର ରାଜନୈତିକ ପରିସ୍ଥିତି ସାରଳା ମହାଭାରତର କଳେବର ମଧ୍ୟରେ କିପରି ସ୍ୱତଃ ଆତ୍ମପ୍ରକାଶ କରିଛି, ସେ ସମ୍ପର୍କରେ ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସ୍ୱ ପ୍ରଣୀତ 'ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ଚିତ୍ର' ଗ୍ରନ୍ଥରେ ସବିଶେଷ ଆଲୋଚନା କରି-ଯାଇଛନ୍ତି । କିନ୍ତୁ କେବଳ ବିଷୟବସ୍ତୁକୁ ନୁହେଁ, ସାରଳାଙ୍କ ରାଜନୈତିକ ଆଦର୍ଶକୁ ମଧ୍ୟ ତତ୍କାଳୀନ ପରିବେଶ ଗଭୀର ଭାବେ ପ୍ରଭାବିତ କରିଥିଲା । ବିଭିନ୍ନ ରାଜ୍ୟର ରାଜାମାନଙ୍କର ଚାରିତ୍ରିକ ବିଶେଷତ୍ୱ ତଥା ସେମାନଙ୍କର ରାଜ୍ୟଶାସନ ପ୍ରଣାଳୀକୁ ଅନୁଧ୍ୟାନ କରି ସାରଳା ଦାସ ନିଜର ସ୍ୱକୀୟ ପ୍ରତିଭା ବଳରେ ଏକ ଅଭିନବ ରାଜନୈତିକ ମୂଲ୍ୟବୋଧର ପରିକଳ୍ପନା କରିଛନ୍ତି । ସେ ମଧ୍ୟ କପିଳେନ୍ଦ୍ରଙ୍କ ସେନା-ବାହିନୀ ସହିତ ସୁଦୂର ରାଜ୍ୟମାନଙ୍କୁ ଯାଇଥିବା ସମ୍ଭାବନାକୁ ସମ୍ପୂର୍ଣ୍ଣ ଏଡ଼ାଇ

(୩୩) Ibid—pp. 370-371

ଜଣାଯାଇ ନପାରେ । ଏଣୁ ସାରଳା କେବଳ ରାଜ୍ୟବିସ୍ତାର ଜନିତ ତୈଷଯାତ୍ରା-କାଳୀନ ପ୍ରତ୍ୟକ୍ଷ ଯୁଦ୍ଧାନୁଭୂତ ତଥା ରଣକୌଶଳ ସମ୍ବନ୍ଧ ପରିଚିତ ତାହା ନୁହେଁ, ଅନ୍ୟାନ୍ୟ ରାଜ୍ୟମାନଙ୍କର ଶାସନ ପ୍ରଣାଳୀ ତଥା ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ପରମ୍ପରା ଓ ପରିବେଶ ସମ୍ପର୍କରେ ମଧ୍ୟ ପ୍ରତ୍ୟକ୍ଷ ଭାବେ କିମ୍ବା ଜନଶ୍ରୁତି ମାଧ୍ୟମରେ ଅବଗତ ହୋଇଥିବା ସମ୍ଭବପର ।

## ସାରଳାଙ୍କ ସମକାଳୀନ ଭାରତୀୟ ଶାସନବ୍ୟବସ୍ଥା

ସାରଳା ଦାସଙ୍କ ଆବିର୍ଭାବ ବେଳକୁ ଭାରତର ପାରମ୍ପରିକ ଶାସନ ପ୍ରଣାଳୀ, ଯୁଦ୍ଧକୌଶଳ ଓ ଆର୍ଥିକ ବ୍ୟବସ୍ଥାରେ କେତେକ ପରିବର୍ତ୍ତନ ଦେଖା ଦେଇଥିଲା । ସୁଲତାନୀ ସାମ୍ରାଜ୍ୟ ପରମ୍ପରାନୁସୃତ ବିଭିନ୍ନ ପଦପଦବୀ ପରିବର୍ତ୍ତେ ଭାରତୀୟ ପ୍ରଶାସନିକ ଅଭିଧାନରେ କେତେକ ନୂତନ ଶବ୍ଦ ସଂଯୋଗ କରିଥିଲା । 'ମଜଲିସ୍-ଇ-ଖଲଓ୍ୱତ୍' (ପରାମର୍ଶଦାତା ପରିଷଦ), 'ଦିବାନ-ଇ-ଅର୍ଜ' (ସାମରିକ ବିଭାଗ), 'ଦିବାନ-ଇ-ଇନ୍ଶା' (ଯୋଗାଯୋଗ ବିଭାଗ), 'ଦିବାନ୍-ଇ-ବନ୍ଦଗାନ୍' (କ୍ରୀତଦାସ ବିଭାଗ), 'ଦିବାନ-ଇ-ଅମିରକୋହି' (କୃଷି ବିଭାଗ', 'ଦିବାନ-ଇ-ଖଇରାତ୍' (ଦାନ ବିଭାଗ), 'ମୁସ୍ତଫ୍-ଇ-ମୁମାଲିକ୍' (ହିସାବ ରକ୍ଷକ), ମୁସ୍ତାଉଫି-ଇ-ମୁମାଲିକ୍' (ହିସାବ ସମୀକ୍ଷକ), 'ଖାଜାଞ୍ଚି' (କୋଷାଧ୍ୟକ୍ଷ), 'ମଜୁମଦାର୍' (ଋଣଦାତା), 'ବକ୍ସି-ଇ-ଫଉଜ୍ (ସେନାବାହିନୀର ବେତନଦାତା), 'କାଜି-ଉଲ୍-କାଜାତ୍' (ମୁଖ୍ୟ ବିଚାରପତି) ପ୍ରଭୃତି ଅନେକ ନୂତନ ପଦ-ପଦବୀ ସୃଷ୍ଟି ହୋଇଥିଲା । ଜମିଦାରମାନଙ୍କ ଠାରୁ ଆଦାୟ କରାଯାଉଥିବା 'ଖରାଜ୍' (ଭୂ-ରାଜସ୍ୱ) ପ୍ରଧାନ ଆୟ ଥିବା ସତ୍ତ୍ୱେ ଅଣହିନ୍ଦୁମାନଙ୍କ ଉପରେ 'ଜିଜିୟା' କର ଧାର୍ଯ୍ୟ ହୋଇଥିଲା । ଜଳକର, ଗୃହକର, ଗୋଚର ଶୁଲ୍କ ପ୍ରଭୃତି ମଧ୍ୟ ଯଥାବିଧି ପ୍ରଚଳିତ ଥିଲା । କବି, ଗାୟକ, ନର୍ତ୍ତକୀ ଓ ପଣ୍ଡିତମାନଙ୍କ ଦ୍ୱାରା ପରିବେଷ୍ଟିତ ଆଡ଼ମ୍ବରପୂର୍ଣ୍ଣ ଦରବାର ଥିଲା ସେ ସମୟର ଏକ ସ୍ୱତନ୍ତ୍ର ଆକର୍ଷଣ । ଶାସକଗଣ 'ବହୁପତ୍ନୀ ଓ ରକ୍ଷିତାଙ୍କ ଗହଣରେ ଖୁବ୍ ବିଳାସ ବ୍ୟସନରେ କାଳାତିପାତ କରୁଥିଲେ ।

ତୁର୍କ, ଭାରତୀୟ, ପର୍ଶିଆନ ପ୍ରଭୃତିଙ୍କୁ ସେନାବାହିନୀରେ ନିଯୁକ୍ତ କରାଯାଉଥିଲା ଏବଂ ତାହା ଥିଲା ମୁଖ୍ୟତଃ ତ୍ରିବିଧ—ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ । ସେତେବେଳକୁ ବାରୁଦ ସାହାଯ୍ୟରେ ଗୋଲା କ୍ଷେପଣ ଏବଂ ଶିଳାସ୍ତ୍ର, ଲୌହାସ୍ତ୍ର, ଶର, ବର୍ଛା ଓ ଅଗ୍ନିବାଣାଦିର ପ୍ରୟୋଗ କୌଶଳ ଆବିଷ୍କୃତ ହୋଇ ସାରିଥିଲା । ସେ ସମୟରେ ବିଜିତ ଅଞ୍ଚଳରୁ ଲୁଣ୍ଠିତ ସମ୍ପତ୍ତିର ଏକ-ପଞ୍ଚମାଂଶ ରାଜକୋଷକୁ

ଦିଆଯାଉଥିଲା । ଦଣ୍ଡ ବ୍ୟବସ୍ଥା ଅତି କଠୋର ଥିଲା ଏବଂ ଅନେକ ସମୟରେ ଉଚିତ ତଦନ୍ତ ବା ଅନୁସନ୍ଧାନ କରି ନଯାଇ ଅଭିଯୁକ୍ତ ବ୍ୟକ୍ତିଙ୍କୁ ନିର୍ମମ ଦଣ୍ଡ ଦିଆଯାଉଥିଲା ।

## ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ପରିବେଶ

ତତ୍କାଳୀନ ସମାଜ ମୁଖ୍ୟତଃ କୃଷିଭିତ୍ତିକ ଥିଲେ ହେଁ ଶିଳ୍ପ ଓ ବାଣିଜ୍ୟର ବିକାଶ ଅବ୍ୟାହତ ରହିଥିଲା । ଭାରତୀୟ ଭୈଷଜ୍ୟ ଚେରମୂଳ ଔଷଧି ବିନିମୟରେ ଅଜସ୍ର ସୁନା ବିଦେଶରୁ ଆମଦାନି ହୋଇ ଆସୁଥିଲା । ରେଶମ, ପଶମ, କାଗଜ, ଜୋତା, ଧାତୁପାତ୍ର, ଅସ୍ତ୍ରଶସ୍ତ୍ର, ସୁଗନ୍ଧି ଓ ସୁବାସିତ ପ୍ରସାଧନ ସାମଗ୍ରୀ ଉତ୍ପାଦନ କ୍ଷେତ୍ରରେ ଭାରତ ବେଶ ସୁନାମ ଅର୍ଜନ କରିଥିଲା । ଏହାସତ୍ତ୍ୱେ ସମାଜରେ ଶ୍ରେଣୀ-ବୈଷମ୍ୟ ଉତ୍କଟ ଥିଲା ଏବଂ ଜମିଦାର ଓ ଶ୍ରମଜୀବୀର ଜୀବନ ଧାରଣ ମାନରେ ଆକାଶ ପାତାଳ ପାର୍ଥକ୍ୟ ରହିଥିଲା । ୧୪ଶ ଶତାବ୍ଦୀର ଶ୍ରେଷ୍ଠ କବି ଅମିର ଖୁସ୍ରୁଙ୍କ ଭାଷାରେ କହିବାକୁ ଗଲେ ରାଜମୁକୁଟର ପ୍ରତ୍ୟେକ ମୁକ୍ତା ନିଃସ୍ୱ କୃଷକର ଲୋତକାପ୍ଳୁତ ନୟନ ନିଂଶୃତ ଶୋଣିତ ବିନ୍ଦୁର ସ୍ଫଟିକ ଥିଲା । ଅବଶ୍ୟ ଏତାଦୃଶ ଶ୍ରେଣୀବୈଷମ୍ୟ ସତ୍ତ୍ୱେ ସେତେବେଳେ ଗ୍ରାମାଞ୍ଚଳଗୁଡ଼ିକ ସ୍ୱାବଲମ୍ବୀ ଓ ସ୍ୱୟଂପର୍ଯ୍ୟାପ୍ତ ଥିବା ଯୋଗୁଁ ନିତାନ୍ତ ଗରିବମାନେ ମଧ୍ୟ ଉତ୍କଟ ଅଭାବର ସମ୍ମୁଖୀନ ହେଉ ନଥିଲେ । (୩୪)

ସେହି ସମାଜରେ ନାରୀ ଥିଲା ପୁରୁଷାଶ୍ରିତା ଓ ଅବଗୁଣ୍ଠିତା ବା ପରଦାବୃତ୍ତା । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟରେ ବାଲ୍ୟବିବାହ ଓ ସତୀଦାହ ପ୍ରଥା ବଳବତ୍ତର ଥିଲା । ଏପରିକି ଶାସକଗଣ ମୃତସ୍ୱାମୀର ଚିତାଗ୍ନିରେ ଆତ୍ମବିସର୍ଜନ କରିବା ଲାଗି ସମ୍ପୃକ୍ତ ମହିଳାମାନଙ୍କୁ ବିନା ଦ୍ୱିଧାରେ ଅନୁମତି ଦେଉଥିଲେ । ମାଙ୍ଗୋଲୀୟ ଅନୁପ୍ରବେଶକାରୀଙ୍କ ଆକ୍ରମଣ ତଥା ବିତ୍ତଶାଳୀ ବିଳାସପ୍ରିୟ ସମ୍ଭ୍ରାନ୍ତ-ଶ୍ରେଣୀ ଓ ନିଷ୍ଠୁର କାମାନ୍ଧ ଶାସକଗୋଷ୍ଠୀର ଅତ୍ୟାଚାର ପରିପ୍ରେକ୍ଷୀରେ ତତ୍କାଳୀନ ସାମାଜିକ ଚଳଣି ଗଢ଼ି ଉଠିଥିଲା । ତେବେ, ସେହି ସମୟରେ ରୂପମତୀ ଓ ପଦ୍ମାବତୀଙ୍କ ଭଳି ସୁଶିକ୍ଷିତା ରମଣୀ ମଧ୍ୟ ରହିଥିଲେ । (୩୫) କ୍ରୀତଦାସ ପ୍ରଥାର ଅବାଧ ପ୍ରଚଳନ ଥିଲା ତତ୍କାଳୀନ ସମାଜର ଏକ କଳଙ୍କିତ ଅଧ୍ୟାୟ ।

---

(୩୪) Ibid—pp. 390-392

(୩୫) Ibid-p. 393

ଏହି ସମୟରେ ଭାରତୀୟ ହିନ୍ଦୁ ଓ ଇସଲାମୀ ପରଂପରାର ପାରସ୍ପରିକ ପ୍ରଭାବ ଫଳରେ କଳା, ସାହିତ୍ୟ ଓ ସଂସ୍କୃତିର ବିକାଶ କ୍ଷେତ୍ରରେ ଏକ ନୂତନ ପରିବେଶ ସୃଷ୍ଟି ହୋଇଥିଲା । ସଂସ୍କୃତ, ହିନ୍ଦୀ, ଆରବୀ ଓ ପାର୍ଶୀ ଭାଷା ବ୍ୟତୀତ ଉର୍ଦ୍ଦୁ ଓ ବିଭିନ୍ନ ପ୍ରାଦେଶିକ ଭାଷା ଓ ସାହିତ୍ୟର ବିକାଶ ଆଲୋଚ୍ୟ କାଳର ଉଲ୍ଲେଖନୀୟ ଅବଦାନ । ସେତେବେଳେ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ରାଜନୈତିକ କ୍ଷେତ୍ରରେ ମତଭେଦ ରହିଥିଲେହେଁ ସାହିତ୍ୟ, କଳା ଓ ସଂସ୍କୃତିର ବିକାଶ ଦିଗରେ ପାରସ୍ପରିକ ସଦ୍‌ଭାବ ଦୃଢ଼ୀଭୂତ ହୋଇଥିଲା । ମୁସଲିମ ଶାସକମାନେ ସଂସ୍କୃତ ତଥା ପ୍ରାଦେଶିକ ଭାଷାରେ ଗ୍ରନ୍ଥ ପ୍ରଣୟନକୁ ଉତ୍ସାହିତ କରୁଥିଲେ ଏବଂ ମହାଭାରତ ଓ ରାମାୟଣ ଭଳି ଗ୍ରନ୍ଥର ଅନୁବାଦ ଦିଗରେ ପୃଷ୍ଠପୋଷକତା କରି ସଂପୃକ୍ତ କବି ଓ ଲେଖକମାନଙ୍କୁ ବିଭିନ୍ନ ସମ୍ମାନସୂଚକ ପଦବୀରେ ଭୂଷିତ କରାଯାଉଥିଲା । ଏଥିପାଇଁ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ-ପଞ୍ଚଦଶ ଶତାବ୍ଦୀରେ ଏ ଦେଶରେ ବହୁ କବି ଓ ସାହିତ୍ୟିକ ସୃଷ୍ଟି ହୋଇପାରିଥିଲେ । ଏମାନଙ୍କ ମଧ୍ୟରେ ସ୍ମୃତି ଓ ବୈୟାକରଣ ଶାସ୍ତ୍ରକାର ବିହାରର ବିଦ୍ୟାପତି ଉପାଧ୍ୟାୟ, ମିଥିଳାର ପଦ୍ମନାଭ ଦତ୍ତ, 'ଶାସ୍ତ୍ର ଦୀପିକା'ର ପ୍ରଣେତା ପାର୍ଥସାରଥି ମିଶ୍ର, ନାଟ୍ୟକାର ଗଙ୍ଗାଧର ଦାସ (ପ୍ରତାପ ବିଳାସ), ବାମନ ଭଟ୍ଟ (ପାର୍ବତୀ ପରିଣୟ) କେରଳ ଯୁବରାଜ ରବି ବର୍ମଣ (ପ୍ରଦ୍ୟୁମ୍ନ ଅଭ୍ୟୁଦୟ), ମହାଭାରତର ଅନୁବାଦକ ଗୌଡ଼ ସୁଲତାନ ନୁସରତ୍ ଶାହ, ବିଖ୍ୟାତ ପର୍ଶୀ କବି ଅମିର ଖୁସ୍ରୁ, ବିଜୟନଗରର ସୂତ୍ରକାର ମାଧବ (କାଳନିର୍ଣ୍ଣୟ), ବିଶ୍ୱେଶ୍ୱର (ମଦନ ପାରିଜାତକ), ଶ୍ରୀକୃଷ୍ଣ-ବିଜୟ ଓ କୃତ୍ତିବାସ ରାମାୟଣର ପ୍ରଣେତା ମାଲାଧର ବସୁ, ବିଶିଷ୍ଟ ବଙ୍ଗୀୟ କବି ଚଣ୍ଡିଦାସ, 'ଆମୁକ୍ତମାଲ୍ୟଦା'ର ପ୍ରଣେତା ବିଜୟନଗର ସମ୍ରାଟ କୃଷ୍ଣଦେବ ରାୟ ଓ ତାଙ୍କର ଅନ୍ୟତମ ଅଷ୍ଟଦିଗ୍‌ଗଜ ପେଦାନ୍ନା ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । (୩୭)

ଭାଷା ଓ ସାହିତ୍ୟ ବ୍ୟତୀତ ଆଲୋଚ୍ୟ କାଳରେ ହିନ୍ଦୁ ଓ ଇସଲାମୀ କାରୁ-କୌଶଳର ସମନ୍ୱୟରେ କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ମଧ୍ୟ ଅଭିନବ ପ୍ରତିଭାର ପରିଚୟ ମିଳିଥିଲା । ସେତେବେଳେ ସମାଜରେ ମୁସଲମାନ ସ୍ଥାପତ୍ୟ ଶିଳ୍ପୀଙ୍କ ସଂଖ୍ୟା ନ୍ୟୂନତା ଯୋଗୁଁ ହିନ୍ଦୁ କାରିଗରମାନଙ୍କୁ ମିନାର, ମସଜିଦ୍ ପ୍ରଭୃତି ନିର୍ମାଣ କାର୍ଯ୍ୟରେ ନିଯୁକ୍ତ କରାଯାଉଥିଲା । ଗୁଜରାଟ (ଅହମଦାବାଦ), ଜୋନପୁର, ବଙ୍ଗ, ମାଳବ ପ୍ରଭୃତି ରାଜ୍ୟରେ ଯେଉଁସବୁ ମୀନାର, ମସ୍‌ଜିଦ ଓ କବରସୌଧ ନିର୍ମିତ

(୩୭) Ibid—pp. 400-401

ହୋଇଥିଲା, ସେଥିରେ ହିନ୍ଦୁ ସଂସ୍କୃତିର ପ୍ରଭାବ ସ୍ପଷ୍ଟ ପରିଲକ୍ଷିତ । ସେତେବେଳେ ଇସଲାମୀ ଶିଳ୍ପକଳାର ପ୍ରତୀକ ଖିଲାନ, ଗମ୍ବୁଜ ଓ ମିନାର ଆଦି ସହିତ ହିନ୍ଦୁ ମନ୍ଦିରର ମୂର୍ତ୍ତିକଳା ଓ କାରୁକାର୍ଯ୍ୟ ମଣ୍ଡନ କୌଶଳର ସମନ୍ୱୟରେ ଏକ ଭିନ୍ନ ଓ ନୂତନ ରୂପର ଶିଳ୍ପନୈପୁଣ୍ୟ ବିକାଶ ଲାଭ କରିଥିଲା । ଦୌଲତାବାଦର ଚାନ୍ଦମୀନାର(ଖ୍ରୀ ୧୪୩୫), ଗୁଲ୍‌ବର୍ଗର ଜାମି ମସଜିଦ୍ (ଖ୍ରୀ ୧୪୪୧), ଜୋନପୁରର ଅଟାଲଦେବୀ ମସଜିଦ୍ (ଖ୍ରୀ ୧୪୦୮) ଏବଂ ମାଣ୍ଡୁର ଜାହାଜ ମହଲ ଓ ହିନ୍ଦୋଳା ମହଲ ପ୍ରଭୃତି ତତ୍‌କାଳୀନ କଳାକୃତିର ଶ୍ରେଷ୍ଠ ନିଦର୍ଶନ । (୩୭)

ସର୍ବୋପରି, ଏହି ସମୟରେ ହିନ୍ଦୁ ଓ ଇସଲାମୀ ଆଧ୍ୟାତ୍ମିକ ଚେତନାର ସମ୍ମିଶ୍ରଣରେ ଜାତୀୟ ଧର୍ମଧାରଣା ଏକ ନୂତନ ରୂପ ପରିଗ୍ରହ କରିଥିଲା । ମୁସଲମ ସମ୍ପ୍ରଦାୟର ସରଳ ଧର୍ମବିଶ୍ୱାସ ଓ ଏକେଶ୍ୱରବାଦ ପରିକଳ୍ପନା ହିନ୍ଦୁମାନଙ୍କୁ ବ୍ୟାପକଭାବେ ପ୍ରଭାବିତ କରିଥିଲା । ଏହା ଫଳରେ ଚତୁର୍ଦ୍ଦଶ ଶତାବ୍ଦୀରେ ସନ୍ଥ ନାମଦେବ, ସନ୍ଥ ରାମାନନ୍ଦ, କବୀର ଓ ନାନକଙ୍କ ଭଳି ଧର୍ମ ସଂସ୍କାରକଙ୍କର ଆବିର୍ଭାବ ଘଟିଥିଲା ଏବଂ ଜାତିବର୍ଣ୍ଣ ନିର୍ବିଶେଷରେ ଏକେଶ୍ୱର ଆଦର୍ଶ ତଥା ଧର୍ମଗତ ସାମ୍ୟଭାବର ପ୍ରସାର ଦ୍ୱାରା ଭାରତୀୟ ଆଧ୍ୟାତ୍ମିକ ପ୍ରବାହ ଏକ ନୂତନ ମୋଡ଼ ନେଇଥିଲା । (୩୮) ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳାଙ୍କ ଆବିର୍ଭାବ ବେଳକୁ ଭାରତୀୟ ଆଧ୍ୟାତ୍ମିକ ପୃଷ୍ଠଭୂମିରେ ଶଙ୍କର, ରାମାନୁଜ, ମାଧ୍ୱ, ବାସବ, ମେକନ୍ଦର, ବେଦାନ୍ତ ଦେଶିକ, ଜ୍ଞାନେଶ୍ୱର, ଜୟଦେବ, ମୀରାବାଈ, ନିମ୍ବାର୍କ, ନରସିଂହ ମେହେତା ପ୍ରମୁଖ ଅବତୀର୍ଣ୍ଣ ହୋଇସାରିଥିଲେ ଏବଂ ଅଦ୍ୱୈତବାଦ, ଦ୍ୱୈତବାଦ, ବିଶିଷ୍ଟାଦ୍ୱୈତବାଦ, ଶୈବ ସିଦ୍ଧାନ୍ତ, ବୀର ଶୈବପ୍ରଥା, ରାମୋପାସନା, ରାଧାକୃଷ୍ଣୋପାସନା ପ୍ରଭୃତି ଶୈବ, ବୈଷ୍ଣବୀୟ ଓ ଏକେଶ୍ୱରବାଦୀ ଧର୍ମଚେତନାର ମୂଳଭିତ୍ତି ସ୍ଥାପିତ ହୋଇ ସାରିଥିଲା । (୩୯) ସେହି ଆଧ୍ୟାତ୍ମିକ ପରିବେଶ ସାରଳାଙ୍କ ଜୀବଦ୍ଦଶାରେ ଶୁଦ୍ଧ ଅଦ୍ୱୈତବାଦୀ ବାଲ୍ମୀକାଚାର୍ଯ୍ୟ ଓ ରାଧାକୃଷ୍ଣ ନାମୋପାସକ

---

(୩୭) (କ) Ibid-pp. 404-413

(ଖ) Prasad, Iswari : A Short History of Muslim Rule in India (The Indian Press (P) Ltd. Allahabad, 1982 Print) P. 173

(୩୮) Ibid (୩୭-ଖ)- p. 179

(୩୯) Sharma. D. S: Hinduism Through the Ages (Bharatiya Vidya Bhavan, Bombay, 3rd. Ed. 1967) pp. 35-50

ଶ୍ରୀଚୈତନ୍ୟଙ୍କ ସମସ୍ୟୋପଯୋଗୀ ଦିଗ୍‌ଦର୍ଶନ ଦେଇଥିଲି । ସଂକ୍ଷେପରେ ପ୍ରକାଶ କଲେ ତତ୍କାଳୀନ ଆଧ୍ୟାତ୍ମିକ ପ୍ରବାହର ମୁଖ୍ୟ ଆଦର୍ଶ ଥିଲା—(୧) ସର୍ବମସ୍ତ କର୍ତ୍ତାଙ୍କଠାରେ ବିଶ୍ୱାସ, (୨) ଆତ୍ମାରେ ବିଶ୍ୱାସ, (୩) ଭକ୍ତି ମାର୍ଗରେ ମୋକ୍ଷପ୍ରାପ୍ତିରେ ବିଶ୍ୱାସ, (୪) କର୍ମ ଓ ଜ୍ଞାନମାର୍ଗ ଅପେକ୍ଷା ଭକ୍ତିମାର୍ଗର ଶ୍ରେଷ୍ଠତା ପ୍ରତିପାଦନ, (୫) ଗୁରୁଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ, (୬) ନାମ ଭଜନ, (୭) ମନ୍ତ୍ର ବା ଦୀକ୍ଷାଗ୍ରହଣ, (୮) ସନ୍ନ୍ୟାସ ବ୍ରତ ଅବଲମ୍ବନ, (୯) ଜାତିଭେଦ ବର୍ଜନ ଓ (୧୦) ମାତୃଭାଷାରେ ଧର୍ମ ପ୍ରଚାର । (୪୦) ※

ସାରଳାଙ୍କ ଉପରେ ଏବଂବିଧ ସାମାଜିକ ଓ ଆଧ୍ୟାତ୍ମିକ ପରିବେଶର ପ୍ରଭାବ ପଡ଼ିଥିବା ନିତାନ୍ତ ସ୍ୱାଭାବିକ । ଏଣୁ ତାଙ୍କର ରାଜନୈତିକ ଚେତନାକୁ ସମସାମୟିକ ମହାଭାରତୀୟ ଚେତନାର ଏକ ସଫଳ ପ୍ରତିବିମ୍ବନ ରୂପେ ଗ୍ରହଣ କରାଯାଇପାରେ । କିନ୍ତୁ ଅତ୍ୟନ୍ତ କୌତୂହଳର ବିଷୟ ଏହି ଯେ ସାରଳାଙ୍କ ରାଷ୍ଟ୍ରୀୟ ଚିନ୍ତାଧାରା ସେ ସମୟରେ ଆବିର୍ଭୂତ ହୋଇଥିବା ବହୁ ପାଶ୍ଚାତ୍ୟ ରାଜନୀତିଦାର୍ଶନିକଙ୍କ ଚିନ୍ତାଧାରା-ଠାରୁ ମଧ୍ୟ ବିଶେଷ ପୃଥକ ମନେହୁଏ ନାହିଁ । ସେ ସମୟରେ ସମଗ୍ର ୟୁରୋପରେ ଶତାବ୍ଦୀବ୍ୟାପୀ ରାଜନୈତିକ ଅସ୍ଥିରତା ମଧ୍ୟରୁ ଯେଉଁ ରାଜନୈତିକ ଆଦର୍ଶ ଜନ୍ମ ନେଇଥିଲା, ଭାରତ ବର୍ଷରେ ସେହିପରି ମୁସଲମାନ ଓ ହିନ୍ଦୁ ରାଷ୍ଟ୍ର ତଥା ବିଭିନ୍ନ ସ୍ୱାଧୀନ ରାଷ୍ଟ୍ର ମଧ୍ୟରେ ଅବ୍ୟାହତ ରହିଥିବା ଦୀର୍ଘକାଳବ୍ୟାପୀ ସଂଘର୍ଷ ଓ ଜୟ ପରାଜୟ ମଧ୍ୟରୁ ସମରାଜନୈତିକ ଆଦର୍ଶର ବିକାଶ ଘଟିଥିଲା । ସାରଳା ଦାସ ସୁଦୂର ପାଶ୍ଚାତ୍ୟ ଭୂଖଣ୍ଡର ଏହି ଚିନ୍ତାଦର୍ଶ ସଂପର୍କରେ ବିନ୍ଦୁ ବିସର୍ଗ ଜାଣିବା ଲାଗି ଅବକାଶ ନଥିଲେ ସୁଦ୍ଧା କିପରି ଅନୁରୂପ ଚିନ୍ତାଧାରା ପରିବେଷଣ କରିଯାଇଛନ୍ତି, ଭାବିଲେ ବିସ୍ମିତ ହେବାକୁ ହୁଏ । ଏହି ଦୃଷ୍ଟିରୁ ଏଠାରେ ସମକାଳୀନ ପାଶ୍ଚାତ୍ୟ

---

(୪୦) (କ) Ibid-P.59, (ଖ) Luniya, B. N. Evolution of Indian Culture (L. N. Agrawala, Agra, 10th Ed. 1987) pp. 336-340

※ ବିଭିନ୍ନ ପାଦଟୀକାରେ ପ୍ରଦତ୍ତ ବିଶେଷ ସୂଚନା ବ୍ୟତୀତ ଭାରତୀୟ ପରିବେଶ ସଂକ୍ରାନ୍ତୀୟ ଅନ୍ୟାନ୍ୟ ତଥ୍ୟାବଳୀ ବିଷୟରେ ପ୍ରାୟତଃ ସମସ୍ତ ଇତିହାସ ଗ୍ରନ୍ଥରେ ବର୍ଣ୍ଣନାଗତ ସାମ୍ୟ ପରିଲକ୍ଷିତ ହୁଏ ।

ରାଜନୈତିକ ଆଦର୍ଶର ସଂକ୍ଷିପ୍ତ ସୂଚନା ପ୍ରଦାନ କରିବା ଆଦୌ ଅସମୀଚୀନ ହେବ ନାହିଁ ।

## (ଗ) ସାରଳାଙ୍କ ସମୟର ବିଶ୍ୱ ରାଜନୈତିକ ପୃଷ୍ଠଭୂମି

ପଞ୍ଚଦଶ ଶତାବ୍ଦୀ ବିଶ୍ୱରାଜନୈତିକ କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲା । ଧର୍ମଯାଜକ ଓ ଶାସକ ମଧ୍ୟରେ ସମନ୍ୱୟ ସଂସ୍ଥାପନା ଉଦ୍ଦେଶ୍ୟରେ ସଂଗଠିତ ସମାଧାନମୂଳକ ଆନ୍ଦୋଳନ ନିଷ୍ଫଳ ହୋଇ ପଡ଼ିବା ଫଳରେ ଇଂଲଣ୍ଡ ବ୍ୟତୀତ ୟୁରୋପର ସର୍ବତ୍ର ରାଜତାନ୍ତ୍ରିକ ଶାସନ ଦୃଢ଼ୀଭୂତ ହୋଇଥିଲା । ଇଂଲଣ୍ଡ ତୁଳନାରେ ଫ୍ରାନ୍ସ, ଜର୍ମାନୀ ଓ ଇଟାଲୀର ସ୍ଥିତି ଦୁର୍ବଳ ଥିଲା ଏବଂ ଇଟାଲୀର ଅବସ୍ଥା ସର୍ବାପେକ୍ଷା ଶୋଚନୀୟ ହୋଇ ପଡ଼ିଥିଲା । ଫରାସୀ ଓ ଜର୍ମାନମାନଙ୍କ ଅତ୍ୟାଚାରରେ ନିଷ୍ପେଷିତ ହୋଇ ଇଟାଲୀ ତାର ସମସ୍ତ ରାଜନୈତିକ ଦୃଢ଼ତା ଓ ନୈତିକ ଶକ୍ତି ହରାଇ ବସିଥିଲା । ଇଟାଲୀର ଜନସାଧାରଣ ଦୁର୍ନୀତି ଓ ଅଧଃପତନର ଶିକାର ହୋଇ ପଡ଼ିଥିଲେ । ଅତ୍ୟାଚାରୀ ତଥା ଅପରାଧପ୍ରବଣ ଲୋଭପ୍ରିୟ ଶାସକଙ୍କ ହସ୍ତରେ ସେମାନେ ଥିଲେ କ୍ରୀଡ଼ନକ । (୪୧) ଅନ୍ୟ ପକ୍ଷରେ, ଏଡ଼ୱାର୍ଡ ତୃତୀୟ (୧୩୨୭-୧୩୭୭)ଙ୍କ ସମୟରେ ଖ୍ରୀ ୧୩୩୭ ରେ ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ ଶତବର୍ଷ ବ୍ୟାପୀ ସଂଘର୍ଷ ଆରମ୍ଭ ହୋଇ ତାହା ୧୪୫୩ ପର୍ଯ୍ୟନ୍ତ ଅବ୍ୟାହତ ରହିବା ଫଳରେ ଇଂଲଣ୍ଡ ଫ୍ରାନ୍ସରେ ନିଜର ଆଧିପତ୍ୟ ହରାଇଥିଲା । ଏହା ବ୍ୟତୀତ, ଇଂଲଣ୍ଡରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ଓ ସାମନ୍ତଶକ୍ତି ବୃଦ୍ଧି ପାଇବା ଫଳରେ ଶାସନ କ୍ଷମତାର ଦୃଢ଼ୀକରଣ ନିମିତ୍ତ ଖ୍ରୀ ୧୪୫୫ ଠାରୁ ଖ୍ରୀ ୧୪୮୫ ପର୍ଯ୍ୟନ୍ତ ଗୃହଯୁଦ୍ଧ (War of Roses) ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ଫ୍ରାନ୍ସ ମଧ୍ୟ ଶତବର୍ଷବ୍ୟାପୀ ଯୁଦ୍ଧ ପରେ ଦୁର୍ଭିକ୍ଷ ଓ ଦୁର୍ବିପାକଗ୍ରସ୍ତ ହୋଇ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ସେହି ପରିପ୍ରେକ୍ଷୀରେ ୟୁରୋପବାସୀ ଜାତୀୟ ଚେତନାର ଉନ୍ମେଷ ଘଟିଥିଲା, ଯାହା ପରବର୍ତ୍ତୀ କାଳରେ ବିଶେଷତଃ ୧୭୮୯ର ଫରାସୀ ବିପ୍ଳବ ପରେ ସର୍ବତ୍ର ବିସ୍ତାରିତ ହୋଇଥିଲା । (୪୨)

ଆଲୋଚ୍ୟ କାଳରେ ଚିନ୍ତା, ଚେତନା ଓ ମାନସିକ ଅଭିରୁଚି ପ୍ରତ୍ୟେକ କ୍ଷେତ୍ରରେ ଏକ ନୂତନ ଜାଗରଣ ଦେଖା ଦେଇଥିଲା ଏବଂ ଗୀର୍ଜାର ପରିସର

---

(୪୧) Rao, V. V: A History of Political Theories (S. Chand & Co, Delhi, 1933 Print) pp. 267-268

(୪୨) Ray: A Brief Survery of World History-Vol. I pp. 264-288

ବାହାରେ ଏକ ନବୀନ ଉଦ୍ଦୀପନା ଓ ଅନୁସନ୍ଧାନ ଜିଜ୍ଞାସା ପ୍ରବଳ ଭାବେ ଅନୁଭୂତ ହୋଇଥିଲା । ଖ୍ରୀ ୧୪୩୮ରେ ଫ୍ଲୋରେନ୍ସଠାରେ କାଶିମ ମେଡ଼ିସିଙ୍କଦ୍ୱାରା ପ୍ରତିଷ୍ଠିତ 'ପ୍ଲାଟୋନିକ ଏକାଡେ଼ମୀ' ସମଗ୍ର ଇଟାଲୀରେ ମାନବବାଦର ସ୍ରୋତ ପ୍ରବାହିତ କରିଥିଲା । (୪୩) ଧର୍ମପ୍ରଚାର ଆକାଂକ୍ଷା, ଅର୍ଥସଂଗ୍ରହ ଲାଳସା ଓ ଯଶୋବୃଦ୍ଧି ଅଭିଳାଷ ବଳବତ୍ତର ହେବା ଫଳରେ ସେହି ସମୟରେ ବିଭିନ୍ନ ନୂତନ ଉଦ୍‌ଭାବନ, ଆବିଷ୍କାର ଓ ଅଭିଯାନ ଲାଗି ପଥ ଉନ୍ମୁକ୍ତ ହୋଇଥିଲା । ପ୍ରିନ୍ସ ହେନ୍‌ରି ପର୍ତ୍ତୁଗାଲଠାରେ ନାବିକମାନଙ୍କ ପାଇଁ ଏକ ତାଲିମ କେନ୍ଦ୍ର ପ୍ରତିଷ୍ଠା କରିବା ଫଳରେ ଜଳଯାତ୍ରା ଦିଗରେ ଉତ୍ସାହ ବୃଦ୍ଧି ଘଟିଥିଲା ଏବଂ ତା ଫଳରେ ଖ୍ରୀ ୧୪୮୭ ରେ ବାର୍ଥଲମ୍ୟୁ ଡିଆଜ ଉତ୍ତମାଶା ଅନ୍ତରୀପ ଓ ଖ୍ରୀ ୧୪୯୮ ରେ ଭାସ୍କୋଡ଼ାଗାମା ଭାରତକୁ ଜଳପଥ ଆବିଷ୍କାର କରିଥିଲେ । ଏହା ବ୍ୟତୀତ, କଲମ୍ବସଙ୍କ ଆମେରିକା ଆବିଷ୍କାର ପୃଥିବୀର ଭୌଗୋଳିକ ମାନଚିତ୍ର ବଦଳାଇ ଦେଇଥିଲା । (୪୪)

ବୈଜ୍ଞାନିକ ଉଦ୍‌ଭାବନ କ୍ଷେତ୍ରରେ ମୁଦ୍ରଣଯନ୍ତ୍ର, ନାବିକଙ୍କ ଦିଗନିର୍ଣ୍ଣୟ ଯନ୍ତ୍ର ଓ ବାରୁଦର ବ୍ୟବହାର ଯଥାକ୍ରମେ ଜ୍ଞାନକୁ ସହଜ ଲବ୍ଧ, ଜଳଯାତ୍ରାକୁ ସୁଗମ ଓ ଶାରୀରିକ ଶକ୍ତିକୁ ପରାହତ କରି ଖ୍ରୀଷ୍ଟଧର୍ମ, ବାଣିଜ୍ୟ ଓ ସାମନ୍ତବାଦର ପ୍ରସାର କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । (୪୫) ଅନ୍ୟ ପକ୍ଷରେ, ସ୍ପେନ ଓ ପର୍ତ୍ତୁଗାଲର ଉପନିବେଶ ବିସ୍ତାର ଏବଂ ଇଂଲଣ୍ଡ ଓ ଫ୍ରାନ୍ସରେ ସାମ୍ରାଜ୍ୟବାଦର ବିକାଶ ଜନମାନସକୁ ଆଲୋଡ଼ିତ କରି ରାଜନୈତିକ ଦୃଷ୍ଟିଭଙ୍ଗୀରେ ବିରାଟ ପରିବର୍ତ୍ତନ ଆଣିଥିଲା । ଏହି ପରିପ୍ରେକ୍ଷୀରେ, ପ୍ରୋଟେଷ୍ଟାଣ୍ଟ ଓ ରୋମାନ୍ କେଥଲିକ-ମାନଙ୍କର ସଂସ୍କାର ଓ ପ୍ରତିସଂସ୍କାର ଆନ୍ଦୋଳନ ଦେଖାଦେବା ଫଳରେ ଧାର୍ମିକବନ୍ଧନ ଶିଥିଳ ଓ ରାଜନୈତିକ ଚେତନା ସନ୍ଦୀପିତ ହୋଇଥିଲା । ତତ୍‌କାଳୀନ ସଂସ୍କାରବାଦୀମାନଙ୍କ ମଧ୍ୟରେ ମାର୍ଟିନ ଲୁଥର (୧୪୮୩-୧୫୪୬), ଫିଲିପ ମାଲଙ୍କଥନ୍ (୧୪୯୭-୧୫୬୦), ଉଲ୍‌ରିଚ ଜ୍ୱିଙ୍ଗ୍‌ଲି (୧୪୮୪-୧୫୩୧), ଜନ୍ କାଲ୍‌ଭିନ୍ (୧୫୦୯-୬୪) ପ୍ରମୁଖଙ୍କ ରାଜନୈତିକ ଅବଦାନ ଉଲ୍ଲେଖଯୋଗ୍ୟ । ଏମାନେ ସାରଳା

(୪୩) Ibid p. 334

(୪୪) Ibid- vol. II-pp. 8-9

(୪୫) Mukherjee, L.—A Study of English History (Mondal Bros Co (P) Ltd. Calcutta, 1952 Print) P. 144.

ଦାସଙ୍କର କିଂଚତ୍ ପଶ୍ଚାଦ୍‌ବର୍ତ୍ତୀ ହେଲେହେଁ ଏମାନଙ୍କ ଚନ୍ତାଧାରାର ଅନୁରୂପ ଆଦର୍ଶ ସାରଳା ମହାଭାରତରେ ପରିଦୃଷ୍ଟ ହେଉଥିବା ଯୋଗୁଁ ତାହାର ଆଲୋଚନା ଏଠାରେ ଆବଶ୍ୟକ ମନେହୁଏ ।

**ମାର୍ଟିନ୍ ଲୁଥର** : ଧର୍ମଆନ୍ଦୋଳନକାରୀ ଭାବରେ ମାର୍ଟିନ୍ ଲୁଥରଙ୍କର ଯେତିକ ସୁନାମ ରହିଥିଲା, ରାଜନୀତିଦର୍ଶନର ପ୍ରଚାରକ ରୂପେ ସେ ସେତିକ ସୁଖ୍ୟାତି ଅର୍ଜନ କରିପାରି ନଥିଲେ । ତଥାପି ତାଙ୍କର ଲକ୍ଷ୍ୟ ଥିଲା ସଂସ୍କାରବାଦୀ ଆନ୍ଦୋଳନର ସଫଳତା ସାଙ୍ଗକୁ ଜର୍ମାନୀର ସ୍ୱାଧୀନତା ପ୍ରାପ୍ତି । ସେ ଗୀର୍ଜାର ଶାସନ ସର୍ବାଙ୍ଗୀଣ ଅଧିକାରକୁ ସ୍ୱୀକାର ନକରି ରାଷ୍ଟ୍ରଶକ୍ତିର ପ୍ରାଧାନ୍ୟ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଧର୍ମନିରପେକ୍ଷ ରାଷ୍ଟ୍ରତନ୍ତ୍ର (Secular Theory of State) ପ୍ରବର୍ତ୍ତନ କ୍ଷେତ୍ରରେ ସେ ଦାନ୍ତେ ଓ ଓ୍ୱାଇକ୍‌ଲିଫ୍‌ଙ୍କ ଆଦର୍ଶକୁ ଗ୍ରହଣ କରି ନେଇଥିଲେ ଏବଂ ରାଷ୍ଟ୍ର ଏକ ପବିତ୍ର ଅନୁଷ୍ଠାନ ବୋଲି ମତ ପ୍ରକାଶ କରିଥିଲେ । ପରବର୍ତ୍ତୀ କାଳରେ କାଣ୍ଟ ଓ ହେଗେଲଙ୍କ ରଚନାରେ ଲୁଥରୀୟ ଚନ୍ତାଧାରା ଅଧିକ ସ୍ପଷ୍ଟୀଭୂତ ହୋଇଥିଲା (୪୬)

**ଫିଲିପ ମାଲଙ୍କଥନ୍** : ଲୁଥରଙ୍କ ଶିଷ୍ୟ, ଗ୍ରୀକ୍‌ଭାଷାପ୍ରବୀଣ ଓ ଶାସ୍ତ୍ରୀୟ ଶିକ୍ଷାବିଦ୍ ମାଲଙ୍କଥନ୍‌ଙ୍କ ଚନ୍ତାଧାରା ଧର୍ମାନୁରଞ୍ଜିତ ଥିଲା । ତାଙ୍କ ମତରେ ରାଷ୍ଟ୍ର ଏକ ଐଶ୍ୱରୀୟ ଅନୁଷ୍ଠାନ । ମନୁଷ୍ୟ ସମାଜରେ ନ୍ୟାୟ ପ୍ରତିଷ୍ଠା ପାଇଁ ଆବଶ୍ୟକ ହେଉଥିବା ବିଚାରପତିଙ୍କ କ୍ଷମତା ଈଶ୍ୱରପ୍ରଦତ୍ତ ବୋଲି ତାଙ୍କର ଧାରଣା ରହିଥିଲା ଏବଂ ଜନମତ ବା ଗୋଷ୍ଠୀମତ ଯେ ସେହି କ୍ଷମତାର ଆଧାର, ଏହା ମାଲଙ୍କଥନ୍ ସ୍ୱୀକାର କରି ନଥିଲେ । ଆରିଷ୍ଟୋଟଲଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ରାଜତାନ୍ତ୍ରିକ ଶାସନ ବ୍ୟବସ୍ଥାର ପକ୍ଷପାତୀ ଥିଲେ । ତାଙ୍କ ବିଚାରରେ ରାଷ୍ଟ୍ରର ସ୍ୱାଧୀନତାକୁ କ୍ଷୁଣ୍ଣ ନକରି ଏକ ମିଳିତ ରାଜ୍ୟଗୋଷ୍ଠୀ ଗଠନ ବାଂଛନୀୟ, କିନ୍ତୁ ବିଶ୍ୱ ସାମ୍ରାଜ୍ୟ ପରିକଳ୍ପନା ନିତାନ୍ତ ଗର୍ହିତ । ସେ ଗୀର୍ଜାକୁ ରାଷ୍ଟ୍ରାଧୀନ ସଂସ୍ଥା ରୂପେ ଗ୍ରହଣ କରି ରାଷ୍ଟ୍ରୀୟଶାସନର ନୈତିକତା ଉପରେ ଗୁରୁତ୍ୱ ଆରୋପ କରିଥିଲେ (୪୭)

---

(୪୬) Pant : History of Western Political Thought, Vol. I pp. 368-369

(୪୭) Ibid-p. 370.

**ଉଲ୍‌ରିଚ ଜିୱିଙ୍ଗ୍‌ଲି** : ଅନ୍ୟ ପକ୍ଷରେ, ଜ୍ୱିଙ୍ଗ୍‌ଲି ଥିଲେ ଲୁଥରଙ୍କଠାରୁ ମଧ୍ୟ ଅଧିକ ବିପ୍ଳବୀ । ସେ ଧର୍ମଶାସ୍ତ୍ର ଅପେକ୍ଷା ରାଜନୀତି ଉପରେ ପ୍ରାଧାନ୍ୟ ଦେଉଥିଲେ । ଗୀର୍ଜା ଓ ରାଷ୍ଟ୍ର ମଧ୍ୟରେ କୌଣସି ବ୍ୟବଧାନକୁ ସ୍ୱୀକାର ନକରି ସେ ରାଷ୍ଟ୍ରୀୟ ସାର୍ବଭୌମତ୍ୱ ମଧ୍ୟରେ ଗୀର୍ଜାର ପରିଚାଳନା ଅନ୍ତର୍ଭୁକ୍ତ ବୋଲି ମତ ବ୍ୟକ୍ତ କରିଥିଲେ । ତାଙ୍କ ଚିନ୍ତାଧାରା ସୁଇଜରଲାଣ୍ଡର ଗଣତାନ୍ତ୍ରିକ ପରିବେଶ ଦ୍ୱାରା ପ୍ରଭାବିତ ଥିଲା । ତେଣୁ ସେ ଗୋଷ୍ଠୀମତାନୁଯାୟୀ ଗଣତାନ୍ତ୍ରିକ ରାଷ୍ଟ୍ର ବିବର୍ତ୍ତନର ପକ୍ଷପାତୀ ଥିଲେ । (୪୮)

**ଜନ୍‌ କାଲଭିନ୍‌** : ନିଜେ ଜଣେ ଜିଲ୍ଲା ଅଦାଲତର କିରାଣୀ, ଧର୍ମଯାଜକଙ୍କ କର୍ମସଚିବ ଓ ଅଭିଲେଖ ପ୍ରାମାଣିକ (Notary) ଭାବେ ଅନୁଭୂତିସମ୍ପନ୍ନ ବ୍ୟକ୍ତି ହୋଇଥିବା ଯୋଗୁଁ କାଲ୍‌ଭିନ ତତ୍ତ୍ୱପ୍ରଣୟର ଅପେକ୍ଷା କର୍ମାଦର୍ଶ ଉପରେ ଗୁରୁତ୍ୱ ଦେଉଥିଲେ । ସେ ଗିରିବାଣୀ (Sermon on the Mount) ଦ୍ୱାରା ପ୍ରଭାବିତ ନହୋଇ ମୋଜେସଙ୍କ ଦଶ-ନିର୍ଦ୍ଦେଶ (Ten Commandments)କୁ ଆଦର୍ଶରୂପେ ଗ୍ରହଣ କରି ନେଇଥିଲେ । ସେ କ୍ଷମାନୀତିରେ ବିଶ୍ୱାସ ନକରି ଦଣ୍ଡନୀତିକୁ ଶ୍ରେୟସ୍କର ମନେ କରିଥିଲେ ; ତାଙ୍କ ମତରେ କ୍ଷମା ଆଚରଣକାରୀ ପିତା ଅପେକ୍ଷା କ୍ଷମା ବିରୋଧୀ ତଥା ଦଣ୍ଡଦାନକାରୀ ପାଳିତ ପିତା ବା ଶାସକ ଶ୍ରେଷ୍ଠତର ଆସନର ଅଧିକାରୀ । (୪୯) କାଲ୍‌ଭିନ୍‌ ରାଷ୍ଟ୍ରର ପ୍ରାଧାନ୍ୟ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପଞ୍ଚବିଧ ରାଷ୍ଟ୍ରୀୟ କର୍ତ୍ତବ୍ୟ ବିଷୟରେ ସଚେତନ ଥିଲେ । ତାହା ହେଉଛି—(୧) ନାଗରିକମାନଙ୍କୁ ଖାଦ୍ୟ, ପରିଧେୟ ଓ ବାସଗୃହ ଯୋଗାଣ, (୨) ସମାଜରେ ଶାନ୍ତି ଶୃଙ୍ଖଳା ରକ୍ଷା, (୩) ଧର୍ମ ଓ ଦୟା ଭାବର ବିକାଶ ସାଧନ, (୪) ନାଗରିକ-ମାନଙ୍କର ସମ୍ପତ୍ତିର ସୁରକ୍ଷା ଏବଂ (୫) ନାଗରିକମାନଙ୍କୁ ନ୍ୟାୟୋଚିତ ମାର୍ଗ ପ୍ରଦର୍ଶନ । (୫୦) ଏହା ବ୍ୟତୀତ, ଭ୍ରଷ୍ଟାଚାରୀ ଶାସକଙ୍କୁ ଶାସନ ଅଧିକାରରୁ ହଟାଇଥିବା

(୪୮) Ibid-p. 371

(୪୯) Thomas, Henry & Thomas, Dana Lee : Living Biographics of Religious Leaders (Bharatiya Vidya Bhavan, Bombay, 1959 Print) P. 160

(୫୦) Pant : The History of Western Political Thought-Vol-I P. 372

କାରଣରୁ ଗାଦିଚ୍ୟୁତ କରାଯିବା ଉଚିତ ବୋଲି ସେ ମତ ପୋଷଣ କରିଥିଲେ । ତାଙ୍କର ରାଜନୈତିକ ସ୍ୱାଧୀନତା, ଗୋଷ୍ଠୀ ସାର୍ବଭୌମତ୍ୱ ଏବଂ ନାଗରିକ ଅଧିକାର ଓ କର୍ତ୍ତବ୍ୟ ସମ୍ବନ୍ଧୀୟ ଚିନ୍ତାଧାରା ହଲଣ୍ଡ, ସୁଇଜରଲଣ୍ଡ, ସ୍କଟଲଣ୍ଡ ଓ ଉତ୍ତର ଆମେରିକାସ୍ଥ ଉପନିବେଶମାନଙ୍କରେ ବହୁଳ ଭାବେ ଆଦୃତ ହୋଇଥିଲା ।

କାଲ୍‌ଭିନଙ୍କ ଆଦର୍ଶ ଜନ ନକ୍ସଙ୍କ ବିଭିନ୍ନ ରଚନାରେ ବିକ୍ଷିପ୍ତ ହୋଇଥିଲେ ହେଁ ସ୍କଟଲଣ୍ଡର ପୃଷ୍ଠଭୂମିରେ ବିଶେଷତଃ ଖ୍ରୀ ୧୫୫୮ରେ ନିର୍ବାସନ ଓ, ମୃତ୍ୟୁଦଣ୍ଡାଦେଶ ପାଇବା ଫଳରେ ନକ୍ସ ମେରୀଙ୍କ ଶାସନର ଘୋର ବିରୋଧୀ ହୋଇ ପଡ଼ିଥିଲେ । ଶାସକର କ୍ଷମତା ଜନତାଙ୍କ ନିର୍ବାଚନରୁ ଉଦ୍‌ଭୂତ ଏବଂ ଜନସାଧାରଣଙ୍କ ପ୍ରତି ଶାସକର କର୍ତ୍ତବ୍ୟ ନିହିତ ବୋଲି ସେ ଦୃଢ଼ ମତ ପୋଷଣ କରିଥିଲେ । କାଲ୍‌ଭିନ ଓ ନକ୍ସଙ୍କ ଚିନ୍ତାଧାରା ଖ୍ରୀ ୧୫୮୧ ରେ ଛଦ୍ମନାମରେ ପ୍ରକାଶିତ 'Vindiciae Contra Tyrannos' ଗ୍ରନ୍ଥରେ ପରିବର୍ଦ୍ଧିତ ଓ ପରିମାର୍ଜିତ ହୋଇଥିଲା । ଏଥିରେ ଧର୍ମନିରପେକ୍ଷତା ଏବଂ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଓ ଅଧିକାର ଉପରେ ପ୍ରାଧାନ୍ୟ ଦିଆ ନଯାଇ ଅତ୍ୟାଗୁର ବିରୋଧୀ ପ୍ରତିବାଦ ଏବଂ ସଂଖ୍ୟାଲଘୁ ସଂପ୍ରଦାୟର ଅସ୍ତିତ୍ୱ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । ପରବର୍ତ୍ତୀ କାଳରେ ସାମାଜିକ-ଚୁକ୍ତି ନୀତିର ବିକାଶ ମୂଳରେ ଏହାର ପ୍ରଭାବ ନିହିତ । (୫୧)

ଆଲୋଚ୍ୟ କାଳରେ ଏକ ପକ୍ଷରେ ସଂସ୍କାରବାଦୀ ଚିନ୍ତାଧାରା ବଳବତ୍ତର ଥିଲାବେଳେ, ଅନ୍ୟ ପକ୍ଷରେ ପ୍ରତି-ସଂସ୍କାରବାଦୀ ମନୋଭାବର ମଧ୍ୟ ବଳିଷ୍ଠ ପରିପ୍ରକାଶ ଘଟିଥିଲା । ଇଗ୍ନିସିଆସ୍ ଲୟୋଲା ( ଖ୍ରୀ ୧୪୯୧-୧୫୫୬) ଖ୍ରୀ ୧୫୩୪ରେ ସ୍ପେନରେ ଯୀଶୁବାଦୀ ସମିତି ସ୍ଥାପନା କରି ଚୀନ, ଜାପାନ, ସ୍ପେନ, ଆଫ୍ରିକା, ଭାରତ ସର୍ବତ୍ର ଧର୍ମବିରୋଧୀ ଆନ୍ଦୋଳନ ବିରୁଦ୍ଧରେ ଧର୍ମ-ସଂଘର୍ଷ ଚଳାଇବା ଦିଗରେ ପ୍ରୟାସ କରିଥିଲେ । ଏଥିପାଇଁ ଉକ୍ତ ସମିତି ମାଧ୍ୟମରେ ମୋଲିୟର, ଡେସ୍କାର୍ଟେସ, ମୋଣ୍ଟେସ୍କ୍ୟୁ, ଗାଲିଲିଓ ପ୍ରମୁଖ ବହୁ ବିଜ୍ଞ ଦାର୍ଶନିକ ଓ ଚିନ୍ତାନାୟକଙ୍କୁ ତାଲିମ ପ୍ରଦାନ କରାଯାଇଥିଲା । ତେବେ, ଯୀଶୁବାଦୀ ସମିତିର ଅଧ୍ୟାବସାୟରେ ଜନ୍

---

(୫୧) Sabine : A History of Political Theory-pp. 352-357

ମେରିଆନା ଓ ଫ୍ରାନ୍‌ସିସ୍ ସ୍ୱାରେଜଙ୍କ ବିଚାରଧାରାହିଁ ରାଜନୀତିକୁ ପ୍ରଭାବିତ କରିଥିଲା । ମେରିଆନା ଏକ ଉନ୍ନତ ମାନବ ସମାଜର ପରିକଳ୍ପନା କରି ସାମ୍ବିଧାନିକ ବ୍ୟବସ୍ଥାର ଆବଶ୍ୟକତା, ବ୍ୟକ୍ତିଗତ ସମ୍ପତ୍ତିର ସୁରକ୍ଷା ଏବଂ ପ୍ରାକୃତିକ ନୀତିରେ ରାଷ୍ଟ୍ର ତଥା ଶାସନର ବିବର୍ତ୍ତନ ଉପରେ ଆସ୍ଥା ସ୍ଥାପନ କରିଥିଲେ । ଅନ୍ୟପକ୍ଷରେ, ସ୍ୱାରେଜ ରାଷ୍ଟ୍ରକୁ ମାନବିକ ଉଦ୍ୟମରେ ପ୍ରତିଷ୍ଠିତ ଏକ ଜାତୀୟ ଅନୁଷ୍ଠାନ ରୂପେ ଗ୍ରହଣ କରି ରାଜନୈତିକ ଆନୁଗତ୍ୟକୁ ଏକ କୃତ୍ରିମ ବ୍ୟବସ୍ଥା ବୋଲି ମତ ଦେଇଥିଲେ । ତାଙ୍କ ମତରେ ଜନମଙ୍ଗଳ ଉଦ୍ଦେଶ୍ୟରେ ଜନସାଧାରଣଙ୍କ ଠାରୁ କ୍ଷମତା ଲଭିକରି ରାଷ୍ଟ୍ରଶକ୍ତି ପ୍ରତିଷ୍ଠିତ । ଏଣୁ ଏହା ପରିବର୍ତ୍ତନଶୀଳ ଏବଂ ଧର୍ମାନୁଷ୍ଠାନ ସହିତ ରାଷ୍ଟ୍ରର କୌଣସି ସଂପର୍କ ନାହିଁ । (୫୨)

ଏହି ସଂସ୍କାରବାଦୀ ଓ ପ୍ରତିସଂସ୍କାରବାଦୀ ଆନ୍ଦୋଳନ ଫଳରେ ସମଗ୍ର ୟୁରୋପରେ ପ୍ରଗତିର ଧାରା ବାଧାପ୍ରାପ୍ତ ହୋଇଥିଲା ଏବଂ ଅର୍ଥନୈତିକ ଅଗ୍ରଗତି ଓ ବାଣିଜ୍ୟିକ ବିକାଶ ପ୍ରତିହତ ହେବାଦ୍ୱାରା ଅନ୍ୟାୟ, ଅନୀତି ଓ ଅପରାଧର ବୃଦ୍ଧି ଘଟି ସାମାଜିକ ବ୍ୟଭିଚାର ବ୍ୟାପକ ହୋଇ ପଡିଥିଲା । ପରମ ବ୍ୟବସାୟର ପ୍ରସାର ଯୋଗୁଁ ଚାଷୋପଯୋଗୀ ଜମିସବୁ ମେଣ୍ଢାମାନଙ୍କର ଚାରଣ କ୍ଷେତ୍ରରେ ପରିଣତ ହୋଇଥିଲା । ସ୍ପେନ୍, ଇଂଲଣ୍ଡ ଓ ଫ୍ରାନ୍‌ସରେ ଅନେକ ଜାତୀୟବାଦୀ ରାଷ୍ଟ୍ର ଗଢି ଉଠିଥିଲା । (୫୩) ଇଟାଲୀର ଆଭ୍ୟନ୍ତରୀଣ ଅବସ୍ଥା ଥିଲା ଅତୀବ ଶୋଚନୀୟ । ଏହି ପୃଷ୍ଠଭୂମିରେ ରଚିତ ସାର୍ ଥମାସ ମୁର୍‌ଙ୍କ 'ୟୁଟୋପିଆ' (ଖ୍ରୀ ୧୫୧୬) ଏବଂ ମେକ୍ୟାଭେଲିଙ୍କ ପ୍ରିନ୍ସ (ଖ୍ରୀ ୧୫୧୩) ଓ ଡ଼ିସ୍‌କୋର୍ସେସ୍ (ଖ୍ରୀ ୧୫୨୦) ତତ୍କାଳୀନ ବିଶ୍ୱରାଜନୀତିକୁ ନୂତନ ଦିଗ୍‌ଦର୍ଶନ ଦେଇଥିଲା ।

## ମୁର୍‌ଙ୍କ 'ୟୁଟୋପିଆ'ର ଆଦର୍ଶ

ଖ୍ରୀ ୧୫୧୬ରେ ପ୍ରକାଶିତ 'ୟୁଟୋପିଆ' ଗ୍ରନ୍ଥରେ ସାର୍, ଥମାସ୍ ମୁର୍ (ଖ୍ରୀ ୧୪୭୮-୧୫୩୫) ଯେଉଁ ରାଜନୈତିକ ଆଦର୍ଶ ବ୍ୟାଖ୍ୟାନ କରିଛନ୍ତି ତାକୁ ସମକାଳୀନ ପରିବେଷ୍ଟନୀର ଦାନ ବୋଲି କୁହାଯାଇପାରେ । ମୁର୍‌ଙ୍କ ପରିକଳ୍ପନା ପ୍ଲେଟୋଙ୍କ 'ରିପବ୍ଲିକ' ଦ୍ୱାରା ପ୍ରଭାବିତ ହେଲେହେଁ ତତ୍କାଳୀନ ଅର୍ଥନୈତିକ ବୈଷମ୍ୟଗ୍ରସ୍ତ, ଅପରାଧପ୍ରବଣ ଓ ଅମାନୁଷିକ ଆଚରଣପୂର୍ଣ୍ଣ ସମାଜ ପ୍ରତି ଥିଲା ଏକ

---

(୫୨) Ibid-pp. 362-364

(୫୩) Ibid-pp. 255-270

ଶୋଣିତ କଟାକ୍ଷ । (୫୪) ସେ ପ୍ରାଚୀନ ଆଦର୍ଶର ଜୟଗାନପୂର୍ବକ ଯେଉଁ ରାମରାଜ୍ୟ ପରିକଳ୍ପନା କରିଗଲେ, ତାହା ତତ୍‌କାଳୀନ ସମସ୍ୟର କଠୋର ଭୂପରେ ଫଳବତୀ ହୋଇପାରି ନଥିଲେ ମଧ୍ୟ ରାଜନୀତିରେ ଅର୍ଥନୀତି, ନୈତିକତା ଓ ମାନବିକତାର ବୈଶିଷ୍ଟ୍ୟ ପ୍ରତିପାଦନ ଦିଗରେ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

'ୟୁଟୋପିଆ' ଅନୁଯାୟୀ ଆଦର୍ଶ ରାଷ୍ଟ୍ର ହେଉଛି ଏକ ସାମ୍ୟବାଦୀ ସମାଜ । ଏଥିରେ ପ୍ରତ୍ୟେକ ବ୍ୟକ୍ତି ଯେ କୌଣସି ଗୋଟିଏ ବୃତ୍ତି ଅବଲମ୍ବନ କରି ପୂର୍ବାହ୍ଣରେ ୩ ଘଣ୍ଟା ଓ ଅପରାହ୍ଣରେ ୩ ଘଣ୍ଟା ହିସାବରେ ଦୈନିକ ଅନ୍ୟୂନ ଛଅ ଘଣ୍ଟା ପରିଶ୍ରମ କରିବା ପାଇଁ କୁହାଯାଇଛି ଏବଂ ଅଳସୁଆ ବା କର୍ମକୁଣ୍ଠମାନଙ୍କ ପାଇଁ ଦଣ୍ଡବ୍ୟବସ୍ଥା ରହିଛି । କୃଷିକର୍ମ ପାଇଁ ଉପଯୁକ୍ତ ତାଲିମ ପ୍ରଦାନ ଉପରେ ପ୍ରାଧାନ୍ୟ ଦିଆଯାଇଛି । ମୁର୍‌ଙ୍କ ମତରେ, ପ୍ରତ୍ୟେକ ପରିବାର ଜଣେ କର୍ତ୍ତା ଏବଂ ଜଣେ କର୍ତ୍ତ୍ରୀଙ୍କ ଦ୍ୱାରା ପରିଚାଳିତ ହେବା ଉଚିତ । ପ୍ରତି ତିରିଶ ଗୋଟି ପରିବାର ଜଣେ ଜଣେ ସ୍ୱତନ୍ତ୍ରପତି ନିର୍ବାଚନ କଲାପରେ ସେମାନେ ନଗରର ମୁଖ୍ୟ ସ୍ୱତନ୍ତ୍ରପତି ବାଛିବା ବାଂଛନୀୟ । ତାଙ୍କ ପରିକଳ୍ପିତ ସମାଜରେ ଧନ, ସମ୍ପତ୍ତିର ସ୍ଥାନ ନାହିଁ । ବିବାହ ପ୍ରଥା ସୁନିୟନ୍ତ୍ରିତ । ୧୮ ବର୍ଷର ଝିଅ ୨୨ ବର୍ଷ ବୟସ୍କ ପୁରୁଷକୁ ପରସ୍ପର ମନୋନୀତ କଲାପରେ ବିବାହ କରିପାରିବେ । ବହୁଦାର ଗ୍ରହଣ ନିଷିଦ୍ଧ ଏବଂ ଗୁପ୍ତପତି ଲାଗି ସୁଯୋଗ ନାହିଁ । ଏହି ସମାଜ ଧର୍ମ ନିରପେକ୍ଷ ଏବଂ ଏଠାରେ ଧର୍ମଯାଜକଙ୍କ ସଂଖ୍ୟା ଅତି ଅଳ୍ପ । ବ୍ୟକ୍ତିଗତ ସମ୍ପତ୍ତି ନଥିବା ହେତୁ ଅପରାଧର ପରିମାଣ କମ୍ ହେବା ସ୍ୱାଭାବିକ, ତେଣୁ ଆଇନର ଆବଶ୍ୟକତା ନଗଣ୍ୟ । ମୁର୍ ଯୁଦ୍ଧର ପକ୍ଷପାତୀ ନଥିଲେ, ତଥାପି ଆବଶ୍ୟକ ସ୍ଥଳେ ଶେଷନିଃଶ୍ୱାସ ପର୍ଯ୍ୟନ୍ତ ଲଢ଼ିବା ଲାଗି ସେ ପରାମର୍ଶ ଦେଇଛନ୍ତି ଏବଂ ଏଥିପାଇଁ ସମସ୍ତଙ୍କୁ ସାମରିକ ତାଲିମ ଦିଆଯିବା ଆବଶ୍ୟକ ବୋଲି କହିଛନ୍ତି । ସେ କ୍ରୀତଦାସ ପ୍ରଥାର ପକ୍ଷପାତୀ ଥିଲେ ହେଁ କେବଳ ଯୁଦ୍ଧ ଅପରାଧୀମାନଙ୍କୁ କ୍ରୀତଦାସ ନିଯୁକ୍ତ କରାଯିବା ଉଚିତ ବୋଲି ମନେ କରିଛନ୍ତି । ସଂକ୍ଷେପରେ ପ୍ରକାଶ କଲେ, ମୁର୍‌ଙ୍କ ଆଦର୍ଶ ଥିଲା ଏକ ଚରମ ଗଣତାନ୍ତ୍ରିକ ରାଷ୍ଟ୍ର ( An Ultra Democratic State ) ଯେଉଁଠି ନାଗରିକଗଣ ସମସ୍ତ ରାଜନୈତିକ ଶକ୍ତିର ଉତ୍ସ; ଶାସନ ସେମାନଙ୍କ ଦ୍ୱାରା ଗଠିତ ଏବଂ ସେମାନଙ୍କ ପାଇଁ ଉଦ୍ଦିଷ୍ଟ । ତାଙ୍କର ଅନ୍ୟତମ ଲକ୍ଷ୍ୟଥିଲା, ସହଯୋଗମୂଳକ ମିଳିତ ରାଜ୍ୟ ଗୋଷ୍ଠୀ (Cooperative Commonwealth) ପ୍ରତିଷ୍ଠା; ଏହା ସପ୍ତଦଶ ଶତାବ୍ଦୀର ରାଜନୀତିଜ୍ଞମାନଙ୍କୁ ପ୍ରେରଣା ଯୋଗାଇଥିଲା । (୫୫)

---

(୫୪) Ibid-pp. 404-405

(୫୫) Ibid-p 406

## ମେକ୍ୟାଭେଲିଙ୍କ ଚିନ୍ତାଧାରା

ପାଶ୍ଚାତ୍ୟ ରାଜନୈତିକ ଜଗତରେ ଆଦର୍ଶ ରାଜନୀତି ପରିବର୍ତ୍ତେ କୂଟନୈତିକ ଆଦର୍ଶର ପ୍ରାଧାନ୍ୟ ପ୍ରତିଷ୍ଠା କରିବା କ୍ଷେତ୍ରରେ ମେକ୍ୟାଭେଲି (୧୪୬୯-୧୫୨୭) ସର୍ବ ପ୍ରଥମ ଓ ସର୍ବଶ୍ରେଷ୍ଠ ଦାର୍ଶନିକ । ତାଙ୍କ ରଚନାରେ ରାଜନୈତିକ ଆଦର୍ଶ ଅପେକ୍ଷା କୂଟନୀତି କୌଶଳର ଉପାଦାନ ଅଧିକ ମାତ୍ରାରେ ପରିଦୃଷ୍ଟ ହୁଏ । ଶାସନକଳର ଦୃଢ଼ୀକରଣ ଓ ରାଜନୈତିକ କ୍ଷମତା ପ୍ରତିଷ୍ଠା ତଥା ରାଷ୍ଟ୍ରଶକ୍ତିର ବିକାଶ ନିମିତ୍ତ ସେ ସାମରିକ ଓ କୂଟନୈତିକ ଦକ୍ଷତା ଉପରେ ପ୍ରାଧାନ୍ୟ ଦେଇଥିଲେ ଏବଂ ରାଜନୀତିକୁ ସମାଜନୀତି, ଧର୍ମ ଓ ନୈତିକତାଠାରୁ ସ୍ୱତନ୍ତ୍ର ଭାବେ ବିଚାର କରିଥିଲେ । ଏ କ୍ଷେତ୍ରରେ ତାଙ୍କ ଚିନ୍ତାଧାରା ଆଂଶିକ ଭାବେ ଆରିଷ୍ଟୋଟଲ ଓ ମାର୍ସିଲିଓଙ୍କ ଦ୍ୱାରା ପ୍ରଭାବିତ ବୋଲି ବୁଝାଯାଇପାରେ । (୫୬) ମେକ୍ୟାଭେଲି ମନୁଷ୍ୟର ସାମାଜିକ ପ୍ରକୃତି ଓ ବ୍ୟକ୍ତିଗତ ସ୍ୱାର୍ଥକୁ ମୂଳ ଉପାଦାନ ରୂପେ ଗ୍ରହଣ କରି ଜୀବନ ଓ ଧନର ସୁରକ୍ଷା ସଫଳ ଶାସନର ନିତାନ୍ତ ଧ୍ୟେୟ ବୋଲି କହିବା ସଙ୍ଗେ ସଙ୍ଗେ ଶାସକ ଧର୍ମ, ଆଦର୍ଶ ଓ ନୈତିକତା ପ୍ରତି ଭ୍ରୂକ୍ଷେପ ନକରି ନ୍ୟାୟୋଚିତ ହେଉ ବା ନ ହେଉ ଯେ କୌଣସି ଉପାୟରେ ନାଗରିକମାନଙ୍କର ସୁରକ୍ଷା ଲାଗି ଧ୍ୟାନ ଦେବା ଆବଶ୍ୟକ ବୋଲି ମତବ୍ୟକ୍ତ କରିଥିଲେ । ଏହା ବ୍ୟତୀତ, ଅକୃତଜ୍ଞତା, ଅସାମାଜିକତା, ଚଞ୍ଚଳତା ଓ ହୀନମନ୍ୟତା ଭଳି ମନୁଷ୍ୟର ସହଜାତ ମନ୍ଦ ପ୍ରକୃତିକୁ ଶିକ୍ଷା ବା ପ୍ରବୋଧନା ଦ୍ୱାରା ଅତିକ୍ରମ କରିବାକୁ ଚେଷ୍ଟା ନକରି, ଦୃଢ଼ଶାସନ ତଥା ଶକ୍ତିପ୍ରୟୋଗପୂର୍ବକ ଦମନ କରାଯିବା ସପକ୍ଷରେ ମତ ଦେଇଥିଲେ । ସେ 'ପ୍ରିନ୍ସ'ରେ ରାଜତନ୍ତ୍ର ଓ 'ଡିସ୍‌କୋର୍ସେସ୍'ରେ ସାଧାରଣତନ୍ତ୍ର ଶାସନ ବିଷୟରେ ସବିଶେଷ ଆଲୋଚନା କରିଛନ୍ତି ଏବଂ ପ୍ରତ୍ୟେକ ଶ୍ରେଣୀର ଶାସନ ପାଇଁ ଭିନ୍ନ ଭିନ୍ନ ପରାମର୍ଶ ଦେଇଛନ୍ତି । ଜଣେ ଶ୍ରେଷ୍ଠ ରାଜାପ୍ରତି ତାଙ୍କର ଉପଦେଶାବଳୀ (୫୭) ହେଉଛି —

୧ । ନିଜେ କିଭଳି ଭଲ ନ ହେବ ଏବଂ ଭଲ ନହେବା ଗୁଣକୁ ଭଲଭାବେ ବ୍ୟବହାର କରି ସୁନାମ ଅର୍ଜନ କରିପାରିବ, ତାହା ରାଜା ସର୍ବପ୍ରଥମେ ଶିକ୍ଷା କରିବା ଉଚିତ ।

୨ । ଦାନ ଓ ଦମନ, ଦୟା ଓ କ୍ରୂରତା, ସ୍ତୈଣ ଓ କାପୁରୁଷତା, ଅବିଶ୍ୱାସୀ ଓ ବିଶ୍ୱାସଯୋଗ୍ୟ, ଲମ୍ପଟ ଓ ଚରିତ୍ରବାନ୍, ସ୍ପଷ୍ଟବାଦୀ ଓ ଚତୁର, ଧର୍ମଭୀରୁ ଓ ବିଧର୍ମୀ—ଏ ସମସ୍ତ ଗୁଣ ରାଜାଠାରେ ରହିବା ଉଚିତ ।

(୫୬) Ibid—pp. 317-318

(୫୭) Pant : History of Western Political Thought, Vol-I pp. 363-365

୩ । କୃପଣତା ବଳରେ ହିଁ ଦାରିଦ୍ର୍ୟ ଠାରୁ ଦୂରେଇ ରହିବା ସମ୍ଭବ, ଏଣୁ ରାଜା କୃପଣ ହେବା ଆବଶ୍ୟକ ।

୪ । ଶାସନ କ୍ଷମତାକୁ ସୁରକ୍ଷିତ ରଖିବା ସକାଶେ ରାଜାକୁ ଅତି କଠୋର ହେବାକୁ ପଡ଼ିବ । ସର୍ବସାଧାରଣ ରାଜାକୁ ଆଦର କରିବା ସଙ୍ଗେ ସଙ୍ଗେ ଭୟ କରିବା ଉଚିତ ।

୫ । ମନୁଷ୍ୟ ଜାତି ସାଧାରଣତଃ ଅକୃତଜ୍ଞ, ଅସତ୍ୟବାଦୀ, ଲୋଭୀ ଓ ବିପଦ ଏଡ଼ାଇବା ଲାଗି ଯତ୍ନଶୀଳ । ସେମାନଙ୍କର ସ୍ୱାର୍ଥସାଧିତ ହେଉଥିବା ପର୍ଯ୍ୟନ୍ତ ସେମାନେ ଧନ, ମନ ଓ ପ୍ରାଣ ଦେଇ ଭଲ ପାଉଥିବେ । କିନ୍ତୁ ତାଙ୍କର ଅଭାବ, ଅସୁବିଧା ଦୂରୀଭୂତ ହେବା ସଙ୍ଗେ ସଙ୍ଗେ ସେମାନେ ବିପ୍ଳବୀ ହୋଇ ଉଠିବେ । ଏଣୁ ସର୍ବଦା ଜନସାଧାରଣଙ୍କୁ ଅଭାବଗ୍ରସ୍ତ ଓ ଭୟଭୀତ କରି ରଖିବା ରାଜାର କର୍ତ୍ତବ୍ୟ ।

୬ । ରାଜା ବ୍ୟକ୍ତିଗତ ସମ୍ପତ୍ତି ଓ ଅଧିକାରକୁ ସ୍ପର୍ଶ କରିବା ଅନୁଚିତ, କାରଣ ଜଣେ ବ୍ୟକ୍ତି ପିତାର ହତ୍ୟାକୁ ସିନା କ୍ଷମାଦେଇ ପାରେ, ପିତୃ ଅର୍ଜିତ ସମ୍ପତ୍ତିକୁ ହସ୍ତାନ୍ତରିତ ହେବାକୁ ଦେବ ନାହିଁ ।

୭ । ରାଜାକୁ ସିଂହ ଓ ଶୃଗାଳର ଗୁଣ ଆହରଣ କରିବାକୁ ପଡ଼ିବ । ସିଂହ ମଧ୍ୟ ଯନ୍ତ୍ରରେ ପଡ଼ିଯାଏ ଏବଂ ଶୃଗାଳ ବ୍ୟାଘ୍ର ଦ୍ୱାରା କବଳିତ ହୁଏ । ଏଣୁ ଶଗାଳ ଭଳି ଯନ୍ତ୍ରକୁ ଚିହ୍ନିବା ଓ ସିଂହ ଭଳି ବ୍ୟାଘ୍ରକୁ ମାରିପାରିବା ଶକ୍ତି ରାଜାଠାରେ ରହିବା ଉଚିତ ।

୮ । ରାଜା ନିଜ ବାକ୍ୟରେ ସଚେତ ହେବା ଆବଶ୍ୟକ । ସେ ଏଭଳି କୌଣସି କଥା କହିବା ଅନୁଚିତ ଯଦ୍ଦ୍ୱାରା ତାଠାରେ ଥିବା ଦୟା, ଧର୍ମ, ବିଶ୍ୱାସ, ସାଧୁତା ଓ ମାନବିକତା ଗୁଣ ପ୍ରମାଣ ପାଇଯିବାର ସମ୍ଭାବନା ରହିଥିବ ।

୯ । ସର୍ବଦା ଶାନ୍ତ ଓ ସମ୍ମାନଜନକ ପନ୍ଥା ଉପରେ ଗୁରୁତ୍ୱ ନଦେଇ ଆବଶ୍ୟକ ସ୍ଥଳେ ହିଂସ୍ର ଉପାୟରେ ମଧ୍ୟ ରାଜ୍ୟରକ୍ଷା କରିବା ରାଜାର କର୍ତ୍ତବ୍ୟ । ଏଥିପାଇଁ ରାଜା ଏକ ବିଜ୍ଞ ଉପଦେଷ୍ଟା ପରିଷଦ ରଖିବା ଆବଶ୍ୟକ ଏବଂ ଖୋସାମତିଆ ଭାଟମାନଙ୍କଠାରୁ ଦୂରରେ ରହିବା ବାଞ୍ଛନୀୟ ।

୧୦ । ରାଜାର ସାମରିକ ଜ୍ଞାନ ନଥିଲେ ସେ ସେନାବାହିନୀର ସମ୍ମାନଭାଜନ ହେବ ନାହିଁ । ଏଣୁ ଯୁଦ୍ଧବିଦ୍ୟା ଓ ଶୃଙ୍ଖଳାରକ୍ଷା ବିଷୟରେ ରାଜା ଗମ୍ଭୀର ଅଧ୍ୟବସାୟ କରିବା ଆବଶ୍ୟକ । ରାଜା କେବଳ ବିଳାସ ବ୍ୟସନରେ ନିମଜ୍ଜିତ ରହିଲେ ରାଜ୍ୟ ହରାଇବାର ସମ୍ଭାବନା ବେଶୀ । ସୁତରାଂ, ଶାନ୍ତି ସମୟରେ ମଧ୍ୟ ଯୁଦ୍ଧପ୍ରସ୍ତୁତି ଅବ୍ୟାହତ ରଖିବା ରାଜାର କର୍ତ୍ତବ୍ୟ ।

'ପ୍ରିନ୍ସ' ପରବର୍ତ୍ତୀ ରଚନା 'ଡ଼ିସ୍‌କୋର୍ସେସ'ରେ ମେକ୍ୟାଭେଲ ସାଧାରଣତନ୍ତ୍ର ବ୍ୟବସ୍ଥାକୁ ସମର୍ଥନ କରି ରାଜତନ୍ତ୍ର ଅପେକ୍ଷା ସାଧାରଣତନ୍ତ୍ର ଶାସନ ଶ୍ରେଷ୍ଠତର ବୋଲି ମତ ଦେଇଛନ୍ତି । କିନ୍ତୁ ଯେଉଁଠି ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠିତ ଏବଂ ଜନସାଧାରଣ ସଚ୍ଚୋଟ, ଶକ୍ତିଶାଳୀ ଓ ସଙ୍ଘବଦ୍ଧ, ସେହିଠାରେ ହିଁ ଏହା ସମ୍ଭବ; ଅନ୍ୟଥା ସାଧାରଣତନ୍ତ୍ର ପ୍ରତିଷ୍ଠା ଦୁଃସାଧ୍ୟ ବୋଲି ତାଙ୍କର ଦୃଢ଼ ଧାରଣା ରହିଥିଲା । ସାଧାରଣତାନ୍ତ୍ରିକ ଆଦର୍ଶ ସମ୍ପର୍କରେ ମେକ୍ୟାଭେଲଙ୍କ ଯୁକ୍ତି ହେଉଛି—(୧) ଏହି ବ୍ୟବସ୍ଥାରେ ଜନସାଧାରଣ ସାଧାରଣତଃ ବିଜ୍ଞ ଓ ଚତୁର, (୨) ସେମାନଙ୍କର ବିଚାରଶକ୍ତି ଓ ନିର୍ବାଚନ କ୍ଷମତା ନିର୍ଭୁଲ ଓ ତ୍ରୁଟିଶୂନ୍ୟ, (୩) ଏଥିରେ ରାଜନୈତିକ ସଂସ୍ଥା ଓ ଆଇନାନୁଷ୍ଠାନଗୁଡ଼ିକର ସୁସ୍ଥ ବିକାଶ ସମ୍ଭବ, (୪) ଏହା ପରିବର୍ତ୍ତିତ ପରିସ୍ଥିତି ସହିତ ସମତାଲ ରକ୍ଷା କରିବା ପାଇଁ ସମର୍ଥ, (୫) ତେଣୁ ନୈତିକ ବିକାଶ ତ୍ୱରାନ୍ୱିତ ହେବା ସମ୍ଭାବନା ଅଧିକ, (୬) ଏଥିରେ ବ୍ୟକ୍ତି ସ୍ୱାଧୀନତାର ସୁରକ୍ଷା ଲାଗି ଅଧିକ ସୁଯୋଗ ମିଳିଥାଏ ଓ (୭) ଏହା ରାଜତନ୍ତ୍ରଠାରୁ ଅଧିକ ଦୃଢ଼ ଓ ସ୍ଥାୟୀ ଏବଂ କମ୍ ଦୁର୍ନୀତିପରାୟଣ ।

ସାଧାରଣତନ୍ତ୍ର ବ୍ୟବସ୍ଥାରେ ମଧ୍ୟ ସର୍ବୋଚ୍ଚ ସ୍ତରରେ ଜଣେ ଶ୍ରେଷ୍ଠ ବ୍ୟବସ୍ଥାପକ ରହିବା ଉଚିତ ବୋଲି ସେ ମତ ବ୍ୟକ୍ତ କରିଥିଲେ, କାରଣ ତାଙ୍କ ବିଚାରରେ ଜଣେ ମାତ୍ର ଆଇନଦାତା ସମାଜକୁ ଦୁର୍ନୀତିମୁକ୍ତ ରଖିବା ସମ୍ଭବପର । ସଂକ୍ଷେପରେ ପ୍ରକାଶ କଲେ, ମେକ୍ୟାଭେଲ ଥିଲେ ଜଣେ ଉଗ୍ର ଜାତୀୟତାବାଦୀ; ସେ ଜାତୀୟତାବାଦର ଜନକ ଏବଂ ଜାତୀୟବାଦୀ ରାଷ୍ଟ୍ରନୀତିର ପ୍ରବର୍ତ୍ତକ । ସେ ତତ୍କାଳୀନ ଇଟାଲୀର ପରିବେଶ ଦ୍ୱାରା ପ୍ରଭାବିତ ହୋଇଥିବା ଯୋଗୁଁ ପରିବେଶକୁ କେନ୍ଦ୍ରକରି ରାଷ୍ଟ୍ରଗଠନ ସମ୍ଭବ ଓ ରାଷ୍ଟ୍ରର ସ୍ୱରୂପ ପରିବେଶ ଉପରେ ନିର୍ଭରଶୀଳ ବୋଲି ହୃଦୟଙ୍ଗମ କରିଥିଲେ । ଏଥିପାଇଁ ତାଙ୍କୁ ମାର୍କସ୍‌ଙ୍କର ଅଗ୍ରଣୀ ବୋଲି କୁହାଯାଏ । (୫୮)

ଉଲ୍ଲିଖିତ ରାଜନୀତି-ଦାର୍ଶନିକମାନଙ୍କ ବ୍ୟତୀତ ସେହି ମଧ୍ୟଯୁଗ ଓ ଆଧୁନିକ ଯୁଗର ସନ୍ଧିକାଳରେ ତତ୍କାଳୀନ ରାଜନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ପରିବେଶ ଦ୍ୱାରା ପ୍ରଭାବିତ ହୋଇ ରିଚାର୍ଡ଼ ହୁକର୍, ଟମାସ୍ ସ୍ମିଥ୍, ଫ୍ରାନ୍‌ସିସ୍ ବେକନ୍, ଏଡ଼ଓ୍ୱାର୍ଡ କୁକ୍ ପ୍ରମୁଖ ବହୁ ଚିନ୍ତାନାୟକ ରାଜନୈତିକ ଦର୍ଶନକୁ ଅଧିକ ପୁଷ୍ଟିଲାଭ

(୫୮) Ibid-P. 360

ଓ ସଂସ୍କାରଶୀଳ କରି ସେଥିରେ ପ୍ରାଚୀନତା ଓ ନୂତନତା ମଧ୍ୟରେ ସମନ୍ୱୟ ଘଟାଇଥିଲେ ।

ସାରଳାଙ୍କ ସମକାଳୀନ ଅଥବା ସାମାନ୍ୟ ପଶ୍ଚାଦ୍‌ବର୍ତ୍ତୀ ବିଭିନ୍ନ ପାଶ୍ଚାତ୍ୟ ରାଜନୀତି-ଦାର୍ଶନିକଙ୍କ ଚିନ୍ତାଧାରାରେ ଧର୍ମନିରପେକ୍ଷତା, ଚରମ ଗଣତାନ୍ତ୍ରିକତା ରାଷ୍ଟ୍ରୀୟ ସାର୍ବଭୌମତ୍ୱ, ନାଗରିକ ଅଧିକାରର ସୁରକ୍ଷା, ବିଶ୍ୱସାମ୍ରାଜ୍ୟ ପରିକଳ୍ପନା, ମିଳିତ ରାଜ୍ୟଗୋଷ୍ଠୀ ଗଠନ ତଥା ବସୁଧୈବ କୁଟୁମ୍ବକମ୍ ଆଦର୍ଶ ପ୍ରଭୃତି ଯେଭଳି ସ୍ପଷ୍ଟ ରୂପାୟିତ, ସାରଳା ମହାଭାରତରେ ମଧ୍ୟ ଅନୁରୂପ ଆଦର୍ଶର ଅବିକଳ ଚିତ୍ର ପରିଲକ୍ଷିତ ହୁଏ । ସମାଜରେ ଧନ ଓ ଜୀବନର ସୁରକ୍ଷା, ରାଜ୍ୟାବସ୍ଥିତି ଦୃଢ଼ୀକରଣ ଓ ଦୃଢ଼ ଜାତୀୟତାବାଦ ପ୍ରତିଷ୍ଠା ଲକ୍ଷ୍ୟ ପୋଷଣ କ୍ଷେତ୍ରରେ ସାରଳା ଯେ ମେକ୍ୟାଭେଲିଙ୍କ ସମକକ୍ଷ, କହିବା ବାହୁଲ୍ୟ ମାତ୍ର । ଅବାଞ୍ଛିତ ଯୁଦ୍ଧର ନିନ୍ଦା ତଥା ଆବଶ୍ୟକତା ସ୍ଥଳେ ସେଥିପ୍ରତି ଦୃଢ଼ ସମର୍ଥନ ଜ୍ଞାପନ, ସମସ୍ତ ଧର୍ମ ପ୍ରତି ଉଦାର ମନୋଭାବ ପୋଷଣ, ଏକପତ୍ନୀ ବ୍ରତ ପାଳନ ତଥା ରାଜନୀତିରେ ନୈତିକତା, ମାନବିକତା ଓ ଅର୍ଥନୈତିକ ଚେତନାର ବୈଶିଷ୍ଟ୍ୟ ପ୍ରତିପାଦନ ପ୍ରତି ଗୁରୁତ୍ୱ ଆରୋପ ଦୃଷ୍ଟିରୁ ସାରଳା ଯେ ଥମାସ୍ ମୁର୍‌ଙ୍କ ଠାରୁ ଅଗ୍ରଗାମୀ, ଏହାକୁ ଅସ୍ୱୀକାର କରାଯାଇ ନପାରେ ।

ବିଭିନ୍ନ ଭାରତୀୟ ତଥା ପାଶ୍ଚାତ୍ୟ ରାଜନୈତିକ ଚିନ୍ତାଧାରା କିପରି ସାରଳାଙ୍କ ମହାଭାରତରେ ପ୍ରମୂର୍ତ୍ତି ରୂପ ଲାଭ କରିଛି, ତାହା ତାଙ୍କର ବିଭିନ୍ନ ଚିନ୍ତାଦର୍ଶର ଆଲୋଚନାକ୍ରମେ ସ୍ପଷ୍ଟୀଭୂତ ହେବ । ସୁସମନ୍ୱିତ ବହୁବିଧ ମାନବୀୟ ଚିନ୍ତାଦର୍ଶର ପୃଥକୀକରଣ ସହଜସାଧ୍ୟ ନହେଲେ ମଧ୍ୟ ମାନବ ଜାତିର ସଭ୍ୟତା-ସୌଧ ମୁଖ୍ୟତଃ ରାଜନୀତି, ଧର୍ମ ଓ ସମାଜ ରୂପକ ତ୍ରିବିଧ ଭିତ୍ତିସ୍ତମ୍ଭ ଉପରେ ପ୍ରତିଷ୍ଠିତ ହୋଇଥିବା ହେତୁ ସାରଳାଙ୍କ ବହୁମୁଖୀ ଆଦର୍ଶକୁ ରାଜନୈତିକ, ଆଧ୍ୟାତ୍ମିକ ଓ ସାମାଜିକ— ଏଭଳି ତିନୋଟି ପର୍ଯ୍ୟାୟଭୁକ୍ତ କରି ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ ଆଲୋଚନା କରାଯାଉଛି ।

□ □ □

"ସାରଳାଙ୍କ ରାଜନୈତିକ ଆଦର୍ଶାବଳୀ ସ୍ଥାନ ଓ କାଳର ଚତୁଃସୀମା ମଧ୍ୟରେ ଆବଦ୍ଧ ନୁହେଁ; ଏହା ସୁଦୂରପ୍ରସାରୀ ଓ ସର୍ବକାଳ-ବ୍ୟାପୀ । ସାରଳା ମହାଭାରତ କେବଳ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦାର୍ଶନିକ-ମାନଙ୍କର ରାଜନୈତିକ ଆଦର୍ଶସମୂହର ଏକ ସମନ୍ୱିତ ଆଲେଖ୍ୟ ନୁହେଁ; ଅଧିକନ୍ତୁ, ଅତୀତ ଓ ଭବିଷ୍ୟତର ରାଜନୈତିକ ଚେତନା ସ୍ରୋତର ଏକ ସଂଯୋଗ ସେତୁ ମଧ୍ୟ ।"

ତୃତୀୟ ପରିଚ୍ଛେଦ

# ସାରଳା ମହାଭାରତରେ ରାଜନୈତିକ ଆଦର୍ଶ

ସାରଳା ଦାସଙ୍କ ରାଜନୈତିକ ଚିନ୍ତାଧାରା ସମ୍ପର୍କରେ ଅନୁଶୀଳନ କରିବା ପୂର୍ବରୁ ଆମେ ସ୍ମରଣ ରଖିବା ଉଚିତ ଯେ ସେ ଜଣେ ନିରୋଳା ରାଜନୀତିଜ୍ଞ ନଥିଲେ, କିମ୍ବା କେବଳ ଖାଣ୍ଟି ରାଜନୈତିକ ଦର୍ଶନ ବା ଶାସନାଦର୍ଶର ଚର୍ଚ୍ଚା କରିବା ନିମିତ୍ତ ସୁବିଶାଳ ମହାଭାରତ ଗ୍ରନ୍ଥ ପ୍ରଣୟନ କରିନଥିଲେ । ପୁଣି ଏକଥା ମଧ୍ୟ ନିତାନ୍ତ ସ୍ମରଣଯୋଗ୍ୟ ଯେ ସାରଳା ହମ୍ମୁରାବି, ସେନେକା, ମେକ୍ୟାଭେଲି, ମାର୍ଶିଲିଓ, ଅଶୋକ ବା କୌଟିଲ୍ୟଙ୍କ ଭଳି ରାଜନୈତିକ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇ ଶାସନାଦର୍ଶର ପ୍ରଖ୍ୟାପନ କରିନାହାନ୍ତି, କିମ୍ବା ସେଣ୍ଟ ଥମାସ୍, ମାର୍ଟିନ୍ ଲୁଥର୍ ବା କାଲ୍‌ଭିନଙ୍କ ଭଳି ଧର୍ମର ଧ୍ୱଜା ଧାରଣ କରି ରାଜନୀତି ଚର୍ଚ୍ଚା କ୍ଷେତ୍ରରେ ପ୍ରବିଷ୍ଟ ହୋଇ ନାହାନ୍ତି । ସେ ପ୍ରଥମେ କବି ବା ସାହିତ୍ୟିକ ଏବଂ ପରେ ହିଁ ରାଜନୀତି ବା ଶାସନତନ୍ତ୍ରର ବ୍ୟାଖ୍ୟାକାର । ଏହି ଦୃଷ୍ଟିରୁ ତାଙ୍କୁ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍, ଜର୍ମାନ କବି ଦାନ୍ତେ ତଥା ଭାରତୀୟ ସ୍ମୃତିକାର ମନୁ ବା ଉତ୍କଳୀୟ ସାହିତ୍ୟ ସାଧକ ପଣ୍ଡିତ ଗୋପବନ୍ଧୁଙ୍କ ନିକଟବର୍ତ୍ତୀ ବୋଲି କୁହାଯାଇପାରେ । ଏଣୁ ରାଜନୈତିକ ତତ୍ତ୍ୱସମୃଦ୍ଧ ପ୍ଲାଟୋଙ୍କ 'ରିପବ୍ଲିକ୍', ମେକ୍ୟାଭେଲିଙ୍କ 'ପ୍ରିନ୍ସ୍' ବା କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର' ସହିତ ସାରଳା ମହାଭାରତକୁ ଏକ ରାଜନୈତିକ ସଂହିତା ରୂପେ ତୁଳନା କରିବା ଧୃଷ୍ଟତାର ହିଁ ପରିଚାୟକ ହେବ । ସମାଜ, ସଭ୍ୟତା, ସଂସ୍କୃତି, ଧର୍ମ, ଦର୍ଶନ, ଅର୍ଥନୀତି ଓ ଶାସନାଦର୍ଶର ନିର୍ଯ୍ୟାସରେ ଉଜ୍ଜ୍ୱଳ ସାରଳାଙ୍କ ସୁମହାନ୍ କାବ୍ୟକୃତିରେ ରାଜନୀତିର ଯେଉଁ ଉପାଦାନ ନିହିତ, ତାର ପର୍ଯ୍ୟାଲୋଚନା ମହାସାଗରରୁ ଉପଲ ସଂଗ୍ରହ ତୁଲ୍ୟ କେବଳ ଏକ ଦୁଷ୍କର ବ୍ୟାପାର ନୁହେଁ, ପରିମାଣ ଦୃଷ୍ଟିରୁ ମଧ୍ୟ ଅତ୍ୟନ୍ତ ସ୍ୱଳ୍ପ । ତଥାପି, ସାରଳା ମହାଭାରତରେ ଅନ୍ତର୍ନିହିତ ରାଜନୈତିକ ଉପାଦାନ ସମୂହର ଗୁରୁତ୍ୱ ଆଦୌ ନଗଣ୍ୟ ବା ଉପେକ୍ଷଣୀୟ ନୁହେଁ ।

ସାରଳା ମହାଭାରତରେ ଉପଲବ୍ଧ ବିଭିନ୍ନ ରାଜନୈତିକ ଉପାଦାନଗୁଡ଼ିକ ଉପରେ ଦୃଷ୍ଟି ନିକ୍ଷେପ କଲେ, ସେଥିରେ ସମକାଳୀନ ଭାରତୀୟ ଆଦର୍ଶ ତଥା

ସମସାମୟିକ ଶାସନ ବ୍ୟବସ୍ଥାର ବିବରଣୀ ଯେତିକି ମାତ୍ରାରେ ପରିଦୃଷ୍ଟ ହୁଏ, ତତୋଽଧିକ ଜାତୀୟତାବାଦ, ଗଣତାନ୍ତ୍ରିକ ଆଦର୍ଶ, ଅର୍ଥନୈତିକ ମୂଲ୍ୟବୋଧ ତଥା ତତ୍କାଳୀନ ରାଜଧର୍ମର ଏକ ପ୍ରାଞ୍ଜଳ ଚିତ୍ର ପାଠକର ଚକ୍ଷୁ ସମକ୍ଷରେ ଉଦ୍‌ଭାସିତ ହୁଏ । ଏ ସବୁର ସମ୍ୟକ୍ ବିଚାର ଉପସ୍ଥାପନ କରିବାହିଁ ଏହି ପରିଚ୍ଛେଦର ଉଦ୍ଦେଶ୍ୟ ।

## ସାରଳାଙ୍କ ରାଜନୈତିକ ଆଦର୍ଶ : ଭୂମି ଓ ଭୂମିକା

କବି କାଳର ପ୍ରତିନିଧି । ସାହିତ୍ୟ କାଳଜୟୀ ହେଲେ ହେଁ କାଳାଶ୍ରୟୀ; ଲୋକାତୀତ ହେଲେ ମଧ୍ୟ ଲୋକାଶ୍ରିତ । ସାହିତ୍ୟିକର ସୃଜନଶୀଳ ପ୍ରତିଭା ତଥା କବିସତ୍ତା ଅଲୌକିକ ଶକ୍ତି ଦ୍ୱାରା ନିୟନ୍ତ୍ରିତ ହେଲେ ସୁଦ୍ଧା ତାର ସମକାଳୀନ ପରିବେଶର ପ୍ରଭାବରୁ ମୁକ୍ତ ହୋଇ ନପାରେ । ସାହିତ୍ୟ-ସ୍ରଷ୍ଟା ଅଦ୍‌ଭୁତ କଳ୍ପନା ବିଳାସ ବଳରେ ଅସାଧାରଣ ସୃଷ୍ଟି-ସୌଧ ନିର୍ମାଣକ୍ଷମ ହେଲେ ବି ନିଜ ଜନ୍ମଭୂମି, ସମାଜ, ସଭ୍ୟତା, ସଂସ୍କୃତି ଓ ପରିବେଶ ତଥା ନିଜର ଅନୁଭୂତି ଓ ଜୀବନ-ଦର୍ଶନକୁ ଭିତ୍ତି କରିହିଁ ତାର ସେହି କଳ୍ପନାସୌଧ ଗଢ଼ିଥାଏ । (୧) କିନ୍ତୁ, ସାରଳା କେବଳ ସମୟର ପ୍ରତିନିଧି ନଥିଲେ, ସେ ଥିଲେ ଜଣେ ଦିଗ୍‌ଦ୍ରଷ୍ଟା ମଧ୍ୟ । ଏଣୁ ତାଙ୍କର ବିଶାଳ କାବ୍ୟଶିଳ୍ପ ମହାଭାରତରେ ସେ ତତ୍କାଳୀନ ଧର୍ମ, ରାଜନୀତି, ଅର୍ଥନୀତି ଓ ସାମାଜିକ ସ୍ଥିତିନୀତିର ନିଛକ ଚିତ୍ର ପ୍ରଦାନ କରି ସାରି ନିଜର କର୍ତ୍ତବ୍ୟ ସାଙ୍ଗ କରିନାହାନ୍ତି, ଏହା ସଙ୍ଗେ ସଙ୍ଗେ ସେହି ସମୟର ବ୍ୟକ୍ତି ଜୀବନ ଓ ଚରିତ୍ରକୁ ଉନ୍ନତ ସ୍ତରରେ ପହଞ୍ଚାଇ ଆଦର୍ଶ ରାଷ୍ଟ୍ର ଗଠନ ଦିଗରେ ଶାସକବର୍ଗଙ୍କୁ ଦୃଢ଼ ଚେତାବନୀ ଶୁଣାଇଛନ୍ତି ଏବଂ ଶୁକ୍ର, ଚାଣକ୍ୟ ଓ ମନୁଙ୍କ ଅନୁରୂପ ଅନେକ ଅଲଂଘ୍ୟ ଦିଗ୍‌ଦର୍ଶନ ଦେଇଛନ୍ତି । କବିମାନଙ୍କୁ ସାଧାରଣତଃ ଅସମର୍ଥିତ ବୈଧାନିକ (Unacknowledged Legislator) ବୋଲି ଯାହା କୁହାଯାଇଥାଏ, ସାରଳାଙ୍କ ପକ୍ଷରେ ତାହା ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ । ମାତୃଭାଷାର ପ୍ରଥମ ବିଶ୍ୱକୋଷ ରୂପକ ତାଙ୍କର ମହାଭାରତକୁ ଏକ ମୂଲ୍ୟବାନ ବିଧାନ-ସଂହିତା ବା ରାଜନୈତିକ ଅଭିଧାନରୂପେ ଗ୍ରହଣ

---

(୧) (କ) ଆଗ୍ରୱାଲ, ଡ଼: ସୁଦର୍ଶନ : ଓଡ଼ିଆ କାବ୍ୟ କୌଶଳ (ଯତିରାଜ ନିକେତନ, ବ୍ରହ୍ମପୁର, ୧୯୮୩) ପୃ. ୧୧

(ଖ) ଦାସ, ଡ଼: ହେମନ୍ତକୁମାର : ସାରଳା ଦାସଙ୍କ ଉତ୍କଳୀୟତାର ପରିମାପ (ପ୍ରବନ୍ଧ) ସାରଳା ସାହିତ୍ୟ ସମୀକ୍ଷା (ସାରଳା ସାହିତ୍ୟ ସଂସଦ, କଟକ, ୧୯୮୩) ପୃ. ୧୧

କହାଯାଇପାରେ । ତାଙ୍କ ମହାଭାରତ କେବଳ ଏକ କବି-କଳ୍ପନାର କୋଣାର୍କ ନୁହେଁ, ରାଷ୍ଟ୍ରୀୟ ଶାସନ ବ୍ୟବସ୍ଥାର ଏକ ସମ୍ବିଧାନ ମଧ୍ୟ ।

ସାରଳାଙ୍କ ଆବିର୍ଭାବ ବେଳକୁ ସମସାମୟିକ ଭାରତର ବିଭିନ୍ନ ସ୍ଥାନରେ ମୁସଲମାନ ରାଜତ୍ୱ ପ୍ରତିଷ୍ଠିତ ହୋଇ ସାରିଥିଲା । ସେମାନଙ୍କ ଧର୍ମଭିତ୍ତିକ ଅନୁଦାର ନୀତି ଭାରତୀୟ ରାଜନୈତିକ ପରଂପରାରେ ଥିଲା ଏକ ଅସ୍ୱାଭାବିକ ବ୍ୟତିକ୍ରମ । ପାରମ୍ପରିକ ଜାତୀୟ ଧର୍ମ, ସମାଜ ଓ ସଂସ୍କୃତି କ୍ଷେତ୍ରରେ ସେମାନଙ୍କର ଅତ୍ୟଧିକ ହସ୍ତକ୍ଷେପ ଫଳରେ ପ୍ରଚଳିତ ମୂଲ୍ୟବୋଧ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । କିନ୍ତୁ ଏହି ଦୁର୍ଦ୍ଦିନରେ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ସାଂସ୍କୃତିକ ଅବକ୍ଷୟର ବାତ୍ୟା ପ୍ରବାହିତ ହେଉଥିଲା ବେଳେ ଓଡ଼ିଶାରେ ରାଜନୈତିକ ପ୍ରଶାନ୍ତି, ଶିଳ୍ପ-ବାଣିଜ୍ୟ ପ୍ରସାର ଓ ବିଭିନ୍ନ ଧର୍ମପୀଠର ବିକାଶ ଅବ୍ୟାହତ ରହିଥିଲା । ତ୍ରୟୋଦଶ ଶତାବ୍ଦୀରେ ମୁସଲମାନମାନଙ୍କର ବାରମ୍ବାର ଓଡ଼ିଶା ଆକ୍ରମଣ ଏହାର ରାଜନୈତିକ ସ୍ଥିତିକୁ କମ୍ପିତ ଦୋଦୁଲ୍ୟମାନ କରି ପକାଇଥିଲେ ସୁଦ୍ଧା କପିଳେନ୍ଦ୍ର ଓଡ଼ିଶାର ଶାସନ ରଜ୍ଜୁ ହସ୍ତଗତ କଲା ପରେ ଓଡ଼ିଆ ଜାତିର କ୍ଷୟିଷ୍ଣୁମାନ ଓଜ, ତେଜ ଓ ସ୍ୱାଭିମାନ ପୁନଃ ପ୍ରତିଷ୍ଠିତ ହୋଇପାରିଥିଲା । (୨) ତେଣୁ, ତତ୍କାଳୀନ ଭାରତରେ ସାଂସ୍କୃତିକ ଅପକର୍ଷର ପ୍ରଖର ସ୍ରୋତ ପ୍ରବାହିତ ହେଉଥିଲେ ସୁଦ୍ଧା ଓଡ଼ିଶା ସୁବର୍ଣ୍ଣ ଯୁଗର ଆତ୍ମ ବିକିରଣ କରୁଥିଲା ବୋଲି କୁହାଯାଇପାରେ ।

ଏହା ସତ୍ତ୍ୱେ, ସେହି ସମୟରେ ଓଡ଼ିଆ ଭାଷା ଓ ସାହିତ୍ୟ ଅତ୍ୟନ୍ତ ଅଗୌରବ ଅବସ୍ଥାରେ ନିପତିତ ହୋଇଥିଲା । ବିଜ୍ଞ ଜନସାଧାରଣ କେବଳ ସଂସ୍କୃତ ଭାଷା ଓ ସାହିତ୍ୟ ପ୍ରତି ଅନୁରାଗୀ ଥିଲେ । ପ୍ରାକୃତ ଭାଷା ମୌଖିକ ଭାବର ଆଦାନପ୍ରଦାନ ନିମନ୍ତେ ବ୍ୟବହୃତ ହେଉଥିଲେ ହେଁ ସଂସ୍କୃତ ହିଁ ତତ୍କାଳୀନ ଓଡ଼ିଶାରେ ଏକମାତ୍ର ଲିଖିତ ଭାଷାରୂପେ ସ୍ୱୀକୃତି ଲାଭ କରିଥିଲା । (୩) ଏହା ବ୍ୟତୀତ, ସେତେବେଳକୁ

(୨) (କ) ପଟ୍ଟନାୟକ, ପଠାଣୀ : ସାରଳା ସାହିତ୍ୟର କାଳ ଓ କଳା (ପ୍ରବନ୍ଧ) ସାରଳା ସାହିତ୍ୟ ସମୀକ୍ଷା (ସାରଳା ସାହିତ୍ୟ ସଂସଦ, କଟକ ୧୯୮୩) ପୃ. ୪-୫

(ଖ) **Ghosh, Sunit : Orissa in Turmoil (Bookland International, Bhubaneswar, 1979) P. 3.**

(୩) ରଥ, ମୃତ୍ୟୁଞ୍ଜୟ : ଶାରଳା ଚରିତ ( ମୁକୁର ପ୍ରେସ, କଟକ, ୧୯୧୧ ) ପୃ: ୧୬-୧୭

ଭାରତୀୟ ଆର୍ଯ୍ୟ ସମାଜକୁ କବଳିତ କରିଥିବା 'ସହଜିଆ ଧର୍ମ', 'ବୀରଶୈବ ଲିଙ୍ଗାୟତ' ଉପାସନା ଓ ତାନ୍ତ୍ରିକତା ବିଜଡ଼ିତ ଶାକ୍ତତନ୍ତ୍ର ଓଡ଼ିଆ ଜନଜୀବନକୁ ମଧ୍ୟ ପ୍ରଭାବିତ କରିଥିଲା । ତାର ପରିଣାମରେ ଶିବଙ୍କ ସହିତ ଶକ୍ତିଙ୍କ ସଂଯୋଗ ସ୍ଥାପନ ଦ୍ୱାରା ଶୈବାୟନ ସାହିତ୍ୟରେ ଶିବ ମହାଦେବଙ୍କୁ ବିବର୍ଜିତ ହୋଇ ଯୌନପ୍ରୟୋଗ ବିଡ଼ମ୍ବିତ ହୋଇ ପଡ଼ିଥିଲେ ଏବଂ ସମାଜ ପରକୀୟା ପ୍ରୀତି ଓ ଉଲଙ୍ଗ କାମନାର ବୀଭତ୍ସ ପରିତୃପ୍ତି ମଧ୍ୟରେ ଦୈନନ୍ଦିକ ନିର୍ମଳତା ତଥା ଆଧ୍ୟାତ୍ମିକ ଆଦର୍ଶ ମାର୍ଗର ବିପର୍ଯ୍ୟୟାଭିମୁଖୀ ହୋଇ ପଡ଼ିଥିଲା । ସେତେବେଳେ ନାରଦ ପଞ୍ଚରାତ୍ର, ମହାନିର୍ବାଣ ତନ୍ତ୍ର, ଲିଙ୍ଗାର୍ଚ୍ଚନ ତନ୍ତ୍ର, ରୁଦ୍ରଯାମଳ ତନ୍ତ୍ର ଓ ଶୈବ ସିଦ୍ଧାନ୍ତସାର ପ୍ରଭୃତି ଗ୍ରନ୍ଥ ଥିଲା ତତ୍କାଳୀନ ଧର୍ମାଗ୍ରହୀର ଅଭିଜାତ୍ୟପୂର୍ଣ୍ଣ ମତଶାସ୍ତ୍ର । ଏକ ପକ୍ଷରେ, ସଂସ୍କୃତ ସଂସ୍କୃତି ସମନ୍ୱିତ ଶୈବତାନ୍ତ୍ରିକ ସାହିତ୍ୟ 'ରୁଦ୍ର ସୁଧାନିଧି' ଏବଂ ଅପର ପକ୍ଷରେ, ଜୀବନ ଓ ସମାଜଧର୍ମୀ ରଚନା 'କଳସା ଚଉତିଶା'ର କାବ୍ୟିକ ନିର୍ଯ୍ୟାସ ତତ୍କାଳୀନ ଓଡ଼ିଆ ଜନସମାଜକୁ ପ୍ରଭାବିତ କରିଥିଲା । (୪)

ପୁନଶ୍ଚ, ପାରଂପରିକ ପ୍ରାକୃତିକ ନିୟମ ଓ ଆଧ୍ୟାତ୍ମିକ ଶୃଙ୍ଖଳାରେ ଶୈଥିଲ୍ୟ ଭାବୋଦ୍ରେକପୂର୍ବକ ଉଚ୍ଛୃଙ୍ଖଳ ଯୌନପ୍ରବୃତ୍ତିକୁ ଉଦାତ୍ତ କରିବା ନିମିତ୍ତ ଉଦ୍ଦିଷ୍ଟ ତନ୍ତ୍ରଯାନ ସହଜିଆ ମତବାଦୀଙ୍କ ପ୍ରଚାରରେ ଯୌନଯୌଗିକ କ୍ରୀଡ଼ା ବିଳାସର ରୂପ ନେଇ ଏକ ସହଜାନନ୍ଦ ସାଧନାର ମାର୍ଗ ଉନ୍ମୋଚନ କରିଥିଲା । ଏମାନଙ୍କର ପିଣ୍ଡ-ବ୍ରହ୍ମାଣ୍ଡ ଦର୍ଶନତତ୍ତ୍ୱ ଅନୁସାରୀ ମନୁଷ୍ୟ କେବଳ ରଜବୀର୍ଯ୍ୟର ସମ୍ମିଶ୍ରଣରେ ଉଦ୍ଭୂତ ଏକ ତୁଚ୍ଛ କ୍ଷୟଶୀଳ ମାଂସପିଣ୍ଡ ନୁହେଁ, ତାହା ବିରାଟ ଭୂମାର ଏକ ଅବିନଶ୍ୱର ସାଙ୍କେତିକ ପ୍ରତୀକ । ଏହି ପିଣ୍ଡରେ ଭ୍ରୂଲତାଠାରେ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀର ଯେଉଁ ସଂଯୋଗ ବିନ୍ଦୁ ରହିଛି, ତାହାହିଁ ଗଙ୍ଗା, ଯମୁନା ଓ ସରସ୍ୱତୀର ତ୍ରିବେଣୀ ସଙ୍ଗମ ସ୍ଥଳ ତଥା ଶ୍ରେଷ୍ଠ ତୀର୍ଥକ୍ଷେତ୍ର । (୫) ତେଣୁ ପାପପୁଣ୍ୟ, ପ୍ରବୃତ୍ତି ନିବୃତ୍ତି ପୁନର୍ଜନ୍ମ ମୋକ୍ଷାଦି ପାରଂପରିକ ଧାରଣା ଉପରେ କୁଠାରାଘାତ

---

(୪) ମହାନ୍ତି, ସୁରେନ୍ଦ୍ର : ଓଡ଼ିଆ ସାହିତ୍ୟର ଆଦିପର୍ବ—ପୃ. ୭୨ ୭୪

(୫) 'ତ୍ରିବେଣୀ ଘାଟ ଏ ଭ୍ରୂଲତା' । ( ବେଦାନ୍ତସାର ଗୁପ୍ତ ଗୀତା )
'ଇଙ୍ଗଳା ଭଗୀରଥୀ ନାମ, ପିଙ୍ଗଳା ଯମୁନା ଉପମ ।'
( ଅମରକୋଷ ଗୀତା )

'ବ୍ରହ୍ମାଣ୍ଡ ଯେତେ ବିଧିମତେ, ପିଣ୍ଡରେ ଅଛନ୍ତି ସମସ୍ତେ ।
ପିଣ୍ଡ ବ୍ରହ୍ମାଣ୍ଡ ଏକମତ, ତୋ ଆଗେ କହିଦେଲି ତତ୍ତ୍ୱ ।'
( ବିରାଟ ଗୀତା )

କରାଯାଇ କେବଳ ମନୁଷ୍ୟର ଦୈହିକ ତଥା ଯୌନ ଯୌଗିକ ସାଧନା ଉପରେ ଗୁରୁତ୍ୱ ଆରୋପିତ ହୋଇଥିଲା । (୬)

ଏହି ପରିପ୍ରେକ୍ଷୀରେ, ଓଡ଼ିଶା ମାଟିର ଖାଣ୍ଟି ସନ୍ତାନ କପିଳେନ୍ଦ୍ରଦେବ ଯେତେବେଳେ ଉତ୍କଳର ରାଜସିଂହାସନ ଆରୋହଣ କଲେ, ସେତେବେଳେ ସ୍ୱାଭିମାନୀ ଓଡ଼ିଆ ଜାତି ଏକ ନୂତନ ଆତ୍ମସମ୍ମାନ ଓ ଜାତୀୟ ଗୌରବ ପ୍ରତିଷ୍ଠାର ଆକାଂକ୍ଷା ପୋଷଣପୂର୍ବକ ବଳିଷ୍ଠ ଆଶା ଓ ଆତ୍ମବିଶ୍ୱାସର ପରିଚୟ ପ୍ରଦାନ କରିଥିଲା । ସୁବିଶାଳ ସାମ୍ରାଜ୍ୟ ବିସ୍ତାରକ୍ଷମ କପିଳେନ୍ଦ୍ରଙ୍କ ଶାସନକାଳୀନ ସଂପ୍ରସାରିତ ଭୌଗୋଳିକ ପରିବଳୟ ସେହି ନବ-ଜାଗରଣ ସ୍ପୃହା ଓ ପ୍ରକ୍ରିୟାକୁ ଅଧିକ ପ୍ରେରଣା ଓ ଉଦ୍ଦୀପନା ଯୋଗାଇଥିଲା । (୭) ଏହା ଫଳରେ ସାଧାରଣ ଗ୍ରାମ୍ୟ କୃଷକ ପରିବାରର ସନ୍ତାନ ସାରଳା ମଧ୍ୟ ସମୟର ଆହ୍ୱାନରେ ସାହିତ୍ୟ ଜଗତରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ରାଜନୀତିର କର୍ଣ୍ଣଧାର ସାଜି ପାରିଥିଲେ । ତାଙ୍କର ମହାଭାରତ ଯେ ମୂଳ ମହାଭାରତର ଆକ୍ଷରିକ ଅନୁବାଦ ନୁହେଁ, ଏହା ସର୍ବବାଦୀସମ୍ମତ । ମୂଳ ମହାଭାରତର ଅସ୍ଥିକଙ୍କାଳ ଉପରେ ଏକ ଅଭିନବ ସୃଷ୍ଟି ସର୍ଜନାର ପୃଷ୍ଠଭୂମିରେ ଯେଉଁ କେତେକ କାରଣ ନିହିତ ଥିବା ସମ୍ଭବପର, ସେଥିରୁ ସାରଳାଦାସଙ୍କ ବଳିଷ୍ଠ ଜାତୀୟ ମନୋବୃତ୍ତିକୁ ଅନ୍ୟତମ କାରଣ ରୂପେ ଗ୍ରହଣ କରାଯାଇପାରେ ।

## ଜାତୀୟତାବାଦ

ଗଙ୍ଗବଂଶର ଶେଷ ପର୍ଯ୍ୟାୟରେ ଶାସନତାନ୍ତ୍ରିକ ଶିଥିଳତାର ପ୍ରତିକ୍ରିୟା ସ୍ୱରୂପ ଓଡ଼ିଶାର ଜନଜୀବନରେ ଯେଉଁ ଅବସନ୍ନତା ଦେଖାଦେଇଥିଲା, ତାର ନିରାକରଣ ନିମିତ୍ତ କପିଳେନ୍ଦ୍ରଙ୍କ ରାଜନୈତିକ ପଦକ୍ଷେପ ସହିତ ସାରଳା ଦାସ ଏକ ସାହିତ୍ୟିକ ପ୍ରୟାସ ଆରମ୍ଭ କରିଥିଲେ ବୋଲି କହିବା ଅଯୌକ୍ତିକ ହେବ ନାହିଁ । ଗୋଟିଏ ଅବସାଦଗ୍ରସ୍ତ ଜାତିକୁ ଏକ ନବୀନ ଉନ୍ମାଦନାରେ ପ୍ରଣୋଦିତ କରିବା ପାଇଁ ଜଣେ ଶକ୍ତିଶାଳୀ ଶାସକର ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ, ସେହିପରି ଜଣେ ବଳିଷ୍ଠ ସାହିତ୍ୟିକର ଅବଦାନ ମଧ୍ୟ ଅତି ମହତ୍ତ୍ୱପୂର୍ଣ୍ଣ । ଜାତିପ୍ରାଣରେ ଜାତୀୟ ଉନ୍ମାଦନା

---

(୬) ମହାନ୍ତି : ଓଡ଼ିଆ ସାହିତ୍ୟର ଆଦିପର୍ବ—ପୃ ୫୩-୫୪

(୭) Panigrahy : History of Orissa—P. 289

ସୃଷ୍ଟି ନହେଲେ, ତାହା ଉନ୍ନତି ପଥରେ ଅଗ୍ରସର ହୋଇପାରେ ନାହିଁ । ଜାତୀୟ ଚେତନାର ଏହି ଉତ୍ତରଣ ହିଁ ରାଜନୀତି ବିଜ୍ଞାନରେ ଜାତୀୟତାବାଦ ରୂପେ ଅଭିହିତ । ଏକ ନିର୍ଦ୍ଦିଷ୍ଟ ପରିସୀମା ମଧ୍ୟରେ ବସବାସ କରୁଥିବା, ଏକ ସ୍ୱତନ୍ତ୍ର ଭାଷା ମାଧ୍ୟମରେ ଭାବ ବିନିମୟ କରୁଥିବା, ଏକ ବିଶେଷ ସାମାଜିକ ଓ ସାଂସ୍କୃତିକ ବନ୍ଧନରେ ଆବଦ୍ଧ ଥିବା ତଥା ଏକ ବିଶିଷ୍ଟ ଧାର୍ମିକ ଚେତନା କିମ୍ବା ଉପାସ୍ୟ ଦେବତାକୁ ସ୍ୱୀକାର କରୁଥିବା ଗୋଟିଏ ଜାତିର ଅଭୂତପୂର୍ବ ଜାଗରଣହିଁ ଜାତୀୟତା । ଏହି ଜାତୀୟତାହିଁ ବିଭିନ୍ନ କାଳରେ ବିଭିନ୍ନ ସ୍ଥାନରେ ରାଷ୍ଟ୍ର-ବିବର୍ତ୍ତନର ମୂଳହେତୁ ତଥା ରାଜନୀତି ତତ୍ତ୍ୱର ଏକ ମୁଖ୍ୟ ଉପାଦାନ । (୮) ଓଡ଼ିଆ ଜାତିକୁ ଏହିପରି ଏକ ଯୁଗୋପଯୋଗୀ ଜାତୀୟ ମନ୍ତ୍ରରେ ଅଭିମନ୍ତ୍ରିତ କରିବା ସାରଳା ମହାଭାରତର ଅନ୍ୟତମ ଉଦ୍ଦେଶ୍ୟ ।

ଉତ୍କଳ ସମ୍ରାଟ କପିଳେନ୍ଦ୍ର ଦେବ ନିଜକୁ ନୀଳାଚଳବାସୀ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଜ୍ଞାବହ ସେବକ ରୂପେ ରାଜ୍ୟ ପରେ ରାଜ୍ୟ ଜୟକରି ଓଡ଼ିଆ ଜାତିର ବୈଜୟନ୍ତୀ ପତାକା ଉତ୍ତୋଳନ କରିଥିବା ବେଳେ ସାରଳା ଦାସ ତାଙ୍କର ମହାଭାରତ ମାଧ୍ୟମରେ ଜନ୍ମମାଟିର ଦେବଦେବୀ, ତୀର୍ଥମନ୍ଦିର, ନଦନଦୀ, ବନପର୍ବତ, ହ୍ରଦ ସରୋବରାଦିର ଅକୁଣ୍ଠ ଜୟଗାନ କରି ପ୍ରଗାଢ଼ ସ୍ୱଦେଶ ପ୍ରୀତି ତଥା ଚରମ ଜାତୀୟତାବାଦର ପରିଚୟ ଦେଇଛନ୍ତି । ଶ୍ରୀକ୍ଷେତ୍ର ତଥା ପୁରୁଷୋତ୍ତମ ଧାମର ଉତ୍କର୍ଷ ପ୍ରତିପାଦନ କରିବାକୁ ଯାଇ ସେ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କର ବୌଦ୍ଧ ଅବତାର ଭାବେ କଳ୍ପନା କରିବା ସଙ୍ଗେ ସଙ୍ଗେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତ୍ରିମୂର୍ତ୍ତିଙ୍କୁ ଯଥାକ୍ରମେ ବିଷ୍ଣୁ, ଶିବ ଓ ବ୍ରହ୍ମାଙ୍କର ଅବତାର ରୂପେ ଗ୍ରହଣ କରିଛନ୍ତି । (୯) ସାରଳାଙ୍କ ଦୃଷ୍ଟିରେ ଓଡ଼ିଶାର କପିଳାସହିଁ ହରପାର୍ବତୀଙ୍କ ବିହାରସ୍ଥଳୀ କୈଳାସ (୧୦)

---

(୮) Asirvatham, Dr. Eddy: Political Theory (The Upper India Publishing House Pvt. Ltd., Lucknow, 11th Ed, 1980) pp. 463-473.

(୯) ସା: ମ: ଭା: (ରା) ସଭା—ପୃ ୮୭, ବନ—ପୃ-୨୧୦, ମୂଷଳୀ—ପୃ ୩୮ ଓ କାର୍ତ୍ତିଣିକା ପୃ: ୨ ଓ ୩ ଏବଂ
ଦାସ, ସୂର୍ଯ୍ୟନାରାୟଣ : ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଚେତନା (ପ୍ରବନ୍ଧ)
ମହାପାତ୍ର, ଲକ୍ଷ୍ମୀନାରାୟଣ (ସ) ଦୈନିକ ଆଶା (ଷଷ୍ଠ ବାର୍ଷିକ ସାହିତ୍ୟ ସଂଖ୍ୟା, ୧୯୮୮) ପୃ: ୯୧-୯୨

(୧୦) ସା: ମ. ଭା: (ରା) ମଧ୍ୟ-ପୃ. ୨୩୪-୨୩୫ ଓ ସ୍ୱର୍ଗାରୋହଣ ପୃ. ୧୧

ଏବଂ ତାଙ୍କର ପରିକଳ୍ପିତ ଗଣେଶ ହେଉଛନ୍ତି 'ଶଙ୍ଖ ଚକ୍ର ପଦ୍ମ ଧର' ଶ୍ରୀ ଦଧିବାମନ । (୧୧) ଶାପଗ୍ରସ୍ତ ଶାମ୍ବଙ୍କୁ କୁଷ୍ଠରୋଗରୁ ମୁକ୍ତ ପାଇବା ପାଇଁ ସୁଦୂର ଦ୍ୱାରକାରୁ କୋଣାର୍କ ନିକଟବର୍ତ୍ତୀ ଚନ୍ଦ୍ରଭାଗା ଅର୍କକ୍ଷେତ୍ରକୁ ଆସି ବାରବର୍ଷ ତପସ୍ୟାଚରଣ କରିବାକୁ ପଡିଛି । (୧୨) ନୀଳାଚଳଧାମର ମହୋଦଧି ତଟବର୍ତ୍ତୀ ଅପୋଡ଼ା ଭୂମିରେ ହିଁ ଭୀଷ୍ମଙ୍କର ଶବସତ୍କାର କରାଯାଇଛି । (୧୩) ଏହି ରାଜ୍ୟର ପବିତ୍ର ବୈତରଣୀ ତୀର୍ଥରେ ସ୍ନାନକରି ସ୍ୱୟଂ ତ୍ରିଲୋଚନ ଶିବ ଗୋହତ୍ୟା ପାତକରୁ ମୁକ୍ତିଲାଭ କରିଛନ୍ତି (୧୪) ଏବଂ ମହାଦ୍ରି ଶିଖରରେ ବୈଦ୍ୟନାଥ ସ୍ୱରୂପରେ ଆବିର୍ଭୂତ ହୋଇଛନ୍ତି । (୧୫) ପ୍ରାଚୀ ନଦୀତଟରେ ଅଷ୍ଟଶମ୍ଭୁ (ଗୋକୁଳେଶ୍ୱର, ପିଙ୍ଗଳେଶ୍ୱର, ହରେଶ୍ୱର, ରାମେଶ୍ୱର, ମହେଶ୍ୱର, ସ୍ୱପ୍ନେଶ୍ୱର, ରୁଦ୍ରେଶ୍ୱର ଓ ନାଟକେଶ୍ୱର) ଦର୍ଶନଦ୍ୱାରା କୋଟିପୁଷ୍କର ତୀର୍ଥଫଳ ପ୍ରାପ୍ତିର ପୁଣ୍ୟ ସନ୍ଦେଶ ପ୍ରଦାନ କରିଛନ୍ତି । (୧୬)

ଏହା ବ୍ୟତୀତ, ସାରଳା ସ୍ୱର୍ଗାରୋହଣ ପର୍ବରେ ଚନ୍ଦ୍ରୋତ୍ପଳା ତଟବର୍ତ୍ତୀ ଯଜନନଗରୀ ନିକଟସ୍ଥ ଧର୍ମପୁର (ଯାଜପୁର ନିକଟବର୍ତ୍ତୀ ଧର୍ମଶାଳା) ନିବାସୀ ବୈଶ୍ୟ ସରସାହୁଙ୍କର କନ୍ୟା ସୁହାଣୀ ସହିତ ପରିଣତ ବୟସ୍କ ଯୁଧିଷ୍ଠିରଙ୍କ ପରିଣୟ ସମ୍ପାଦନ ପୂର୍ବକ ସେମାନଙ୍କୁ ପ୍ରାଚୀ ତୀର୍ଥ, ବିନ୍ଦୁ ସରୋବର, ଏକାମ୍ରକ୍ଷେତ୍ର ଭୁବନେଶ୍ୱର ଓ ମଣିକର୍ଣ୍ଣିକା ତୀର୍ଥ ଭ୍ରମଣ କରାଇ ଶ୍ରୀ ବିଶ୍ୱେଶ୍ୱର ଓ ଲିଙ୍ଗରାଜଙ୍କ ଦର୍ଶନ କରାଇଛନ୍ତି । (୧୭) ବିରାଟ ରାଜରାଣୀ ସୁଦେଷ୍ଣାର ଜନ୍ମଜନ୍ମାନ୍ତର ବିବରଣୀ ପ୍ରଦାନ ଛଳରେ ସାରଳା ତାଙ୍କୁ ସତ୍ୟଯୁଗରେ ବିଶ୍ୱାମିତ୍ରଙ୍କର ଅମୋଘ ବୀର୍ଯ୍ୟ ସଂଜାତା ମେନକା ନନ୍ଦନୀ ଶକୁନ୍ତଳା, ତ୍ରେତୟା ଯୁଗରେ କମଳ ନୃପତିଙ୍କ ପତ୍ନୀ ଶୋଭାବତୀ ଏବଂ

---

(୧୧) ସା: ମା: ଭା: (ରା) ଆଦ୍ୟ-ପୃ ୨, ବନ-ପୃ. ୩୨ ଓ ଭୀଷ୍ମ-ପୃ ୨

(୧୨) ସା' ମ: ଭା: (ରା) ଶାନ୍ତି-ପୃ ୨୦-୨୨

(୧୩) ଏକନ- ପୃ· ୧୩.

(୧୪) ସା: ମ: ଭା: (ରା) ବନ- ପୃ. ୧୭୬

(୧୫) ସା: ମ: ଭା: (ରା) ଆଦ୍ୟ-ପୃ ୧୯୪

(୧୬) ସା: ମ: ଭା: (ରା) ମୁଷଳୀ-ପୃ. ୩୭

(୧୭) ସା: ମ: ଭା (ରା) ସ୍ୱର୍ଗାରୋହଣ ପୃ ୧୧-୧୭

ପରବର୍ତ୍ତୀ କଳିଯୁଗରେ ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀ ଗୁଣ୍ଡିଚା ମହାରାଣୀ ରୂପରେ ପରିଚିତ କରାଇ ପୁଣି ଧାମର ଶ୍ରୀଗୁଣ୍ଡିଚା ଯାତ୍ରାର ପ୍ରସିଦ୍ଧି ପ୍ରକୀର୍ତ୍ତନ କରିଛନ୍ତି । (୧୮)

କେବଳ ସେତିକି ନୁହେଁ, ପଣ୍ଡୁଙ୍କର ଅଭିଷେକ ବର୍ଣ୍ଣନା ଅନୁଯାୟୀ ସାରଳା ତାଙ୍କୁ ନେଇ ପୁଷ୍କର ତୀର୍ଥକଳ୍ପ ଶ୍ରୀକ୍ଷେତ୍ରସ୍ଥ କଳ୍ପବଟ ମୂଳେ ଦଣ୍ଡାୟମାନ କରାଇଛନ୍ତି ଏବଂ ଶାପଗ୍ରସ୍ତ ଲୌହ ମୁଷଳକୁ ଘର୍ଷଣ ଦ୍ୱାରା ନିଃଶେଷ କରିବା ପାଇଁ ଶ୍ରୀକୃଷ୍ଣଙ୍କ ମୁଖରେ ଭୀମଙ୍କୁ କ୍ଷୀରସିନ୍ଧୁ ତୀରବର୍ତ୍ତୀ କଳ୍ପବଟ ଶୋଭିତ ନୀଳଗିରି ଉପରକୁ ଯିବା ଲାଗି ଉପଦେଶ ଦେଇଛନ୍ତି । (୧୯) ଅମ୍ବା ଭୀଷ୍ମଙ୍କ ଉପରେ ନିଜର ହତାଦୋଷ ଆରୋପ ପୂର୍ବକ ତ୍ରିବେଣୀ ଘାଟରେ ଅନଳ ଜାଳି ଆତ୍ମାହୁତି ଦେବା ପୂର୍ବରୁ ଉତ୍କଳୀୟ ଦେବତା ମାଧବଙ୍କୁହିଁ ସ୍ମରଣ କରିଛନ୍ତି । (୨୦) ଯୁଧିଷ୍ଠିର ବିରାଟ ନଗରୀ ଭିତରେ ପ୍ରବେଶ କାଳରେ ବାସ୍ତୁବଟ ତଳେ ଦଣ୍ଡାୟମାନ ରହି ଦଧିବାମନଙ୍କୁ ସ୍ମରଣ କରି ଭକ୍ତି ଅନୁଭବ କରିଛନ୍ତି । (୨୧) ଶମୀବୃକ୍ଷତଳେ ଯୁଧିଷ୍ଠିରଙ୍କର ଅଭିଷେକ କାଳରେ ସଂଗୃହୀତ ଗୋଟିଏ ତୀର୍ଥର ଶୁଦ୍ଧପ୍ରକୃତିକ ଉଦକ ମଧ୍ୟରେ ବୈତରଣୀ, କେଦାରଗୌରୀ, ପ୍ରାଚୀ, ଚନ୍ଦ୍ରଭାଗା ଓ ସୁବର୍ଣ୍ଣରେଖାର ଜଳ ସନ୍ନିହିତ ହୋଇଅଛି । (୨୨)

ସର୍ବୋପରି, ସାରଳା ଓଡ଼ିଶାକୁ ଭାରତ ବର୍ଷର ଏକ ବିଶିଷ୍ଟ ଅଙ୍ଗ ରୂପେ ଗ୍ରହଣ କରି ରାଜ୍ୟମାନଙ୍କ ମଧ୍ୟରେ ଆଭ୍ୟନ୍ତରୀଣ ସଂପର୍କ ଓ ସମ୍ପର୍କର ଚିତ୍ର ଅଙ୍କନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ନଦନଦୀ, ତୀର୍ଥକ୍ଷେତ୍ର, ପର୍ବତ ଶୃଙ୍ଗର ସମାହାରରେ ଅଖଣ୍ଡ ଆର୍ଯ୍ୟାବର୍ତ୍ତର କଳ୍ପନା କରି ଏକ ସହିତସମ୍ପନ୍ନ ମହାଭାରତୀୟ ରାଷ୍ଟ୍ରର ସୂଚନା ଦେଇଛନ୍ତି । ଏ କ୍ଷେତ୍ରରେ ସେ କେବଳ ଅଧୁନାତନ ଉଦାର ଜାତୀୟବାଦୀ ମନୋଭାବର ସୂଚନା ଦେଇନାହାନ୍ତି, ଆଧୁନିକ ଯୁଗର ଜାତୀୟତାବାଦୀ କବି

---

(୧୮) ସା:ମ:ଭା: (ସ) ଉଦ୍ୟୋଗ - ପୃ. ୧୫

(୧୯) — ଏଜନ — ଆଦ୍ୟ - ପୃ. ୪୪ ଏବଂ ସା:ମ:ଭା (ସା) ଆଦ୍ୟ - ପୃ. ୧୩୩
ଓ ସା : ମ : ଭା : (ସ) ଆଶ୍ରମିକ - ପୃ. ୪୦

(୨୦) ସା : ମ : ଭା : (ସ) — ଆଦ୍ୟ - ପୃ ୨୩-୨୪

(୨୧) — ଏଜନ — ବିରାଟ - ପୃ. ୫

(୨୨) — ଏଜନ — ବିରାଟ - ପୃ. ୧୬୩-୧୬୪

ପଣ୍ଡିତ ଗୋପବନ୍ଧୁଙ୍କ ପର (୨୩) ନିଜର ଗ୍ରନ୍ଥାରମ୍ଭରେହିଁ ଦେବୀ ଶାରଳାଙ୍କ ବନ୍ଦନା ଏମେ ଉଲ୍ଲେଖ କରିଛନ୍ତି—

ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ଼ରାଷ୍ଟ୍ର ମଣ୍ଡଳରେ
ଉତ୍ପଳେଶ୍ୱର ଲିଙ୍ଗ ଚନ୍ଦ୍ରଭାଗା ଦକ୍ଷିଣ କୂଳରେ
ଜମ୍ବୁନ୍ଦାର ନିଜ ଭୂମି ଯାଜନଗ୍ର ନିକଟେ ଦକ୍ଷିଣ ବାରାଣସୀ
କୁଶସ୍ଥଳୀଭୂମି ଦ୍ୱାରକା ଯେ କ୍ଷେତ୍ର ପୂର୍ଣ୍ଣ୍ୟବାସୀ
ଶ୍ରୀ ପରମେଶ୍ୱର ମହାଲିଙ୍ଗ ମହୋଦଧିର ଉତ୍ତର ତଟେ
ଶ୍ରୀ ନୀଳସୁନ୍ଦର ପର୍ବତ ତଳେ କଳ୍ପବଟେ । (୨୪)

ସାରଳା ଦାସ ନିଜର ଜାତୀୟ ମନୋଭାବକୁ ଅଧିକ ଉଜ୍ଜୀବିତ କରିବାକୁ ଆଜି ସମଗ୍ର ଭାରତବର୍ଷ (ବା ଭରତଖଣ୍ଡ ମେଦିନୀ) ଅତୀତ କାଳରେ ଉତ୍କଳୀୟ ରାଜାଙ୍କର ପରାକ୍ରମ ଓ ପ୍ରତିଷ୍ଠାରି ପରିଣାମ ରୂପେ ଚିତ୍ରଣ କରିଛନ୍ତି । ଯଥା—

---

(୨୩)
ଜଗତ ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ
ଥିଲେ ଯହିଁ ତହିଁ ଭାରତ ବକ୍ଷରେ
ମଣିବ ମୁଁ ଅଛି ଆପଣା କକ୍ଷରେ
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟ ଧାମ
ସକଳ ସଲିଳ ପଣ୍ୟତୀର୍ଥ ଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।

X          X

ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ
ସାମ୍ୟ ସ୍ୱାଧୀନତା ପ୍ରେମ ସମୁଦୟ
ନୀଳାଚଳ ଶୁଦ୍ଧ ଭାରତ ହୃଦୟ
ଥିଲେ ଯହିଁ ତହିଁ ଭାରତ ଶଯ୍ୟାରେ
ମଣିବ ମୁଁ ଅଛି ନୀଳଚକ୍ର ତଳେ ।

(ବନ୍ଦୀର ଆତ୍ମକଥା)

(୨୪) ସା:ମ.ଭା: (ସା) ଆଦ୍ୟ - ପୃ. ୧୦

ଆଦ୍ୟରେ ପୃଥିବୀ ନବ ଦ୍ୱୀପ ରାଜା କଲେ
ନବ ଖଣ୍ଡ ମେଦିନୀ ନବ ପୁତ୍ରେ ବାଣ୍ଟି ଦେଲେ
ତାହାର ଜ୍ୟେଷ୍ଠ ପୁତ୍ର ନାମ ପୁରୁ ମହୀପତି
ଓଡ଼ୁସ୍ଥାଣୀ ଭାର୍ଯ୍ୟାର ସେ ଅଟଇ ସନ୍ତତି
ମାତାଙ୍କର ନାମ ଯେ ଓଡ଼ରାଷ୍ଟ୍ର ମଣ୍ଡଳେ
ତହୁଁ ସେ ଓଡ଼ୁରାଷ୍ଟ୍ର ଭୂଅ ଖଣ୍ଡେ ସର୍ବକାଳେ
ପୁରୁର ନନ୍ଦନ ଯେ ପ୍ରବୀର ନୃପତି
ବୀର ରାଷ୍ଟ୍ର କରଣ ଭୁଆଇଲେ ରାଷ୍ଟ୍ରପତି ।

× ×

ଦୁଷ୍ମନ୍ତର ନନ୍ଦନ ଯେ ଅଟଇ ବୀର ଭୂଅ
ସମୁଦ୍ର ଘୁଞ୍ଚାଇ ଦେଲା ଯୋଜନ ସାତ ଶତ
ଶତ ଶତ ଯୋଜନେକ ଯେ ଖଣ୍ଡେ ଖଣ୍ଡେ କଲା
ତହୁଁ ସେ ଭୂଅ ଖଣ୍ଡ ମେଦିନୀ ବୋଲାଇଲା । (୨୫)

ସାରଳା ମହାଭାରତରେ ଏତାଦୃଶ ଉଦ୍ଦୀପ୍ତ ଜାତୀୟତାବାଦର ପ୍ରଚାର କରାଯାଇଥିବା ଯୋଗୁଁ ସାରଳାଙ୍କୁ ଯଥାର୍ଥରେ ଜାତୀୟତାବାଦର ଆଦ୍ୟ ଉଦ୍‌ଗାତା ରୂପେ ଗ୍ରହଣ କରାଯାଇପାରେ ।

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ପ୍ରାଚୀନ କାଳରୁ ଅନୁସୃତ ବଂଶାନୁକ୍ରମିକ ରାଜତାନ୍ତ୍ରିକ ଶାସନ ପରମ୍ପରାର ମହନୀୟତା ପ୍ରତି ସାରଳା ପୂର୍ଣ୍ଣ ସଚେତନ ଥିଲେ । ଏଥିପାଇଁ ତାଙ୍କ ମହାଭାରତରେ ସେ କେବଳ ବିଭିନ୍ନ ରାଜବଂଶାବଳୀର ସୂଚନା ଦେଇ କ୍ଷାନ୍ତ ହୋଇନାହାନ୍ତି, ସଂପୃକ୍ତ ରାଜବଂଶର ମହତ୍ତ୍ୱ ପ୍ରଖ୍ୟାପନରେ ମଧ୍ୟ ଅଗ୍ରଣୀ ହୋଇ ଉଠିଛନ୍ତି । ବଂଶରକ୍ଷା ଯେହେତୁ ଭାରତୀୟ ପରମ୍ପରାର ଏକ ପବିତ୍ର ଆଦର୍ଶ, ସାରଳା ତାହା ପ୍ରତି ସ୍ୱୀକୃତି ଦେବାକୁ ଯାଇ ଶାନ୍ତନୁ, ଭୀଷ୍ମ, ଧୃତରାଷ୍ଟ୍ର, ପାଣ୍ଡୁ, ସତ୍ୟବତୀ, ଅମ୍ବା, କୁନ୍ତୀ, ମାଦ୍ରୀ ଓ ଗାନ୍ଧାରୀଙ୍କ ଠାରେ ପୁତ୍ର ଲାଭ ବାସନାକୁ ଅତି ବଳବତ୍ତର କରି ପରିବେଷଣ କରିଛନ୍ତି । ଆଦ୍ୟ ପର୍ବର ଆରମ୍ଭରୁ (ମଙ୍ଗଳାଚରଣ ବ୍ୟତିରେକ) ସହଦେବଙ୍କ ଜନ୍ମ ପର୍ଯ୍ୟନ୍ତ କେତୋଟି

---

(୨୫) ସା : ମ : ଭ : (ସା)—ଆଦ୍ୟ ପୃ. ୧୧ ଏବଂ
ସା : ମ : ଭ : (ରା)—ଆଦ୍ୟ ପୃ. ୫

ଆଖ୍ୟାନରେ ବଂଶର ପାରମ୍ପରିକ ପ୍ରତିଷ୍ଠା ତଥା ବଂଶରକ୍ଷାଜନିତ ଆକାଂକ୍ଷାର ଯେଉଁ ଆବେଗମୟ ଚିତ୍ର ପ୍ରଦତ୍ତ ହୋଇଛି, ଏଠାରେ ତାର ସଂକ୍ଷିପ୍ତ ସୂଚନା ପ୍ରଦାନ କରାନଗଲେ କବିଙ୍କର ମନୋଭାବ ତଥା ସମସାମୟିକ ପାରମ୍ପରିକ ଚିନ୍ତାଧାରାର ପରିପ୍ରେକ୍ଷୀରେ ପୂର୍ଣ୍ଣତା ପ୍ରକାଶ ପାଇବା ସମ୍ଭବ ହେବ ନାହିଁ ।

## ବିଭିନ୍ନ ରାଜବଂଶର ଉତ୍ପତ୍ତି ଓ ପରମ୍ପରା

କବିଙ୍କର ବର୍ଣ୍ଣନା ଅନୁଯାୟୀ ପ୍ରାଥମିକ ଅବସ୍ଥାରେ ବିଶ୍ୱଥିଲା ଶୂନ୍ୟମୟ । ଶୂନ୍ୟରୁ ପବନ, ପବନରୁ ଶୂନ୍ୟଯୋଗପୁରୁଷ, ସେଥିରୁ ଗାୟତ୍ରୀ, ଗାୟତ୍ରୀରୁ ଗୁରୁ ମହାମନ୍ତ୍ର, ମହାମନ୍ତ୍ରରୁ ଚତୁର୍ବେଦ, ତତ୍ପରେ ସପ୍ତଛନ୍ଦ, ତା ପରେ କର୍ମ, ନିର୍ଗୁଣ ଓ ଅଣ୍ଡ ଉତ୍ପନ୍ନ ହେଲା । ସେହି ଅଣ୍ଡ ମଧ୍ୟରୁ ନିରଞ୍ଜନଙ୍କର ଆବିର୍ଭାବ ଏବଂ ତଦୀୟ ତେଜୋରାଶି ମଧ୍ୟରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର ଜନ୍ମ । ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ସମୁଦ୍ର ମନ୍ଥନରୁ ଚନ୍ଦ୍ରଙ୍କର ଉତ୍ପତ୍ତି । ସେ ଦକ୍ଷ ପ୍ରଜାପତିଙ୍କ ସତାଇଶି କନ୍ୟା (ଅଶ୍ୱିନୀ, ଦ୍ୱିଜା, କୃତ୍ତିକା, ରୋହିଣୀ, ରେବତୀ ଆଦି ନକ୍ଷତ୍ରଗଣ)ଙ୍କର ପାଣିଗ୍ରହଣ କରିଥିଲେ । କିନ୍ତୁ ତାଙ୍କ ଔରସରୁ ବୃହସ୍ପତି-ପତ୍ନୀ ତାରାଙ୍କ ଗର୍ଭରୁ ବୁଧ ଜନ୍ମଲାଭ କଲେ । ଏହି ବୁଧଙ୍କର ପୁତ୍ର ପୁରୁରବାହିଁ ନବଦ୍ୱୀପ ତଥା ସପ୍ତସାଗର ସମେତ ସଚରାଚର ପୃଥିବୀରେ ଆଧିପତ୍ୟ ବିସ୍ତାର କରି ଅମରାଧିନାଥ ଭାବେ ସୁଖ୍ୟାତି ଅର୍ଜନ କରିଥିଲେ । ଏହିଠାରୁହିଁ କୁରୁବଂଶର ସୂତ୍ରପାତ । ଚନ୍ଦ୍ର ବଂଶାବତଂସ ହେତୁ ଏହି ରାଜବଂଶ ସୋମବଂଶ ରୂପେ ପରିଚିତ ।

ପୁରୁରବାଙ୍କ ପୁତ୍ର ଆୟୁ ଓ ତାଙ୍କର ଉତ୍ତରାଧିକାରୀ ନହୁଷ (ନଘୋଷ) ଇନ୍ଦ୍ରପଦପ୍ରାପ୍ତ ହୋଇ ଅଖଣ୍ଡ ଯଶ ବିସ୍ତାର କରିଥିଲେ । ନହୁଷଙ୍କ ପୁତ୍ର ଯଯାତି ପ୍ରତାପଶାଳୀ ନରପତି ରୂପେ ଦେବକୁଳରୁ ଶୁକ୍ରଙ୍କ କନ୍ୟା ଦେବଯାନୀ, ଅସୁର କୁଳରୁ ଶର୍ମିଷ୍ଠା, ତକ୍ଷକ କନ୍ୟା ସନ୍ତୁଷ୍ଟା (ତୁଷ୍ଟା), ଯକ୍ଷକୁଳରୁ ଗୁଣବତୀ, ନିଷାଦ କୁଳରୁ ରେବତୀ, ଶବର ରାଜ ଅଜଙ୍କ ଦୁହିତା ମୃଗାକ୍ଷୀ, କୋଶଳର ବ୍ରାହ୍ମଣ ରାଜା ପ୍ରବାଳସେନଙ୍କ କନ୍ୟା କୃଷ୍ଣାବତୀ, ଗୋପାଳରାଜା ଚନ୍ଦ୍ରଧ୍ୱଜଙ୍କ କନ୍ୟା ଯୋଗବତୀ, ମାନବକୁଳର ବୃଷସେନ ରାଜାଙ୍କ କନ୍ୟା ବୃନ୍ଦାବତୀ ପ୍ରଭୃତି ନବକନ୍ୟାଙ୍କୁ ବିବାହ କରି ନବପୁତ୍ରଙ୍କର ଜନକ ହୋଇଥିଲେ ଏବଂ ସେହି ନବପୁତ୍ର ତାଙ୍କ ରାଜ୍ୟକୁ ନବଖଣ୍ଡରେ ବିଭକ୍ତ କରିଥିଲେ ।

ଯଯାତିଙ୍କର ଜ୍ୟେଷ୍ଠପୁତ୍ର ପ୍ରଦ୍ୟୋତଙ୍କ ଭାଗରେ ଭୂଅଖଣ୍ଡ ଓଡ଼ରାଷ୍ଟ୍ର (ଭାରତବର୍ଷ ଅନ୍ତର୍ଗତ ଓଡିଶା)ର ଶାସନ ଦାୟିତ୍ୱ ନ୍ୟସ୍ତ ହୋଇଥିଲା । ଏହାକୁ ସେ ବାରଟି ରାଷ୍ଟ୍ର

ଓ ସାତଟି ମଣ୍ଡଳରେ ବିଭାଜନ କରି ରାଜ୍ୟ ପରିଚାଳନା କରିଥିଲେ । ପ୍ରବୀରଙ୍କ ପରେ ବଂଶାନୁକ୍ରମେ ମନସିବା (ନା ମନ୍ତ୍ର), ଅନୁପମ, ସମୀର ଓ ଦୁଷ୍ମନ୍ତ ରାଜସିଂହାସନରେ ଅଧିଷ୍ଠିତ ହୋଇଥିଲେ । ଦୁଷ୍ମନ୍ତ ସମୁଦ୍ରର ବାଲିରାଶିକୁ ଅଶୀ ସହସ୍ର ଯୋଜନ ଘୁଞ୍ଚାଇ ସେଠାରେ ନିଜର କୀର୍ତ୍ତିସ୍ତମ୍ଭ ସ୍ଥାପନା କରିଥିଲେ । ଶକୁନ୍ତଳା ଗର୍ଭସମ୍ଭୂତ ଦୁଷ୍ମନ୍ତ ନନ୍ଦନ ଭରତଙ୍କ ଦ୍ୱାରା ତାହାକୁ ପୁଣି ସାତ ଶତ ଯୋଜନ ଦୂରକୁ ଘୁଞ୍ଚାଇ ଦିଆଯାଇଥିଲା ଏବଂ ନଳମାପ ଦ୍ୱାରା ଶତ ଯୋଜନବିଶିଷ୍ଟ ଗ୍ରାମସୀମା ନିରୂପିତ ହୋଇ ଭରତ ଖଣ୍ଡ ସୃଷ୍ଟିଲାଭ କଲା ।

ଭରତଙ୍କ ପରେ ଯଥାକ୍ରମେ ଭୂମନ୍ୟୁ (ଭୂମନ୍ୟୁ), ସୁହୋତ୍ର (ବିରଥ) ହସ୍ତୀ (ବୃହତ୍କ୍ଷତ୍ର), ଅଜମୀଢ଼ ଓ ସମ୍ବରଣ ( ସମ୍ବରଣ ) ରାଜପଦରେ ଅଭିଷିକ୍ତ ହୋଇଥିଲେ । ହସ୍ତୀଙ୍କ ନାମାନୁସାରେ ହସ୍ତିନାପୁର ପ୍ରସିଦ୍ଧି ଲାଭ କଲା ଏବଂ ସମ୍ବରଣଙ୍କ ସମୟରେ ବିଶା, ପଲ, ମାଢ଼, କର୍ଷ ଆଦି ପରିମାପ ପ୍ରଣାଳୀ ପ୍ରଚଳିତ ହୋଇଥିଲା । ସୂର୍ଯ୍ୟଙ୍କର ଦୁହିତା ଅସାମାନ୍ୟା ତେଜୋବତୀ ତପତୀ ଏହି ସମ୍ବରଣଙ୍କୁ ସ୍ୱୟଂବରଣ କରିଥିଲେ । ଏହି ଦମ୍ପତିଙ୍କ ପୁତ୍ର ଥିଲେ କୁରୁ । କୁରୁଙ୍କ ଔରସରୁ ପୃଥୁ ଏବଂ ତାଙ୍କର ଔରସରୁ ପ୍ରତାପଙ୍କ ଆବିର୍ଭାବ ଘଟିଥିଲା । ପ୍ରତାପଙ୍କ ଔରସରେ ଚନ୍ଦ୍ରୋତ୍ପଳାଙ୍କ ଗର୍ଭରୁ ଶାନ୍ତନୁଙ୍କ ଜନ୍ମ । (୨୭)

ପରମ ଶିବୋପାସକ ଦ୍ୱିତୀୟ ଇନ୍ଦ୍ରପଦର ଅଧିକାରୀ ସୋମବଂଶୀ ଶାନ୍ତନୁଙ୍କର ସ୍ୱୟଂବରା ପତ୍ନୀ ନିର୍ଘାତ କନ୍ୟା ଅନିନ୍ଦ୍ୟ ସୁନ୍ଦରୀ ଗଙ୍ଗା ଅତ୍ୟନ୍ତ ଉଦ୍ଧତା ଥିବା

---

(୨୭) ସା: ମ: ଭା: (ସା)-ଆଦି-ପୃ ୭-୧୭ ଓ ସା: ମ: ଭା: (ରା)-ଆଦ୍ୟ ପୃ. ୪-୭

[ ମୂଳ ସଂସ୍କୃତ ମହାଭାରତରେ କୁରୁବଂଶର ବର୍ଣ୍ଣନାରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସେଥିରେ ଦକ୍ଷଙ୍କର ପୁତ୍ର ଅଦିତି, ଅଦିତିଙ୍କ ପୁତ୍ର ବିବସ୍ୱାନ, ତାଙ୍କ ପୁତ୍ର ଇଳା, ଇଳାଙ୍କ ପୁତ୍ର ପୁରୁରବା ରୂପେ ବର୍ଣ୍ଣିତ । ଏହା ବ୍ୟତୀତ, ସେଥିରେ ଜନ୍ମେଜୟ ପ୍ରାଚିନ୍ୱାନ, ସଯାତି, ଅହଂଜାତି, ସାର୍ବଭୌମ, ଜୟସେନ, ଅର୍ବାଚୀନ, ଅରିହ, ବିକୁଣ୍ଠନ, ଅବକ୍ଷିତ, ପରୀକ୍ଷିତ ପ୍ରଭୃତି ଭିନ୍ନ ନାମ ଦୃଷ୍ଟିଗୋଚର ହୁଏ । ସଂସ୍କୃତ ମହାଭାରତ ଅନୁଯାୟୀ ଶାନ୍ତନୁଙ୍କ ପିତାଙ୍କ ନାମ ପ୍ରତୀପ, କିନ୍ତୁ ସେ ପୃଥୁନନ୍ଦନ ନୁହନ୍ତି, ଧୃତରାଷ୍ଟ୍ର (ବ୍ୟାସପୁତ୍ର ନୁହନ୍ତି)ଙ୍କ ସନ୍ତାନ । ଏହି ଧୃତରାଷ୍ଟ୍ରଙ୍କ ପିତାଙ୍କ ନାମ ଜନ୍ମେଜୟ, ତାଙ୍କ ପିତା ପରୀକ୍ଷିତ । ପରୀକ୍ଷିତ ଅବକ୍ଷିତଙ୍କ ପୁତ୍ର ଓ କୁରୁଙ୍କର ପୌତ୍ର ଅଟନ୍ତି । ]

ଯୋଗୁଁ ଏବଂ ତାଙ୍କର ସବୁ ଅର୍ଦ୍ଧଳ ଶାନ୍ତନୁ ସହ୍ୟ କରିବେ ବୋଲି ଶପଥ କରିଥିବା କାରଣରୁ ତାଙ୍କୁ ପଦେ ପଦେ ଲାଂଛିତ ଓ ଅପମାନିତ ହେବାକୁ ପଡ଼ୁଥିଲା । ଏପରିକି ପତ୍ନୀର ସାହଚର୍ଯ୍ୟ ଅଭାବରେ ପ୍ରଚଣ୍ଡ କାମାତୁର ଶାନ୍ତନୁ ଭଉଣିଙ୍କୁ ଆଲିଙ୍ଗନ କରିବା ଦ୍ୱାରା ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ଜନ୍ମଲାଭ କରିଥିଲେ । ଏହା ପରେ ଅବଶ୍ୟ ଗଙ୍ଗାଦେବୀଙ୍କ ଗର୍ଭରୁ ଗୋଟିକ ପରେ ଗୋଟିଏ ଛଅଟି ସନ୍ତାନ ଜାତ ହୋଇଛନ୍ତି, କିନ୍ତୁ ପ୍ରତ୍ୟେକ ମାତାଙ୍କ ଖଡ଼ଗ୍‌ରେହିଁ ମୃତ୍ୟୁବରଣ କରିଛନ୍ତି । ପରିଶେଷରେ ସପ୍ତମ ସନ୍ତାନର ହତ୍ୟାକାଳରେ ଶାନ୍ତନୁଙ୍କ ପ୍ରତିରୋଧ ଫଳରେ ସନ୍ତାନଟି ଜୀବିତ ରହିପାରିଲା, ମାତ୍ର ଗଙ୍ଗା ଶାନ୍ତନୁଙ୍କୁ ପରିତ୍ୟାଗ କରି ଶୂନ୍ୟରେ ବିଲୀନ ହୋଇଗଲେ । ଏହି ସନ୍ତାନଟିହିଁ ଭୀଷ୍ମ ।

ପଦ୍ମନାଭ ରାଜାଙ୍କର ତିନି କନ୍ୟା ଅମ୍ବା, ଅମ୍ବିକା, ଅମ୍ବାଲିକା ଯଥାକ୍ରମେ ଭୀଷ୍ମ, ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କୁ ବରଣ କଲେ । ମାତୃଶାପ ଥିଲା, ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ଅପୁତ୍ରିକ ଅବସ୍ଥାରେ ଯୌବନରେ ମୃତ୍ୟୁବରଣ କରିବେ ଏବଂ ଭୀଷ୍ମଙ୍କର ପୁତ୍ର ଶାନ୍ତନୁଙ୍କ ମୃତ୍ୟୁର କାରଣ ହେବ । ଶାପ ବିଷୟରେ ସଚେତନ ହେଲାପରେ ପିତୃଭକ୍ତ ଭୀଷ୍ମ ସ୍ତ୍ରୀ ସ୍ପର୍ଶ ନକରିବା ଲାଗି ଅଟଳ ପ୍ରତିଜ୍ଞା କଲେ ଏବଂ ଅମ୍ବା ବ୍ୟଥିତା ହୋଇ ତ୍ରିବେଣୀଠାରେ ଅଗ୍ନିରେ ଝାସ ଦେଲେ । ମୁନି ପରାଶରଙ୍କ ପତ୍ନୀ ସତ୍ୟବତୀ (୨୭) ଅମ୍ବା ଓ ଅମ୍ବିକାଙ୍କୁ ଦେବର ଭୀଷ୍ମଙ୍କ ଔରସରୁ ପୁତ୍ରୋତ୍ପତ୍ତି ପାଇଁ ପରାମର୍ଶ ଦେଇଥିଲେ ମୁଦ୍ଧା ଭୀଷ୍ମ ନିଜ ପ୍ରତିଜ୍ଞାରେ ଅଟଳ ରହିଥିଲେ । ତେଣୁ ସତ୍ୟବତୀ ନିଜର ପୁତ୍ର ବ୍ୟାସଦେବଙ୍କୁ ବଂଶରକ୍ଷାର ଗୁରୁତ୍ୱ ଉପଲବ୍ଧି କରାଇବା ଫଳରେ ଅମ୍ବିକା ଓ ଅମ୍ବାଲିକାଙ୍କ ଗର୍ଭରୁ ଯଥାକ୍ରମେ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମଲାଭ କରିଥିଲେ । ଧୃତରାଷ୍ଟ୍ର ଗାନ୍ଧାରସେନ ରାଜାଙ୍କ କନ୍ୟା ଗାନ୍ଧାରୀଙ୍କୁ ବିବାହ କରି ଦୁର୍ଯ୍ୟୋଧନାଦି ଶତପୁତ୍ରର ଜନକ ହୋଇ ପାରିଥିଲେ । କିନ୍ତୁ ଶାପଗ୍ରସ୍ତ ପାଣ୍ଡୁ କୁନ୍ତୀ ଓ ମାଦ୍ରୀଙ୍କ ମନ୍ତ୍ରମାଳା ପ୍ରଭାବରୁ ପାଞ୍ଚଟି ପୁତ୍ର ଲାଭ କରିଥିଲେ । (୨୮)

---

(୨୭) ମୂଳ ସଂସ୍କୃତ ମହାଭାରତରେ ଶାନ୍ତନୁ ଗଙ୍ଗାଙ୍କ ଦ୍ୱାରା ପରିତ୍ୟକ୍ତ ହେବା ପରେ ସତ୍ୟବତୀଙ୍କୁ ବିବାହ କରିଥିବା ଏବଂ ତାଙ୍କ ଗର୍ଭରୁ ଦୁଇପୁତ୍ର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜାତ ହୋଇଥିବା ବର୍ଣ୍ଣିତ ।

(୨୮) ସା: ମ: ଭା: (ସା) : ଆଦି-ପୃ ୧୬-୫୨ ଏବଂ ସା: ମ: ଭା: (ଗ୍ରା) ଆଦ୍ୟ-ପୃ ୭-୩୨ ।

ସାରଳା ଦାସ ମୂଳ ମହାଭାରତରୁ ଯେପରି ଭାବରେ ଦୂରେଇ ଯାଇଛନ୍ତି, ସେଥିରେ ସୋମ, କୁରୁ ପ୍ରଭୃତି ରାଜବଂଶଗୁଡ଼ିକର ସୁଦୀର୍ଘ ପରଂପରାକୁ ପରିତ୍ୟାଗ କରି ଦେଇଥିଲେ, ତାଙ୍କ ମହାଭାରତର କୌଣସି ଅଙ୍ଗହାନି ଘଟି ନଥାନ୍ତା । କିନ୍ତୁ ଉଲ୍ଲିଖିତ ବଂଶାବଳୀର ସବିଶେଷ ବର୍ଣ୍ଣନା ମଧ୍ୟରେ ସାରଳାଙ୍କ ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଆଦର୍ଶର ସୂଚନା ଲକ୍ଷ୍ୟ କରାଯାଇପାରେ । ରାଜତନ୍ତ୍ରରେ ବଂଶ ପରଂପରାର ଗୁରୁତ୍ୱକୁ ସେ ମାନ୍ୟତା ପ୍ରଦାନ କରିଥିବା ଏଥିରୁ ଅନୁମେୟ । ଏଠାରେ ନିତାନ୍ତ ସ୍ମରଣଯୋଗ୍ୟ ଯେ ସାରଳା କେବଳ ବଂଶାନୁକ୍ରମିକତାର ଗଡ଼୍ଡ଼ାଳିକା ପ୍ରବାହ ଉପରେ ଗୁରୁତ୍ୱ ଦେଇ ନାହାନ୍ତି, ସେ ବଂଶର ପ୍ରସିଦ୍ଧି ତଥା ବଂଶାବତଂସ ରାଜନ୍ୟବର୍ଗଙ୍କର ଯଶ ଓ ସୁନାମର ହିଁ ଗୁଣକୀର୍ତ୍ତନ କରିଅଛନ୍ତି ।

## ବିଭିନ୍ନ ରାଜା ଓ ରାଜ୍ୟ : ସାରଳାଙ୍କ ବିବରଣୀ

ସାରଳା ଦାସଙ୍କ ସମୟରେ ସମଗ୍ର ଭାରତ ବର୍ଷରେ ବହୁ ରାଜ୍ୟ ମୁଣ୍ଡ ଟେକି ଉଠିଥିଲ ଏବଂ ବହୁ ରାଜବଂଶର ରାଜନ୍ୟବୃନ୍ଦ ସେସବୁ ରାଜ୍ୟର ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ନିଜର ସୁବିଶାଳ ପୌରାଣିକ କାବ୍ୟରେ ସାରଳା ଯେଉଁସବୁ ରାଜ୍ୟ ଓ ରାଜାମାନଙ୍କର ପ୍ରକୃତ ନାମୋଲ୍ଲେଖ କରି ନଥିଲେ ମଧ୍ୟ ବିଭିନ୍ନ ପ୍ରସଙ୍ଗରେ ସେମାନଙ୍କର ଯେଉଁ ବିରାଟ ତାଲିକା ପ୍ରଦାନ କରିଛନ୍ତି, ସେଥିରୁ ରାଜନୈତିକ ଇତିହାସ ଧାରାର ଏକ ପ୍ରାଞ୍ଜଳ ଚିତ୍ର ଉଦ୍ଭାସିତ ହୋଇଥାଏ । ଏହାର ଏକ ଉଦାହରଣ ସ୍ୱରୂପ, ଦକ୍ଷିଣ କୋଶଳ ଅନ୍ତର୍ଗତ ବିଦ୍ୟାନଗରୀ ନରେଶ ଭୂମନ୍ୟୁଙ୍କ କନ୍ୟା ଭାନୁମତୀର ସ୍ୱୟମ୍ବର ଉତ୍ସବକୁ ଯେଉଁସବୁ ରାଜ୍ୟର ରାଜାମାନେ ନିମନ୍ତ୍ରିତ ହୋଇ ଆସିଥିବା କଥା ସାରଳା ଉଲ୍ଲେଖ କରିଛନ୍ତି, ସେସବୁ ରାଜ୍ୟର ଏକ ତାଲିକା ପ୍ରଦାନ କରାଯାଉଛି । (୨୧) ଯଥା—

କଳିଙ୍ଗ, ଉତ୍କଳ, ତୈଲଙ୍ଗ, ତ୍ରିକଳିଙ୍ଗ, ବଙ୍ଗ, ବିଜେପୁର, ଚିରଦେଶ, ମୀରଦେଶ (ବୀରଦେଶ), ମହାକୃଣ ଦେଶ, ଚମ୍ପୁଡ଼ (ହିମୁହୁର୍ତ୍ତି), ଭୋଜକଟ (ଭୋଟଦେଶ), ମନ୍ଦାର, କାଉଁଳି, ମଙ୍ଗଳା, ଡ଼ାହାଳ, ବେଲ୍ଲଳ, କୌଶିକ, ଗନ୍ଧର୍ବ, ନେପାଳ, ଭୂପାଳ, ମାଳବ, ଗୁର୍ଜର (ଗୁଜୁରାଟ), ମରହଟ୍ଟା, ମଗଧ, ମତ୍ସ୍ୟ (କର୍ଣ୍ଣାଟ), ଗୁଜରାଟ (ମହାରାଷ୍ଟ୍ର), କାଶୀ, କାନ୍ୟକୁବ୍ଜ, ଉଜ୍ଜୟିନୀ, କାଶ୍ମୀର, କନୌଜ, ମାଳ,

---

(୨୧) ସା: ମ: ଭା: (ସା)— ଆଦି- ପୃ. ୩୬୧-୩୭୧ ଓ ସା. ମ. ଭା. (ରା) ଆଦ୍ୟ ପୃ: ୧୧୫-୧୧୬

ଅମାଳ, ଉତ୍କଳ, ମଲ୍ଲାର, ଗାନ୍ଧାର, ପାଞ୍ଚାଳ, କୋଟଳ, କ୍ଷେତ, ବକ୍ଷେତ୍ର, ପାରଜାତ, ବ୍ୟୂହମଣ୍ଡଳ, ଶାଖାମଣ୍ଡଳ, ଭୁଖାମଣ୍ଡଳ, ମଧୁମଣ୍ଡଳ, ମଳୟମଣ୍ଡଳ, ଇନ୍ଦ୍ରପ୍ରସ୍ଥ ମଣ୍ଡଳ, ବାରୁଣାବନ୍ତ ମଣ୍ଡଳ, ମନ୍ଦରମଣ୍ଡଳ, ପଦ୍ମମଣ୍ଡଳ, ଶୋଣିତମଣ୍ଡଳ, ଅମରମଣ୍ଡଳ, କୋଶଳ ମଣ୍ଡଳ, ଯାଜନଗ୍ର ମଣ୍ଡଳ, ଜଳନ୍ଧର ରାଷ୍ଟ୍ର, ଚନ୍ଦ୍ରରାଷ୍ଟ୍ର, ଅଯୋଧ୍ୟା, ବିନ୍ଧ୍ୟମାଳ, ମଧୁବନ, କର୍ଣସ୍ଥ, ଭଲ୍ଲୁ, ସୋମରାଷ୍ଟ୍ର, କାଞ୍ଚି, କାମପୁର, ପାରଳା, ହୋଲ, ବଡ଼ବାନଳ (ବଡ଼ମ୍ବା), ବଜସ୍ଥା, କୁଣ୍ଡ, ମାହେନ୍ଦ୍ର, ଢ଼ଂକଳ, ପଦ୍ମନଳ, ବିନ୍ଧ୍ୟନଗ୍ର, ସୁରନଗ୍ର, ବ୍ରହ୍ମଧାରୁ ନଗ୍ର, ଅନୁଭବ ନଗ୍ର ଏବଂ ବିବିଧ କୋଶଳ (ମହୋଦଧି, ସୋମରାଷ୍ଟ୍ର, ମେରୁ, ଭୈରବ, ଅରବିନ୍ଦ, ସତ୍ୟାନଳ, ଭାନୁମତୀ, ଉଦୟଗିରି, ଜଳତରଙ୍ଗ, ଫାଲ୍‌ଗୁନ, ଅଜଙ୍ଗ, ସ୍ଥଳରଙ୍ଗ, ଅନନ୍ତାଇ କୋଶଳାଦି ) ।

ସାରଳା ପାରଂପରିକ ଢଙ୍ଗରେ ହେଉ ସ୍ୱୟମ୍ବର ସଭାରେ ଗନ୍ଧର୍ବ, କିନ୍ନର, ଚନ୍ଦ୍ର, ସୂର୍ଯ୍ୟ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, କନ୍ଧ-କିରାତ-ବର୍ବର, ଦାନବ-ଦୈତ୍ୟ-ପିଶାଚ-ରାକ୍ଷସ, ମରହଟ୍ଟ, ମହ୍ଲାର, ତୈଲଙ୍ଗ (ରୁଦ୍ର), ହୈହୟ, ମହାରାଷ୍ଟ୍ର କନାଉଜ, କୁନ୍ତୁରି, ଚୂଡ଼ଙ୍ଗାଦି ଅଷ୍ଟାଦଶ ବଂଶୀୟ ଗୃହ ଉଣା ଲକ୍ଷେ ରାଜାଙ୍କର (୩୦) ସମାଗମ ଘଟିଥିବାର ଯେଉଁ ବର୍ଣ୍ଣନା କରିଛନ୍ତି, ତାହା ପ୍ରକୃତ ସଂଖ୍ୟା ଦୃଷ୍ଟିରୁ ଅତିରଞ୍ଜିତ ମନେ ହେଲେ ହେଁ ରାଜ୍ୟ ସଂଖ୍ୟାର ବହୁଳତା ତଥା ରାଜ୍ୟଗୁଡ଼ିକର ଆୟତନଗତ ସଙ୍କୀର୍ଣ୍ଣତାର ପ୍ରମାଣ ଦେଇଥାଏ ।

ଦ୍ରୌପଦୀ ସ୍ୱୟମ୍ବର ବର୍ଣ୍ଣନା କାଳରେ ସାରଳା ଆଉ ଏକ ପାଦ ଅଗ୍ରସର ହୋଇ ବିଭିନ୍ନ ରାଜାମାନଙ୍କର ନାମୋଲ୍ଲେଖ କରିବା ସଙ୍ଗେ ସଙ୍ଗେ ସେମାନଙ୍କର

---

(୩୦) (କ) ପଶ୍ଚିମେ ଦୁଇ ଉଣା ପଞ୍ଚାଶ ସହସ୍ର ନୃପତି
ଉତ୍ତରେ ଏକ ଉଣା ଶୂନ୍ନାଶ ସହସ୍ର ନୃପତି
ପୂର୍ବଦିଗେ ଏକ ଉଣା ସାତ ସହସ୍ର ରାଜନ
ଦକ୍ଷିଣେ ତିନି ସହସ୍ର ବସନ୍ତି ବିଦ୍ୟମାନ ।
(ସା: ମ: ଭା: (ସା) ଆଦି-ପୃ. ୩୭୨)

(ଖ) ପଶ୍ଚିମରେ ଦୁଇ ଉଣା ସହସ୍ର ପଞ୍ଚଶ
ଉତ୍ତରରେ ଏକ ଉଣା ସହସ୍ର ଶୂନ୍ନଶ
ଦକ୍ଷିଣରେ ଏକ ଉଣା ସହସ୍ର ସପତ
ପୂର୍ବରେ ତିନି ସହସ୍ର ରାଜା ଆବସାର୍ଥ ।
(ସା: ମ: ଭା: (ରା) ଆଦ୍ୟ-ପୃ· ୧୧୭)

ବିଶେଷତ୍ୱ ତଥା ଗୁଣାବଳୀର ପରିଚୟ ମୁଦ୍ଗଲୀ କେଶିନୀ ମୁଖରେ ପ୍ରଦାନ କରିଅଛନ୍ତି । (୩୧) ତାର ଏକ ସାରଣୀ ନିମ୍ନରେ ପ୍ରଦତ୍ତ ହେଲା । ( ଅକ୍ଷୌହିଣୀ, ପଦ୍ମ, ସାଗରାଦିର ହିସାବ ଅନ୍ୟତ୍ର ଦର୍ଶାଯାଇଛି ) ।

| ରାଜାଙ୍କର ନାମ | ରାଜ୍ୟର ନାମ | ବିଶେଷତ୍ୱ ବା ଗୁଣାବଳୀ |
|---|---|---|
| ମାନଚକ୍ରବର୍ତ୍ତୀ ଦୁର୍ଯ୍ୟୋଧନ | କୁରୁଜାଙ୍ଗଳ (ହସ୍ତିନା) | ଗାନ୍ଧାର ବଂଶ ବିଧ୍ୱଂସୀ, ସ୍କନ୍ଧରେ କମଳା ବସେ, ପାଦତଳେ ପଦ୍ମ ଫୁଟିଥାଏ, ହାତ ଲାଗିଲେ ପାଷାଣ ପାଣି ହୋଇଯାଏ । |
| ଜୟଦ୍ରଥ | ସିନ୍ଧୁଦେଶ | ସୁରଥ ସୁତ, ଦୁଃଶୀଳା ବଲ୍ଲଭ । |
| ଜରାସନ୍ଧ | ମଗଧ | ଲକ୍ଷେ ରାଜାଙ୍କ ଶିରୋମଣି, ଛୟାନବେ ସହସ୍ର ରାଜାଙ୍କ ଗଣ୍ଠି, ଏହାଙ୍କ ଭୟରେ ଶ୍ରୀକୃଷ୍ଣ ମଥୁରା ଛାଡ଼ି ଦ୍ୱାରକା ଯାଇଥିଲେ । |
| ଦମଘୋଷ | ଚେଦିଭର୍ଗ | ଶିଶୁପାଳ ରାଜପୁତ୍ର, ଶ୍ରୀକୃଷ୍ଣଙ୍କ ଶତ୍ରୁ ଅଟେ । |
| ଭୀଷ୍ମକ | କୁଣ୍ଡିନଗର | ଶ୍ରୀକୃଷ୍ଣଙ୍କ ଶ୍ୱଶୁର । |
| କୁନ୍ତିଭୋଜ | ଭୋଜଦେଶ | କୁନ୍ତୀଙ୍କ ପିତା । |
| ବନମାଳୀ | କଷାୟ ଦେଶ | ଦୁଇ ଅର୍ବୁଦ ସୈନ୍ୟ । |
| ଯଦୁସେନ | ବଙ୍ଗ | ସାର୍ଦ୍ଧ ଅକ୍ଷୌହିଣୀ ସୈନ୍ୟ । |
| କୃତବର୍ମା | ମାଳବ ଦେଶ | ଅଶ୍ୱତ୍ଥାମା ହସ୍ତୀ ସହ ନବ ଅକ୍ଷୌହିଣୀ ବଳ । |

(୩୧) ସା : ମ : ଭା : (ସା)—ଆଦି - ପୃ. ୭୭୭ ୭୧୯ ଏବଂ
ସା : ମ : ଭା : (ଗ)—ଆଦ୍ୟ - ପୃ. ୧୩୫-୧୪୮ ।

| | | |
|---|---|---|
| କାଶୀଶ୍ୱର | କାଶୀ | ଏଗାର ଅକ୍ଷୌହିଣୀ ବଳ । |
| ଗଣପତି | କର୍ଣ୍ଣର | ୫ ଲକ୍ଷ ହସ୍ତୀ, ୮ ଲକ୍ଷ ରଥୀ, ୫ ଲକ୍ଷ ଅଶ୍ୱ ଓ ୧୩ ଅକ୍ଷୌହିଣୀ ପଦାତିକ । |
| କଳିଙ୍ଗସେନ | କଳିଙ୍ଗ | ୧ ଲକ୍ଷ ହସ୍ତୀ, ୭ ଅକ୍ଷୌହିଣୀ ସୈନ୍ୟ । |
| ମଧୁକେଶର | ଉତ୍କଳ | ଶିଖଣ୍ଡୀଙ୍କର ଶ୍ୱଶୁର । |
| ନବଲକ | ନେପାଳ | ଅପାର ରଥ ଅଶ୍ୱ । |
| ଧୂମକେତୁ (ଧୃତସେନ) | ବୈଶ୍ୱାନର ଦେଶ | ୧୦ ଲକ୍ଷ ଯୋଦ୍ଧା । |
| ସୁରଜିତ | ସୁରଭି | ୧ ଲକ୍ଷ ସୈନ୍ୟ, ଅଯୁତେ ଅଶ୍ୱ ଓ |
| କର୍ଣ୍ଣମାଳୀ | କାନ୍ୟକୁବ୍ଜ | ୮ ଅକ୍ଷୌହିଣୀ ଆଉ । |
| କୃତାନ୍ତକ ଦେବ | ଅନୁଭବ ଦେଶ | ଏକ ଖଣ୍ଡ ଅଶ୍ୱଗଜ ସୈନ୍ୟ । |
| ଜନାର୍ଦ୍ଦନ | ଚନ୍ଦ୍ରାଣ ଦେଶ | ଏକ ପଦ୍ମ ଶ୍ୱେତ ଅଶ୍ୱ । |
| ବୀରବାହୁ | ବଙ୍ଗଦେଶ | ସାତ ଲକ୍ଷ ଅଶ୍ୱ । |
| ଜମ୍ବୁମାଳୀ | କନୌଜ | ଆଠ ଅକ୍ଷୌହିଣୀ ବଳ । |
| ଚୂଡ଼ଙ୍ଗ ଚକ୍ରବର୍ତ୍ତୀ | ତେଲିଙ୍ଗ | ସୂର୍ଯ୍ୟବଂଶୀ ମହାକ୍ଷତ୍ରୀ । |
| ଅନୁପମ | ଖାଞ୍ଜଣ | ଦଶକୋଟି ରଥୀ । |
| ବୀରବାହୁ | ବିହୁତ | ବାଣଙ୍କ ସଂଗ୍ରାମୀ । |
| ଦାମୋଦର ସେନ | କୁଞ୍ଜର | ଏଗାର ଅକ୍ଷୌହିଣୀ ବଳ । |
| ତ୍ରିଗର୍ତ୍ତ | ମଗଧଦେଶ | ୫ କ୍ଷୌଣୀ ସୈନ୍ୟ, ୩ କୋଟି ରଥ । |
| ବିରାଟେଶ୍ୱର | ମତ୍ସ୍ୟଦେଶ | ସାତକ୍ଷୌଣୀ ବଳ । |

| ରାଜାଙ୍କର ନାମ | ରାଜ୍ୟର ନାମ | ବିଶେଷତ୍ୱ ବା ଗୁଣାବଳୀ |
|---|---|---|
| କୀଚକ | ଶରଦ ଦେଶ | ଶତଭ୍ରାତାଯୁକ୍ତ । |
| କାମଦେବ | ଚରଦେଶ | ୧୧ ସାଗର ରଥ, ଗଜ, ଅଶ୍ୱ । |
| ସୁବାହୁ | ସାରଦେଶ | ସ୍ୟମନ୍ତକ ମଣି ଯୁକ୍ତ । |
| କର୍ଣ୍ଣକେଶରୀ | ଭୋଟଦେଶ | ୩ ସାଗର ରଥୀ । |
| ହୃଷୀକେଶ | ମନ୍ଦାର ଦେଶ | ୭୨ ଅକ୍ଷୌହିଣୀ ବଳ । |
| କାମପାଳ | କାଉଁରୁ | ରଥ ଗଜ ଅଶ୍ୱ ପଦାତିକ ପ୍ରତ୍ୟେକ ୧୦ ଲକ୍ଷ । |
| ସଦାଶିବ | ବଙ୍ଗଳା | ପାଞ୍ଚ ଅକ୍ଷୌହିଣୀ ବଳ । |
| ମନୋହର | ଖଡ଼ଗ ଦେଶ | ଏଗାର ସାଗର ସୈନ୍ୟ । |
| ମଦନମୋହନ | କୃଷ୍ଣ ରାଜ୍ୟ | ଲକ୍ଷେ ଯୁଦ୍ଧୀ ବଳାସୀ । |
| ଲଗ୍ନାଜିତ | ଉତ୍ତର କୋଶଳ | ସପ୍ତସାଗର ସୈନ୍ୟ । |
| ମୃଗସେନ | ପଶ୍ଚିମ କୋଶଳ | ଏକ ସାଗର ସୈନ୍ୟ । |
| ଯାବନକ | ଈଶାନ କୋଶଳ | ପାଞ୍ଚ ପଦ୍ମ ସୈନ୍ୟ । |
| ସୁଲାଣ | ପାଟଣା | ଏକ ଲକ୍ଷ ବଳ । |
| କନ୍ଦପଦ୍ଧ | ରୈବତ ପାଟଣା | କୋଟିଏ ନୌକା । |
| ଦମନକ | ଚଣ୍ଡୀହର | ନଅ ଲକ୍ଷ ଅଶ୍ୱ । |
| ପୁଣ୍ଡରକ ବାସୁଦେବ | ଗିରବଜ | ବିଷ୍ଣୁଭକ୍ତ । |
| ଅନଙ୍ଗ ବାସୁଦେବ | ଅରବିନ୍ଦ | ବିଦ୍ୟାବନ୍ତ, ଗୁଣବନ୍ତ । |
| ଶାଲୁ (ଶାଲ୍ୱ) | ଶାକଲ୍ୟ | ଦଶ ସହସ୍ର ରଥ । |

| | | |
|---|---|---|
| ମନର୍ପିଜ | ପ୍ରାଗ୍ ଜ୍ୟୋତସପୁର | ସାତ କ୍ଷୌଣୀ ବଳ । |
| ମଣ୍ଡନ୍ଦ | ମଲ୍ଲାର | ପାଞ୍ଚ ଲକ୍ଷ ମତ୍ତହସ୍ତୀ । |
| ବିରୂପାକ୍ଷ | କାମପୁର | ଦଶ ଲକ୍ଷ ଘୋଡ଼ା । |
| ପଦ୍ମନାଭ | ହିରଣ୍ୟପୁର | ବୈଷ୍ଣବ, ବାସୁଦେବ ଭକ୍ତ । |
| ବିଶ୍ୱନାଥ | ତେଲଙ୍ଗପୁର | ବିଭୂତଭୂଷିତ, ଶିବଭକ୍ତ । |
| ସୌନାଭ | ଶଙ୍ଖପୁର | ସତାନବେ କ୍ଷୌଣୀ ସୈନ୍ୟ । |
| ଚଣ୍ଡେଶ୍ୱର | ଚଣ୍ଡପୁର | ଚଉଦ ଅକ୍ଷୌହିଣୀ ବଳ । |
| ବାଣାସୁର | ଶୋଣିତନଗର | ୮୪ କ୍ଷୌଣୀ ବଳ । |
| କୁଶକେତୁ | ଦେବନଗ୍ର | ୫ ଲକ୍ଷ ସୈନ୍ୟ । |
| ନରକେଶରୀ | ଉଡ୍ର ରାଷ୍ଟ୍ର | ୫୨ ଲକ୍ଷ ସୈନ୍ୟ । |

ଏହା ବ୍ୟତୀତ, ଛତିଶ ମଣ୍ଡଳ, ବାର ରାଷ୍ଟ୍ର, ନବଶତ ସତାନବେ ପାଟଣା, ବାରସ୍ୱତୀପୁର, ବ୍ରହ୍ମପୁର, କଣ୍ଟନ୍ତପୁର, କାଞ୍ଚନପୁର, ମାଳତୀପୁର, ଖଡ଼ଗପୁର, ପାଟଳୀ ନଗ୍ର, ଗୌଡ଼ନଗ୍ର, ମହେନ୍ଦ୍ର ନଗ୍ରାଦି ବିଭିନ୍ନ ପୁର ଓ ନଗ୍ରର ବର୍ଣ୍ଣନା ପ୍ରଦତ୍ତ ହୋଇଛି ।

ଭାନୁମତୀ ସ୍ୱୟମ୍ବରକୁ ଆସିଥିବା ଅଷ୍ଟାଦଶବଂଶୀ ରାଜାଙ୍କ ଭଳି ଏ ପ୍ରସଙ୍ଗରେ ମଧ୍ୟ ଅଷ୍ଟାଦଶ ରାଜବଂଶର ନାମୋଲ୍ଲେଖ କରାଯାଇଛି, ମାତ୍ର କେତେକ ନୂତନ ତଥା ଇତିହାସସମ୍ମତ ବଂଶର ସୂଚନା ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ । ଏଗୁଡ଼ିକ ହେଲେ—ସୂର୍ଯ୍ୟ, ସୋମ, କୁରୁ, ଯଦୁ, କେକ, ହୈହୟ, ଚୂହାଣ, ବୃଷ୍ଣିକ, ଗୋପାଳ, କୁକ୍‌କୁଟ, ବୃନ୍ଦାରକ, ଦକ୍ଷ, ଗ୍ରେଲ, ଗୁଲୁକ୍ୟ, ଗଙ୍ଗ, ଫୁଲକ ଓ ଭୋପାଳ । କବି ଚୌହାନ, ନାଗ, କାକତୀୟ, ବିଷ୍ଣୁ, ଭୋନସଲ, ପୁଲକେଶିନ ବା ପ୍ରତିହାର ଶବ୍ଦ ପରିବର୍ତ୍ତେ ଚୂହାଣ, ଦକ୍ଷ, କୁକ୍‌କୁଟ, ବୃଷ୍ଣିକ, ଫୁଲକ ଓ ଭୋପାଳ ଶବ୍ଦ ବ୍ୟବହାର କରିଥିବା ଅନୁମେୟ ।

ସାରଳା ସଭାପର୍ବରେ 'ରାଜସୂୟ ଯଜ୍ଞ ପାଇଁ ପଶ୍ଚିମ ଦିଗ ରାଜାଙ୍କ ନିମନ୍ତ୍ରଣ କାରଣେ ଭୀମଙ୍କ ଗମନ' ପ୍ରସଙ୍ଗରେ (୩୨) କରଣ ପର୍ବତ, ଗୁଣଭଦ୍ରା ନଦୀ ଓ କୁଣ୍ଡୀନଗର ଯେଉଁ ବର୍ଣ୍ଣନା କରିଛନ୍ତି, ତାହା କୂର୍ମପର୍ବତ, କୃଷ୍ଣାନଦୀ (୩୩) ଏବଂ କୋଣ୍ଡାବିଡୁ ଦୁର୍ଗର ପ୍ରତୀକ ମାତ୍ର । ଏହି ପର୍ବରେ ଅର୍ଜୁନଙ୍କର ଦରଦସେନ ଓ ଜମାଗୋଷ୍ଠ ରାଜାଙ୍କ ସହିତ ଯୁଦ୍ଧ ଚିତ୍ରଣରେ ସାରଳା ଜଲାଲ ଖାଁ ଓ ହୁମାୟୁନଙ୍କୁ ଜମାଗୋଷ୍ଠ ଓ ଦରଦସେନ ନାମରେ ପରିଚିତ କରାଇଛନ୍ତି ଏବଂ ବାହମନୀ, ଉଦୟଗିରି ଓ ଦେବକୋଣ୍ଡା (ବା ଦେବରକୋଣ୍ଡା) ଦୁର୍ଗ ପରିବର୍ତ୍ତେ ବ୍ରହ୍ମସାହୀ, ଅରୁଣଗିରି ଓ ଅମରଚୂଡ଼ (ଅମର = ଦେବ; ଚୂଡ଼ା = ଶିଖର, ପର୍ବତ) ନାମ ବ୍ୟବହାର କରିଛନ୍ତି । (୩୪) ରାଜସୂୟ ଯଜ୍ଞନିମିତ୍ତ ନିମନ୍ତ୍ରଣ କରିବା ଲାଗି ବିଭିନ୍ନ ରାଜ୍ୟକୁ ଅର୍ଜୁନଙ୍କ ଯାତ୍ରା ବର୍ଣ୍ଣନା କରିବା ଛଳରେ ସାରଳା ଦାସ କପିଳେନ୍ଦ୍ର ଦେବଙ୍କ ଉଦୟଗିରି ବିଜୟ ଓ ବିଜୟନଗର ରାଜା ମଲ୍ଲିକାର୍ଜୁନଙ୍କ ସହିତ ସଂଘର୍ଷର ଚିତ୍ର ପ୍ରଦାନ କରିଛନ୍ତି । ଏହି ବର୍ଣ୍ଣନାରୁ ପଦ୍ମନାଭି ପର୍ବତ (ପଦ୍ମନାଭ ବା ବିଷ୍ଣୁ ପୂଜିତ ପର୍ବତ ଶ୍ରୀରଙ୍ଗମ), ରୁଦ୍ରଗିରି (ଶୈଳରାଜାଙ୍କ ନିର୍ମିତ ରୁଦ୍ର ବା ଶିବମନ୍ଦିର ବିଶିଷ୍ଟ ତାଞ୍ଜୋର), ଶ୍ରୀଗିରି (ଶ୍ରୀ ଶୈଳମ୍), କାବେରୀ, ତୁଙ୍ଗଭଦ୍ରା, ବିଜୟନଗର କାଞ୍ଚିନଗର (କାଞ୍ଚିବରମ୍), ଶ୍ରୀ ମଲ୍ଲିକାନାଥ (ମଲ୍ଲିକାର୍ଜୁନ), ଶାକଲ୍ୟ ବା ଶାଲୁ (ଶାଲ୍ୱ ନରସିଂହଙ୍କ ରାଜ୍ୟ) ପ୍ରଭୃତି ଐତିହାସିକ ସ୍ଥାନ ଓ ଚରିତ୍ରର ପରିଚୟ ମିଳେ । ଶାଲ୍ୱ କେଶରୀଙ୍କୁ ସେ କୃତକେଶୀ, କୃତଶେଖର, ମହାକେଶରୀ ରୂପେ ଏବଂ ଓଡ଼ିଶା ଗଜପତି ପୁରୁଷୋତ୍ତମ ଦେବଙ୍କୁ ଅର୍ଥାନ୍ତରରେ ନରବଳୀ, ନରଶ୍ରେଷ୍ଠ ରୂପେ ଚିତ୍ରଣ କରିଛନ୍ତି ।

ଭୀମଙ୍କର ପୁଣ୍ଡରୀକ ବାସୁଦେବ ରାଜା ସହିତ ଯୁଦ୍ଧ ପ୍ରସଙ୍ଗ (ସଭାପର୍ବ) କପିଳେନ୍ଦ୍ରଙ୍କ ବିଜୟନଗର ଆକ୍ରମଣର ସୂଚନା ଦିଏ । ଏଠାରେ ପୌଣ୍ଡ୍ରକ ବାସୁଦେବ ଶ୍ଳେଷାର୍ଥରେ ମଲ୍ଲିକାର୍ଜୁନଙ୍କୁ ହିଁ ବୁଝାଉଛି । ପୁଣ୍ଡରୀକ ଶବ୍ଦର ଅର୍ଥ ଶ୍ୱେତପଦ୍ମ ବା ମଲ୍ଲିକା, ବାସୁଦେବର ଅନ୍ୟତମ ଅର୍ଥ ଅର୍ଜୁନ । ସେହିପରି, ସାରଳା ତେଲେଙ୍ଗାନା ବା ଓ୍ୱାରଙ୍ଗଲର ରାଜାଙ୍କୁ ଶଙ୍ଖପତି ଆଖ୍ୟା ଦେଇଛନ୍ତି, କାରଣ ସେ 'କମ୍ବୁଗିରିସ୍ୱାମୀ' (ଶଙ୍ଖପର୍ବତ ପତି) ନାମରେ ପରିଚିତ ଥିଲେ । ସାରଳାଙ୍କର କରଣ୍ଟକ, ଇନ୍ଦ୍ରସିଂହ ଓ

---

(୩୨) ସା: ମ: ଭା: (ରା)-ସଭା ପୃ ୫୧-୫୮

(୩୩) କୃଷ୍ଣାନଦୀ କୃଷ୍ଣଭଦ୍ରା ନାମରେ ମଧ୍ୟ ପରିଚିତ ।

(୩୪) ସା: ମ: ଭା: (ରା) ସଭା-ପୃ ୫୧-୫୪

ବ୍ୟାଙ୍ଗସି ଚରିତ୍ର (୩୫) ଯଥାକ୍ରମେ କୁଡବୃଦ୍ଧିନ, ଇଲତୁତ୍ମିସ୍ ଓ ଚଙ୍ଗିଜଖାଁଙ୍କୁ ବି ବୁଝାଉଛି । ତାଙ୍କ ବର୍ଣ୍ଣିତ ଶୋଣିତାଖ୍ୟ ମଣ୍ଡଳ ହେଉଛି ଆସାମର ତେଜପୁର ଅଞ୍ଚଳ, ମଞ୍ଜିକା ମଣ୍ଡଳ ବିଜୟନଗର ସାମ୍ରାଜ୍ୟ, କୋଶଳମଣ୍ଡଳ ବାହ୍ମନୀ ରାଜ୍ୟ, ଗାର୍ଜନ ଗଜନୀ, ଦିଲ୍ଲୀ ତେହେର ଗଡ଼ୱାଲ, କୁନ୍ତର କାଲଞ୍ଜର, ବାରସିଟି ପୂର୍ବପଞ୍ଜାବ, ଅରବିନ୍ଦ ସିକମ, ବିଜୟା ବିଜୟୱାଡ଼ା, ମତ୍ସ୍ୟଦେଶ ରାଜପୁତାନା ଅଞ୍ଚଳ (ଶ୍ଳେଷାର୍ଥରେ କ୍ଷୀରଦେଶ ବା ଚରଦେଶ) । (୩୬)

ଏହିପରି ବିସ୍ତୃତ ବର୍ଣ୍ଣନା ପ୍ରଦାନ କାଳରେ ସାରଳା ଅବଶ୍ୟ କେତେକ ଐତିହାସିକ ନାମକୁ ଭିନ୍ନ ଭାବରେ ଗ୍ରହଣ କରି ନେଇଛନ୍ତି । ଉଦାହରଣ ସ୍ୱରୂପ, ସେ ବଙ୍ଗ ରାଜ୍ୟକୁ ଗୌଡ଼, ବଙ୍ଗଳା, ବେଲ୍ଲାଳ ଦେଶ, ବେଲ୍ଲାଳପୁର ଓ ବେଲ୍ବର୍ଲାପୁର; କୋଣ୍ଡାବିଡ଼ୁକୁ କୁଣ୍ଡୀନଗ୍ର ଓ କୁଣ୍ଡାବେଦୀ, କୃଷ୍ଣାନଦୀକୁ କୃଷ୍ଣବେଣା, କୃଷ୍ଣବେଣୀ ଓ କୃଷ୍ଣଭଦ୍ରା ଇତ୍ୟାଦି ଭାବରେ ଉଲ୍ଲେଖ କରିଛନ୍ତି । ତେବେ, ମଲ୍ଲିକାର୍ଜୁନଙ୍କ ଜ୍ଞାତିଭ୍ରାତା ବିରୂପାକ୍ଷ (୩୭), ପାଳବଂଶର ଧର୍ମପାଳ, ସେନବଂଶର ଲକ୍ଷ୍ମଣସେନ, କେଶବସେନ (୩୮) ପ୍ରଭୃତି ନାମ ସେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ଏଠାରେ ଏତିକ ଉଲ୍ଲେଖଯୋଗ୍ୟ ଯେ ସାରଳା ତାଙ୍କ ପୌରାଣିକ କାବ୍ୟଶୈଳୀର ରୂପନ୍ୟାସ କରୁ କରୁ ଅନେକ ସ୍ଥଳେ ସମସାମୟିକ ରାଜନୀତିର ଜଟିଳତମ ପ୍ରଦେଶକୁ ପ୍ରବେଶ କରି ଯାଇଛନ୍ତି ।

## ଭାରତୀୟ ପରଂପରାର ପ୍ରଭାବ

ରାଜବଂଶର ପାରଂପରିକ ବିବରଣୀ କିମ୍ବା ରାଜାମାନଙ୍କର ପ୍ରଶସ୍ତି ଗାନ ମହାଭାରତ ପରି ଏକ ବିଶାଳ ଗ୍ରନ୍ଥର ଏକ ପୌରାଣିକ ଆବଶ୍ୟକତା ହୋଇପାରେ । କିନ୍ତୁ ଏହାର ପୃଷ୍ଠଭୂମିରେ ଲେଖକର ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଆଦର୍ଶ ଯେ ପ୍ରଚ୍ଛନ୍ନ ଭାବେ ନିହିତ, ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ବର୍ଣ୍ଣାଶ୍ରମ ଧର୍ମରେ ବିଶ୍ୱାସୀ ଯେ କୌଣସି ବ୍ୟକ୍ତି ପାରିବାରିକ ପରଂପରା ଉପରେ ଗୁରୁତ୍ୱ

---

(୩୫) ସା: ମ: ଭା: (ରା) ବନ- ପୃ. ୨୫୫
(୩୬) ପାଣିଗ୍ରାହୀ, ଡ଼: କୃଷ୍ଣଚନ୍ଦ୍ର ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ଚିତ୍ର (ପ୍ରକାଶନ ପ୍ରଚାର ସମିତି, କଟକ, ୧୯୭୬) ପୃ ୯୬-୧୦୧ ଓ ୧୦୯-୧୫୨ ।
(୩୭) ସା ମ ଭା (ରା)—ଆଦ୍ୟ ପୃ ୪୪
(୩୮) ଏକନ—          ସଭା ପୃ ୧୨୮

ଆରୋପ କରିବା ସ୍ୱାଭାବିକ । ରାଜ୍ୟର ସୁରକ୍ଷା ଏବଂ ରାଜବଂଶର ପ୍ରତିଷ୍ଠା ପାଇଁ ସେହି ବଂଶର ଉତ୍ତରାଧିକାରୀମାନେହିଁ ଅଧିକ ସମର୍ଥ । କେବଳ ସେତିକି ନୁହେଁ, ରାଜା ଅପୁତ୍ରିକ ଭାବେ ମୃତ୍ୟୁବରଣ କଲେ ସେହି ବଂଶର ରାଜକୀୟ ପରଂପରା ସୁରକ୍ଷିତ ହେବାର ସମ୍ଭାବନା ଯେପରି ହ୍ରାସ ପାଏ, ସେହିପରି ସେହି ରାଜ୍ୟର ସ୍ଥିତି ମଧ୍ୟ ଦୋଦୁଲ୍ୟମାନ ହୋଇ ଉଠେ । ବହୁ ପରବର୍ତ୍ତୀ ସମୟରେ ଇଂରେଜ ସରକାର ଯେଉଁ ରାଜ୍ୟସ୍ୱତ୍ୱ ଲୋପ ନୀତି ପ୍ରବର୍ତ୍ତନ କରିଥିଲେ, ତାହା ଯେ ଭାରତୀୟ ମନୀଷୀଗଣ ବହୁ ପୂର୍ବରୁ ଉପଲବ୍ଧି ନ କରିଛନ୍ତି, ତାହା ନୁହେଁ । ସେଥିପାଇଁ ସାରଳା ଦାସ ମଧ୍ୟ ବଂଶ ପରଂପରା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିବା ସ୍ୱାଭାବିକ ମନେହୁଏ ।

ଭାରତୀୟ ପରଂପରାରେ ରାଜାର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ଥିଲା ପ୍ରଜାନୁରଞ୍ଜନ । ରାଜ୍ୟ ଲାଳସାଠାରୁ ଦୂରରେ ରହି ପ୍ରଜାମାନଙ୍କର ହିତସାଧନ କରିବା ଥିଲା ରାଜାର ପରମ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ ସମ୍ପାଦନ ନିମିତ୍ତ ରାଜା ଦୁଇଟି ମାର୍ଗକୁ ଆଶ୍ରୟ କରିବା ପାଇଁ ବାଧ୍ୟ—ଯୁଦ୍ଧ ଓ ଧର୍ମାନୁଷ୍ଠାନ । ଯୁଦ୍ଧ ମାଧ୍ୟମରେ ସେ ରାଜ୍ୟର ସୀମାକୁ ବିସ୍ତୃତ କରି ନପାରେ, କିନ୍ତୁ ତାହାକୁ ସଙ୍କୁଚିତ କରିବା ପାଇଁ କଦାପି ପ୍ରଶ୍ରୟ ଦିଆଯାଇ ନପାରେ । ସେହିପରି ଧର୍ମାନୁଷ୍ଠାନ ମାଧ୍ୟମରେ ସେ ପ୍ରଜାମାନଙ୍କର କଲ୍ୟାଣ ସାଧନ କରିବା ପାଇଁ ଚେଷ୍ଟା କରେ । ସାରଳା ଦାସଙ୍କ ମହାଭାରତରେ ଏହି ଉଭୟର ବିସ୍ତୃତ ବର୍ଣ୍ଣନା ପରିଦୃଷ୍ଟ ହୁଏ ।

ଭାରତୀୟ ରାଜନୈତିକ ଆଦର୍ଶରେ ଉତ୍ତରାଧିକାରୀ ସୂତ୍ରରେ ରାଜସିଂହାସନ ଲାଭର ପରଂପରା ଥିଲେ ସୁଦ୍ଧା ସିଂହାସନ ଆରୋହଣ ଲାଗି ଶାସ୍ତ୍ରଜ୍ଞାନ, ଅସ୍ତ୍ରସାଧନା, ଆଚରଣ ଶୁଦ୍ଧି ଆଦି ଆବଶ୍ୟକୀୟ ଯୋଗ୍ୟତା ହାସଲ କରିବା ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଥିଲା । ରୁକ୍ମଣ, ପଙ୍କ୍ରୁ, ବିକଳାଙ୍ଗ ଓ ଦୁରାଗ୍ରହୀ ଜ୍ୟେଷ୍ଠ ରାଜକୁମାରମାନଙ୍କୁ ରାଜ ଅଧିକାରରୁ ବଂଚିତ କରାଯିବାର ଦୃଷ୍ଟାନ୍ତ ଭାରତର ରାଜନୈତିକ ଇତିହାସରେ ବିରଳ ନୁହେଁ । ପ୍ରଥମ ଚନ୍ଦ୍ରଗୁପ୍ତ ଅନ୍ୟ ରାଜକୁମାର-ମାନଙ୍କ ଦାବୀ ପ୍ରତି ଭ୍ରୂକ୍ଷେପ ନକରି ସମୁଦ୍ରଗୁପ୍ତଙ୍କୁ ରାଜଗାଦି ଅର୍ପଣ କରିଥିଲେ ଏବଂ କପିଳେନ୍ଦ୍ରଙ୍କ ଦ୍ୱାରା ପୁରୁଷୋତ୍ତମ ଦେବ ଉତ୍ତରାଧିକାରୀ ମନୋନୀତ ହୋଇଥିଲେ । ଏପରିକି, ସୁଯୋଗ୍ୟ ଉତ୍ତରାଧିକାରୀ ଅଭାବରେ ରାଜବଂଶର ମହିଳାମାନଙ୍କ ହସ୍ତରେ ମଧ୍ୟ ରାଜ୍ୟଭାର ଅର୍ପଣ କରାଯିବାର ବହୁ ନିଦର୍ଶନ ରହିଅଛି (୩୯)

କିନ୍ତୁ ରାଜା ନିଜେ କେବଳ ରାଜପୁତ୍ରର ଯୋଗ୍ୟତା ବିବେଚନା କରି ତାଙ୍କୁ ରାଜ୍ୟର ଉତ୍ତରାଧିକାରୀ ରୂପେ ମନୋନୟନ କରିବାର ଏକାଧିପତ୍ୟ ଅଧିକାରକୁ ଭାରତୀୟ ରାଜନୀତି-ପଣ୍ଡିତମାନେ ସ୍ୱୀକାର କରି ନାହାନ୍ତି । ଏଥିପାଇଁ ରାଜ୍ୟବାସୀ ଓ ପାରିଷଦଙ୍କ ସମ୍ମୁଖରେ ଉତ୍ତରାଧିକାରୀଙ୍କୁ ରାଜସିଂହାସନରେ ଅଭିଷିକ୍ତ କରିବାର ଏକ ସୁସ୍ଥ ଗଣତାନ୍ତ୍ରିକ ପରଂପରାର ପ୍ରଚଳନ କରାଯାଇଛି । ଫଳରେ ନୂତନ ରାଜାଙ୍କ ବିରୁଦ୍ଧରେ ପ୍ରଜା, ପାରିଷଦ, ସାମନ୍ତ ରାଜା ବା ବନ୍ଧୁ ରାଜ୍ୟମାନେ ସ୍ୱର ଉତ୍ତୋଳନ କରିବାର ଅବକାଶ ରହେ ନାହିଁ ।

ଭାରତୀୟ ପରଂପରାରେ ରାଜା 'ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି' । ଅର୍ଥାତ୍, ଯେଉଁ ଦିନ ରାଜା ସିଂହାସନ ଆରୋହଣ କରନ୍ତି, ସେହି ଦିନଠୁଁ ସେ ଦେବତା ଠାରୁ ଉଚ୍ଚ ଆସନରେ ଅଧିଷ୍ଠିତ ହୋଇ ଥାଆନ୍ତି । ରାଜପଦରେ ଅଭିଷିକ୍ତ ହେବାପରେ ସେ ଏକ ପ୍ରକାର ସନ୍ନ୍ୟାସ ଜୀବନ (୪୦) ଅବଲମ୍ବନ କରିଥାନ୍ତି ଏବଂ ଏହି ଅବସରରେ ରାଜଧର୍ମ ପାଳନ ପାଇଁ ରାଜ୍ୟବାସୀଙ୍କ ସମକ୍ଷରେ ଶପଥ ଗ୍ରହଣ କରିଥାନ୍ତି । ଏହି ରାଜନୈତିକ ପରଂପରାର ଏକ ବର୍ଣ୍ଣାଢ୍ୟ ଚିତ୍ର ସାରଳା ଦାସଙ୍କ ସୃଷ୍ଟିରେ ଦେଖିବାକୁ ମିଳିଥାଏ ।

---

(୩୯) ଦ୍ୱିତୀୟ ରୁଦ୍ରସେନଙ୍କ ବିଧବା ରାଣୀ ପ୍ରଭାବତୀ (ଚତୁର୍ଥ ଶତାବ୍ଦୀ), କାନ୍ୟକୁବ୍ଜ ରାଜା ଗ୍ରହବର୍ମଣଙ୍କ ପତ୍ନୀ ରାଜ୍ୟଶ୍ରୀ (ଖ୍ରୀ. ୬୦୬), କାଶ୍ମୀର ରାଣୀ ଦିଦ୍ଦା (ଦଶମ ଶତାବ୍ଦୀ), ଦ୍ୱିତୀୟ ଜୟସେନଙ୍କ ଭଗିନୀ ଅକ୍କାଦେବୀ (୧୦୧୫-୪୨), ପ୍ରଥମ ରାଜରାଜ ଦେବଙ୍କ ଭଗିନୀ କୁନ୍ଦଦେବୀ (ଖ୍ରୀ: ୧୦୨୨-୬୩), ଓ୍ୱାରଙ୍ଗଲର କାକତୀୟ ମହିଷୀ ରୁଦ୍ରାମ୍ବା (ଖ୍ରୀ ୧୨୫୯-୮୮) ପ୍ରମୁଖ ।

(୪୦) କୌଟିଲ୍ୟ 'ଅର୍ଥଶାସ୍ତ୍ର'ରେ ରାଜାଙ୍କୁ ସନ୍ନ୍ୟାସୀ ସହ ତୁଳନା କରି ତାଙ୍କର ଭୋଜନ, ଶୟନ, ବିଶ୍ରାମ ଓ ଅବସର ବିନୋଦନ ପାଇଁ ଗୋଟିଏ ଦିନର ଏକ ଚତୁର୍ଥାଂଶ ସମୟହିଁ ନିର୍ଦ୍ଧାରଣ କରିଛନ୍ତି । ଅବଶିଷ୍ଟ ସମସ୍ତ ସମୟ (ପ୍ରାୟ ୧୮ ଘଣ୍ଟା) ରାଜକର୍ତ୍ତବ୍ୟ ପାଳନ ନିମନ୍ତେ ଉଦ୍ଦିଷ୍ଟ ।

(ଅର୍ଥଶାସ୍ତ୍ର-୧ମ ଅଧିକରଣ, ୧୯ତମ ଅଧ୍ୟାୟ, ୧୬ଶ ପ୍ରକରଣ)

## ଅଭିଷେକ ବିଧାନ

ଅଭିଷେକ ଉତ୍ସବ ପ୍ରତ୍ୟେକ ରାଜ ପରିବାରର ଏକ ଶ୍ରେଷ୍ଠ ଓ ପବିତ୍ର ଅନୁଷ୍ଠାନ ରୂପେ ଯୁଗେ ଯୁଗେ ଗୃହୀତ ହୋଇ ଆସିଅଛି । ଏଥିପାଇଁ ଶୁଭ ମାସ, ଶୁଭ ତିଥି, ବାର, ନକ୍ଷତ୍ର, ଯୋଗ, କରଣ, ପ୍ରଭୃତିରୁ ନିର୍ଣ୍ଣୟପୂର୍ବକ ମୁହୂର୍ତ୍ତି ନିରୂପଣ କରାଯାଇଥାଏ । ବନ୍ଧୁ ରାଜନ୍ୟମଣ୍ଡଳୀଙ୍କ ସମେତ ବଶିଷ୍ଠ ମୁନିଋଷି, ବ୍ରାହ୍ମଣ ଓ ପୁରୋହିତଙ୍କୁ ନିମନ୍ତ୍ରଣ କରାଯାଇ ସମସ୍ତଙ୍କ ଉପସ୍ଥିତିରେ ଅଭିଷେକ ଉତ୍ସବ ଅନୁଷ୍ଠିତ ହୋଇଥାଏ । ରାଜପ୍ରାସାଦର ଦ୍ୱାରଦେଶରେ ଶ୍ୱେତବର୍ଣ୍ଣ ରମ୍ଭାତରୁ ଓ ପୂର୍ଣ୍ଣ ସୁବର୍ଣ୍ଣ କଳସ ସ୍ଥାପନପୂର୍ବକ ଭବନ ନାନା କାରୁକାର୍ଯ୍ୟ ଖଚିତ ହୋଇ ସିଂହାସନ ରତ୍ନ ବୈଦୂର୍ଯ୍ୟାଦିରେ ମଣ୍ଡନ କରାଯାଏ । ରତ୍ନମୁଖାରେ ସ୍ଥାପିତ ଘୃତପୂର୍ଣ୍ଣ ଶ୍ୱେତ ପ୍ରଦୀପରେ ଶ୍ୱେତ ବଳିତା ପ୍ରଜ୍ୱଳିତ ହୋଇଥାଏ । ମୁନିଋଷିଗଣ ଶିଷ୍ୟବୃନ୍ଦଙ୍କ ସହିତ କଚ୍ଛକୌପୁନି ପିନ୍ଧି ସର୍ବାଙ୍ଗ ଭସ୍ମ ବିଲେପିତ ହୋଇ ଦଣ୍ଡ କମଣ୍ଡଳୁ ହସ୍ତରେ ରାଜସିଂହାସନ ନିକଟରେ ବିରାଜମାନ ରହିଥାନ୍ତି । ବିଜ୍ଞ ବେଦଜ୍ଞ ବ୍ରାହ୍ମଣ ଚିତା ପଇତା ଶୋଭିତ ହୋଇ ଗଳାରେ ତୁଳସୀ କମ୍ବା ରୁଦ୍ରାକ୍ଷ ମାଳା ଲମ୍ବାଇ ତମ୍ବାପାତ୍ରୀ ଓ କୁଶବଟୁ ହସ୍ତରେ ଉପସ୍ଥିତ ଥାଆନ୍ତି ।

ସପୃକ୍ତ ରାଜପୁତ୍ର କୋଟିତୀର୍ଥରୁ ସଂଗୃହୀତ ପବିତ୍ର ଜଳରେ ଶୁଦ୍ଧସ୍ନାନ କରି ଶ୍ୱେତ ଶୁଭ୍ର ବସ୍ତ୍ର ପରିଧାନ ଓ ପୀତ ଉତ୍ତରୀୟ ଧାରଣପୂର୍ବକ କପୋଳଦେଶରେ ଗନ୍ଧ ଚନ୍ଦନର ଚିତା, ଗଳାରେ ଶ୍ୱେତପୁଷ୍ପର ମାଲ୍ୟ, ସ୍କନ୍ଧରେ ଅଭିମନ୍ତ୍ରିତ ଯଜ୍ଞୋପବୀତ ଓ କର୍ଣ୍ଣରେ କୁଣ୍ଡଳ ଧାରଣ କରି ଅଭିଷେକ ପାଇଁ ପ୍ରସ୍ତୁତ ହୁଅନ୍ତି । ସମସ୍ତ ମୁନିଋଷି ଓ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ପଦ ପ୍ରକ୍ଷାଳନ ପୂର୍ବକ ସ୍ୱାଗତ କରାଯାଏ । ପୁରୋହିତ ବରଣ ସ୍ୱସ୍ତି ଦେବପ୍ରତିମାଙ୍କୁ ବରଣ କଲାପରେ ଯଜ୍ଞ କୁଣ୍ଡରେ ଅଗ୍ନି ସଂଯୋଗ ପୂର୍ବକ ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେରାଦି ଦେବତା, ଦ୍ୱାଦଶ ସବିତା, ପଞ୍ଚଦଶ ଦୁର୍ଗାସ୍ତୁଣୀ, ଅଷ୍ଟଭଦ୍ରାସ୍ତୁଣୀ, ଅଷ୍ଟ ନାଗ, ଦଶଦିଗପାଳ, ନବଗ୍ରହ ପଞ୍ଚାବଳି, ଅଣଚାଶ ବାୟୁ, ସପ୍ତମନୁଷ୍ୟ ଓ ଗ୍ରାମଦେବତା ଆଦିଙ୍କୁ ଦ୍ୱାଦଶ କୋଟି ମନ୍ତ୍ରରେ ଆହୁତି ପ୍ରଦାନ କରନ୍ତି । ତତ୍ପରେ ପଟ୍ଟବସ୍ତ୍ରରେ ଶିର ଆବେଷ୍ଟନପୂର୍ବକ ଅଭିମନ୍ତ୍ରିତ ମୁକୁଟ ପରିଧାନ କରାଇ ବେଦବାକ୍ୟ ପଠନ, ମଙ୍ଗଳାଷ୍ଟକ ଗାନ, ଶଙ୍ଖ, ମହୁରି, ତାଳ, ମର୍ଦ୍ଦଳ, ଭେରୀ, ତୁରୀ ଆଦି ବାଦନ ଓ ଘନଘନ ହୁଳହୁଳି ଧ୍ୱନି ମଧ୍ୟରେ ମୁନି, ଋଷି, ବ୍ରାହ୍ମଣ, ପଣ୍ଡିତ ଓ ରାଜନ୍ୟମଣ୍ଡଳୀଙ୍କ ସମାବେଶରେ ରାଜକୁମାରଙ୍କୁ ସିଂହାସନରେ ସମାସୀନ କରାଇବା ପାଇଁ ନିଆଯାଏ । ତାଙ୍କ ମସ୍ତକ ଉପରେ ମନ୍ତ୍ରପାଠପୂର୍ବକ ଦୂର୍ବାଦଳ ଅକ୍ଷତ, ଶ୍ୱେତପୁଷ୍ପ ଓ ତୀର୍ଥବାରି ସିଞ୍ଚନ

କରାଯାଏ । ତାଙ୍କ ବାମପାର୍ଶ୍ୱରେ ଯୁବରାଣୀଙ୍କୁ ଉପବେଶନ କରାଇ ଦକ୍ଷିଣ ଦଗରେ ରାଜଦଣ୍ଡ ସଂସ୍ଥାପନ କରାଯାଏ । ପରବର୍ତ୍ତୀକାଳରେ ଛତ୍ର, ଆଲଟ ଚାମର ସେବାରେ ନିଯୁକ୍ତ ଥାଆନ୍ତି ।

ଏହି ଅବସରରେ ବିଭିନ୍ନ ଆମନ୍ତ୍ରିତ ରାଜନ୍ୟବୃନ୍ଦ ନବାଭିଷିକ୍ତ ରାଜାଙ୍କୁ ବିଭିନ୍ନ ବସନ ଆଭୂଷଣ ଉପଢୌକନ ସ୍ୱରୂପ ଅର୍ପଣ କରିଥାନ୍ତି । ରାଜା ସ୍ୱହସ୍ତରେ ମୁନିଋଷି ଓ ବ୍ରାହ୍ମଣମାନଙ୍କୁ ଅନ୍ନବସ୍ତ୍ର ଓ ସ୍ୱର୍ଣ୍ଣରତ୍ନାଦି ଦାନରେ ସନ୍ତୁଷ୍ଟ କରିଥାନ୍ତି । ପାତ୍ର, ମନ୍ତ୍ରୀ, ସେନାପତି ଓ ସୈନିକମାନଙ୍କୁ ଶାଢ଼ୀ ପ୍ରଦାନ କରାଯାଏ । ରାଜା ନୂତନ ଦାୟିତ୍ୱ ଗ୍ରହଣ କରିବା ଉପଲକ୍ଷେ କେତେକ ବିଶେଷ ନୀତି (ଶୁଳ୍କ ଛାଡ଼୍, କର ରହିତ ବା ଦେବତା ବ୍ରାହ୍ମଣଙ୍କୁ ନିଷ୍କର ଜମିଦାନ ଇତ୍ୟାଦି) ଘୋଷଣା କରିଥାନ୍ତି । ରାଜା ସସ୍ତ୍ରୀକ ସୁସଜ୍ଜିତ ଶ୍ୱେତହସ୍ତୀ ଆରୋହଣପୂର୍ବକ ମହାସମାରୋହରେ ମନ୍ତ୍ରୀ, ପାରିଷଦ, ଅଶ୍ୱ ଗଜ, ରଥ ରଥୀଙ୍କ ସମଭିବ୍ୟାହାରରେ ନଗର ପରିକ୍ରମା କରିଥାନ୍ତି । ନୃତ୍ୟ ସଙ୍ଗୀତରେ ରାଜଧାନୀ ଉଚ୍ଛୁଳ ଉଠିଥାଏ (୪୧)

ପରୀକ୍ଷିତ, ଯୁଧିଷ୍ଠିର, ଦୁର୍ଯ୍ୟୋଧନ, ଶ୍ରୀରାମ, ଘଟୋତ୍କଚ ପ୍ରମୁଖଙ୍କର ଅଭିଷେକ ଉତ୍ସବ ବର୍ଣ୍ଣନା ପ୍ରସଙ୍ଗରେ ସାରଳା ଯେଉଁ ପାରଂପରିକ ଓ ପ୍ରତ୍ୟକ୍ଷୀଭୂତ ଚିତ୍ର ପ୍ରଦାନ କରି ଅଛନ୍ତି, ସେଥିରୁ କେବଳ ସେ କାଳର ଏକ ବାସ୍ତବ ରାଜତାନ୍ତ୍ରିକ ସ୍ଥିତିର ପରିଚୟ ମିଳେ ନାହିଁ, ତତ୍ ସଙ୍ଗେ ସଙ୍ଗେ ପାରଂପରିକ ପ୍ରଥା ପ୍ରତି ସାରଳାଙ୍କ ପ୍ରଚ୍ଛନ୍ନ ସମର୍ଥନର ସୂଚନା ମଧ୍ୟ ମିଳିଥାଏ ।

## ରାଜକୀୟ ଯୋଗ୍ୟତା

ରାଜସିଂହାସନରେ ଅଭିଷିକ୍ତ ହେବା ପରେ ରାଜାର ବ୍ୟକ୍ତିତ୍ୱ ଏକ ଅଭିନବ ରୂପ ଆହରଣ କରେ । ପିତା କିମ୍ବା ମନ୍ତ୍ରୀ ପରିଷଦଙ୍କ ଦ୍ୱାରା ସେ ଯଦି ସମସ୍ତ ରାଜକୀୟ ଗୁଣର ଅଧିକାରୀ ହୋଇ ପାରିଥାନ୍ତି, ତେବେ ରାଜ୍ୟଶାସନ କ୍ଷେତ୍ରରେ ତାଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ ନାହିଁ । କିନ୍ତୁ ଅନେକ

(୪୧) ସା: ମ: ଭା: (ରା) - ଆଦ୍ୟ ପୃ. ୪୪, ୧୯୮-୨୦୦; ବିରାଟ-ପୃ ୧୬୦-୧୬୪; ଗଦା- ପୃ. ୧୭ ଓ ଶାନ୍ତି- ପୃ. ୧୫ ଏବଂ ସା: ମ: ଭ. (ସା)—ଆଦି ପୃ. ୬୩୭-୬୪୧

ସମସ୍ତରେ ଅନଭିଜ୍ଞ ତଥା ନାବାଳକ ରାଜାମାନଙ୍କୁ ରାଜ୍ୟଶାସନର ସମସ୍ତ କୌଶଳ ଶିକ୍ଷା କରିବାକୁ ପଡ଼ିଥାଏ । ସାରଳା ଦାସ ଏ ପ୍ରକାର ପରିସ୍ଥିତି ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ ଥିଲେ । ତେଣୁ ମହାଭାରତର ବିଭିନ୍ନ ସ୍ଥଳରେ ରାଜାମାନଙ୍କର ଯୋଗ୍ୟତା ସମ୍ପର୍କରେ ସେ ନିଜର ଅଭିଜ୍ଞତାପ୍ରସୂତ ଆଦର୍ଶ ପ୍ରଖ୍ୟାପନ କରିଛନ୍ତି ।

ରାଜା ଜ୍ଞାନୀ, ପଣ୍ଡିତ ଓ ବହୁଶାସ୍ତ୍ରଦର୍ଶୀ ହେବା ସପକ୍ଷରେ ନିଜର ସମର୍ଥନ ଜ୍ଞାପନର ସୂଚନା ଦେବାକୁ ଯାଇ ସେ ସ୍ପଷ୍ଟ ଶୁଣାଇ ଦେଇଛନ୍ତି ଯେ ରାଜା ଅପଣ୍ଡିତ ଓ କୁବୁଦ୍ଧିସମ୍ପନ୍ନ ହେଲେ ରାଜ୍ୟନାଶ ଘଟିବାର ସୁନିଶ୍ଚିତ । (୪୨) ଏଥିପାଇଁ ରାଜାମାନେ ସର୍ବଦା ଧର୍ମପରାୟଣ, ସତ୍ୟବ୍ରତୀ ଓ ନିରଭିମାନୀ ହେବା ସଙ୍ଗେ ସଙ୍ଗେ ବିଜ୍ଞ, ବିବେକୀ, ବେଦାଧାୟୀ ଓ ଶାସ୍ତ୍ର ପୁରାଣରେ ପ୍ରବୀଣ ହେବା ଉଚିତ ବୋଲି ସାରଳା ମତ ପ୍ରକାଶ କରିଛନ୍ତି । (୪୩) ବେଦାଧ୍ୟୟନ, ପଞ୍ଜିକା ଜ୍ଞାନ ଓ ପୁରାଣଶାସ୍ତ୍ର ପଠନ ବ୍ୟତୀତ ଅସ୍ତ୍ରବିଦ୍ୟା, ମଲ୍ଲବିଦ୍ୟା, ଧନୁର୍ବିଦ୍ୟା ଯୁଦ୍ଧ ବିଦ୍ୟାରେ ନିପୁଣତା ହାସଲ କରିବା ରାଜାର କର୍ତ୍ତବ୍ୟ ରୂପେ ଦର୍ଶାଯାଇଛି । ସାରଳାଙ୍କର ଦୃଢ଼ ବୋଧ ହୋଇଥିଲା ଯେ, ଅତି ଧାର୍ମିକ ପଣ ଦ୍ୱାରା କ୍ଷାତ୍ରଧର୍ମ ସୁରକ୍ଷିତ ହେବ ନାହିଁ । (୪୪) ଏଥିଯୋଗୁଁ ସେ ଆକର୍ଷଣ, ସନ୍ଧାନ, ବନ୍ଧାଣ, ଧାରଣ, ଗଦା, କୁନ୍ତ, ଅସି ଓ ଗୁରୁଜ ସଂଚାଳନ ଆଦି ଅସ୍ତ୍ରଶିକ୍ଷା ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । (୪୫) ତାଙ୍କ ମତରେ ଏହି ଅସ୍ତ୍ରବିଦ୍ୟା ଅନ୍ତତଃ ଏଗାର ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟହ ସାଧନ କରାଯିବା ବିଧେୟ । (୪୬) ତେବେ, ରାଜ୍ୟବଳ ଓ ଶସ୍ତ୍ରବଳ ଅନିତ୍ୟ ଏବଂ ଧର୍ମବଳହିଁ ଶାଶ୍ୱତ—ଏହି ପାରଂପରିକ ନୀତିବାଣୀ ଉପରେ ତାଙ୍କର ଗମ୍ଭୀର ବିଶ୍ୱାସ ଥିଲା । (୪୭)

---

(୪୨) ସା: ମ: ଭା: (ରା)— ଆଦ୍ୟ-ପୃ. ୧୩୧

(୪୩) ଏଜନ — ସଭା-ପୃ. ୧୩୮

(୪୪) ଏଜନ — ଆଦ୍ୟ-ପୃ. ୭୫

(୪୫) ଏଜନ — ଆଦ୍ୟ-ପୃ. ୧୦୦

(୪୬) ଏଜନ — ଆଦ୍ୟ-ପୃ. ୧୦୧

(୪୭) ରାଜ୍ୟବଳ ଅସ୍ତ୍ରବଳ ନୁହଇ ସର୍ବଥା
ଧର୍ମ ତପୋବଳେ ଲୋକେ ହୁଏ ବଳବନ୍ତା ।
ଯୋଡ଼ ଏ ରାଜ୍ୟ ମୋହର ନାହିଁ ପ୍ରୟୋଜନ
ଯିବଇଁ ମୁଁ ଦେଶାନ୍ତର ହେବ ତପୋଧନ ।
( ସା: ମ: ଭା: (ରା) ଆଦ୍ୟ- ପୃ. ୧୬୭ )

ଶ୍ରେଷ୍ଠ ରାଜା ଧର୍ମଯଜ୍ଞଦ୍ୱାରା ଦେବାଶୀର୍ବାଦ ଲାଭ କରନ୍ତି ଓ ରାଜସୂୟ ଯଜ୍ଞ ଫଳରେ ସ୍ୱ ପିତୃଲୋକଙ୍କର ବ୍ରହ୍ମହତ୍ୟାଦି ପାତକ ମୋଚନ ହୋଇଥାଏ ବୋଲି ଯେଉଁ ଚରାଚରିତ ବିଶ୍ୱାସ ରହିଥିଲା, ସାରଳା ତାକୁ ସ୍ୱୀକାର କରିଛନ୍ତି । ତାଙ୍କ ବର୍ଣ୍ଣନା ଅନୁଯାୟୀ ନାରଦଙ୍କ ପରାମର୍ଶକ୍ରମେ ଯୁଧିଷ୍ଠିର ପ୍ରଥମେ ଧର୍ମଯଜ୍ଞ କଲାପରେ ପିତାଙ୍କୁ ବ୍ରହ୍ମହତ୍ୟା ପାତକରୁ ମୁକ୍ତ କରିବା ଉଦ୍ଦେଶ୍ୟରେ ବିପୁଳ ରାଜସୂୟ ଯଜ୍ଞର ଆୟୋଜନ କରିଛନ୍ତି । କବିଙ୍କ ଲେଖନୀରେ ଏହି ଉଭୟ ଯଜ୍ଞାନୁଷ୍ଠାନର ବର୍ଣ୍ଣନା ବେଶ୍ ଚମତ୍କାର ଓ ଭାବୋଦ୍ଦୀପକ ।

## ଯଜ୍ଞାନୁଷ୍ଠାନ ପ୍ରକ୍ରିୟା

ଧର୍ମଯଜ୍ଞ ପାଇଁ ପ୍ରଥମେ ଯଜ୍ଞଭୂମି ନିର୍ଣ୍ଣୟ କରିବାକୁ ପଡ଼ୁଥିଲା । ଏଥିପାଇଁ ଜଳର ସୁଲଭତା, ଭୂମିର ପବିତ୍ରତା ଏବଂ ଆୟତନର ବିଶାଳତା ପ୍ରତି ଦୃଷ୍ଟି ଦିଆଯାଉଥିଲା । ସାଧାରଣତଃ ଧର୍ମଯଜ୍ଞ ସକାଶେ ଷୋହଳ ବର୍ଗକୋଣବିଶିଷ୍ଟ ଭୂମି ଆବଶ୍ୟକ ହେଉଥିଲା । ଯଜ୍ଞଭୂମିର ଶୋଧନ ପାଇଁ ଭୂମିକୁ କର୍ଷଣ କରାଯାଇ ମାଷତିଳାଦି ବପନ କରାଯାଉଥିଲା । ଯଜ୍ଞାରମ୍ଭ ପୂର୍ବରୁ ସୂତ୍ର ସାହାଯ୍ୟରେ ନିର୍ଦ୍ଦିଷ୍ଟ ମାପ ପ୍ରକାରେ ଯଜ୍ଞକୁଣ୍ଡ ଖନନପୂର୍ବକ ସେଥିମଧ୍ୟରେ ଅଗ୍ନି ସ୍ଥାପନା ପରେ ରାଜା ସପତ୍ନୀକ ଉପବିଷ୍ଟ ହୋଇ ଦେବତା ଓ ଗ୍ରହମାନଙ୍କୁ ଆହୁତି ପ୍ରଦାନ କରୁଥିଲେ । କୁମ୍ଭ-ପୂଜା, ବରୁଣ ପୂଜା, ବ୍ରହ୍ମାବରଣ, ଆଗ୍ନେୟ ବରଣ ଆଦି ଯଜ୍ଞର ବିଧାନମାନ ପାଳିତ ହେଉଥିଲା । ଏଥିପାଇଁ ମୁନି, ଋଷି ଓ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା ଏବଂ ବନ୍ଧୁ ରାଜ୍ୟର ରାଜନ୍ୟବୃନ୍ଦ ମଧ୍ୟ ଆମନ୍ତ୍ରିତ ହୋଇ ଆସୁଥିଲେ । (୪୮) ସପ୍ତମ ଦିବସରେ ଯଜ୍ଞର ପୂର୍ଣ୍ଣାହୁତି ଦିଆଯାଉଥିଲା ଏବଂ ଏହିଦିନ ବ୍ରାହ୍ମଣ ଓ ମୁନିଋଷି-ମାନଙ୍କୁ ଭୂରିଭୋଜନ ଓ ଧନରତ୍ନାଦିରେ ଆପ୍ୟାୟିତ କରାଯାଉଥିଲା । (୪୯)

ରାଜସୂୟ ଯଜ୍ଞର ଆୟୋଜନ ଥିଲା ସାଧାରଣ ଯଜ୍ଞ ଅପେକ୍ଷା ଅତି ବିରାଟ, ବ୍ୟାପକ ଓ ବ୍ୟୟବହୁଳ । ଏହି ଯଜ୍ଞ ଷୋହଳ ଦିନରେ ସମ୍ପନ୍ନ ହେବା ବିଧି ଏବଂ ଏଥିପାଇଁ ଅନ୍ୟୂନ ଏକଲକ୍ଷ ରାଜାଙ୍କର ଯୋଗଦାନ ଏକାନ୍ତ ବାଞ୍ଛନୀୟ ।

---

(୪୮) ଏହି ଯଜ୍ଞପାଇଁ ଛଅଜଣ ରାଜାଙ୍କ ଉପସ୍ଥିତି ଆବଶ୍ୟକ ପଡ଼ିଥାଏ । ଯୁଧିଷ୍ଠିରଙ୍କ ଧର୍ମଯଜ୍ଞରେ ଦୁର୍ଯ୍ୟୋଧନ, ମୃଗସେନ, ଜୟଧନ୍ତ, ଉଗ୍ରସେନ, ଦ୍ରୁପଦ, ହନୁମନ୍ତ, ବାସବ, ବାସୁକି, ବରୁଣ ଓ କୁବେର ଯୋଗଦାନ କରିଥିଲେ । ( ସା: ମ: ଭା: (ସ)-ମଧ୍ୟ—ପୃ. ୩୨୧-୩୩୦)

(୪୯) ସା: ମ: ଭା: (ସ) - ମଧ୍ୟ— ପୃ. ୩୩୦

ପୁଣି, ସାଧାରଣ ରାଜାମାନେ ମଧ୍ଯ ଏଥିପାଇଁ ଯୋଗ୍ୟ ବିବେଚିତ ହେଉ ନଥିଲେ । ଯେଉଁ ରାଜାଙ୍କର ଏକ ସହସ୍ର ସ୍ଵର୍ଣ୍ଣ ରଥ, ଦୁଇ ସହସ୍ର ହସ୍ତୀ, ତିନି ସହସ୍ର ଅଶ୍ବ ଏବଂ ଏକ ସାଗର ପଦାତିକ ବଳ ଥିବ, ସେହି ରାଜା କେବଳ ଏଥିରେ ଯୋଗଦେବା ପାଇଁ ଯୋଗ୍ୟ ବିବେଚିତ ହେବେ ଏବଂ ଏଭଳି ଏକଲକ୍ଷ ରାଜାଙ୍କ ସମାବେଶରେ ହିଁ ଏହି ଯଜ୍ଞ ଅନୁଷ୍ଠିତ ହୋଇପାରିବ । ଷୋହଳ ଦିନ ପର୍ଯ୍ୟନ୍ତ ଲକ୍ଷାଧିକ ରାଜାଙ୍କର ବସବାସ ଓ ଭୋଜନାଦି ପରିଚର୍ଯ୍ୟା ବ୍ୟତୀତ ସେମାନଙ୍କ ସହିତ ଆସିଥିବା ପାତ୍ର, ମନ୍ତ୍ରୀ, ରଥ, ଗଜ, ଅଶ୍ବାଦିର ସୁବ୍ୟବସ୍ଥା କରାଯିବା ଆବଶ୍ୟକ । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଆୟୋଜନ ବେଳେ ଶ୍ରୀକୃଷ୍ଣ ବିଭିନ୍ନ ରାଜ୍ୟରୁ ଯେଉଁସବୁ ପଦାର୍ଥ ସଂଗ୍ରହ ନିମନ୍ତେ ବିଚାର ଦେଇଛନ୍ତି, ସାରଳା ମହାଭାରତରେ ତାର ଏକ ବିସ୍ତୃତ ବିବରଣୀ ପ୍ରଦତ୍ତ ହୋଇଛି । ନିମ୍ନରେ ତାର ଏକ ସଂକ୍ଷିପ୍ତ ରୂପ ଉପସ୍ଥାପନ କରାଗଲା ।

ଗଜ, ଅଶ୍ବ ଓ ଉଷ୍ଟ୍ରଶାଳମାନ ନିର୍ମାଣ ନିମନ୍ତେ କରାତ ରାଜ୍ୟରୁ ଶୁଷ୍କ ବୃକ୍ଷ ସଂଗ୍ରହ କରାଯାଇଥିଲା । ଚାଉଳ, ମୁଗ, ବିରି ଓ ଘିଅ ପ୍ରଭୃତି ବୁହାଯିବା ଲାଗି ଅଶୀ ଲକ୍ଷ ନାବ ନିର୍ମାଣ ସକାଶେ ମହାରଣାମାନଙ୍କୁ ବିଚାର ଦିଆଯାଇଥିଲା । ମୁନିଋଷି-ମାନଙ୍କର ଭୋଜନ ନିମନ୍ତେ ଷୋହଳ ଦିନ ପର୍ଯ୍ୟନ୍ତ ଯେତେ ମୃଗ, ହରିଣ ଓ ବରାହ ମାଂସ ଆବଶ୍ୟକ, ତାହା ଯୋଗାଇଦେବା ଲାଗି କନ୍ଧ ରାଜା ସୁବଳଙ୍କୁ ଦାୟିତ୍ବ ଦିଆଯାଇଥିଲା । ମଲ୍ଲାର ରାଜ୍ୟରୁ ଆବଶ୍ୟକ ପରିମାଣର ତଣ୍ଡୁଳ ସମେତ ସେହି ରାଜାଙ୍କର ଚଉରାଶୀ ଯୋଜନ ବ୍ୟାପୀ ମଧୁବନ ତୋଟାରୁ ଆମ୍ବ, ପଣସ, ଟଭା, ନଡ଼ିଆ, ପଇଡ଼ ପ୍ରଭୃତି ସଂଗୃହୀତ ହୋଇଥିଲା ।

ଲକ୍ଷେ ରାଜାଙ୍କ ପାଇଁ ଏକ ଲକ୍ଷ ନବର, ପାତ୍ରମନ୍ତ୍ରୀଙ୍କ ଗୃହ ଏବଂ ସୈନ୍ୟାଗାରମାନ ନିର୍ମାଣ କରିବା ସକାଶେ ଭୁଅ, ଶ୍ରେଣୀ ଓ ସ୍ତମ୍ଭ ରୂପେ ବ୍ୟବହାର ଲାଗି ଭୁବନେଶ୍ବର ରାଜାଙ୍କୁ ମନୋହର ବନର ସମସ୍ତ ଅଗୁରୁ ଚନ୍ଦନ ବୃକ୍ଷ ଗଙ୍ଗା-ଜଳରେ ନେଇ ପେଠ କରିବା ପାଇଁ ଆଦେଶ ଦିଆଯାଇଥିଲା । ଏହା ବ୍ୟତୀତ, ଷୋହଳ ଦିନ ପର୍ଯ୍ୟନ୍ତ ଆବଶ୍ୟକୀୟ ଇନ୍ଧନ ଯୋଗାଇବା ଦାୟିତ୍ବ ମଧ୍ଯ ତାଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସପ୍ତନିଧି ଓ ରତ୍ନାଦି ଯୋଗାଇବା ପାଇଁ କୁବେରଙ୍କୁ ଏବଂ ମଣିରତ୍ନହୀରା, ଗଜଦନ୍ତ, ମୁକ୍ତା ଓ ପ୍ରବାଳ ହାର ଖଚିତ ଏକ ଲକ୍ଷ ସ୍ତମ୍ଭ ବିଶିଷ୍ଟ ସୁଧର୍ମା ସଭା ସଦନ ଭଳି ଏକ ଦ୍ଵାଦଶ ଯୋଜନବ୍ୟାପୀ ସଭାଗୃହ ନିର୍ମାଣ କରିବା ଲାଗି ବିଶ୍ଵକର୍ମାଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହା ସହିତ ସେହି ସଭାଗୃହରେ ଜଗନ୍ନାଥଙ୍କର ଏକ ଚିତ୍ରପଟ ଅଙ୍କାଯିବା ସଙ୍ଗେ ସଙ୍ଗେ ବାରକୋଟି ସୁବର୍ଣ୍ଣ ପାବଚ୍ଛ

ନିର୍ମାଣ କରିବା ଏବଂ ଅଷ୍ଟରତ୍ନ କାରୁକାର୍ଯ୍ୟରେ ମଣ୍ଡିତ ଏକ ଶ୍ୱେତ ଚନ୍ଦ୍ରାତପ ଟାଣିଦେବା ପାଇଁ ମଧ୍ୟ ବନ୍ଦୋବସ୍ତ କରାଯାଇଥିଲା । କେବଳ ସେତିକି ନୁହେଁ, ଦ୍ୱାରକାର ମହାରାଣୀମାନଙ୍କୁ ଡ଼କାଇ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସକାଶେ ଦଶଲକ୍ଷ ସୁବର୍ଣ୍ଣ ନଉତି, ଦଶଲକ୍ଷ ସୁବର୍ଣ୍ଣ କଡ଼ାଇ, ଦଶଲକ୍ଷ ତେଲହଣ୍ଡି, ଦଶଲକ୍ଷ ଢ଼ାଳ, ଦଶଲକ୍ଷ ମାଠିଆ, ଶହେ ଅୟୁତ ସୁବର୍ଣ୍ଣ ଦନ୍ତୁଡ଼ି, ଅଶୀ ଅୟୁତ ସୁବର୍ଣ୍ଣ ଦୀପ ଓ ରୁଖା ନିର୍ମାଣ କରିବା ସକାଶେ ନିର୍ଦ୍ଦେଶ ଦେଇଥିଲେ ଏବଂ ଗନ୍ଧକାରମାନଙ୍କୁ ଷୋହଳ ଦିନ ଯଜ୍ଞକାଳରେ ପ୍ରତ୍ୟେକ ରାଜାଙ୍କୁ ଦୈନିକ ଶହେ ମାଡ଼ ହିସାବରେ ଯେତେ ଗନ୍ଧ, ଚୂଆ, କର୍ପୂର, କସ୍ତୁରୀ ଆବଶ୍ୟକ ଚନ୍ଦନ ବ ଡ଼ିଣ ନ କରି ଯୋଗାଇବା ପାଇଁ ବନ୍ଦୋବସ୍ତ କରିଥିଲେ ।

ଏ ସମସ୍ତ ବ୍ୟବସ୍ଥା କରିସାରିବା ପରେ ମଧ୍ୟ ଶ୍ରୀକୃଷ୍ଣ ଆତ୍ମସନ୍ତୋଷ ଲାଭ କରି ନପାରି ରତ୍ନାକର ଭବନକୁ ଯାଇ ଯୁଧିଷ୍ଠିରଙ୍କ ଯଜ୍ଞ ସକାଶେ ସମସ୍ତ ପ୍ରକାର ରତ୍ନ ଯୋଗାଇ ଦେବାକୁ କହିଛନ୍ତି ଏବଂ ଇନ୍ଦ୍ରପୁରୀରେ ପହଞ୍ଚି ନନ୍ଦନବନର ଆମ୍ବ, ପଣସ, କଦଳୀ, ନଡ଼ିଆ, ଟଭା, ଲେମ୍ବୁ, ଦ୍ରାକ୍ଷା, ଜମ୍ବୀର, କଇଥ ଆଦି ସମସ୍ତ ଫଳ ନ ତୋଳି ଯଜ୍ଞ ପାଇଁ ସଂରକ୍ଷିତ ରଖିବା ଲାଗି ନିର୍ଦ୍ଦେଶ ଦେଇଛନ୍ତି । ଏହି ଯଜ୍ଞ ପାଇଁ ଘୃତ ସମୁଦ୍ରରୁ ଘୃତ ସଂଗ୍ରହ କରାଯାଇଥିଲା ଏବଂ ମୟଦୈତ୍ୟ ଏକ ବିଚିତ୍ର ରତ୍ନ ବୈଦୂର୍ଯ୍ୟ ଖଚିତ ଦ୍ୱାଦଶ ଯୋଜନ ଆୟତନର ସଭାସ୍ଥଳୀ ନିର୍ମାଣ କରିଥିଲେ । ଅନ୍ୟ ସମସ୍ତ ପଦାର୍ଥ ବନ୍ଦୋବସ୍ତ ଅନୁଯାୟୀ ସଂଗୃହୀତ ହୋଇଥିଲା ।

ଗଙ୍ଗା ଯମୁନା ନଦୀର ମଧ୍ୟବର୍ତ୍ତୀ ଦ୍ୱାଦଶ ଯୋଜନ ବ୍ୟାପୀ ମହାକ୍ଷେତ୍ରରେ ଯଜ୍ଞଶାଳ ନିର୍ମିତ ହୋଇଥିଲା । ବାରୁଣାବନ୍ତରେ ଶହେ ବଖରା ବିଶିଷ୍ଟ ସହସ୍ରାଧିକ ଗୃହ, ଶତାଧିକ ପାନ୍ଥଶାଳା, ଲକ୍ଷାଧିକ ଗଜ, ଅଶ୍ୱ ଓ ଗୋଶାଳାଦି ନିର୍ମିତ ହୋଇ ତାହା ଦ୍ୱିତୀୟ ଅମରାବତୀ ଭଳି ଦେଖାଯାଇଥିଲା । ସମସ୍ତ କାରିଗର, ମିସ୍ତ୍ରୀ ଓ ବଢ଼େଇମାନଙ୍କୁ ଭୂରିଭୋଜନରେ ସନ୍ତୁଷ୍ଟ କରାଯାଇଥିଲା । ସୁପାତ୍ର, ଉପାଧାନାଦି ଯୋଗାଇବା ପାଇଁ ସ୍ୱଳିଶ ସାଗର ସୂଚୀକର୍ମ ବିଜ୍ଞାନୀ ନିଯୁକ୍ତ ହୋଇଥିଲେ । ମୃତ୍ତିକା ପାତ୍ର ଯୋଗାଇବା ସକାଶେ ବତିଶ ଲକ୍ଷ କୁମ୍ଭାରଶାଳ କାର୍ଯ୍ୟରତ ଥିଲା । ଛତିଶି ପଦ୍ମ ସ୍ୱଳିଶ ସହସ୍ର ହସ୍ତିଦନ୍ତ ଧାଡ଼ି ଧାଡ଼ି ରଖାଯାଇ ରାଜିସାରା ପ୍ରଜ୍ୱଳିତ ହେଉଥିଲା । ପ୍ରତ୍ୟେକ ଗୃହ ସମ୍ମୁଖରେ ଜଳପୂର୍ଣ୍ଣ ସ୍ୱର୍ଣ୍ଣକଳସ ଶୋଭାପାଉଥିଲା ।

ସ୍ୱର୍ଣ୍ଣଘଟରେ ସମସ୍ତ ତୀର୍ଥର ଜଳ ସ୍ଥାପନ କରି ବେଦବାକ୍ୟ ଅନୁଯାୟୀ ବିଶ୍ୱଦେବ, ସନକାଦି ସପ୍ତମନୁଷ୍ୟ, ଅଗ୍ନି, ବରୁଣ, ବ୍ରାହ୍ମଣାଦିଙ୍କ ବରଣ ପରେ କୃଷ୍ଣାଜିନ ଆସନରେ ଉପବିଷ୍ଟ ହୋଇ ଯୁଧିଷ୍ଠିର ଯଜ୍ଞବିଧି ସମ୍ପାଦନ କରିଥିଲେ ।

ଯଜ୍ଞ ଶେଷରେ ପ୍ରତ୍ୟହ ଅନ୍ନ ବସ୍ତ୍ର ଦାନ କରାଯାଉଥିଲା । ଗୌଗ୍ଧ, ଶୌଗ୍ଧ ଓ କଳ ବଧିରେ (୫୦) ପାକକ୍ରିୟା ସମ୍ପନ୍ନ ହେଉଥିଲା । ଏଥିପାଇଁ ଦଶଲକ୍ଷ ସୂପକାର ନିଯୁକ୍ତ ଥିଲେ ଏବଂ ଅଗ୍ନି ଖଙ୍ଗ ସୈନ୍ୟଙ୍କୁ ପରିବେଷଣ ଦାୟିତ୍ୱ ଅର୍ପଣ କରାଯାଇଥିଲା । ଏହି ଯାଗରେ ସମସ୍ତଙ୍କ ପାଇଁ ଅନ୍ନ ଓ ଷଡ଼ବିଧ ବ୍ୟଞ୍ଜନ ସହିତ ଦୁଗ୍ଧ ପାନ ଓ କର୍ପୂର ତାମ୍ବୁଲ ସେବନର ବ୍ୟବସ୍ଥା କରାଯାଇଥିଲା । (୫୧)

ଦୈନନ୍ଦିନ ତଥା ଆନୁଷ୍ଠାନିକ ଯଜ୍ଞ ଅପେକ୍ଷା ରାଜସୂୟ ଯଜ୍ଞର ଅଭିମୁଖ୍ୟ ସ୍ୱତନ୍ତ୍ର । ଏହି ଯଜ୍ଞର ସୁସମାପ୍ତି ପରେ ସମ୍ପୃକ୍ତ ରାଜା ଲକ୍ଷେ ରାଜାଙ୍କ ମଉଡ଼ମଣି ରୂପେ ବିବେଚିତ ହେଉଥିଲେ । ଏଥିପାଇଁ ସମୟେ ସମୟେ ଅନ୍ୟ ରାଜାମାନଙ୍କ ସହିତ ଯୁଦ୍ଧ ମଧ୍ୟ କରିବାକୁ ପଡ଼ୁଥିଲା । ସେଥିପାଇଁ ଯୁଧିଷ୍ଠିରଙ୍କର ଏହି ଧର୍ମାନୁଷ୍ଠାନ ନିମିତ୍ତ ସମର ଓ ଶତ୍ରୁ ସଂହାର ଅବଶ୍ୟମ୍ଭାବୀ ହୋଇପଡ଼ିଥିଲା । ଜରାସନ୍ଧର ବଧ ବିନା ତାର ବନ୍ଦୀଶାଳାରେ ଆବଦ୍ଧ ଥିବା ଛୟାନବେ ସହସ୍ର ରାଜାଙ୍କ ଯଜ୍ଞରେ ଯୋଗଦାନ ସମ୍ଭବ ନଥିଲା । ଏହା ବ୍ୟତୀତ, ଜରାସନ୍ଧର ପୁତ୍ର ସହଦେବ, ମରୁତ ରାଜା ବୀରବାହୁ, କୌଶିକନଗରର କନ୍ଦର୍ପସେନ, ବାତବନର କିରାତ ରାଜା, କାଉଁଞ୍ଚ ଦେଶର କାମପାଳ, କରବୀର ରାଜ୍ୟର ପୁଣ୍ଡ୍ରରାଜ ବାସୁଦେବ, ଭୂପାଳ ନରେଶ ମନ୍ମଥ, ଶଙ୍ଖପୁରର ଜମାଗୋଷ୍ଠ, ଶଙ୍ଖମଣ୍ଡଳର ଦରଦସେନ, ଇଚ୍ଛାପୁରର ବାମଦେବ, ମଳେନ୍ଦ୍ରୀର ନୀଳସେନ, ଚନ୍ଦ୍ରଭଙ୍ଗ ନରପତି ଓ କଳଙ୍କସେନ ପ୍ରଭୃତି ରାଜାଙ୍କ ସହିତ ମଧ୍ୟ ଯୁଦ୍ଧ ଅପରିହାର୍ଯ୍ୟ ହୋଇ ଉଠିଥିଲା । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ପ୍ରାଚୀନ କାଳରେ ଧର୍ମ ସଂସ୍ଥାପନା ନିମିତ୍ତ ଦୁଷ୍ଟ ନିବାରଣ ଅନିବାର୍ଯ୍ୟ ଥିଲା ଏବଂ ଏଥିପାଇଁ ଯୁଦ୍ଧଥିଲା ରାଜ୍ୟ ଶାସନର ଏକ ଅବିଚ୍ଛିନ୍ନ ଅଙ୍ଗ ।

## ରଣଚର୍ଯ୍ୟା ଓ ସମର-ତନ୍ତ୍ର

ଏହି ସମର ବର୍ଣ୍ଣନା ସାରଳା ମହାଭାରତର ଛତ୍ରେ ଛତ୍ରେ ବାଙ୍ମୟ ସଗ୍ରାମ ଭୂମିର ଅବିକଳ ରଣଝଙ୍କାର ସୃଷ୍ଟି କରିଛି । ଯୁଦ୍ଧର କ୍ରିୟାଶୀଳତା ଓ ଭୟାବହତାକୁ ନିଖୁଣ ଭାବରେ ରୂପାୟିତ କରିବାରେ ପ୍ରତ୍ୟକ୍ଷଦର୍ଶୀ ସାରଳା

---

(୫୦) ଗୌଗ୍ଧ, ଶୌଗ୍ଧ ଆଦି ପାକବିଧି ସଂପର୍କରେ ପରବର୍ତ୍ତୀ ପଞ୍ଚମ ପରିଚ୍ଛେଦରେ ବିଶେଷ ଭାବେ ଆଲୋଚନା କରାଯାଇଛି ।

(୫୧) ସା: ମ: ଭା: (ସ)—ସଭା-ପୃ. ୧୦୬-୧୨୫ ଓ ୧୪୦-୧୫୦ ଏବଂ ସା: ମ: ଭା: (ରା)—ସଭା-ପୃ. ୮-୯, ୩୬-୩୭, ୪୮-୫୦, ୨୩୮-୨୪୨ ଓ ୨୪୮ ।

ଦାସ ଅସାଧାରଣ ଦକ୍ଷତାର ପରିଚୟ ଦେଇଅଛନ୍ତି । ଏହି ଦୃଷ୍ଟିରୁ ସାରଳା ମହାଭାରତକୁ ପ୍ରଥମ ଓ ଶ୍ରେଷ୍ଠ ଓଡ଼ିଆ ସମର ସାହିତ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବାର ଆଶଙ୍କା ନାହିଁ ।

ସାରଳା ଦାସ ଯୁଦ୍ଧକୁ କେବଳ ନିର୍ଦ୍ଧାରିତ କ୍ଷାତ୍ରଧର୍ମ ରୂପେ ଗ୍ରହଣ କରି ନାହାନ୍ତି, ବରଂ ସମରଚର୍ଯ୍ୟାକୁ ରାଜଧର୍ମର ଏକ ବିଶିଷ୍ଟ ଅଙ୍ଗରୂପେ ସ୍ୱୀକାର କରି ରାଜ୍ୟର ଅଧୀଶ୍ୱର ଯୁଦ୍ଧ ପ୍ରତି ଭୟଭୀତ ହେଲେ ତାର ଜୀବନ ବ୍ୟର୍ଥ ଓ ନିରର୍ଥକ ବୋଲି ତୀବ୍ର ଆକ୍ଷେପ କରିଛନ୍ତି । (୫୨) ତାଙ୍କ ମତରେ ରାଜାଙ୍କ ପକ୍ଷରେ ଯୁଦ୍ଧ ଏକ ପବିତ୍ର କାର୍ଯ୍ୟ ଏବଂ ଏହାଦ୍ୱାରା ବ୍ରହ୍ମହତ୍ୟା ପାତକରୁ ମଧ୍ୟ ମୁକ୍ତି ମିଳିଥାଏ । (୫୩) ଏଥିପାଇଁ ଯୁଧିଷ୍ଠିରଙ୍କ ପ୍ରତି ନାରଦଙ୍କ ଉପଦେଶ ଛଳରେ ସାରଳା ବ୍ରହ୍ମହତ୍ୟା ପାତକ ମୋଚନ ନିମନ୍ତେ ଯେଉଁସବୁ ପାରଂପରିକ ପ୍ରତିକାର ବିଧାନର ସୂଚନା ପ୍ରଦାନ କରିଅଛନ୍ତି, ସେ ମଧ୍ୟରେ ରଣଯଜ୍ଞ ଅନ୍ୟତମ । (୫୪) ରଣଯଜ୍ଞରେ ବୀରଗତି ପ୍ରାପ୍ତ ହେଲେ ସର୍ବପାପରୁ ମୁକ୍ତି ମିଳିବା ସପକ୍ଷରେ ସାରଳାଙ୍କ ଉକ୍ତି ହେଲା—"ରଣଯୋଗେ ପଡ଼ିଲେ ସର୍ବପାପ ହୁଏ ଧ୍ୱଂସ / ସଂଗ୍ରାମେ ଝାସିଲେ ସମସ୍ତ ପାତକ ହୁଏ ନାଶ ।" (୫୫) କହିବା ବାହୁଲ୍ୟ ଯେ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ସମୟ (ଖ୍ରୀ: ପୂ: ୩୨୭ ୩୦୦) ଠାରୁ ଆରମ୍ଭ କରି ଗଜପତି କପିଳେନ୍ଦ୍ର ଦେବଙ୍କ ଶାସନ କାଳ ପର୍ଯ୍ୟନ୍ତ ଦୀର୍ଘ ଅଠର ଶହ ବର୍ଷର ଶୌର୍ଯ୍ୟଦୀପ୍ତ ଜାତୀୟ ସାମରିକ ସଂସ୍କୃତିଠାରୁ ସାରଳା ନିଜକୁ ବିଚ୍ଛିନ୍ନ କରିବା ଆଦୌ ସମ୍ଭବ ନଥିଲା । (୫୫-କ)

ସାରଳା ମହାଭାରତ ଆମୂଳ ଆଲୋଡ଼ନ କଲେ ଦେଖାଯାଏ ଯେ ଏହି ବିଶାଳ ଗ୍ରନ୍ଥର ସମଗ୍ର କଳେବରର ଏକ ତୃତୀୟାଂଶରୁ ଅଧିକ ଅଂଶ ଯୁଦ୍ଧ ସମ୍ବନ୍ଧୀୟ

---

(୫୨) ସା: ମ: ଭା: (ରା)-ଆଦ୍ୟ-ପୃ. ୪୫ ଓ ସା: ମ. ଭା: (ସା)-ଆଦି-ପୃ. ୧୩୭ ।

(୫୩) ଏଜନ —ସଭା - ପୃ. ୮ ଓ - ଏଜନ— ସଭା - ପୃ. ୨୦

(୫୪) ପ୍ରତିକାରର ଅନ୍ୟ ବିଧାନଗୁଡ଼ିକ ହେଉଛି — ପ୍ରତ୍ୟହ ଅନ୍ନଦାନ, ରାଜସୂୟ ଯଜ୍ଞାନୁଷ୍ଠାନ, ସର୍ବତୀର୍ଥ ଜଳରେ ଅବଗାହନ, ବ୍ରହ୍ମଜ୍ଞାନ ସାଧନ ଅଥବା ପ୍ରୟାଗରେ ଆତ୍ମ ବିସର୍ଜନ । ( ସା: ମ: ଭା: (ରା) ସଭା - ପୃ. ୮ )

(୫୫) ସା: ମ: ଭା: (ସ—ସଭା-ପୃ. ୨୦)

(୫୫-କ) ଓଡ଼ିଶାର ସାମରିକ ସଂସ୍କୃତି (ସଂ. ଓଡ଼ିଶା କଲଚରାଲ ଫୋରମ୍, ଗ୍ରନ୍ଥ ମନ୍ଦିର, କଟକ, ୧୯୮୧) ପୃ. ୯୧

ବର୍ଣ୍ଣନାରେ ପରିପୂର୍ଣ୍ଣ । ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ସାରଳା ମହାଭାରତ ଗ୍ରନ୍ଥର ୭୧୨୯ ପୃଷ୍ଠା ମଧ୍ୟରୁ ୨୩୬୭ ପୃଷ୍ଠାରେ ଯୁଦ୍ଧ ସମ୍ବନ୍ଧୀୟ ବର୍ଣ୍ଣନା ପରିଲକ୍ଷିତ ହୁଏ । ଯଥା—

| ପର୍ବର ନାମ | ପୃଷ୍ଠାସଂଖ୍ୟା | ଯୁଦ୍ଧ ସମ୍ବନ୍ଧୀୟ ପୃଷ୍ଠାସଂଖ୍ୟା |
|---|---|---|
| ଆଦି ପର୍ବ | ୧୦୭୮ | ୧୮୯ |
| ମଧ୍ୟ ପର୍ବ | ୧୧୬୭ | ୪୩୭ |
| ସଭା ପର୍ବ | ୧୨୨୮ | ୨୪୭ |
| ବନ ପର୍ବ | ୧୦୨୩ | ୧୯୩ |
| ବିରାଟ ପର୍ବ | ୭୧୦ | ୧୮୩ |
| ଉଦ୍‌ଯୋଗ ପର୍ବ | ୩୯୭ | ୫୫ |
| ଭୀଷ୍ମ ପର୍ବ | ୩୪୭ | ୨୬୪ |
| ଦ୍ରୋଣ ପର୍ବ | ୪୪୨ | ୪୨୦ |
| କର୍ଣ୍ଣ ପର୍ବ | ୧୬୦ | ୧୨୦ |
| ଶଲ୍ୟ ପର୍ବ | ୨୮ | ୨୦ |
| ଗଦା ପର୍ବ | ୧୦୭ | ୨୫ |
| ଢାଉଁଶିଆ ପର୍ବ | ୧୦୩ | ୭୦ |
| ନାରୀ ପର୍ବ | ୨୪ | ୧୦ |
| ଶାନ୍ତି ପର୍ବ | ୩୨ | ୩ |
| ଅଶ୍ୱମେଧ ପର୍ବ | ୧୧୯ | ୯୦ |
| ଆଶ୍ରମିକ ପର୍ବ | ୫୬ | — |
| ମୂଷଳୀ ପର୍ବ | ୧୨୦ | ୨୮ |
| ସ୍ୱର୍ଗାରୋହଣ ପର୍ବ | ୯୭ | ୧୪ |
| ସର୍ବ ମୋଟ | ୭୧୨୯ | ୨୩୬୭ |

ଯୁଦ୍ଧବିଦ୍ୟା ଶିକ୍ଷା ଠାରୁ ଆରମ୍ଭ କରି ଯୁଦ୍ଧର କାରଣ, ଯୁଦ୍ଧ-ପ୍ରସ୍ତୁତି, ଯୁଦ୍ଧ ପ୍ରଣାଳୀ, ଯୁଦ୍ଧର ବିଧି ବା ନିୟମ ଇତ୍ୟାଦି ସମସ୍ତ ବିଷୟରେ ସାରଳାଙ୍କ ବର୍ଣ୍ଣନା ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ମହତ୍ତ୍ୱପୂର୍ଣ୍ଣ ।

**ଯୁଦ୍ଧବିଦ୍ୟା ଶିକ୍ଷା** : ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଗୁରୁଙ୍କ ପ୍ରତି ଅଗାଧ ଭକ୍ତି ପ୍ରଦର୍ଶନପୂର୍ବକ ଧନୁର୍ବିଦ୍ୟା, ମଲ୍ଲବିଦ୍ୟା, ଗଦାବିଦ୍ୟା, ଅସ୍ତ୍ରବିଦ୍ୟା, ଶସ୍ତ୍ରବିଦ୍ୟା, ଅସି ସଂଚାଳନ ବିଦ୍ୟା, ଶର ମୁଷ୍ଟି ଆକର୍ଷଣ ସଂହରଣ ବିଦ୍ୟା, ଆଧାନ ସନ୍ଧାନ ବିଦ୍ୟା,

ଜ୍ୟୋତିଷ ବିଦ୍ୟା ପ୍ରଭୃତି ଶିକ୍ଷା କରାଯାଉଥିଲା । ବାର ଏଗାର ବା ଚଉଦ ବର୍ଷ ପରେ ଶିକ୍ଷାର ସାର୍ଥକତା ପରୀକ୍ଷା କରାଯାଇ ଶ୍ରେଷ୍ଠ ଯୋଦ୍ଧା ନିରୂପିତ ହେଉଥିଲା । ଶିକ୍ଷାଗୁରୁ ଦ୍ରୋଣ କୌରବ ପାଣ୍ଡବମାନଙ୍କର ଅସ୍ତ୍ରବିଦ୍ୟା ପରୀକ୍ଷା ନିମିତ୍ତ ଯେଉଁ କୌଶଳ ଅବଲମ୍ବନ କରିଥିଲେ, ତାହା କୌତୂହଳୋଦ୍ଦୀପକ । କୁଣ୍ଡଳୀ ପର୍ବତସ୍ଥ ଗୋଟିଏ କୃଷ୍ଣାଗୁରୁ ବୃକ୍ଷର ଶାଖାପ୍ରଶାଖା ଛେଦନ କରାଯାଇ ତାକୁ ଏକ ସ୍ତମ୍ଭ ରୂପେ ବ୍ୟବହାର କରାଯାଇଥିଲା । ଏହି ସ୍ତମ୍ଭର ଶୀର୍ଷଦେଶରେ ଖଣ୍ଡିଏ କାଠି ସ୍ଥାପନ କରାଯାଇ ତା ଉପରେ ଗୋଟିଏ ଧାନ୍ୟଶୃଙ୍ଗ (ଧାନର ଅଗ୍ରଭାଗ), ଧାନ୍ୟଶୃଙ୍ଗ ଉପରେ ଗୋଟିଏ ବରଗଡ଼ ଏବଂ ବରଗଡ଼ ଉପରେ ଷୋଳଗଣ୍ଠି ରଖି ଶର ସନ୍ଧାନ ଲାଗି ନିର୍ଦ୍ଦେଶ ଦେଇଥିଲେ । ଯେଉଁ ରାଜପୁତ୍ର ଅନ୍ୟାନ୍ୟ ଉପକରଣଗୁଡ଼ିକ ଅବିଚଳିତ ରଖି କେବଳ ଷୋଳଗଣ୍ଠିକୁ ଦୁଇଫାଳ କରିବ, ସେ ହିଁ ଶ୍ରେଷ୍ଠ ବିବେଚିତ ହେବ । ଏହି ପରୀକ୍ଷାରେ କର୍ଣ୍ଣ, ଦୁର୍ଯୋଧନ, ଦୁଃଶାସନ, ଅଶ୍ୱତ୍ଥାମା, ଭୀମ, ନକୁଳ କେହି କୃତକାର୍ଯ୍ୟ ହୋଇ ପାରିନଥିଲେ, ଅଥଚ ଅର୍ଜୁନ ସାଫଲ୍ୟମଣ୍ଡିତ ହୋଇଥିଲେ । (୫୬)

ବିନା ଗୁରୁରେ ଯୁଦ୍ଧବିଦ୍ୟା ପ୍ରାପ୍ତହେବା ଦୁଷ୍କର କାର୍ଯ୍ୟ ରୂପେ ବିବେଚିତ ହେଉଥିଲା । ତେଣୁ କିରାତ ରାଜ ଅଜପତିଙ୍କ ପୁତ୍ର ଜାରା ଶବର ମାଟିର ଏକ ଦ୍ରୋଣମୂର୍ତ୍ତି ସ୍ଥାପନା କରି ସୁଦୂରରୁ ଦ୍ରୋଣଙ୍କ ଅଙ୍ଗଭଙ୍ଗୀ ଲକ୍ଷ୍ୟ କରି ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲା । ଗୁରୁଙ୍କୁ ଦକ୍ଷିଣା ଦେବା ଥିଲା ଏକ ଅଲଂଘ୍ୟ ପରମ୍ପରା । ସେଥିଯୋଗୁଁ ଜାରା ଶବର ମୃତ୍ତିକା ନିର୍ମିତ ଦ୍ରୋଣଙ୍କ ପ୍ରତିମା ଉପାସନାପୂର୍ବକ ଯୁଦ୍ଧବିଦ୍ୟା ଶିକ୍ଷା କରିଥିଲେ ହେଁ ପ୍ରକୃତ ଗୁରୁଙ୍କୁ ସମ୍ମୁଖରେ ଦେଖିବା ପରେ ଗୁରୁଙ୍କ ଇଚ୍ଛା ଅନୁଯାୟୀ ଦକ୍ଷିଣ ହସ୍ତ ବୃଦ୍ଧାଙ୍ଗୁଳି ଦାନକରି ଏକଲବ୍ୟ ନାମରେ ପରିଚିତ ହୋଇଥିଲା । (୫୭)

---

(୫୬) ସାଃ ମଃ ଭା (ଗ)—ଆଦ୍ୟ-ପୃ. ୧୦୦-୧୦୩ ଓ ୧୧୨-୧୧୩

(୫୭) (କ) ଏକଳ (ସା) ଆଦ୍ୟ—ପୃ. ୩୦୮ (ରାଧାରମଣ ପ୍ରକାଶିତ ଗ୍ରନ୍ଥରେ 'ବାମହସ୍ତ ବୃଦ୍ଧାଙ୍ଗୁଳି' ତ୍ରୁଟିପୂର୍ଣ୍ଣ ମନେହୁଏ, କାରଣ ଶର ଆଙ୍ଗୁଠିରେ ଶର ବାନ୍ଧିବା ଯାହା ବର୍ଣ୍ଣିତ, ତାହା ଦକ୍ଷିଣ ହସ୍ତକୁ ହିଁ ବୁଝାଇଥାଏ । ସାଃ ମଃ ଭାଃ (ଗ) ଆଦ୍ୟ ୧୦୩-୧୦୬)

(ଖ) ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ—୧ମ ଖଣ୍ଡ-ପୃ. ୩୫୬

ଯୁଦ୍ଧବିଦ୍ୟା ସମାପ୍ତି ପରେ ବାସ୍ତବ କ୍ଷେତ୍ରରେ ତାର ପ୍ରୟୋଗ ପାଇଁ କେତେକ ନିୟମ ରହିଥିବା ସାରଳା ଦାସଙ୍କ ବର୍ଣ୍ଣନାରୁ ଅନୁମାନ କରାଯାଏ । ଏ ସଂପର୍କରେ ସାରଳା ଦାସ ସ୍ପଷ୍ଟତଃ କୌଣସି ନିର୍ଦ୍ଦେଶ ଦେଇ ନଥିଲେ ସୁଦ୍ଧା ମହାଭାରତର ସାମଗ୍ରିକ ଆଲୋଚନାରୁ ମନେହୁଏ, ବିନା କାରଣରେ କେବଳ ଶକ୍ତି ତଥା ଯୁଦ୍ଧକୌଶଳ ପ୍ରଦର୍ଶନ ନିମିତ୍ତ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେବା ଅନୁଚିତ ।

**ଯୁଦ୍ଧର କାରଣ :** ସାରଳା ମହାଭାରତରେ ବିଭିନ୍ନ ଆଖ୍ୟାନ ଉପାଖ୍ୟାନରୁ ଜଣାଯାଏ ଯେ କେବଳ ରାଜ୍ୟବିସ୍ତାର ନିମିତ୍ତ ଯୁଦ୍ଧ ଅନୁଷ୍ଠିତ ହେଉନଥିଲା । ଏହା ବ୍ୟତୀତ, ଆହୁରି ଅନେକ କାରଣରୁ ଯୁଦ୍ଧର ଆବଶ୍ୟକତା ଅନୁଭୂତ ହେଉଥିଲା । ଯେଉଁ ସବୁ କାରଣରୁ ବିଭିନ୍ନ ଯୁଦ୍ଧର ଅବତାରଣା କରାଯାଇଛି ଏବଂ ଯେଉଁସବୁ ପରିସ୍ଥିତିରେ ଯୁଦ୍ଧାନୁଷ୍ଠାନ ଆବଶ୍ୟକ ପଡ଼ିଛି, ସେଥିରୁ ସାରଳା ଦାସଙ୍କ ସମର ନୀତି ସଂପର୍କରେ କେତେକ ସୂଚନା ମିଳିଥାଏ । ସାରଳା ମହାଭାରତରେ ଯେତେକ ଯୁଦ୍ଧର ଚିତ୍ର ଉପସ୍ଥାପିତ ହୋଇଅଛି, ସେଗୁଡ଼ିକୁ ବିଶ୍ଳେଷଣ କଲେ ନିମ୍ନଲିଖିତ ସାତୋଟି କାରଣ ବିଶେଷ ଭାବେ ପରିଲକ୍ଷିତ ହୋଇଥାଏ ।

୧ । ଦୁଷ୍ଟ ନିବାରଣ ବା ଦୁର୍ଜନ ସଂହାରଣ ।

ପାଣ୍ଡବାସୁର, ବକାସୁର, କଳିଙ୍ଗାସୁର, ନାରକାସୁର, ମୂଢ଼ାସୁର, ପ୍ରୌଢ଼ାସୁର, କୁମ୍ଭୀର, କନ୍ଦର, ଗୋସିଂହ, କୁଣ୍ଡଳୀ, ନିବାତକପଚ, କୁମ୍ଭକ, ହିଡ଼ମ୍ବକାଦି ଦୈତ୍ୟଙ୍କ ନିଧନ ତଥା ଗୃଣ୍ଡାଲବାହିନୀ ଉପରେ ଭୀମଙ୍କ ଆକ୍ରମଣ ପ୍ରଭୃତି ଏହାର ଦୃଷ୍ଟାନ୍ତ ।

୨ । ଅବଳା ନାରୀ ପ୍ରତି ଅସଦ୍‌ବ୍ୟବହାର ବା ଅତ୍ୟାଚାର ।

ପତ୍ନୀ ପ୍ରତି ଅତ୍ୟାଚାର ଯୋଗୁଁ କୌରବଙ୍କ ଉପରେ ଜାବାଳିବରର ଆକ୍ରମଣ, ଭୀମଙ୍କ ଦ୍ୱାରା କୀଚକ ବଧ ଏବଂ ଜୟଦ୍ରଥ ସହିତ ଭୀମ ଯୁଦ୍ଧ କରିବା ମୂଳରେ ଏହି କାରଣ ନିହିତ ।

୩ । ହତ୍ୟା, ଅପମାନ ବା ପୂର୍ବଶତ୍ରୁତାର ପ୍ରତିଶୋଧ ।

ଜରାସନ୍ଧ ପୁତ୍ର ସହଦେବର ଭୀମଙ୍କ ସହିତ ଯୁଦ୍ଧ ଏବଂ ସହଦେବଙ୍କ ସହିତ କୃଠାରାସୁରର ଯୁଦ୍ଧ ପିତୃହତ୍ୟା ପ୍ରତିଶୋଧ ଜନିତ । ସ୍ୱୟମ୍ବର ସଭାରେ ହୋଇଥିବା ଅପମାନର ପ୍ରତିଶୋଧ ଲାଗି ଶିଶୁପାଳ ଓ ଶ୍ରୀକୃଷ୍ଣଙ୍କ ସମର ସଂଘଟିତ । ଭୀମକର୍ତ୍ତୃକ ଦୁଃଶାସନ ବଧ ମଧ୍ୟ କୁରୁସଭାରେ ଦ୍ରୌପଦୀଙ୍କ ପ୍ରତି ଅସଦ୍‌ବ୍ୟବହାରର ପ୍ରତିଶୋଧ ମାତ୍ର ।

୪ । ରୂପସୀ ତରୁଣୀର ଆକର୍ଷଣ ।

ସୁଭଦ୍ରା, ସୁରେଖା, ବମ୍ନମାଳୀ, ନାଳେନ୍ଦ୍ରୀ, ଚନ୍ଦ୍ରାବତୀ, ଶୋଭାବତୀ, ଉଷା, ସଚଲା, ହାରାବତୀ, ତ୍ରିପୁରମୋହିନୀ ପ୍ରଭୃତିଙ୍କ ହରଣକାଳୀନ ଯୁଦ୍ଧ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ।

୫ । ନିଜର ଆଧିପତ୍ୟ ପ୍ରତିଷ୍ଠା ଓ ଅନ୍ୟର ଗର୍ବଗଞ୍ଜନ ।

ଜରାସନ୍ଧ, ବୀରବାହୁ, କନ୍ଦର୍ପସେନ, ମଙ୍ଗଳସେନ, ମଲସେନ, ଦୁରଦସେନ, କଳିଙ୍ଗସେନ, ଜମାଗୋଷ୍ଟ, ମନ୍ମଥ ରାଜା, କଳିଙ୍ଗରାଜା ପ୍ରମୁଖଙ୍କ ସହିତ ପାଣ୍ଡବମାନଙ୍କର ଯୁଦ୍ଧ ମୂଳରେ ଏହି କାରଣ ନିହିତ ।

୬ । କୂଟ, କପଟ ବା ପ୍ରତାରଣା ।

ହିଡ଼ିମ୍ବିଙ୍କ ନିଜର ଭ୍ରାତାକୁ ନିହତ କରିବା ଉଦ୍ଦେଶ୍ୟରେ ଭୀମଙ୍କ ପ୍ରତି ଆସକ୍ତ ହେବା, ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ଛୟାନବେ ସହସ୍ର ରାଜାଙ୍କୁ ଅତିଥି ରୂପେ ନିମନ୍ତ୍ରଣ କରିବା ଲାଗି ଶ୍ରୀକୃଷ୍ଣଙ୍କ ଦ୍ୱାରା ଜରାସନ୍ଧର ହତ୍ୟା ଯୋଜନା, ସୈରନ୍ଧ୍ରୀଙ୍କ ପ୍ରତି କପଟାଚରଣ କରି ସୁଦେଷ୍ଣା ଭ୍ରାତା କୀଚକକୁ ହରାଇବା ପ୍ରଭୃତି ଘଟଣାରେ ପ୍ରତାରଣାର ପରିଣାମ ସୁସ୍ପଷ୍ଟ ।

୭ । ନ୍ୟାଯ୍ୟ ଦାବୀ ବା ଅଧିକାର ସାବ୍ୟସ୍ତ ।

ମହାଭାରତରେ ବର୍ଣ୍ଣିତ କୁରୁ ପାଣ୍ଡବଙ୍କ ଅଷ୍ଟାଦଶ ଦିବସବ୍ୟାପୀ ମହାସମର ଏହାର ପ୍ରକୃଷ୍ଟ ଉଦାହରଣ ।

**ଯୁଦ୍ଧ ପ୍ରସ୍ତୁତି—** ସାରଳା ମହାଭାରତରେ ଯେଉଁସବୁ ଯୁଦ୍ଧ ଆକସ୍ମିକ ଭାବେ ସଂଘଟିତ ହୋଇଛି, ସେଥିରେ ସବଳ ପକ୍ଷ ଦୁର୍ବଳ ପକ୍ଷକୁ ଆରମ୍ଭରୁ ଚେତାବନୀ ଶୁଣାଇଛନ୍ତି ଏବଂ ଯେଉଁସବୁ ଯୁଦ୍ଧ ଯୋଜନାବଦ୍ଧ ଭାବରେ ଘଟିଛି, ସେଥିରେ ମଧ୍ୟ ପ୍ରଥମରୁ ପରିଣତି ସମ୍ପର୍କରେ ପ୍ରତିପକ୍ଷକୁ ଯୁଦ୍ଧ ଏଡ଼ାଇବା ପାଇଁ ସଚେତନ କରାଇ ଯଥେଷ୍ଟ ଅବକାଶ ଦିଆଯାଇଛି । ଯେଉଁ ଯୁଦ୍ଧ ସମୟ ସାପେକ୍ଷ, ତାହା ଶୁଭଦିନ, ଶୁଭତିଥି, ଶୁଭବାର, ନକ୍ଷତ୍ର, ଯୋଗ, ଲଗ୍ନାଦି ବିଚାରକୁ ନେଇ ଆରମ୍ଭ ହୋଇଛି । କୁରୁକ୍ଷେତ୍ର ଯୁଦ୍ଧ ପାଇଁ ଶୁଭ ସ୍ତମ୍ଭ ସ୍ଥାପନାବେଳେ ଗର୍ତ୍ତ ଖନନ କାଳର ବେଳା ଓ ଲଗ୍ନ ନିରୂପିତ ହୋଇଛି ଏବଂ ଭଦଭଦଳିଆ ପକ୍ଷୀ ଦେଖି ଶ୍ରୀକୃଷ୍ଣ ସ୍ତମ୍ଭ ସ୍ଥାପନା କରିଛନ୍ତି । ଏପରିକି କୁଣ୍ଡଳୀ (ଗୋକୁଳ) ପର୍ବତରୁ ସ୍ତମ୍ଭ ସକାଶେ ଅଗୁରୁ ( ଚନ୍ଦନ )

କୃଷ୍ଣ ଧନୁର୍ବାଣ ସମସ୍ତରେ ଶଙ୍ଖ, ତୂରୀ, କାହାଳୀ, ପାଟ ଛତ୍ର ଚାମର, ଅପସରା ନୃତ୍ୟାଦି ଶୁଭାଡ଼ମ୍ବର ମଧ୍ୟରେ କାର୍ଯ୍ୟ ଅନୁକୂଳ କରାହୋଇଛି । (୫୮)

ଏହି ମହାଯୁଦ୍ଧର ଶୁଭାରମ୍ଭ ପୂର୍ବରୁ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ସୁପରାମର୍ଶ ଦେବା ପାଇଁ ପ୍ରଥମେ ଗୁରୁ ଓ ପରେ ଧୌମ୍ୟ ପୁରୋହିତଙ୍କୁ ପ୍ରେରଣ କରିଛନ୍ତି ଏବଂ ତତ୍ପରେ ବିଦୁରଙ୍କୁ ପଠାଇ ଶେଷରେ ସ୍ୱୟଂ ଶ୍ରୀକୃଷ୍ଣ ବାରମ୍ବାର ତିନି ଥର ଦୌତ୍ୟ ଓ ମଧ୍ୟସ୍ଥି ରୂପେ କୁରୁସଭାକୁ ଯାଇଛନ୍ତି । ପାଣ୍ଡବ ପାଞ୍ଚ ଭାଇଙ୍କ ପାଇଁ ପାଞ୍ଚ ଖଣ୍ଡଗ୍ରାମ ନ ଦେଲେ ହେଁ ଖଣ୍ଡିଏ ପଡ଼ା ଦେବା ପକାଶେ ଦୁର୍ଯ୍ୟୋଧନଙ୍କୁ ଶ୍ରୀକୃଷ୍ଣ ବହୁତ ବୁଝାଇବା ସତ୍ତ୍ୱେ ସେ ଯୁଦ୍ଧ ବିନା 'ସୂଚ୍ୟଗ୍ର ଭୂମି' ଦେବାକୁ ଅନିଚ୍ଛା ପ୍ରକାଶ କରିବାରୁ ହିଁ ଯୁଦ୍ଧ ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଛି । (୫୯)

ଏଠାରେ ସ୍ମରଣୀୟ ଯେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ସଂଘଟିତ ଯୁଦ୍ଧର କାରଣ ମୂଳ ମହାଭାରତ ଠାରୁ ସ୍ୱତନ୍ତ୍ର ନୁହେଁ । କିନ୍ତୁ ସାରଳାଙ୍କ ରାଜନୈତିକ ଆଦର୍ଶ ବିବେଚନାରେ ଏହାର ଭୂମିକା ସେଥିପାଇଁ ଗୌଣ ବୋଲି କୁହାଯାଇ ନ ପାରେ । ପ୍ରଥମେ ଯୁଦ୍ଧରୂପକ ଏକ ସର୍ବଗ୍ରାସୀ ବିଭୀଷିକାକୁ ଏଡ଼ାଇବା ପାଇଁ ସର୍ବବିଧ ଉପାୟ ଅବଲମ୍ବନ କରିବା ସପକ୍ଷରେ ସାରଳା ମଧ୍ୟ ଥିଲେ ଏକମତ । ଯଦି ସମସ୍ତ ଚେଷ୍ଟା ସତ୍ତ୍ୱେ ଯୁଦ୍ଧ ନିବାରଣ ଉଦ୍ୟମ ବ୍ୟର୍ଥ ହୁଏ, ତେବେ ରଣାଙ୍ଗନରେ ପଦାର୍ପଣ କରି ପ୍ରତିପକ୍ଷର ସଂହାର ପାଇଁ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ । ଏଥିପାଇଁ ପୁଣି ସହାୟକ ରାଜାମାନଙ୍କର ସମର୍ଥନ ଓ ସାହାଯ୍ୟ ଅପରିହାର୍ଯ୍ୟ । ଏମାନଙ୍କ ସହାୟତା ଓ ସାହଚର୍ଯ୍ୟ ବିନା ଏକ ମହାସମର ପାଇଁ ପ୍ରସ୍ତୁତ ହେବା ଧୃଷ୍ଟତାର ମାତ୍ର ପରିଚାୟକ ହେବ । ଏଣୁ ଭାରତ ବର୍ଷର ସମସ୍ତ ରାଜନ୍ୟବୃନ୍ଦଙ୍କୁ ଯେ ଯାହାର ପକ୍ଷ ସମର୍ଥନ କରିବା ପାଇଁ ସନ୍ଦେଶ ପ୍ରେରଣ କରାଯାଇଛି । ଏହା ଫଳରେ ବିଭିନ୍ନ ରାଜା ସୈନ୍ୟବଳ ସହ ଆସି ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିରଙ୍କ ପାଖରେ ପହଞ୍ଚିଛନ୍ତି । ସାରଳା ମହାଭାରତର ଉଦ୍‌ଯୋଗ ପର୍ବରେ ଏହାର ଏକ ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । (୬୦) ଏହି ବର୍ଣ୍ଣନାନୁଯାୟୀ ନିମ୍ନ ମଧ୍ୟରେ ରାଜ୍ୟର ନାମୋଲ୍ଲେଖ କରାଯାଇ

---

(୫୮) ସା: ମ: ଭା: (ବା) ଉଦ୍‌ଯୋଗ—ପୃ. ୨-୬, ୪୦, ୫୮ ଓ ୬୩

(୫୯) —ଏଜନ— ଉଦ୍‌ଯୋଗ—ପୃ. ୬୮

(୬୦) ସା: ମ: ଭା: (ବା) ଉଦ୍‌ଯୋଗ—ପୃ. ୮୫-୯୮ ଏବଂ ସା: ମ: ଭା: (ସା) ଉଦ୍‌ଯୋଗ - ପୃ. ୨୭୬-୨୮୪.

ଉଭୟ ପକ୍ଷର ସହଯୋଗୀ ରାଜା ଓ ସେମାନଙ୍କର ସୈନ୍ୟବଳ (କେତେକ ସ୍ଥଳେ ଉଲ୍ଲେଖ ନାହିଁ)ର ଏକ ତାଲିକା ନିମ୍ନରେ ପ୍ରଦତ୍ତ ହେଲା ।

| କୌରବପକ୍ଷର ସହଯୋଗୀ | ପାଣ୍ଡବପକ୍ଷର ସହଯୋଗୀ |
|---|---|
| ହଗ (ମହୀଧର) ୭ କ୍ଷୌଣୀ ସୈନ୍ୟ | ଘଣପଥ (କାର୍ଣ୍ଣିର) ୫ କ୍ଷୌଣୀ ସୈନ୍ୟ |
| ବୀରବାହୁ (ହରସ୍ତନ) ୯ ,, | ଅର୍ଜୁନ (ମାନଭଙ୍ଗ) ୨ କ୍ଷୌଣୀ |
| ଶମ୍ଭୁରାଣ (ରଣଭଙ୍ଗ) ୯ ,, | ଦ୍ରୁପଦ (ପଶ୍ଚିମଦେଶ) ୩ କ୍ଷୌଣୀ |
| କେତୁ (ହୃଭମ) ୭ ,, | ଚଣ୍ଡହସ୍ତମଲ୍ଲ (ବାଣପୁର) ୧୧ କ୍ଷୌଣୀ |
| କର୍ଣ୍ଣକେଶୀ (ଅରବନ୍ଦ) ୧୧ ,, | କନକଲକ୍ଷ୍ମୀ (ବିରଜା ମଣ୍ଡଳ) — |
| ତ୍ରିଗର୍ତ୍ତି (ମଘଦେଶ) ୭ ,, | ପଦ୍ମକେଶରୀ (ପଦ୍ମଦଳ) ୪ କ୍ଷୌଣୀ |
| ମନ୍ଦପାଳ (ବେଲୁର) ୪ ,, | ✻ ଜସ୍ତୁଦେବ ଓ ସହଦେବ(ମଗଧ) — |
| କାମପାଳ (କାଉଁଞ୍ଚ) ୧୦ ,, | କାଶୀଶ୍ୱର (କାଶୀଦେଶ) ୧ ପରାର୍ଦ୍ଧ |
| କୃତବର୍ମା (ମାଳବ) ୯ ,, | ସୁବାହୁ (କୁଶମଣ୍ଡଳ) ୮ କ୍ଷୌଣୀ |
| ଭୂମନ୍ୟୁ (ଦକ୍ଷିଣ କୋଶଳ) ୧୮ କ୍ଷୌଣୀ | ଲକ୍ଷ୍ମଣ (କ୍ୟୋଢପୁର) ୫ ,, |
| ବଶିକେଶନ (ଚେଦୀ ଦେଶ) ୭ ,, | ନୈମ୍ବକେଶ୍ୱର (ଉଦ୍ଦଣ୍ଡି) ୫ ,, |
| ମାଧୁର୍ଯ୍ୟସେନ (ତେଲଙ୍ଗ) ୯ ,, | ମଳୟସେନ (ମଳୟ) ୯ ଲକ୍ଷ |
| ବାମଦେବ (ମଙ୍ଗଳ ଦେଶ) — | ବଳରାମ (କବୀର) ୨୨ ଲକ୍ଷ |
| ବୀରସେନ (ମଞ୍ଜୁଷା) ୮ କ୍ଷୌଣୀ | ରୁଦ୍ରଧ୍ୱଜ (ମନ୍ଦାର) ୫ ଅର୍ବୁଦ |
| ଶମ୍ଭୁରାଣ (ମହାରାଷ୍ଟ୍ର) ୯ ,, | ନଳ (କ୍ଷୀରଦେଶ) ୭ କ୍ଷୌଣୀ |
| ଗୋପାଳବର୍ମା (ମ୍ଳେଚ୍ଛଦେଶ) ୧୦ ସାଗର | ରଣମଲ୍ଲ (କନୌଜ) ୭ କ୍ଷୌଣୀ |
| ଧର୍ମସେନ (ବଙ୍ଗାଳ) ୭ ପରାର୍ଦ୍ଧ | ବଜ୍ର(ଚନ୍ଦ୍ର)ନେମୀ(ଛଅଦେଶ)୫—ସହସ୍ର |
| ବରୁଣ ସେନ (ବେଲ୍ଲାଳ) ୭ କ୍ଷୌଣୀ | କର୍ଣ୍ଣନେମୀ (ବିଛଅଦେଶ) ୩ ଅର୍ବୁଦ |
| ଧର୍ମପାଳ (ଗୁର୍ଜର) ୭ କ୍ଷୌଣୀ | ନରାକୁଳ (ପାରଜାତ) ୩ କ୍ଷୌଣୀ |
| ଶାର୍ଦ୍ଦୂଳ (ସୌରାଷ୍ଟ୍ର) ୭ ,, | ବ୍ରକର୍ଣ୍ଣ (କର୍ଣ୍ଣାଟ) ୫ ଅର୍ବୁଦ |
| କର୍ଣ୍ଣକେଶରୀ (କୌଶିକ) ୩ ,, | ହନୁମନ୍ତ (ନେପାଳ) ୧ ପଦ୍ମ |
| ରତ୍ନମାଳୀ (କର୍ଣ୍ଣକୂଟ) ୨ ,, | ମହେଶ୍ୱର (ବାରସତୀ) ୩ ବୃନ୍ଦ |
| ଶକୁନି (ଗାନ୍ଧାର) ୧୨ ,, | ନୀଳସେନ (ବିନ୍ଧ୍ୟ) ୨ ପଦ୍ମ |

---

✻ ଜରାସନ୍ଧଙ୍କ ଦୁଇ ପୁଅ ।

ରଣକେଶୀ (ଯମନକ) ୧୩ କ୍ଷୌଣୀ
କର୍ଣ୍ଣଜହ୍ନୁ (ବୃନ୍ଦାର୍କ) ୧୦ ,,
ସପ୍ତ ଚକ୍ରବର୍ତ୍ତୀ (କରମଣ୍ଡଳ) ୧୩ କ୍ଷୌଣୀ
ଇନ୍ଦ୍ରନାଭ (ଶାଖପୁର) ୬୫ ପଦାତକ
ବତ୍ସପାଳ (ପାର୍ବତ) ୧୧ କ୍ଷୌଣୀ
ଦରଦ ସେନ (ଅଙ୍ଗ) ୫ ,,
ନରବଳୀ (ଶୈଳ) ୯ ,,
ଶୈଳଗଙ୍ଗ (ଓଡ଼ିଶା) ୫ ,,
ଅନଳବାହୁ (କେନାବଳୀ) ୯ ,,
ସାମଧ୍ୱଜ (ମନ୍ଦରପୁର) ୭ ,,
ଯୋଗେଶ୍ୱର (ସୁବର୍ଣ୍ଣପୁର) ୩ ସାଗର
କଳକାଳ (ଚନ୍ଦ୍ରପୁର) ୫ କ୍ଷୌଣୀ
ଜୟଦ୍ରଥ (ସିନ୍ଧୁ) ୧୦ ସହସ୍ର
ଅଜର (ଶବର ଦେଶ) ୧୧ ସହସ୍ର
ନିଷାଦ (ଇଚ୍ଛାପୁର) ୯ ସାଗର
ମାର୍କଣ୍ଡ (କରବୀର) ୯ ଲକ୍ଷ
ବାସୁଦେବ (ଚୌହାଣ) ୭ ପଦ
ବ୍ରହ୍ମକୁଣ୍ଡଳ (ଧର୍ମମଣ୍ଡଳ। ୫ କ୍ଷୌଣୀ
ଦୃମଦସେନ (ସିଂହଳ) ୧୮ ଲକ୍ଷ
ବୀରଚକ୍ରବର୍ତ୍ତୀ (ଖେଚର) ୧୧ କ୍ଷୌଣୀ
ଦୁର୍ଜନ (କୁନ୍ତଳ) ୫ ସାଗର

ପଦ୍ମନାଭ (ଭୂଖାମଣ୍ଡଳ) ୧ କ୍ଷୌଣୀ
ବୈଧୃତସେନ (କ୍ୟୋତପୁର) ୫ ,,
ବସନ୍ତମଲ (କାମରୂପ) ୩ ସାଗର
ବିରୂପାକ୍ଷ (ରଣପୁର) ୧ କ୍ଷୌଣୀ
ଚିତ୍ରପାଳ (ଆନନ୍ଦପୁର) ୩ ଅର୍ବୁଦ
ବ୍ରହ୍ମକେଶରୀ(ନାରାୟଣପୁର) ୧ କୋଟି
ଘଟୋତ୍କଚ (ହିଡମ୍ବବନ) ୭ ପରାର୍ଦ୍ଧ
ମହୋଦର (ଶିବପୁର) ୧ ଲକ୍ଷ
ବିରାଟ (ମତ୍ସ୍ୟ ଦେଶ) ୧୦୦ ଶଙ୍ଖ
ଦ୍ରୁପଦ (ପାଞ୍ଚାଳ) ୧ ପରାର୍ଦ୍ଧ
ଦାମୋଦର (ଜାଲେନ୍ଦ୍ରୀ) ୧ ସାଗର
ଫୁଲସେନ (ଏକଚକ୍ର) ୯ ସାଗର
ଶିବପାଳ (ମରୁଟ) ୯ କ୍ଷୌଣୀ
ନଳ (ନୈଷଧ) ୩ ଲକ୍ଷ
ନରସିଂହସେନ(ଅନ୍ତରୀକ୍ଷ)୧୫ କ୍ଷୌଣୀ
ପଦ୍ମସେନ (ବେଦପୁର) ୫ କ୍ଷୌଣୀ
ବ୍ରହ୍ମସେନ (ବ୍ରହ୍ମଦଣ୍ଡ) ୫ ଲକ୍ଷ
ଚେତସେନ (ଶ୍ୱେରମଣ୍ଡଳ) ୩ ସାଗର
ବସନ୍ତସେନ (କାନପୁର) ୩ ସାଗର
ସୌମ୍ୟଚକ୍ରବର୍ତ୍ତୀ(ମେହହରଣ୍ୟ) ୬ କ୍ଷୌଣୀ
ଦଧିମଙ୍ଗଳ (ଜୟନ୍ତ୍ରା) ୩ କ୍ଷୌଣୀ

ଉତ୍ତରରୁ ଜମାଗୋଷ୍ଠ (ଜଗମୋହନ), ପଶ୍ଚିମରୁ ମୃଗସେନ, ପୂର୍ବ ନଗର କପିଳ ସିଂହ ଏବଂ ଦକ୍ଷିଣର ସୂର୍ଯ୍ୟବଂଶୀ ରାଜା ଚିତ୍ରପର୍ଣ୍ଣ କୌଣସି ପକ୍ଷକୁ ସମର୍ଥନ କରି ନଥିଲେ ।

ଏହି ସବୁ ରାଜ୍ୟ ଓ ରାଜାମାନଙ୍କର ନାମକରଣରେ ସାରଳା ଐତିହାସିକ ତଥ୍ୟ ସହିତ ସ୍ଥାନ ଓ ପାତ୍ରୋଚିତ ଗୁଣାବଳୀ ସଂଯୋଜନା କରି ସାହିତ୍ୟିକ କଳ୍ପନା ବିଳାସକୁ ପ୍ରଶ୍ରୟ ଦେଇଥିଲେ ହେଁ ରାଜତାନ୍ତ୍ରିକ ବ୍ୟବସ୍ଥାର ଏକ ଉପଯୋଗୀ ଚିତ୍ରକଳ୍ପ ଉପସ୍ଥାପନ କରିପାରିଛନ୍ତି ।

**ଯୁଦ୍ଧ ପ୍ରଣାଳୀ :** ସାରଳା ମହାଭାରତରେ ଯୁଦ୍ଧ ପ୍ରସ୍ତୁତିର ବର୍ଣ୍ଣନା ଅପେକ୍ଷା ରଣ କୌଶଳର ଚିତ୍ର ଅଧିକ ବାସ୍ତବ ଓ ହୃଦୟସ୍ପର୍ଶୀ । ସାରଳାଙ୍କ ସମୟରେ ଓଡ଼ିଆମାନେ ଏକ ରଣକୁଶଳୀ ଜାତି ଯୋଦ୍ଧାଜାତି ରୂପେ ସମଗ୍ର ଭାରତ ଭୂଖଣ୍ଡରେ ସୁପରିଚିତ ଥିଲେ । କପିଳେନ୍ଦ୍ରଦେବଙ୍କ ରାଜ୍ୟବିସ୍ତାରମୂଳକ ଇତିହାସର ପୃଷ୍ଠଭୂମିରେ କୁରୁ ପାଣ୍ଡବଙ୍କ ସମରସଜ୍ଜା ପରିକଳ୍ପିତ । ମୂଳ ମହାଭାରତକାଳୀନ ଯୁଦ୍ଧ କୌଶଳ ଅପେକ୍ଷା ସମରକାଳୀନ ଯୁଦ୍ଧପ୍ରଣାଳୀ ବିଶେଷ ପୃଥକ୍ ନଥିଲା । ମୁସଲମାନମାନଙ୍କ ଆଗମନ ଫଳରେ ଯଦ୍ୟପି ଗୋଳାବାରୁଦର ବ୍ୟବହାର ପ୍ରଚଳିତ ହୋଇସାରିଥିଲା, ତଥାପି ଓଡ଼ିଶାରେ ତାର ପ୍ରଭାବ ବିଶେଷ ମାତ୍ରାର ଅନୁଭୂତ ହୋଇ ନଥିଲା । ଏହି ପରିପ୍ରେକ୍ଷୀରେ ସାରଳା ଦାସ ବ୍ୟକ୍ତିଗତ ଅନୁଭୂତିରୁ ଯୁଦ୍ଧ ପ୍ରଣାଳୀର ଯେଉଁ ଚିତ୍ର ଉପସ୍ଥାପନ କରିଛନ୍ତି, ସେଥିରୁ ତାଙ୍କର ସମର ଆଦର୍ଶର ସମ୍ୟକ ଉପାଦାନ ସଂଗ୍ରହ କରାଯାଇପାରେ ।

•

ଡମ୍ବକ ଘୋଷଣା ଦ୍ୱାରା ରାଜ୍ୟବାସୀଙ୍କୁ ଯଥା ସମୟରେ ଯୁଦ୍ଧଯାତ୍ରା ସଂପର୍କରେ ସଚେତନ କରି ଦିଆଯାଉଥିଲା । ଚତୁର୍ବିଧ ସେନା (ରଥ ଓ ରଥୀ, ଗଜ ଓ ଗଜାରୋହୀ, ଅଶ୍ୱ ଓ ଅଶ୍ୱାରୋହୀ, ଏବଂ ପଦାତିକ ବାହିନୀ) ସଂଗ୍ରବଦ୍ଧ ଭାବେ ଅଗ୍ରସର ହେଉଥିଲେ । ନିଶାଣ, ଢୋଲ, ଦମା, ବିଜଘୋଷ, ଡମ୍ବକ, ଦୁନ୍ଦୁଭି, ବୀଣା, ଭେରୀ, ତୁରୀ, ଶଙ୍ଖ, ମହୁରୀ ନାଦରେ ଗଗନ ପବନ ମୁଖରିତ ହୋଇ ଉଠୁଥିଲା । ସେନା ବାହିନୀର 'ଧର ଧର, ମାର ମାର' ଆଦି ବିକଟାଳ ଶବ୍ଦ, ହସ୍ତୀ ଅଶ୍ୱାଦିଙ୍କ ହେ୍ରଷା ଓ ବୃଂହଣ ତଥା ଘଣ୍ଟ ଓ ଘାଗୁଡ଼ି ସ୍ୱନ ଶବ୍ଦ ପକ୍ଷର ଶ୍ରୀତ ସଂଗୃହ କରୁଥିଲା । କ୍ଷିପ୍ର ବେଗରେ ଧାବମାନ ହସ୍ତୀ ଅଶ୍ୱାଦିଙ୍କର ପଦରଜରେ ଘନ ଧୂଳି ପଟଳ ସୃଷ୍ଟି ହେବାଦ୍ୱାରା ଆକାଶ ମଣ୍ଡଳ ମେଘାଚ୍ଛନ୍ନ ହେଲାଭଳି ଜଣା ପଡ଼ୁଥିଲା । ଆଲମ୍ବିତ ଛତ୍ର, ଚାମର ଓ ଉଡ଼ୁଡ଼ୀସମାନ ଚିତ୍ରିତ ଶୋଭିତ ରଥଗୁଡ଼ିକ ଚୈଖାର, ଡାଲୁଆ, ତାଟ, ମୟୂରଝାଲ ଓ ଅମ୍ବରନୂରେ ସୁସଜ୍ଜିତ ହୋଇ ଅଦ୍ଭୁତ ଜ୍ୟୋତି ପ୍ରକାଶ କରୁଥିଲେ । ଯୋଦ୍ଧା ସୈନ୍ୟଗଣ ରତ୍ନ ମୁକୁଟ, କନକମଣି, ତାଡ଼, ବାହୁଟି, କଙ୍କଣ, ବଳୟ ଆଦି ଅଳଙ୍କାରରେ ବିଭୂଷିତ ଥିଲା । ଏହା ବ୍ୟତୀତ, ବିପକ୍ଷ ବାହିନୀର ଶସ୍ତ୍ରାଘାତରେ କ୍ଷତବିକ୍ଷତ ନ ହେବା ଉଦ୍ଦେଶ୍ୟରେ ଅଙ୍ଗତ୍ରାଣ ସହିତ ସର୍ବାଙ୍ଗରେ 'ଦୁର୍ଗା ବିଭୂତି' ବିଲେପିତ ହୋଇଥିଲେ । (୬୧)

(୬୧) ସା: ମ: ଭା: (ଗ୍ର)—ଆଦ୍ୟ-ପୃ. ୧୦୭-୧୦୮, ବିରାଟ-ପୃ. ୧୦୧ ଏବଂ ସା: ମ: ଭା: (ସା)—ମଧ୍ୟ-ପୃ. ୭୨୯-୭୩୪ ।

ସାରଳା ମହାଭାରତରେ ଯେଉଁ ସବୁ ଅସ୍ତ୍ରଶସ୍ତ୍ରର ଉଲ୍ଲେଖ ଦେଖିବାକୁ ମିଳେ, ତା ମଧ୍ୟରୁ ଅଧିକାଂଶ ସେ ସମୟରେ ପ୍ରଚଳିତ ଥିବା ଅନୁମାନ କରାଯାଇ-ପାରେ । ସେଗୁଡ଼ିକ ହେଲା—ଧନୁ, ତୂଣ, ଫଳା, ଖଣ୍ଡା, ପରଘ, କୁନ୍ତ, ନାରାଚ, ଶଲ୍ୟ, ଗଦା, ପରଶୁ, ମୁଦ୍ଗର, ଭୈରବ, ତ୍ରିଶୂଳ, କୁଦ୍ଦାଳ, କୁଠାର, କାତି, ଖଡ୍ଗ, ଶୂଳ, ମୁଷଳ, ଲଙ୍ଗଳ, ଶକ୍ତି, ଚକ୍ର, ମହାଚକ୍ର, ଅସିପତ୍ର, କାଳଗିରି, ବଜ୍ରଶକ୍ତି, ଶତଧାର ଶକ୍ତି, ସପ୍ତଧାର ଶକ୍ତି, ନବନଶିତ କୁନ୍ତ, କୌମୁଦୁକୀ ଗଦା, ଚନ୍ଦ୍ରାବଳୀ ଗଦା, ନବନଶି କୁଠାର, ସୌନନ୍ଦ ମୁଷଳ, ଅମୋଘାସ୍ତ୍ର, ମେଘାସ୍ତ୍ର, ବଜ୍ରାସ୍ତ୍ର, ପର୍ବତାସ୍ତ୍ର, ମୋହନାସ୍ତ୍ର, ପନ୍ନଗାସ୍ତ୍ର, ଗରୁଡ଼ାସ୍ତ୍ର, କୁଣ୍ଡଳଚକ୍ର, ଆବର୍ତ୍ତିକ ଚକ୍ର, ଜଳଦାଘ ଶର, ଜଳବମ୍ବଶର, ଅଗ୍ନିଶର, ଜ୍ୱାଳାବଳୀ ଶର, ବାୟବ୍ୟ ଶର, ଆର୍ଦ୍ରାବଳୀ ଶର, ଅର୍ଦ୍ଧଚନ୍ଦ୍ରଶର, ଅନିବାରଣ ଶର, ମନଭେଦୀ ଶର, ପୃଥ୍ୱୀଭେଦୀ ଶର, ସୂର୍ଯ୍ୟାବର୍ତ୍ତି ଶର, ପାଶୁପତ ଶର, ତ୍ରିଅମ୍ବକ ଶର, ଦେବଶର, କାଳାନ୍ତକ ଶର, ସମ୍ମୋହନ ଶର, ହାବୁଡ଼ା ଶର, ଲାଘବ ଶର, ଜୀବନ୍ୟାସ ଶର ପ୍ରଭୃତି । (୬୨) ଯୁଦ୍ଧକାଳରେ ଉତ୍ପାଟିତ ନଖ ମଧ୍ୟ ଅସ୍ତ୍ର ରୂପେ ବ୍ୟବହୃତ ହେଉଥିଲା ଏବଂ ତଦ୍ଦ୍ୱାରା ନାଭିଦେଶ ବା ଗଳାଦେଶକୁ ଆଘାତ କରାଯାଉଥିଲା । ସାରଳାଙ୍କ ଭାଷାରେ ଏହା ନାଳବାଣ ଓ ଭୁଜବାଣ ନାମରେ ପରିଚିତ । (୬୩)

ଶର ସନ୍ଧାନ କ୍ଷେତ୍ରରେ ପ୍ରାଚୀନ କାଳର ଯୋଦ୍ଧାଗଣ ବିଶେଷ ଦକ୍ଷ ଓ ଧୂରୀଣ ଥିବା ଜଣାଯାଏ । ଶର ଦ୍ୱାରା ଜଳ, ଅନଳ, ବାୟୁ ଓ ମେଘ ସୃଷ୍ଟି କରାଯାଇ ପାରୁଥିଲା । ଶତ୍ରୁ ପକ୍ଷକୁ ସମ୍ମୋହିତ କରିଦିବା ସଙ୍ଗେ ସଙ୍ଗେ ମୃତ ସୈନ୍ୟମାନଙ୍କର ଜୀବନ୍ୟାସ ଅସମ୍ଭବ ନଥିଲା । ଏପରିକି, ଶର ସଂଯୋଜନା ଦ୍ୱାରା ଆକାଶ ମାର୍ଗରେ 'ଶର ପଥ' ନିର୍ମାଣ କରାଯାଇ ପାରୁଥିଲା (୬୪) ଏବଂ ଶର ସାହାଯ୍ୟରେ ସ୍ୱର୍ଣ୍ଣଚମ୍ପା ବୃଷ୍ଟି ମଧ୍ୟ ସମ୍ଭବ ହେଉଥିଲା । (୬୫) ଦେବ ଶର, ମନୋଭେଦୀ, ଶର, ଜୀବନ୍ୟାସ ଶର ପ୍ରଭୃତି ବହୁ ଅସ୍ତ୍ର ମନ୍ତ୍ରସିଦ୍ଧି ବଳରେ ଅଭୀଷ୍ଟ ପ୍ରାପ୍ତି ନିମନ୍ତେ ଅଭିପ୍ରେତ ଥିଲା । କିନ୍ତୁ ମନ୍ତ୍ରସିଦ୍ଧି ବଳରେ ସାଧାରଣ

---

(୬୨) ସା: ମ: ଭା: (ରା)—ଆଦ୍ୟ-ପୃ. ୩୪, ୯୭, ମଧ୍ୟ-ପୃ. ୩୬, ବିରାଟ ପୃ. ୧୪୩-୧୪୧, ଉଦ୍ଯୋଗ-ପୃ. ୧୨୯-୩୦, ଅଶ୍ୱମେଧ-ପୃ. ୧୧-୧୨ କର୍ଣ୍ଣ-ପୃ. ४୯-୫୦ ଓ ମୁଷଳୀ-ପୃ. ୧୬ ।

(୬୩) ସା: ମ: ଭା: (ରା) ଉଦ୍ଯୋଗ-ପୃ. ୧୨୬-୧୨୭ ।

(୬୪) ସା: ମ: ଭା: (ରା)—ବନ-ପୃ. ୧୩ ।

(୬୫) ଏଜନ—ମଧ୍ୟ-୨୫୧

ବସ୍ତୁକୁ ଅଲୌକିକ ଅସ୍ତ୍ର ରୂପେ ବ୍ୟବହାର କରିବାର କୌଶଳ ସାରଳା ଦାସଙ୍କ ସମୟରେ ପ୍ରଚଳିତ ଥିବା ବିଶ୍ୱାସଯୋଗ୍ୟ ମନେହୁଏ ନାହିଁ । ତନ୍ତ୍ର ବଳରେ ହୁଏତ ସ୍ତମ୍ଭନ, ମୋହନ, ଉଚାଟନ ଓ ବଶୀକରଣ ପାଇଁ ଶର ପ୍ରୟୋଗ କରି ଯାଉଥାଇପାରେ । କିନ୍ତୁ ବଜ୍ରାସ୍ତ୍ର, ଦେବାସ୍ତ୍ର, ପାଶୁପତାସ୍ତ୍ର ପ୍ରଭୃତିର ପ୍ରଚଳନ ସାରଳାଙ୍କ କଳ୍ପନାରେ କେବଳ ଉଦ୍ଭାବିତ ଥିଲି ବୋଲି କୁହାଯାଇପାରେ ।

ତେବେ, ରଣପ୍ରାଙ୍ଗଣରେ ସୈନ୍ୟସଜ୍ଜାର ଯେଉଁ ପ୍ରାଞ୍ଜଳ ଚିତ୍ର ସାରଳା ଦାସ ଉପସ୍ଥାପନ କରିଛନ୍ତି, ତାହା ନିତାନ୍ତ କଳ୍ପନାପ୍ରସୂତ ନୁହେଁ । ଶତ୍ରୁର ଗତିବିଧି ଲକ୍ଷ୍ୟ କରି ସେନାପତିମାନେ ଏକ ନିର୍ଦ୍ଦିଷ୍ଟ ଆକାରରେ ସୈନ୍ୟମାନଙ୍କୁ ଯେପରି ସଜ୍ଜୀଭୂତ କରୁଥିଲେ, ତାହାହିଁ ବ୍ୟୂହ ରଚନା ନାମରେ ପରିଚିତ । ଏ ପ୍ରକାର ବ୍ୟୂହ ଭେଦ କରିବା ଶତ୍ରୁପକ୍ଷ ପାଇଁ କେବଳ ଦୁଃସାଧ ନଥିଲି, ଅନେକ ସମୟରେ ଅସାଧ ମଧ୍ୟ ହୋଇ ପଡ଼ୁଥିଲି । ସାରଳାଙ୍କ ଯୁଦ୍ଧ ବର୍ଣ୍ଣନା ମଧ୍ୟରେ ଏ ପ୍ରକାର ଅଷ୍ଟାଦଶ ବ୍ୟୂହର ନାମୋଲ୍ଲେଖ ଦେଖିବାକୁ ମିଳେ । (୭୬) ଏଗୁଡ଼ିକ ହେଲି—(୧) ଶକଟ ବ୍ୟୂହ, (୨) ପଦ୍ମ ବ୍ୟୂହ, (୩) କେତରେ ବ୍ୟୂହ, (୪) ସୂଚୀଭେଦ ବ୍ୟୂହ, (୫) ଜାଲନ୍ଧର ବ୍ୟୂହ, (୬) ଚକ୍ରବ୍ୟୂହ, (୭) ଆଦ୍ରିବିର୍ଲା ବ୍ୟୂହ, (୮) କୁଣ୍ଡଳୀ ବ୍ୟୂହ, (୯) ସହସ୍ରଭେଦୀ ବ୍ୟୂହ, (୧୦) ଗଗନଭେଦୀ ବ୍ୟୂହ, (୧୧) ଘୋର ଅନ୍ଧାର ବ୍ୟୂହ, (୧୨) ମାନଭଙ୍ଗ ବ୍ୟୂହ, (୧୩) ଉଲୂକ ବ୍ୟୂହ, (୧୪) ଭଲ୍ଲୁକ ବ୍ୟୂହ, (୧୫) ବାରହା ବ୍ୟୂହ, (୧୬) ଶଲ୍ୟ ବ୍ୟୂହ, (୧୭) କିବଲୀ ବ୍ୟୂହ, ଓ (୧୮) ସାଗର ବ୍ୟୂହ ।

ଏହା ବ୍ୟତୀତ, ସାରଳା ଦାସ ଚଉରାଶୀ ବନ୍ଧାଣ ଓ ଛତିଶ ପ୍ରକାର ମଲ୍ଲଯୁଦ୍ଧର ଯେଉଁ ସୂଚନା ପ୍ରଦାନ କରିଛନ୍ତି (୭୭), ତାହା ସ୍ୱାଭାବିକ ମନେହୁଏ । ସାରଳାଙ୍କ ସମୟରେ ଓଡ଼ିଶାର ପ୍ରତ୍ୟେକ ପୁରପଲ୍ଲୀରେ ଯେଉଁ ଆଖଡ଼ା ଘରମାନ ପ୍ରତିଷ୍ଠିତ ଥିଲି, ତାର ଏକ ବାସ୍ତବ ଚିତ୍ରହିଁ ଉକ୍ତ ଧାରାର ଗ୍ରନ୍ଥ ମଧ୍ୟରେ ପରିପ୍ରକାଶିତ ।

---

(୭୬) ସା: ମ: ଖ: (ରା)—ଦ୍ରୋଣ-ପୃ. ୪-୧୨ ଓ ୧୯ ଏବଂ ସା: ମ: ଖ: (ସା) ଦ୍ରୋଣ ପୃ. ୫୨ ।

(୭୭) ଏଜନ— ଉଦ୍ଯୋଗ-ପୃ. ୧୨୯-୧୩୦, ଭୀଷ୍ମ-ପୃ. ୧୦୯ ଓ ୧୧୫ ଓ କାର୍ତ୍ତିକା-ପୃ. ୯୮ ।

**ଯୁଦ୍ଧର ନିୟମ :** ସାରଳା ମହାଭାରତରେ ଯୁଦ୍ଧକାଳୀନ ଅସ୍ତ୍ରଚାଳନା ଓ 'ପ୍ରାଣ କାଟ'ର ଯେଉଁ ଜୀବନ୍ତ ଚିତ୍ର ପରିବେଷିତ ହୋଇଛି, ତାହା ଆପାତତଃ ଅତ୍ୟନ୍ତ ନୃଶଂସ ଓ ପାଶବିକ ମନେହେଲେ ହେଁ ଧର୍ମବିରୋଧୀ ବୋଲି କୁହାଯାଇ ନପାରେ । ସାରଳା ଦାସ ବହୁ ଯୁଦ୍ଧରୁ ପ୍ରତ୍ୟକ୍ଷ ଅନୁଭୂତ ଆହରଣ କରି ଯୋଦ୍ଧା ଓ ସେନାପତିମାନଙ୍କ ନିମିତ୍ତ କେତେକ ନିୟମ ଓ ଶୃଙ୍ଖଳାର ନିର୍ଦ୍ଦେଶ ଦେଇ-ଯାଇଛନ୍ତି । ତାହା ମଧ୍ୟରୁ ନିମ୍ନରେ କେତୋଟିର ସୂଚନା ଦିଆଗଲା ।

୧ । ସମର କାଳରେ ଦୁଇପକ୍ଷ ଯେ ଯାହାକୁ ମାରିପାରେ, କିନ୍ତୁ ଯୁଦ୍ଧ ସ୍ଥଗିତ ରହିଲା ପରେ ଉଭୟ ପକ୍ଷ ପରସ୍ପର ମିତ୍ର ଭଳି ଆଚରଣ କରିବା ଉଚିତ । ସେତେବେଳେ ସମସ୍ତ ଭେଦଭାବ ଭୁଲି ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ବନ୍ଧୁ ଭାବେ ଗ୍ରହଣ କରିବା ବିଧେୟ ।

୨ । ଭୟଙ୍କର ମାରାତ୍ମକ ଅସ୍ତ୍ରଶସ୍ତ୍ର ନିର୍ବିଶେଷର ପ୍ରୟୋଗ ନିଷିଦ୍ଧ ହେବା ଆବଶ୍ୟକ । କାରଣ ଏହାଦ୍ୱାରା କେବଳ ଶରବ୍ୟ ବ୍ୟକ୍ତିର ପ୍ରାଣହାନି ଘଟେ ନାହିଁ, ବରଂ ବହୁ ନିରୀହ ପ୍ରାଣୀ ଏହାର କୁପରିଣାମ ଭୋଗ କରିଥାନ୍ତି ।

୩ । ଯୁଦ୍ଧକ୍ଷେତ୍ରରେ ସାରଥିମାନେ ଅସ୍ତ୍ରଧାରଣ କରିବା ଅନୁଚିତ ।

୪ । ବିପକ୍ଷ ଶିବିରରୁ ଆଗତ ଦୂତ ସର୍ବଦା ଅବଧ୍ୟ ।

୫ । ଶତ୍ରୁ ରଥହୀନ କିମ୍ବା ନିରସ୍ତ୍ର ହୋଇପଡ଼ିଲେ ତାକୁ ଆକ୍ରମଣ କରି ହତ୍ୟା କରିବା ଯୁଦ୍ଧନୀତିସମ୍ମତ ନୁହେଁ ।

୬ । ମୁକୁଳିତ କେଶ, ଯାନତ୍ୟାଗୀ, ପୃଷ୍ଠ ପ୍ରଦର୍ଶନକାରୀ ଅଥବା ଗଳାରେ କୁଠାର ବାନ୍ଧି କିମ୍ବା ଦନ୍ତରେ ତୃଣ ଧରି ଶରଣାପନ୍ନ ଶତ୍ରୁ କ୍ଷମଣୀୟ ।

୭ । କେବଳ ସମକକ୍ଷ ଯୋଦ୍ଧା ସହ ଯୁଦ୍ଧ ଆଚରଣୀୟ । ରଣଭୂମିରେ ଶିଶୁହତ୍ୟା କ୍ଷାତ୍ରଧର୍ମ ବିରୋଧୀ ।

୮ । ଯୁଦ୍ଧରେ ପରମାଣାତ୍ମକ ବଳ ଅପେକ୍ଷା ଧର୍ମବଳହିଁ ଅଧିକ ଫଳପ୍ରଦ ।

୯ । ଯୁଦ୍ଧବିନା ଅନ୍ୟ ସମୟରେ ଅସ୍ତ୍ରଧାରଣ କରିବା ଅନୁଚିତ । କାରଣ, ଅନବରତ ଶସ୍ତ୍ର ଧାରଣ କରିବା ଦ୍ୱାରା କ୍ରୋଧ ବୃଦ୍ଧି ଘଟେ ଓ ତାହା ଅବାଞ୍ଛିତ ପ୍ରମାଦ ସୃଷ୍ଟି କରିଥାଏ ।

୧୦ । ଯୁଦ୍ଧରେ ବିଜୟ ହାସଲ କଲା ପରେ ଅବିଳମ୍ବେ ଜୟସ୍ଥାନ ତ୍ୟାଗ କରି ପଞ୍ଚରାତ୍ର ପର୍ଯ୍ୟନ୍ତ ସେହି ଭୂମିକୁ ଉପେକ୍ଷା କରିବା ଉଚିତ ।

ଏହିଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ରଣଭୂମିରେ ନ୍ୟାୟୋଚିତ ଓ ନୀତିସମ୍ମତ ଆକ୍ରମଣ ଓ ଅସ୍ତ୍ର ବ୍ୟବହାର ବିଧି ଉପରେ ଗୁରୁତ୍ୱ ଦିଆଯାଉଥିଲା ଏବଂ ନ୍ୟାୟଯୁକ୍ତ ବା ଧର୍ମଯୁଦ୍ଧ ହିଁ ଥିଲା ବାଞ୍ଛନୀୟ ।

**ଆଦର୍ଶ ରାଜଧର୍ମ**

ଯୁଦ୍ଧ ତତ୍କାଳୀନ ରାଜତାନ୍ତ୍ରିକ ଶାସନର ଏକ ବିଶିଷ୍ଟ ଅଙ୍ଗ ହେଲେହେଁ ନ୍ୟାୟୋଚିତ ଭାବରେ ଧର୍ମମାର୍ଗରେ ପ୍ରଜାପାଳନ କରିବା ଥିଲା ଯୁଗୋଚିତ ରାଜ-ଧର୍ମର ଶ୍ରେଷ୍ଠ ଉପାଦାନ । ଉତ୍ତମ ପ୍ରଜାପାଳନକାରୀ ହେବା ସକାଶେ ରାଜା ପ୍ରତାପ-ଶାଳୀ ହେବା ସଙ୍ଗେ ସଙ୍ଗେ ଶାନ୍ତ, ଧୀର ଓ ସୁବିବେକୀ ହେବା ଆବଶ୍ୟକ ବିବେଚିତ ହେଉଥିଲା । କାରଣ, ରାଜା କ୍ରୋଧୀ ହେବା ଦ୍ୱାରା ପ୍ରଜାକୁଳର ତଥା ରାଜ୍ୟର ଅନିଷ୍ଟ ଓ ବିନଷ୍ଟ ସାଧନ ଘଟେ ବୋଲି ବଦ୍ଧମୂଳ ଧାରଣା ରହିଥିଲା । ଆଦ୍ୟପର୍ବରେ ଧୃତରାଷ୍ଟ୍ରଙ୍କ ଯୁଧିଷ୍ଠିରଙ୍କ ମୁଖରେ ସାରଳା ଏ ସନ୍ଦର୍ଭରେ ଯେଉଁ ଉପଦେଶ ଦେଇଛନ୍ତି, ତାହା ଗୁଣାନ୍ୱିତ ରାଜଗୁଣାବଳୀ ସମ୍ବନ୍ଧୀୟ ଏକ ଶ୍ରେଷ୍ଠ ସୂତ୍ର ରୂପେ ଗ୍ରହଣୀୟ ।

"ରାଜା ହୋଇଣ ଯଦ୍ୟପି ଲୋକେ ହୁଏ କ୍ରୋଧୀ
ମନବୃଦ୍ଧି ହୁଏ ରାଜ୍ୟେ କରନ୍ତି ଅବଧି ।
ନୃପତି ହୋଇଣ ଯେବେ ସଦା କ୍ରୋଧକାରୀ
ସନ୍ତାନ ହାନି ହୁଅଇ କହୁଁ ଛନ୍ତି ଶିଖି ।
ରାଜାହୋଇ କ୍ରୋଧେ ଯେବେ ନ ମାନଇ ପିତା
ହରିବଂଶ ନ ସେବଇ ଅକଳେ ଦେବତା ।
ରାଜାର ଧର୍ମେ ବଞ୍ଚନ୍ତି ସିନା ପ୍ରଜାଜନ
ରାଜାର କ୍ରୋଧେ ସମସ୍ତେ ହୁଅନ୍ତି ନିଧନ ।
ରାଜାହୋଇ ଯେବେ ହୁଏ ଅବିରତ କ୍ରୋଧୀ
କୀର୍ତ୍ତିହାନି ହୁଏ ଶତ୍ରୁ ନ ପାରଇ ସାଧି ।
ପରରାଜ୍ୟ ଗୃହରଣ ଗୁପତରେ ଥାନ୍ତି
ବଳକ୍ଷୀଣ ହେବା ବାର୍ତ୍ତା ନେଇଣ ଦିଅନ୍ତି ।
ବିଜିତ ଆହାରୀ ଯେବେ ହୋଇବଟି ରାଜା
ବିଜିତ ଇନ୍ଦ୍ରିୟ ହୋଇ ବଳସିବ ଭାର୍ଯ୍ୟା ।
ଶସ୍ତ୍ର ଶାସ୍ତ୍ର ବିଦ୍ୟାରେ ହୋଇବ ନିର୍ଜିତ
ପର ରାଷ୍ଟ୍ରକୁ ଜିଣିବ ସିନା ଆହେ ତାତ ।

ପ୍ରଜାପାଳ ଗୁଣଥିବ ହୋଇବ ଅକ୍ରୋଧୀ
ପରଭୂମିକୁ ଯେନବ ସଗ୍ରାମ ନରୋଧି
ଦଣ୍ଡେ ଦଣ୍ଡିଲେ ରାଜାର ନୁହଇ ଅଧର୍ମ
କ୍ଷତ୍ରିସ୍ଥ କୁଳର ତାତ ଅଟଇ ଏ କର୍ମ ।'' (୬୮)

ଏହି କ୍ଷେତ୍ରରେ ଶାନ୍ତନୁଙ୍କ ପ୍ରତି ପତ୍ନୀ ଗଙ୍ଗାଦେବୀଙ୍କର ଅନୁରୂପ ଉପଦେଶ ବାକ୍ୟ ମଧ୍ୟ ପ୍ରଣିଧାନଯୋଗ୍ୟ ।

''ପରଜା ପାଳିବ ଯେନ ବଳେ ପରରାଷ୍ଟ୍ର
ସମ୍ଭାର ଯେନଣ ସାଧୁଥିବ ପରଥାଟ ।
ଦଣ୍ଡ ପଳଣ ଯେନଣ ଦୁଷ୍ଟ ନିବାରିବ
ସଜ୍ଜନ ପାଳିବ ତପୋଧନ ଉଦ୍ଧାରିବ ।'' (୬୯)

ରାଜା କେବଳ କ୍ରୋଧ ପରିହାର କରି ନ୍ୟାୟର ତୁଳାଦଣ୍ଡରେ ଯେ ଶାସନ କାର୍ଯ୍ୟ ନିର୍ବାହ କରିବ, ସେତିକି ନୁହେଁ; ସେ ସ୍ୱାଭିମାନୀ ହେବା ମଧ୍ୟ ଅନୁଚିତ । ରାଜା ଜ୍ଞାନୀ ଓ ନିରଭିମାନୀ ହେବା ନିତାନ୍ତ ବାଞ୍ଛନୀୟ । ଏ ପ୍ରସଙ୍ଗରେ ଦୁର୍ଯ୍ୟୋଧନଙ୍କ ପ୍ରତି ଗାନ୍ଧାରୀଙ୍କର ଉକ୍ତି ହେଉଛି—

''ତୋର ଅପଣ୍ଡିତ ପଣେ ପୃଥ୍ୱୀ ଯିବ ଭାସି
ନ ଯୋଗାଏ ତୋତେ ଯେତୁ ପଜା ତାକୁ ନାଶି ।
କୁବୁଦ୍ଧିରେ, କୁଶସ୍ୟାରେ ଲକ୍ଷ୍ମୀ ହୁଏ ହାନି
ଅଭୟ ପୁରୁଷ କପଁା ହେଉ ଅଭିମାନୀ
ଅପଣ୍ଡିତ ଲୋକଙ୍କର ଏସନକ ଗତି
କ୍ଷତ୍ରୀଙ୍କର ଅଭିମାନ ନୁହଇ ଯୁକତି । (୭୦)

ଧର୍ମରେ ପ୍ରଜାପାଳନ କଲେ ରାଜ୍ୟର ସର୍ବବିଧ ଉନ୍ନତି ଘଟେ ଏବଂ ପ୍ରଜାମାନଙ୍କର ସୁଖ ଓ ସନ୍ତୋଷରେ ରାଜାର ସୁଖବୃଦ୍ଧି, ଆୟୁବୃଦ୍ଧି, ଆୟୁବୃଦ୍ଧି, ଐଶ୍ୱର୍ଯ୍ୟବୃଦ୍ଧି, କୀର୍ତ୍ତିର ସମୃଦ୍ଧି ତଥା ସର୍ବସିଦ୍ଧି ସାଧିତ ହୋଇଥାଏ ବୋଲି ସାରଳା ମହାଭାରତରେ ଉଲ୍ଲେଖ ଅଛି । ଏହା ବ୍ୟତୀତ, ଦୋଷୀ ପ୍ରତି ଉଚିତ ଦଣ୍ଡବିଧାନ

---

(୬୮) ସା: ମ: ଭା: (ରା)—ଆଦ୍ୟ—ପୃ. ୮୮-୮୯ ।
(୬୯) —ଏଜନ—ଆଦ୍ୟ—ପୃ. ୯୦ ।
(୭୦) ସା: ମ: ଭା: (ରା)—ଆଦ୍ୟ—ପୃ. ୧୩୧ ।

' କରାଗଲେ ଲକ୍ଷ୍ମୀ ପ୍ରସନ୍ନ ହୁଅନ୍ତି ବୋଲି ଦୃଢ଼ ଧାରଣା ରହିଥିବାରୁ ଚର ବା ଗୁପ୍ତଚର ପ୍ରେରଣ କରି ପ୍ରକୃତ ଦୋଷୀ ନିରୂପଣ କରିବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ଏଥିପାଇଁ ବିଶ୍ୱସ୍ତ ଓ ଅନୁଗତ ଭୃତ୍ୟମାନଙ୍କ ସାହାଯ୍ୟ ରାଜଧର୍ମ ପାଳନ ଲାଗି ଅପରିହାର୍ଯ୍ୟ ବିବେଚିତ ହେଉଥିଲା । (୭୧) ଆବଶ୍ୟକ ସ୍ଥଳେ ରାଜା ସ୍ୱୟଂ ଅନ୍ଧାର୍ରେ ବିଜେ କରିବାକୁ ପଡ଼ୁଥିଲା । ଅନୀତି, ଅତ୍ୟାଚାର ଓ ଚୌର୍ଯ୍ୟବୃତ୍ତି ପାଇଁ ପ୍ରାଣଦଣ୍ଡ ଭଳି କଠୋର ଦଣ୍ଡ ଦିଆଯାଉଥିଲା ଏବଂ ଅବଳା ଅପହରଣକାରୀର ମୁଣ୍ଡଛେଦନ କରାଯାଉଥିଲା । (୭୨)

ମୃଗୟା ବିନୋଦ ତଥା ପାରିଧି ବିଜେ କରିବା ରାଜାମାନଙ୍କର କେବଳ ଏକ ବିଳାପ ନଥିଲା, ଏହାଦ୍ୱାରା ପ୍ରଜାମାନଙ୍କୁ ବ୍ୟାଘ୍ର ଭଲ୍ଲୁକ ପ୍ରଭୃତି ହିଂସ୍ର ଜନ୍ତୁଙ୍କ ଉପଦ୍ରବରୁ ରକ୍ଷା କରାଯାଇ ପାରୁଥିଲା । ଏହି କାରଣରୁ ଶତ୍ରୁ ପ୍ରତିରୋଧ ଭଳି ମୃଗୟା ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇଥିଲା । କେବଳ ସେତିକି ନୁହେଁ, ଶିକାର ଦ୍ୱାରା ଶତ୍ରୁର ଆଚରଣ ଓ ପ୍ରତିଆକ୍ରମଣଜନିତ ବ୍ୟବହାର ସମ୍ବନ୍ଧରେ ମଧ୍ୟ ରାଜାମାନେ ସୂଚନା ପାଇ ପାରୁଥିଲେ । ଏଣୁ ମୃଗୟାକୁ ରାଜଧର୍ମର ଏକ ବିଶିଷ୍ଟ କର୍ତ୍ତବ୍ୟ ରୂପେ ଗ୍ରହଣ କରି ରାଜାମାନେ ଶୁଭ ଅନୁକୂଳପୂର୍ବକ ପାରିଧିରେ ଯାଇ ବନ-ଜଙ୍ଗଲରେ ଦୀର୍ଘ ସମୟ ଅତିବାହିତ କରୁଥିଲେ । (୭୩) ଏହା ଫଳରେ, ସେ କାଳରେ ହସ୍ତୀ ଦନ୍ତ, ବ୍ୟାଘ୍ର ଚର୍ମ, ହରିଣ ଶିଙ୍ଗ ପ୍ରଭୃତି ପର୍ଯ୍ୟାପ୍ତ ପରିମାଣରେ ଉପଲବ୍ଧ ହେଉଥିଲା ଏବଂ ତଜ୍ଜନିତ ଶିଳ୍ପର ବିକାଶ ସାଙ୍ଗକୁ ଅର୍ଥନୈତିକ ଅଭିବୃଦ୍ଧି ଦିଗରେ ମଧ୍ୟ ତାହା ସହାୟକ ହୋଇପାରିଥିଲା ।

## ଅର୍ଥନୈତିକ ବ୍ୟବସ୍ଥା

ରାଜ୍ୟର ଅର୍ଥନୈତିକ ସ୍ଥିତିକୁ ହିଁ ଭିତ୍ତି କରି ରାଜନୈତିକ କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇଥାଏ ଏବଂ ଦୃଢ଼ ରାଜନୈତିକ ଆଦର୍ଶ ବଳରେ ହିଁ ଅର୍ଥନୀତି ତଥା ରାଜ୍ୟର ଆର୍ଥିକ ଅବସ୍ଥାର ପୁନଃସ୍ଥାପନ ସମ୍ଭବପର । ଏଥିଯୋଗୁଁ ଆରିଷ୍ଟୋଟଲଙ୍କ

---

(୭୧) ସା: ମ: ଭା: (ସା) ଆଦ୍ୟ—ପୃ. ୨୦୬, ଶାନ୍ତି-ପୃ. ୧୧, ଆଶ୍ରମିକ-ପୃ. ୪୭ ଓ ସ୍ୱର୍ଗାରୋହଣ-ପୃ. ୨ ।

(୭୨) ଏଜନ—ବନ-ପୃ. ୧୩୭, ସୌପ୍ତିକ-ପୃ. ୮୨ ଓ ଶାନ୍ତି ପୃ. ୧୨ ।

(୭୩) ଏଜନ—ଆଦ୍ୟ-ପୃ. ୧୭୪, ବନ୍ୟ-ପୃ. ୧୨, ଆଶ୍ରମିକ-ପୃ. ୪୭ ଓ ଶାନ୍ତି-ପୃ. ୧୨ ।

ସମସ୍ତରୁ ରାଜନୀତିର ଅର୍ଥନୈତିକ ଭୂମିକା ଉପରେ ଗୁରୁତ୍ୱ ଦିଆଯାଇଛି ଏବଂ ପରବର୍ତ୍ତୀକାଳରେ ବ୍ରିଟିଶ ରାଜନୀତି ତଥା ଅର୍ଥନୀତି ବିଶାରଦ ଆଡ଼ାମ୍ ସ୍ମିଥ୍ 'ରାଜନୈତିକ ଅର୍ଥନୀତି' (Political Economy) ର ଉଦ୍ଭାବକ ରୂପେ ସୁଖ୍ୟାତି ଅର୍ଜନ କରିଛନ୍ତି । (୭୪) ସାରଳାଙ୍କ ଦୃଷ୍ଟିରେ ମଧ୍ୟ ଅର୍ଥନୀତି ରାଜନୀତିର ଅନ୍ତର୍ଭୁକ୍ତ ।

ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ପ୍ରଜାଙ୍କଠାରୁ ଆଦାୟ କରାଯାଉଥିବା ରାଜସ୍ୱହିଁ ଥିଲା ରାଜକୋଷ ପାଇଁ ଆୟର ମୁଖ୍ୟ ପନ୍ଥା । ରାଜ୍ୟାଭିଯାନ, ଯଜ୍ଞାନୁଷ୍ଠାନ, ଦେବମନ୍ଦିର, କୂପ ପୁଷ୍କରିଣୀ ଆଦି ନିର୍ମାଣ ପ୍ରଭୃତି ଜନକଲ୍ୟାଣ ତଥା ରାଜ୍ୟର ଉନ୍ନତିକର କାର୍ଯ୍ୟରେ ଏହା ବ୍ୟୟିତ ହେବା ଉଚିତ ବୋଲି ସାରଳାଙ୍କ ଅଭିମତ । (୭୫) ଯେଉଁ ରାଜ୍ୟରେ ଦରିଦ୍ରଙ୍କ ସଂଖ୍ୟା ଯେତେ କମ୍, ସେହି ରାଜ୍ୟ ସେତେ ସମୃଦ୍ଧିଶାଳୀ ହେବା ସମ୍ଭବ । ଏଣୁ ପ୍ରଜାଙ୍କର ଆର୍ଥିକ ଉନ୍ନତି ଘଟାଇବା ରାଜାଙ୍କର ମୁଖ୍ୟ କର୍ତ୍ତବ୍ୟ । ଏ ସଂପର୍କରେ ସାରଳା କେତେକ ନିର୍ଦ୍ଦିଷ୍ଟ ସୂଚନା ଦେଇଛନ୍ତି ।

ପଚିଶ ହାତ ମାପର ପଚିଶ ନଳ ଦୈର୍ଘ୍ୟ ଓ ବିଂଶ ନଳ ପ୍ରସ୍ଥ ବିଶିଷ୍ଟ ଏକ ବାଟି ଜମି ଚାଷ କରିବା ପାଇଁ ଏକ ପଉଟି (ପ୍ରାୟ ୭୦ କେଜି.) ବିହନ ଯୋଗାଇ ଦେବା ରାଜାଙ୍କର କର୍ତ୍ତବ୍ୟ । ଏଥିରୁ ଉତ୍ପନ୍ନ ଶସ୍ୟରୁ ପାଞ୍ଚ ପଉଟି ରାଜକୋଷର ପ୍ରାପ୍ୟ ବୋଲି ସାରଳା ମତବ୍ୟକ୍ତ କରିଛନ୍ତି । (୭୬) ଯେଉଁ କ୍ଷେତ୍ରରେ ବିହନ ଯୋଗାଇ ଦେବା ସମ୍ଭବ ନୁହେଁ, ସେ କ୍ଷେତ୍ରରେ ଜମି ବା ଫସଲ ସର୍ତ୍ତା କରାଯାଇ ବାଟିଏ ଜମିରୁ ମାତ୍ର ପଉଟିଏ କର ସ୍ୱରୂପ ଆଦାୟ କରିବା ସମୁଚିତ ଏବଂ ଅନ୍ୟାନ୍ୟ ଫଳମୂଳ ଆମଦାନୀ ଉପରେ କୌଣସି ଦେୟ ଧାର୍ଯ୍ୟ କରାନଯାଇ ତାହା ପ୍ରଜାମାନଙ୍କ ଉପଭୋଗ ନିମିତ୍ତ ଛାଡ଼ି ଦିଆଯିବା ଉଚିତ । (୭୭)

---

(୭୪) Asirvatham : Political Theory—P. 9 and Banerjee, Dr. Kishalay : Political Theory and Isms (Bijoy Book Store, Berhampur, 1st Ed, 1986) pp. 14-15.

(୭୫) ସା: ମ: ଭା: (ରା)—ଶାନ୍ତି-ପୃ. ୧୨, ଅଶ୍ୱମେଧ-ପୃ ୧୮ ଓ ଆଶ୍ରମିକ-ପୃ. ୪୭ ।

(୭୬) ସା: ମ: ଭା: (ରା)—ସ୍ୱର୍ଗାରୋହଣ-ପୃ. ୬ (କେତେକ ସ୍ଥଳେ ବିଂଶ ହାତ ମାପର ନଳ ବ୍ୟବହାର କରାଯାଇ ପଚିଶ ଗୁଣ୍ଠରେ ଏକ ମାଣ ଓ କୋଡ଼ିଏ ମାଣରେ ବାଟିଏ ଜମି ଧରାଯାଉଥିଲା ।—ସା: ମ: ଭା: (ରା)—ଶାନ୍ତି ପୃ. ୧୧)

(୭୭) ସା: ମ: ଭା: (ରା)—ଆଦ୍ୟ-ପୃ. ୪୫ ।

ଏହା ବ୍ୟତୀତ, ରାଜା ଉପଯୁକ୍ତ ବ୍ୟକ୍ତିଙ୍କୁ ବିଭିନ୍ନ ନିଯୋଗରେ ନିଯୁକ୍ତ କରି ସେମାନଙ୍କୁ ପୁରୁଷାନୁକ୍ରମେ କିଛି ଭୂସମ୍ପତ୍ତି ଦାନ କରିବା ବାଞ୍ଛନୀୟ । ଏହା ଫଳରେ ନିଯୋଗକାରୀମାନେ ନିଜ ନିଜର କର୍ତ୍ତବ୍ୟ ସଠିକ୍ ଭାବେ ନିର୍ବାହ କରିବା ପାଇଁ ଉତ୍ସାହିତ ହେବେ । ଯେଉଁମାନେ ଶସ୍ୟ ପରିବର୍ତ୍ତେ ସ୍ୱର୍ଣ୍ଣମୁଦ୍ରା ଆକାରରେ ରାଜସ୍ୱ ପ୍ରଦାନ କରିବା ପାଇଁ ଚାହିଁବେ, ସେମାନେ ବାଟିଏ ଜମି ପ୍ରତି ଏକ ଟଙ୍କା ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରିପାରିବେ । (୭୮)

ଗୋରୁ, ବ୍ରାହ୍ମଣ ଯେପରି କୌଣସି କଷ୍ଟଭୋଗ ନକରନ୍ତି ଏବଂ ଗଜ, ଅଶ୍ୱ ଓ ଗୋଧନ ସୁବିଧାରେ ପ୍ରତିପାଳିତ ହୁଅନ୍ତି, ତାହା ପ୍ରତି ସଚେତନ ରହିବା ମଧ୍ୟ ରାଜାଙ୍କର ଅନ୍ୟତମ କର୍ତ୍ତବ୍ୟ । କୃଷିଜୀବୀ ଓ ଗୋପାଳମାନଙ୍କର ସମ୍ପନ୍ନତା ପ୍ରତି ମଧ୍ୟ ଦୃଷ୍ଟି ଦିଆଯିବା ବାଞ୍ଛନୀୟ । ସାରଳା ମହାଭାରତରେ ଉଲ୍ଲେଖ ଅଛି ଯେ ଗୋଚର ଆକାରରେ ପର୍ଯ୍ୟାପ୍ତ ଜମି ଛାଡ଼ି ଦିଆଯାଉଥିଲା ଏବଂ ସେନାପତିମାନଙ୍କୁ ସୁରକ୍ଷିତ ବାସଗୃହ ଯୋଗାଣ ବ୍ୟବସ୍ଥା କରାଯାଉଥିଲା । (୭୯)

ଏହା ବ୍ୟତୀତ, ସାରଳା ମୁଦ୍ଗଲୀ ଦ୍ୱାରା ଦ୍ରୌପଦୀଙ୍କୁ ବୁଝାଇବା ଛଳରେ ପ୍ରଚଳିତ ଗଣନାପଦ୍ଧତି ସଂପର୍କରେ ମଧ୍ୟ ନିଜସ୍ୱ କଳ୍ପନାବିଳାସର ପରିଚୟ ଦେଇ ଅଛନ୍ତି । (୮୦) ଏହାର ଦ୍ୱିବିଧ ରୂପ ('କ' ଓ 'ଖ' ଦୁଇଟି ସ୍ତମ୍ଭରେ) ନିମ୍ନରେ ପ୍ରଦତ୍ତ ହେଲା ।

| (କ) | | | (ଖ) |
|---|---|---|---|
| ଦଶ ଶତ | = | ଏକ ସହସ୍ର | ରଥ, ଗଜ, ଅଶ୍ୱ, ପଦାତି, ବାଳଦ, ମୟୂରଝାଳ, |
| ଦଶ ସହସ୍ର | = | ଏକ ଅୟୁତ | ବାଦ୍ୟକାର, ସୂପକାର, ଫୁଙ୍କିକଡ଼ା (ଫୁଙ୍ଫୁକାର), |
| ଦଶ ଅୟୁତ | = | ଏକ ଲକ୍ଷ | ଦଣ୍ଡ, ଉଦଣ୍ଡ, ପ୍ରତ୍ୟେକରୁ |
| ଦଶ ଲକ୍ଷ | = | ଏକ ନିୟୁତ | ପଞ୍ଚଷଠି ସହସ୍ର ସୈନ୍ୟବଳ = ଏକ ଅଦ୍ଧବ୍ରତ |
| ଦଶ ନିୟୁତ | = | ଏକ କୋଟି | ଦଶ ଅଦ୍ଧବ୍ରତ = ଏକ ପଟଳ |
| ଦଶ କୋଟି | = | ଏକ ଅର୍ବୁଦ | ଦଶ ପଟଳ = ଏକ ନଖମୁଖ |
| ଦଶ ଅର୍ବୁଦ | = | ଏକ ପଦ୍ମ | ଦଶ ନଖମୁଖ = ଏକ ଜଳଧାରମୁଖ |
| ଦଶ ପଦ୍ମ | = | ଏକ ଖର୍ବ | ଦଶ ଜଳଧାରମୁଖ = ଏକ ବାରଣମୁଖ |

(୭୮) ସା: ମ: ଭା: : (ରା)—ଶାନ୍ତି-ପୃ. ୧୬ । (୭୯) ତତ୍ରୈବ ।
(୮୦) ସା: ମ: ଭା: (ରା)—ଆଦ୍ୟ-ପୃ. ୨୫୯ ଓ ସା: ମ: ଭା: (ସା) ଆଦି-ପୃ. ୭୧୭ ।

| | | | | | |
|---|---|---|---|---|---|
| ଦଶ ଶଙ୍ଖ | = | ଏକ ନିଖର୍ବ | ଦଶ ବାରିଣମୁଖ | = | ଏକ ନଳ |
| ଦଶ ନିଖର୍ବ | = | ଏକ ମହାପଦ୍ମ | ଦଶ ନଳ | = | ଏକ ଓଡ୍ଡ଼ |
| ଦଶ ମହାପଦ୍ମ | = | ଏକ ଶଙ୍କୁ | ଦଶ ଓଡ୍ଡ଼ | = | ଏକ ବୃନ୍ଦାରକ |
| ଦଶ ଶଙ୍କୁ | = | ଏକ ସାଗର | ଦଶ ବୃନ୍ଦାରକ | = | ଏକ ନକ୍ଷତ୍ରମୁଖ |
| ଦଶ ସାଗର | = | ଏକ ଅନ୍ତ୍ୟ | ଦଶ ନକ୍ଷତ୍ରମୁଖ | = | ଏକ ମନୁମୁଖ |
| ଦଶ ଅନ୍ତ୍ୟ | = | ଏକ ପରାର୍ଦ୍ଧ | ଦଶ ମନୁମୁଖ | = | ଏକ ଅକ୍ଷୌହିଣୀ ※ |
| ଦଶ ପରାର୍ଦ୍ଧ | = | ଏକ ଗୁଣ | | | |

(ଅର୍ଥାତ୍, ଗଜ, ଅଶ୍ୱ, ରଥ, ପଦାତି ଆଦି ପ୍ରତ୍ୟେକରୁ ୭୫, ୦୦, ୦୦, ୦୦, ୦୦, ୦୦, ୦୦୦)

ଉପର୍ଯ୍ୟୁକ୍ତ ଗଣନା ପଦ୍ଧତି ବ୍ୟତୀତ ଯେ ସମସ୍ତରେ ମାଣ, ବାଟି, ଗୁଣ୍ଠ, ମାଢ଼, ପଳ, ଚଳା ପ୍ରଭୃତି ମାପ ଓ ଓଜନ ପ୍ରଣାଳୀର ପ୍ରଚଳନ ଥିବା ମଧ୍ୟ ସାରଳା ମହାଭାରତରୁ ଜଣାଯାଏ । (୮୧)

ସଂକ୍ଷେପରେ ପ୍ରକାଶ କଲେ, ସୁସ୍ଥ ଓ ବଳିଷ୍ଠ ରାଜନୈତିକ ଆଦର୍ଶ ପ୍ରତିଷ୍ଠା ନିମିତ୍ତ ସାରଳା ରାଜ୍ୟର ଅର୍ଥନୈତିକ ସ୍ଥିରତା ଓ ରାଜାଙ୍କର ଉଦାର ମନୋଭାବ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ରାଜା ନିଜର ତଥା ପ୍ରଜାମାନଙ୍କର ଧନ ସମ୍ପତ୍ତି ପ୍ରତି ଲୋଲୁପ ନ ହେବା ହିଁ ଥିଲା ଶ୍ରେଷ୍ଠ ଆଦର୍ଶ । (୮୨)

## ଶାସନ ବ୍ୟବସ୍ଥା

ଶାନ୍ତି ପର୍ବରେ ଯୁଧିଷ୍ଠିରଙ୍କୁ ଶ୍ରୀକୃଷ୍ଣ ରାଜବିଧି ସମ୍ବନ୍ଧୀୟ ଯେଉଁସବୁ ଉପଦେଶାବଳୀ ଶୁଣାଇଛନ୍ତି, ସେଥିରୁ ପ୍ରତିପନ୍ନ ହୁଏ ଯେ ରାଜାଗଣ ଶାସନ ପରିଚାଳନା କ୍ଷେତ୍ରରେ ବିଶ୍ୱସ୍ତ ଚର, ଚରର ବା ଗୁପ୍ତଚର ଏବଂ ସୁଚତୁର ମନ୍ତ୍ରୀମାନଙ୍କ ଉପରେ ନିର୍ଭର କରୁଥିଲେ । ଏହି କାରଣରୁ ଉପଯୁକ୍ତ ମନ୍ତ୍ରୀ ନିଯୁକ୍ତି ରାଜାର ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ରୂପେ ବିବେଚିତ ହେଉଥିଲା । ପ୍ରବାଦ ରହିଥିଲା ଯେ ବତିଶ ଗୁଣରେ ରାଜା

---

※ ପ୍ରଚଳିତ ହିସାବ ଅନୁଯାୟୀ— ୨୧୮୭୦ ହସ୍ତୀ, ୨୧୮୭୦ ରଥ, ୬୫୬୧୦ ଅଶ୍ୱ ଓ ୧୦୯୩୫୦ ପଦାତି ସମେତ ମୋଟ ୨୧୮୭୦୦ = ଏକ ଅକ୍ଷୌହିଣୀ । ( ଅମର କୋଷ—୨ୟ କାଣ୍ଡ, କ୍ଷତ୍ରିୟ ବର୍ଗ—ପୃ. ୨୨୪ )

(୮୧) ସା: ମ: ଭା: (ରା)—ଆଦ୍ୟ-ପୃ. ୪୫ ।

(୮୨) ସା: ମ: ଭା: (ରା)—ଶାନ୍ତି-ପୃ. ୧୬ ।

ହେଲେ ଛତିଶ ଗୁଣରେ ମନ୍ତ୍ରୀ । 'ବତିଶ ଗୁଣ ଥିଲେ ସେ ହୁଅଇ ଭୂପତି / ଛତିଶ ଗୁଣ ବହିଲେ ହୁଏ ସିନା ମନ୍ତ୍ରୀ । (୮୩)

ଏଥିପାଇଁ ମନ୍ତ୍ରୀଙ୍କୁ ରାଜାଙ୍କର 'ଗୁଣନିଧି' କୁହାଯାଉଥିଲା ଏବଂ ମନ୍ତ୍ରୀଙ୍କ ବୁଦ୍ଧିରେ ହିଁ ରାଜାଙ୍କର ସର୍ବକାର୍ଯ୍ୟ ସିଦ୍ଧ ହୁଏ ବୋଲି ଧାରଣା ରହିଥିଲା । ଏପରିକି, ମନ୍ତ୍ରୀଙ୍କ ବଚନ ଅମାନ୍ୟ କଲେ ରାଜା ଲକ୍ଷ୍ମୀଚ୍ୟୁତ ହୁଅନ୍ତି ଏବଂ ରାଜ୍ୟ ହରାଇ ବସନ୍ତି ବୋଲି ବିଶ୍ୱାସ କରାଯାଉଥିଲା । (୮୦) କିନ୍ତୁ ସାରଳାଙ୍କ ମତରେ ରାଜା ମନ୍ତ୍ରୀଙ୍କ ଉପରେ ସମସ୍ତ ଶାସନ ଅଧିକାର ନ୍ୟସ୍ତ କରିବା ଅନୁଚିତ । ମନ୍ତ୍ରୀମାନଙ୍କୁ ସୀମିତ ଓ ନିର୍ଦ୍ଦିଷ୍ଟ କ୍ଷମତା ପ୍ରଦାନ କରିବା ବାଞ୍ଛନୀୟ । (୮୫) ପୁନଶ୍ଚ, ଜଣେ ମନ୍ତ୍ରୀଙ୍କର

---

(୮୩) ସା: ମ: ଭା: (ରା)—ମଧ୍ୟ-ପୃ. ୧୦୫

ରାଜାଙ୍କର ୩୬ଟି ଗୁଣ ବା 'ଆତ୍ମସମ୍ପତ୍' ସମ୍ପର୍କରେ 'କୌଟିଲ୍ୟ ଅର୍ଥଶାସ୍ତ୍ରମ୍' ଷଷ୍ଠ ଅଧିକରଣ ପ୍ରଥମ ଅଧ୍ୟାୟରେ ଉଲ୍ଲେଖ ଅଛି—

"ବାଗ୍ମୀ ପ୍ରଗଲଭଃ ସ୍ମୃତି ମତି ବଲବାନୁଦଗ୍ରଃ ସ୍ୱବଗ୍ରହଃ କୃତଶିଳ୍ପୋ
ବ୍ୟସନେ ଦଣ୍ଡନାୟ୍ୟୁପକାରାପକାରୟୋର୍ଦୃଷ୍ଟ ପ୍ରତିକାରୀ
ହ୍ରୀମାନାପତ୍ ପ୍ରକୃତ୍ୟୋର୍ବିନିଯୋକ୍ତା ଦୀର୍ଘ ଦୂରଦର୍ଶୀ
ଦେଶ କାଲ ପୁରୁଷକାର କାର୍ଯ୍ୟ ପ୍ରଧାନଃ
ସନ୍ଧି ବିକ୍ରମ ତ୍ୟାଗ ସଂଯମପଣ ପରଚ୍ଛିଦ୍ର ବିଭାଗୀ
ସଂବୃତୋଦୀନାଭିହାସ୍ୟ ଜିହ୍ମ ଭ୍ରୂକୁଟୀ କ୍ଷୀଣଃ
କାମ କ୍ରୋଧ ଲୋଭ ସ୍ତମ୍ଭ ଚାପଲାପ ତାପ ପୈଶୂନ୍ୟହୀନଃ
ଶୁକ୍ଲଃ ସ୍ମିତୋଦଗ୍ରାଭିଭାଷୀ ବୃଦ୍ଧୋପଦେଶାଚାର ଇତ୍ୟାତ୍ମସଂପତ୍ ।"

ଅମାତ୍ୟଙ୍କ ଗୁଣ ସମ୍ପର୍କରେ ଏହି ଗ୍ରନ୍ଥର ପ୍ରଥମ ଅଧିକରଣ ନବମ ଅଧ୍ୟାୟରେ ଉଲ୍ଲେଖ ଅଛି—

"ଜାନପଦୋଭିଜାତଃ ସ୍ୱବଗ୍ରହଃ କୃତଶିଳ୍ପ ଚକ୍ଷୁଷ୍ମାନ୍ ପ୍ରାଜ୍ଞୋ,
ଧାରୟିଷ୍ଣୁର୍ଦକ୍ଷୋ ବାଗ୍ମୀ ପ୍ରଗଲ୍ଭଃ ପ୍ରତିପତ୍ତିମାନୁତ୍ସାହ ପ୍ରଭାବଯୁକ୍ତଃ,
କ୍ଲେଶସହଃ ଶୁଚି ମୈତ୍ରୋ ଦୃଢ଼ଭକ୍ତଃ ଶୀଲବଲାରୋଗ୍ୟ ସତ୍ତ୍ୱସଂଯୁକ୍ତଃ,
ସ୍ତମ୍ଭଚାପଲ୍ୟବର୍ଜିତଃ ସଂପ୍ରିୟୋ ବୈରାଣାମକର୍ତ୍ତେତ୍ୟମତ୍ୟ ସମ୍ପତ୍ ।"

(୮୪) ସା: ମ: ଭା: (ରା)—ମଧ୍ୟ-ପୃ. ୧୦୫
(୮୫) —ଏକନ—ଶାନ୍ତି-ପୃ. ୧୨

ପରାମର୍ଶ ଯଦ ସମୂହ ପ୍ରଜାମତର ବିପରୀତ ହୁଏ, ସେ କ୍ଷେତ୍ରରେ ବହୁଜନଙ୍କ ମତହିଁ ଗ୍ରହଣୀୟ । ଏଥିପାଇଁ ଶକୁନିଙ୍କ ପରାମର୍ଶ ଗ୍ରହଣ ନ କରି ବହୁଜନମତ ପାଳନ କରିବା ପାଇଁ ଉଦ୍‌ଯୋଗ ପର୍ବରେ ଭାନୁମତୀ ଦୁର୍ଯୋଧନଙ୍କୁ ଚେତାବନୀ ଦେଇଛନ୍ତି । (୮୬) ଏହାବ୍ୟତୀତ, ଗୁଣୀ, ଜ୍ଞାନୀ, କବି ତଥା ପଣ୍ଡିତମାନଙ୍କୁ ଅବଜ୍ଞା ବା ଅସନ୍ତୁଷ୍ଟ କରିବା ମଧ୍ୟ ଅନୁଚିତ । (୮୭)

ପ୍ରାଚୀନ କାଳର ସମସ୍ତ ରାଜା ଯେ ଶାନ୍ତ, ନ୍ୟାୟବାନ୍, ନିରଭିମାନୀ, ନିର୍ଲୋଭୀ, ଧର୍ମପରାୟଣ ଓ ପ୍ରଜାହିତୈଷୀ ଥିଲେ, ଏହା କୁହାଯାଇ ନପାରେ । କାରଣ, କେତେକ ସ୍ଥଳେ ରାଜାଗଣ ଭୋଗ ବିଳାସୀ, ଅହଙ୍କାରୀ ଓ ଅତ୍ୟାଗ୍ରହୀ ଥିବା ମଧ୍ୟ ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ । ରାଜା ପଶାଖେଳ, ଖେମଟା ନାଚ, ଗଞ୍ଜେଇ ସେବନ ଓ କାଦମ୍ବରୀ ପାନରେ ଉନ୍ମତ୍ତ ହେବା ଚିତ୍ର (୮୮) ଅଙ୍କନରେ ସାରଳା ଯେ ସମ୍ପୂର୍ଣ୍ଣ ସିଦ୍ଧହସ୍ତ, କହିବା ବାହୁଲ୍ୟ ମାତ୍ର । କିନ୍ତୁ ଏସବୁର କୁପରିଣତି ପ୍ରଦର୍ଶନ ମାଧ୍ୟମରେ ଏଗୁଡ଼ିକ ଯେ ରାଜଧର୍ମର ବିରୋଧୀ, ତାହା ପ୍ରତିପାଦନ କରିବା ପାଇଁ ସି ସେ ଚେଷ୍ଟା କରିଛନ୍ତି । କେତେକ ରାଜା ପରସ୍ତ୍ରୀହରଣ ଓ ଏକାଧିକ ପତ୍ନୀ ଗ୍ରହଣରେ ପ୍ରବୃତ୍ତ ଥିବା ଯୋଗୁଁ ସାରଳା ସେମାନଙ୍କୁ ସେଥିରୁ ନିବୃତ୍ତ ରହିବା ପାଇଁ ବାରମ୍ବାର ସତର୍କବାଣୀ ଶୁଣାଇଛନ୍ତି । (୮୯) କୁରୁକ୍ଷେତ୍ର ଯୁଦ୍ଧ ଶେଷରେ ଯେତେବେଳେ ପାଣ୍ଡବ ପଞ୍ଚଭ୍ରାତା ସଦର୍ପେ ଶ୍ରୀକୃଷ୍ଣଙ୍କ ନିକଟରେ ପ୍ରକାଶ କରିଛନ୍ତି ଯେ ସେମାନେ ପ୍ରତ୍ୟେକେ ନିଜର ବ୍ୟକ୍ତିଗତ କୃତିତ୍ୱ ବଳରେ ହିଁ ଯୁଦ୍ଧରେ ବିଜୟ ହାସଲ କରିପାରିଛନ୍ତି, ସେହି ଦର୍ପଗଞ୍ଜନ ଉଦ୍ଦେଶ୍ୟରେ ସେ ବେଲ୍ଲାଳସେନର ପ୍ରତ୍ୟକ୍ଷ ସାକ୍ଷ୍ୟ ପ୍ରଦାନପୂର୍ବକ ସେମାନଙ୍କୁ ସ୍ପଷ୍ଟ ସୂଚାଇ ଦେଇଛନ୍ତି ଯେ କେବଳ ଏକ ଅଦୃଶ୍ୟ ଚକ୍ର ହିଁ ସମସ୍ତଙ୍କର ବିନାଶ ସାଧନ କରିଛି, ଅନ୍ୟ ସମସ୍ତେ କେବଳ ନିମିତ୍ତ ମାତ୍ର । (୯୦) ଏହାଦ୍ୱାରା ରାଜାଙ୍କର ବା ଯୋଦ୍ଧାଙ୍କର ଅହଙ୍କାର ମନୋଭାବ ଉପରେ କୁଠାରାଘାତ କରାଯାଇ ଧର୍ମବଳ ଉପରେ ପ୍ରାଧାନ୍ୟ ଆରୋପିତ ହୋଇଛି ।

---

(୮୬) ସା: ମ: ଭା: (ରା)—ଉଦ୍‌ଯୋଗ ପୃ· ୫୭

(୮୭) —ଏଜନ— ଶାନ୍ତି-ପୃ. ୧୬

(୮୮) —ଏଜନ— ଆଦ୍ୟ-ପୃ. ୯୭, ମଧ୍ୟ-ପୃ. ୨୨୨, ସଭା-ପୃ. ୩୧୬-୩୧୩, ବନ ପୃ. ୧୬ ଓ ମୁଷଳୀ- ପୃ. ୭ ।

(୮୯) ସା: ମ: ଭା: (ରା)—ଆଦ୍ୟ-ପୃ. ୮୯, ୧୫୩, ବନ-ପୃ. ୧୩୭, ଶାନ୍ତି-ପୃ. ୧୬ ଓ ଆଶ୍ରମିକ-ପୃ. ୪୭ ।

(୯୦) —ଏଜନ— ଗଦା-ପୃ. ୨୯-୩୦ ।

## ସାରଳାଙ୍କ କୂଟନୈତିକ ଆଦର୍ଶ

କୂଟନୀତି ରାଜନୀତିର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏହା ବ୍ୟତୀତ, ରାଜ୍ୟ ଶାସନ ପରିଚାଳନା ଏକ ପ୍ରକାର ଅସମ୍ଭବ ବୋଲି ମନେ ହୋଇଥାଏ । ପୁଣି, ମହାଭାରତ ପରି ଏକ କୂଟନୀତି ସମ୍ବଳିତ ଗ୍ରନ୍ଥର ଅନୁସରଣରେ ସ୍ୱୀୟ ଗ୍ରନ୍ଥର ପରିକଳ୍ପନା କଲାବେଳେ ସାରଳା ଦାସ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ ଥିବେ, କହିବା ବାହୁଲ୍ୟ ମାତ୍ର । କୃଷ୍ଣ, ଶକୁନି, ଦୁର୍ଯ୍ୟୋଧନ ପ୍ରମୁଖ କୂଟନୀତି ବିଶାରଦମାନଙ୍କର ଚରିତ୍ର ଚିତ୍ରଣ ବେଳେ କବି ଏହାର ଗୁରୁତ୍ୱ ଯେ ଉପଲବ୍ଧି କରିଥିବେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏ ଦୃଷ୍ଟିରୁ ସାରଳା ଦାସଙ୍କ କୂଟନୈତିକ ଆଦର୍ଶ ସମ୍ପର୍କରେ ବିସ୍ତୃତ ବିବେଚନାର ଆବଶ୍ୟକତା ଏଠାରେ ଉପଲବ୍ଧି ହୁଏ ।

ରାଜ୍ୟରକ୍ଷା ଓ ଶତ୍ରୁ ବିନାଶ ପାଇଁ ଯୁଗେ ଯୁଗେ ରାଜା ତଥା ଶାସକଗଣ ଯେପରି କୂଟନୀତିର ଆଶ୍ରୟ ଗ୍ରହଣ କରିଛନ୍ତି, ରାଜନୀତି ବିଶାରଦମାନେ ସେ ସବୁର ବିସ୍ତୃତ ଚିତ୍ର ନିଜ ନିଜ ଗ୍ରନ୍ଥ ମଧ୍ୟରେ ଅଙ୍କନ କରିଯାଇଛନ୍ତି । ସାରଳା ଦାସ ଯେ ଯେସବୁ ସମ୍ପର୍କରେ ଅବହିତ ନଥିଲେ, ତାହା କୁହାଯାଇ ନପାରେ । ପୁନଶ୍ଚ, କପିଳେନ୍ଦ୍ର ଦେବଙ୍କ ପରି ଜଣେ ପ୍ରଭାବଶାଳୀ ଓ ରାଜ୍ୟବିସ୍ତାର ଲାଳସୀ ରାଜାଙ୍କ ରାଜ୍ୟପରିଚାଳନାର ପ୍ରତ୍ୟକ୍ଷ ଅନୁଭୂତି ସାରଳାଙ୍କୁ ଏ ସମ୍ପର୍କରେ ଯଥେଷ୍ଟ ଉପାଦାନ ଯୋଗାଇ ପାରିଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । କପିଳେନ୍ଦ୍ର ଦେବ ଯେଉଁପରି ଭାବେ ଜ୍ୟେଷ୍ଠ ପୁତ୍ରକୁ ଉପେକ୍ଷା କରି ପୁରୁଷୋତ୍ତମ ଦେବଙ୍କୁ ରାଜସିଂହାସନ ପ୍ରଦାନ କରିବା ପାଇଁ କୂଟନୈତିକ ମାର୍ଗର ଆଶ୍ରୟ ନେଇଥିଲେ, ତାହା ଏ ପର୍ଯ୍ୟନ୍ତ ଇତିହାସରେ ଉଦ୍‌ଘୋଷିତ । ସାରଳା ସଭାପର୍ବରେ 'ଯଯାତି ରାଜାପ୍ରତି ପୁରୁପ୍ରଭୀର ଦୁଇପୁତ୍ରଙ୍କର ଷଡ଼ଯନ୍ତ୍ର' (୧୧) ବର୍ଣ୍ଣନା ଛଳରେ କପିଳେନ୍ଦ୍ର ଦେବଙ୍କୁ ହମ୍ବୀର ଓ ପୁରୁଷୋତ୍ତମ ଦେବଙ୍କ ସିଂହାସନ ଲିପ୍ସା ସମ୍ପର୍କରେ ସତର୍କ କରାଇ ଦେଇଥିଲେ ବୋଲି ଅନୁମାନ କରିବା (୧୨) ଅଯୌକ୍ତିକ ମନେହୁଏ ନାହିଁ । ଏଣୁ ମୂଳ ମହାଭାରତର କଥାବସ୍ତୁକୁ ସ୍ୱକୀୟ ଭାବରେ ଉପସ୍ଥାପନ କଲାବେଳେ ସାରଳା ଯେଉଁସବୁ କୂଟନୈତିକ ଉପାଖ୍ୟାନର ଅବତାରଣା କରିଛନ୍ତି, ସେଥିରୁ ତାଙ୍କ କୂଟନୈତିକ ଆଦର୍ଶର ସ୍ଥୂଳ ପରିଚୟ ଏଠାରେ ଉଲ୍ଲେଖ କରାଯାଇପାରେ ।

ଛଳେ ବଳେ କୌଶଳେ ଶତ୍ରୁର ବିନାଶ କରିବା ହିଁ ରାଜନୀତିର ଅନ୍ୟତମ ଆଦର୍ଶ । ଦୁର୍ଯ୍ୟୋଧନ ଏଥିପାଇଁ ବିଷଲଡ଼ୁ ଦ୍ୱାରା ଭୀମକୁ ହତ୍ୟା କରିବା, ଜଉଗୃହ

---

(୧୧) ସା: ମ: ଭା: (ସ)—ସଭା-ପୃ. ୨୩୩-୨୩୫ ।

(୧୨) ପାଣିଗ୍ରାହୀ : ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ଚିତ୍ର-ପୃ. ୮୭ ।

ପରାମର୍ଶ ଯଦି ସମୃଦ୍ଧ ପ୍ରଜାମତର ବିପରୀତ ହୁଏ, ସେ କ୍ଷେତ୍ରରେ ବହୁଜନଙ୍କ ମତହିଁ ଗ୍ରହଣୀୟ । ଏଥିପାଇଁ ଶକୁନିଙ୍କ ପରାମର୍ଶ ଗ୍ରହଣ ନ କରି ବହୁଜନମତ ପାଳନ କରିବା ପାଇଁ ଉଦ୍‌ଯୋଗ ପର୍ବରେ ଭାନୁମତୀ ଦୁର୍ଯ୍ୟୋଧନଙ୍କୁ ଚେତାବନୀ ଦେଇଛନ୍ତି । (୮୬) ଏହାବ୍ୟତୀତ, ଗୁଣୀ, ଜ୍ଞାନୀ, କବି ତଥା ପଣ୍ଡିତମାନଙ୍କୁ ଅବଜ୍ଞା ବା ଅସନ୍ତୁଷ୍ଟ କରିବା ମଧ୍ୟ ଅନୁଚିତ । (୮୭)

ପ୍ରାଚୀନ କାଳର ସମସ୍ତ ରାଜା ଯେ ଶାନ୍ତ, ନ୍ୟାୟବାନ୍, ନିରଭିମାନୀ, ନିର୍ଲୋଭୀ, ଧର୍ମପରାୟଣ ଓ ପ୍ରଜାହିତୈଷୀ ଥିଲେ, ଏହା କୁହାଯାଇ ନପାରେ । କାରଣ, କେତେକ ସ୍ଥଳେ ରାଜାଗଣ ଭୋଗ ବିଳାସୀ, ଅହଙ୍କାରୀ ଓ ଅତ୍ୟାଗ୍ରହୀ ଥିବା ମଧ୍ୟ ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ । ରାଜା ପଶାଖେଳ, ଖେମଟା ନାଚ, ଗଞ୍ଜାଇ ସେବନ ଓ କାଦମ୍ବରୀ ପାନରେ ଉନ୍ମତ୍ତ ହେବା ଚିତ୍ର (୮୮) ଅଙ୍କନରେ ସାରଳା ଯେ ସମ୍ପୂର୍ଣ୍ଣ ସିଦ୍ଧହସ୍ତ, କହିବା ବାହୁଲ୍ୟ ମାତ୍ର । କିନ୍ତୁ ଏସବୁର କୁପରିଣତି ପ୍ରଦର୍ଶନ ମାଧ୍ୟମରେ ଏଗୁଡ଼ିକ ଯେ ରାଜଧର୍ମର ବିରୋଧୀ, ତାହା ପ୍ରତିପାଦନ କରିବା ପାଇଁ ସେ ଚେଷ୍ଟା କରିଛନ୍ତି । କେତେକ ରାଜା ପରସ୍ତ୍ରୀହରଣ ଓ ଏକାଧିକ ପତ୍ନୀ ଗ୍ରହଣରେ ପ୍ରବୃତ୍ତ ଥିବା ଯୋଗୁଁ ସାରଳା ସେମାନଙ୍କୁ ସେଥିରୁ ନିବୃତ୍ତ ରହିବା ପାଇଁ ବାରମ୍ବାର ସତର୍କବାଣୀ ଶୁଣାଇଛନ୍ତି । (୮୯) କୁରୁକ୍ଷେତ୍ର ଯୁଦ୍ଧ ଶେଷରେ ଯେତେବେଳେ ପାଣ୍ଡବ ପଞ୍ଚଭ୍ରାତା ସଦର୍ପେ ଶ୍ରୀକୃଷ୍ଣଙ୍କ ନିକଟରେ ପ୍ରକାଶ କରିଛନ୍ତି ଯେ ସେମାନେ ପ୍ରତ୍ୟେକେ ନିଜର ବ୍ୟକ୍ତିଗତ କୃତିତ୍ୱ ବଳରେ ହିଁ ଯୁଦ୍ଧରେ ବିଜୟ ହାସଲ କରିପାରିଛନ୍ତି, ସେହି ଦର୍ପଗଞ୍ଜନ ଉଦ୍ଦେଶ୍ୟରେ ସେ ବେଲ୍ଲଳସେନର ପ୍ରତ୍ୟକ୍ଷ ସାକ୍ଷ୍ୟ ପ୍ରଦାନପୂର୍ବକ ସେମାନଙ୍କୁ ସ୍ପଷ୍ଟ ସୂଚାଇ ଦେଇଛନ୍ତି ଯେ କେବଳ ଏକ ଅଦୃଶ୍ୟ ଚକ୍ର ହିଁ ସମସ୍ତଙ୍କର ବିନାଶ ସାଧନ କରିଛି, ଅନ୍ୟ ସମସ୍ତେ କେବଳ ନିମିତ୍ତ ମାତ୍ର । (୯୦) ଏହାଦ୍ୱାରା ରାଜାଙ୍କର ବା ଯୋଦ୍ଧାଙ୍କର ଅହଙ୍କାର ମନୋଭାବ ଉପରେ କୁଠାରାଘାତ କରାଯାଇ ଧର୍ମବଳ ଉପରେ ପ୍ରାଧାନ୍ୟ ଆରୋପିତ ହୋଇଛି ।

---

(୮୬) ସା: ମ: ଭା: (ରା)—ଉଦ୍‌ଯୋଗ ପୃ· ୫୬

(୮୭) —ଏକକ— ଶାନ୍ତି-ପୃ. ୧୨

(୮୮) —ଏକକ— ଆଦ୍ୟ-ପୃ. ୯୬, ମଧ୍ୟ-ପୃ. ୨୨୨, ସଭା-ପୃ. ୩୧୨-୩୧୩, ବନ ପୃ. ୧୨ ଓ ମୁଷଳୀ- ପୃ. ୭ ।

(୮୯) ସା: ମ: ଭା: (ରା)—ଆଦ୍ୟ-ପୃ. ୮୯, ୧୫୩, ବନ-ପୃ. ୧୩୭, ଶାନ୍ତି-ପୃ. ୧୨ ଓ ଆଶ୍ରମିକ-ପୃ. ୪୬ ।

(୯୦) —ଏକକ— ଗଦା-ପୃ. ୨୯-୩୦ ।

## ସାରଳାଙ୍କ କୂଟନୈତିକ ଆଦର୍ଶ

କୂଟନୀତି ରାଜନୀତିର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏହା ବ୍ୟତୀତ, ରାଜ୍ୟ ଶାସନ ପରିଚାଳନା ଏକ ପ୍ରକାର ଅସମ୍ଭବ ବୋଲି ମନେ ହୋଇଥାଏ । ପୁଣି, ମହାଭାରତ ପରି ଏକ କୂଟନୀତି ସମ୍ବଳିତ ଗ୍ରନ୍ଥର ଅନୁସରଣରେ ସ୍ୱୀୟ ଗ୍ରନ୍ଥର ପରିକଳ୍ପନା କଲାବେଳେ ସାରଳା ଦାସ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ ଥିବେ, କହିବା ବାହୁଲ୍ୟ ମାତ୍ର ! କୃଷ୍ଣ, ଶକୁନି, ଦୁର୍ଯ୍ୟୋଧନ ପ୍ରମୁଖ କୂଟନୀତି ବିଶାରଦମାନଙ୍କର ଚରିତ୍ର ଚିତ୍ରଣ ବେଳେ କବି ଏହାର ଗୁରୁତ୍ୱ ଯେ ଉପଲବ୍ଧି କରିଥିବେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏ ଦୃଷ୍ଟିରୁ ସାରଳା ଦାସଙ୍କ କୂଟନୈତିକ ଆଦର୍ଶ ସମ୍ପର୍କରେ ବିସ୍ତୃତ ବିବେଚନାର ଆବଶ୍ୟକତା ଏଠାରେ ଉପଲବ୍ଧ ହୁଏ ।

ରାଜ୍ୟରକ୍ଷା ଓ ଶତ୍ରୁ ବିନାଶ ପାଇଁ ଯୁଗେ ଯୁଗେ ରାଜା ତଥା ଶାସକଗଣ ଯେପରି କୂଟନୀତିର ଆଶ୍ରୟ ଗ୍ରହଣ କରିଛନ୍ତି, ରାଜନୀତି ବିଶାରଦମାନେ ସେ ସବୁର ବିସ୍ତୃତ ଚିତ୍ର ନିଜ ନିଜ ଗ୍ରନ୍ଥ ମଧ୍ୟରେ ଅଙ୍କନ କରିଯାଇଛନ୍ତି । ସାରଳା ଦାସ ଯେ ସେସବୁ ସମ୍ପର୍କରେ ଅବହିତ ନଥିଲେ, ତାହା କୁହାଯାଇ ନପାରେ । ବିଶେଷ, କପିଳେନ୍ଦ୍ର ଦେବଙ୍କ ପରି ଜଣେ ପ୍ରଭାବଶାଳୀ ଓ ରାଜ୍ୟବିସ୍ତାର ଲାଳସୀ ରାଜାଙ୍କ ରାଜ୍ୟପରିଚାଳନାର ପ୍ରତ୍ୟକ୍ଷ ଅନୁଭୂତି ସାରଳାଙ୍କୁ ଏ ସମ୍ପର୍କରେ ଯଥେଷ୍ଟ ଉପାଦାନ ଯୋଗାଇ ପାରିଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । କପିଳେନ୍ଦ୍ର ଦେବ ଯେଉଁପରି ଭାବେ ଜ୍ୟେଷ୍ଠ ପୁତ୍ରକୁ ଉପେକ୍ଷା କରି ପୁରୁଷୋତ୍ତମ ଦେବଙ୍କୁ ରାଜସିଂହାସନ ପ୍ରଦାନ କରିବା ପାଇଁ କୂଟନୈତିକ ମାର୍ଗର ଆଶ୍ରୟ ନେଇଥିଲେ, ତାହା ଏ ପର୍ଯ୍ୟନ୍ତ ଇତିହାସରେ ଉଦ୍‌ଘୋଷିତ । ସାରଳା ସଭାପର୍ବରେ 'ଯଯାତି ରାଜାପ୍ରତି ପୁରୁପ୍ରବୀର ଦୁଇପୁତ୍ରଙ୍କର ଷଡ଼ଯନ୍ତ୍ର' (୯୧) ବର୍ଣ୍ଣନା ଛଳରେ କପିଳେନ୍ଦ୍ର ଦେବଙ୍କୁ ହମ୍ବୀର ଓ ପୁରୁଷୋତ୍ତମ ଦେବଙ୍କ ସିଂହାସନ ଲିପ୍ସା ସମ୍ପର୍କରେ ସତର୍କ କରାଇ ଦେଇଥିଲେ ବୋଲି ଅନୁମାନ କରିବା (୯୨) ଅଯୌକ୍ତିକ ମନେହୁଏ ନାହିଁ । ଏଣୁ ମୂଳ ମହାଭାରତର କଥାବସ୍ତୁକୁ ସ୍ୱକୀୟ ଢଙ୍ଗରେ ଉପସ୍ଥାପନ କଲାବେଳେ ସାରଳା ଯେଉଁସବୁ କୂଟନୈତିକ ଉପାଖ୍ୟାନର ଅବତାରଣା କରିଛନ୍ତି, ସେଥିରୁ ତାଙ୍କ କୂଟନୈତିକ ଆଦର୍ଶର ସ୍ଥୂଳ ପରିଚୟ ଏଠାରେ ଉଲ୍ଲେଖ କରାଯାଇପାରେ ।

କଳେ ବଳେ କୌଶଳେ ଶତ୍ରୁର ବିନାଶ କରିବା ହିଁ ରାଜନୀତିର ଅନ୍ୟତମ ଆଦର୍ଶ । ଦୁର୍ଯ୍ୟୋଧନ ଏଥିପାଇଁ ବିଷଲଡ଼ୁ ଦ୍ୱାରା ଭୀମକୁ ହତ୍ୟା କରିବା, ଜତୁଗୃହ

---

(୯୧) ସା: ମ: ଭା: (ବା)—ସଭା-ପୃ. ୧୩୬-୧୩୫ ।
(୯୨) ପାଣିଗ୍ରାହୀ : ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ତଥ୍ୟ-ପୃ. ୧୨୮ ।

ମଧ୍ୟରେ ପଞ୍ଚପାଣ୍ଡବଙ୍କ ପଞ୍ଚତ୍ୱପ୍ରାପ୍ତି ପାଇଁ ସେଥିରେ ଅଗ୍ନି ସଂଯୋଗ କରିବା, ବନବାସ କାଳରେ ଯେନାସ୍ଥାନ ପାଣ୍ଡବମାନଙ୍କୁ ପରାସ୍ତ କରିବା, ପଶାଖେଳ ମାଧ୍ୟମରେ ସେମାନଙ୍କ ଚରିତ୍ର ସଂହାର ଓ ରାଜ୍ୟ ଅପହରଣ କରିବା ପ୍ରଭୃତି କୂଟନୀତିର ଆଶ୍ରୟ ନେବାପାଇଁ ମନ୍ତ୍ରୀ ତଥା ମାତୁଳ ଶକୁନିର ପରାମର୍ଶରେ ଯେଉଁ ପ୍ରସ୍ତାବ କରିଅଛି, ତାହା ରାଜନୈତିକ ଲକ୍ଷ୍ୟସାଧନ ଦୃଷ୍ଟିରୁ ଆଦୌ ଅସଙ୍ଗତ ମନେହୁଏ ନାହିଁ । କିନ୍ତୁ ତାର ସମସ୍ତ କୂଟନୀତି ଶ୍ରୀକୃଷ୍ଣଙ୍କ ପରି ଏକ ବଳିଷ୍ଠ କୂଟନୀତିଜ୍ଞଙ୍କ ନିକଟରେ ଫଳବତୀ ହୋଇପାରି ନାହିଁ । ସାରଳା ଦାସ ନିଜର ସମସ୍ତ କୂଟନୈତିକ ଆଦର୍ଶ ଏହି ଚରିତ୍ରଟି ମାଧ୍ୟମରେ ପ୍ରକାଶ କରିଅଛନ୍ତି । ଏଥିପାଇଁ ସାରଳାଙ୍କ ଶ୍ରୀକୃଷ୍ଣଙ୍କୁ ସାହିତ୍ୟ ସମାଲୋଚକଙ୍କ ଶିରୋବ୍ୟ ହେବାକୁ ପଡ଼ିଛି । (୧୩)

ପାଣ୍ଡବମାନଙ୍କୁ ଜତୁଗୃହରୁ ରକ୍ଷା କରିବାକୁ ପଡ଼ିବ ବୋଲି ପୂର୍ବରୁ ଅବହିତ ହୋଇ ଶ୍ରୀକୃଷ୍ଣ ଅବୈଧ ପ୍ରଣୟରେ ଲିପ୍ତ ହେବା ସଙ୍ଗେ ସଙ୍ଗେ ଖଳ୍ୟକାରକୁ ଜନ୍ମ ଦେଇଛନ୍ତି । ସେହିପରି ବଳରାମଙ୍କ ସହିତ ଦୁର୍ଯ୍ୟୋଧନର ସମ୍ପର୍କକୁ ଚକ୍ଷୁ ସମ୍ମୁଖରେ ରଖି ପାଣ୍ଡବମାନଙ୍କୁ ପ୍ରବଳ ପରାକ୍ରମୀ ଜ୍ୟେଷ୍ଠ ଭ୍ରାତାଙ୍କ କବଳରୁ ରକ୍ଷା ପାଇବା ନିମିତ୍ତ ଅର୍ଜୁନଙ୍କ ହସ୍ତରେ ବନ୍ଧୁ ଚନ୍ଦ୍ରାନ୍ତ କରି ଭଗିନୀ ସୁଭଦ୍ରାଙ୍କୁ ଅର୍ପଣ କରିଛନ୍ତି । ଏହା ଫଳରେ ପାଣ୍ଡବମାନଙ୍କ ହତ୍ୟା ପରେ ଭଗିନୀର ବୈଧବ୍ୟ ରୂପ ନ ଦେଖିବା ପାଇଁ ମହାଭାରତ ଯୁଦ୍ଧ ଅବସରରେ ସେ ତୀର୍ଥାଟନରେ ଚାଲି-ଯାଇଛନ୍ତି । ଯୁଧିଷ୍ଠିରଙ୍କ ମୁଖରେ 'ନରେ ବା କୁଞ୍ଜରେ ବା ଅଶ୍ୱତ୍ଥାମା ହତ' ଉଚ୍ଚାରଣ କରାଇ ଦ୍ରୋଣଙ୍କ ବଧ ସାଧନ, ସୁଦର୍ଶନ ଚକ୍ର ସାହାଯ୍ୟରେ ସନ୍ଧ୍ୟାର ଭ୍ରମ ଉପୁଜାଇ ଜୟଦ୍ରଥ ନିଧନ, କପିଧ୍ୱଜ ରଥକୁ ରସାତଳଗାମୀ କରାଇ କର୍ଣ୍ଣ-ପ୍ରେରିତ ସର୍ପାସ୍ତ୍ର କବଳରୁ ଅର୍ଜୁନଙ୍କର ସୁରକ୍ଷା, କୌଶଳକ୍ରମେ କର୍ଣ୍ଣଙ୍କଠାରୁ କବଚ ଓ ମକରକୁଣ୍ଡଳ ଅପହରଣ, ଜରାସନ୍ଧ ବଧ ପାଇଁ ବସ୍ତ୍ରକୁ ଦୁଇ ଫାଳ କରି ଭୀମଙ୍କୁ ସଙ୍କେତ ଦେବା, ଅଭିମନ୍ୟୁ ବଧ ଲାଗି ଅର୍ଜୁନଙ୍କୁ ମ୍ଳେଚ୍ଛରାଜ୍ୟକୁ ପ୍ରେରଣ କରିଦେବା, ବେଲ୍ଲଳସେନର ଅମିତ ପରାକ୍ରମ ଦେଖି ତାର ଶିରଚ୍ଛେଦନ କରିବା, କୁରୁକ୍ଷେତ୍ର ଯୁଦ୍ଧ ପରେ ପ୍ରାଣରକ୍ଷା କରିପାରିଥିବା ଏକମାତ୍ର ଗାନ୍ଧାରୀପୁତ୍ର ଦୁର୍ଦ୍ଧରର ନିଧନ ନିମିତ୍ତ ତାକୁ ମାତାଙ୍କ ଅନ୍ଧପଟଳ ଫିଟାଇବା ପାଇଁ ପ୍ରବର୍ତ୍ତାଇବା, ଯାଦବ ବଂଶ ଧ୍ୱଂସ ପାଇଁ ଦ୍ୱାରକାରେ 'କୋକୁଆ' ଭୟ ସୃଷ୍ଟି କରିବା ପ୍ରଭୃତି କୂଟନୀତିର କମ୍ ସାର୍ଥକ ଉଦାହରଣ ନୁହେଁ ।

---

(୧୩) ମହାନ୍ତି, ସୁରେନ୍ଦ୍ରନାଥ : ଶ୍ରୀକୃଷ୍ଣ (ପ୍ରବନ୍ଧ) ସାରଳା ମହାଭାରତ : ଚରିତ୍ର ଚିତ୍ରଶାଳା (ସଂ: ସାରଳା ସାହିତ୍ୟ ସଂସଦ, ଗ୍ରନ୍ଥ ମନ୍ଦିର କଟକ, ୧୯୮୩) ପୃ. ୨୩-୩୬ ।

ଏହା ବ୍ୟତୀତ, ତୁଳାମୁହାଁ କାଙ୍କ, ତୁଳସୀବଣ ବାଘ, ଆତାପି ବାତାପି ପ୍ରଭୃତି ଉପାଖ୍ୟାନ ମାଧ୍ୟମରେ ସୁଦ୍ଧା ସାରଳା ନିଜର କୂଟନୈତିକ ଆଦର୍ଶ ପ୍ରଖ୍ୟାପନ କରିଛନ୍ତି । ସାରଳା ମେକ୍ୟାଭେଲିଙ୍କ ଭଳି କୂଟନୀତିର ଏକାନ୍ତ ସମର୍ଥକ ନଥିଲେ ମଧ୍ୟ ଶକୁନି ମୁଖରେ ରାଜା କାକ, ଶ୍ୱାନ ଓ ଚଣ୍ଡାଳର ମିଳିତ ସ୍ୱଭାବ (୧୪) ବହନ କରିବାର ଯେଉଁ ଦୃଷ୍ଟାନ୍ତ ଉପସ୍ଥାପନ କରିଛନ୍ତି, ତାହା ତାଙ୍କ କୂଟନୈତିକ ସଚେତନତାର କମ୍ ପରିଚୟ ଦିଏନାହିଁ । ବିଦୁରଙ୍କ ଧର୍ମନୀତି କିମ୍ବା ଯୁଧିଷ୍ଠିରଙ୍କ ଉଦାର ତଥା ନିଷ୍ପୃହ ରାଜନୀତି ରାଜ୍ୟର ସୁଶାସନ ପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହୋଇପାରେ; କିନ୍ତୁ ରାଜ୍ୟରକ୍ଷା ପାଇଁ କୂଟନୀତିର ଆବଶ୍ୟକତା ଯେ ଅପରିହାର୍ଯ୍ୟ, ନବକଳ୍ପିତ ସାରଳା ମହାଭାରତରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ସାରଳା ଦାସ ପ୍ରାଚୀନ ରାଜନୈତିକ ଦର୍ଶନ ସଂପର୍କରେ ଅବହିତ ଥାଆନ୍ତୁ କିମ୍ବା ନଥାନ୍ତୁ, ମହାଭାରତକୁ ରୂପ ଦେବାବେଳେ ସମସାମୟିକ ରାଜନୈତିକ ପରିବେଶକୁ ନିଜର ବ୍ୟକ୍ତିଗତ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରି ପୁରାଣର ଆବରଣ ମଧ୍ୟରେ ସ୍ୱକୀୟ ରାଜନୈତିକ ଦର୍ଶନର ଉପସ୍ଥାପନା ଲାଗି ଚେଷ୍ଟା କରିଛନ୍ତି । ପାରଂପରିକ ରାଜନୀତି-ଦର୍ଶନ ପରିପ୍ରେକ୍ଷୀରେ ସାରଳାଙ୍କ ମତବାଦର ବୈଶିଷ୍ଟ୍ୟ ବିବେଚନା ପରବର୍ତ୍ତୀ ପର୍ଯ୍ୟାୟରେ (ଦ୍ୱିତୀୟ ପରିଚ୍ଛେଦ) କରାଯିବାର ଲକ୍ଷ୍ୟ ରଖାଯାଇଥିବାରୁ ଏଠାରେ ତାର ଅବତାରଣା କରାଯାଉ ନାହିଁ । ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଶାସ୍ତ୍ରଜ୍ଞାନ ଓ ଅନୁଭୂତି ସାରଳାଙ୍କ ରାଜନୈତିକ ଦର୍ଶନକୁ ନିଶ୍ଚିତ ଭାବେ ଏକ ଅଭିନବ ରୂପ ପ୍ରଦାନ କରିବାରେ ସମର୍ଥ ହୋଇଅଛି । ପୁନଶ୍ଚ, ସେ ସଂପୂର୍ଣ୍ଣ ଅନୁଭବ କରିଛନ୍ତି ଯେ ଭାରତୀୟ କିମ୍ବା ଉତ୍କଳୀୟ ରାଜନୀତିକୁ ଧର୍ମଠାରୁ ବିଚ୍ଛିନ୍ନ କରି ଏକ ସ୍ୱତନ୍ତ୍ର ରୂପ ପ୍ରଦାନ କରିବା ସମ୍ଭବପର ନୁହେଁ । ଏ ଦେଶରେ ପ୍ରଜାମାନଙ୍କ ପାଇଁ ରାଜା ଯେପରି 'ମହତୀ ଦେବତା', ସେହିପରି ରାଜା ମଧ୍ୟ ପ୍ରଜାସମୂହଙ୍କ ସର୍ବମାନ୍ୟ ଦେବତାର ପ୍ରଥମ ଓ ପ୍ରଧାନ ସେବକ । ତେଣୁ ସାରଳାଙ୍କ ଦୃଷ୍ଟିରେ ଧର୍ମ ଯେପରି ରାଜନୀତିମିଶ୍ରିତ, ସେହିପରି ରାଜନୀତି ମଧ୍ୟ ଧର୍ମଭିତ୍ତିକ । ରାଜନୈତିକ ଆଦର୍ଶ ଓ ଧାର୍ମିକ ଆଦର୍ଶ ପରସ୍ପର ଏକାନ୍ତ ପରିପୂରକ । ଏଣୁ ପରବର୍ତ୍ତୀ ପରିଚ୍ଛେଦରେ ସାରଳା ମହାଭାରତର ଧାର୍ମିକ ଆଦର୍ଶ ସଂପର୍କୀୟ ଆଲୋଚନା ଉପସ୍ଥାପିତ ହୋଇଛି ।

□ □ □

(୧୪) ''କାକ, ଶ୍ୱାନ, ଚଣ୍ଡାଳର ଯେ ହୁଏ ମିଳନ
ତାଙ୍କ ସ୍ୱଭାବ ଲଭନ୍ତି ସେହି ଯେ ରାଜନ ।''
ସା: ମ: ଭା: (ସ)—ଉଦ୍‌ଯୋଗ-ପୃ. ୧୧୪ ।

## ଚତୁର୍ଥ ପରିଚ୍ଛେଦ

# ସାରଳାଙ୍କ ରାଜନୀତି-ଦର୍ଶନ : ଧାର୍ମିକ ଆଦର୍ଶର ବୃହତ୍ତର ସଂସ୍କରଣ

ଭାରତୀୟ ପରଂପରାରେ ରାଜନୀତି ରାଜଧର୍ମ ରୂପେ ଅଭିହିତ । ଅବଶ୍ୟ, ଏଠାରେ ଧର୍ମ ପ୍ରଚଳିତ ସଙ୍କୀର୍ଣ୍ଣ ଅର୍ଥରେ ପ୍ରଯୁକ୍ତ ନୁହେ, ଧର୍ମଧାରଣା ଅତ୍ୟନ୍ତ ବ୍ୟାପକ । 'ଧୃଙ୍ ଧାରଣେ' ଧାତୁରୁ ନିଷ୍ପନ୍ନ ଏହି ବିଶିଷ୍ଟ ଶବ୍ଦଟିର ଆକ୍ଷରିକ ଅର୍ଥ—ଯାହା ଧାରଣ କରେ । ଅର୍ଥାତ୍, ରାଜପଦବୀରେ ରାଜାଙ୍କୁ ସ୍ଥିତିଶୀଳ କରାଇବା ପାଇଁ ଯେଉଁ ନୀତି-ନିୟମ, ବିଧି ବିଧାନ, ଆଚରଣ ଓ ଶୃଙ୍ଖଳା ପାଳନୀୟ କରେ, ତାହାହିଁ ପ୍ରକୃତ ରାଜଧର୍ମ । ନିଜର ସ୍ଥିତିକୁ ସୁଦୃଢ଼ କରିବା ପାଇଁ ଶାସକଗୋଷ୍ଠୀ ଯେଉଁସବୁ ଆଚରପଦ୍ଧତିର ଅନୁସରଣ କରନ୍ତି, ତାହା ବ୍ୟକ୍ତିନିୟନ୍ତ୍ରିତ ହେବା ଅପେକ୍ଷା ଅଧିକ ଭାବେ ଗଣନିୟନ୍ତ୍ରିତ । ଭାରତୀୟ ସାଂସ୍କୃତିକ ପରଂପରାରେ ଧର୍ମଧାରଣା ଓ ଅଧ୍ୟାତ୍ମ-ଭାବନାର ପ୍ରଭାବ ଅତ୍ୟନ୍ତ ପ୍ରବଳ । ଏ ଦୃଷ୍ଟିରୁ ଭାରତୀୟ ରାଜନ୍ୟବୃନ୍ଦ ରାଜନୀତି ସହିତ ଧର୍ମର ଏକ ସନ୍ତୁଳିତ ରୂପର ପରିକଳ୍ପନା କରିଆସିଛନ୍ତି । ରାଜ-କୋଷର ଅଭିବୃଦ୍ଧି ପାଇଁ ରାଜା ଶତ୍ରୁରାଜ୍ୟ ଲୁଣ୍ଠନ କରି ଅନନ୍ତ ଗୌରବର ଅଧିକାରୀ ହୋଇପାରେ, କିନ୍ତୁ ମନ୍ଦିର ଲୁଣ୍ଠନ କରି ରାଜକୋଷ ପୂରଣ କ୍ଷମଣୀୟ ନୁହେଁ । ସେଥିପାଇଁ ଖାରବେଳ କିମ୍ବା ଚନ୍ଦ୍ରଗୁପ୍ତ ବହୁ ସମ୍ମାନିତ, କିନ୍ତୁ ମହମ୍ମଦ ଗଜନୀ ଘୃଣ୍ୟ ଓ ଧର୍ମଦ୍ରୋହୀ ରୂପେ ଚିହ୍ନିତ । ଏଣୁ ଏହି ପରଂପରାରେ ଏକ ଉନ୍ନତ ଓ ସୁଶୃଙ୍ଖଳ ସମାଜର ପୃଷ୍ଠପୀଠିକାରେ ହିଁ ଆଦର୍ଶ ଶାସନ କାର୍ଯ୍ୟକାରୀ ହୋଇ-ପାରିଥାଏ ।

ଆଦର୍ଶ ରାଷ୍ଟ୍ରଗଠନ ଉଦ୍ଦେଶ୍ୟରେ ଯେଉଁସବୁ ଶାସନ ବ୍ୟବସ୍ଥା ଗ୍ରହଣ କରାଯାଏ ଏବଂ ବିଭିନ୍ନ ଆଇନ ବିଧାନମାନ ପ୍ରବର୍ତ୍ତିତ ହୁଏ, ସେସବୁ ମୂଳରେ ଉନ୍ନତ ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର ନିର୍ଯାସ ନିହିତ, ଏହା ଅନସ୍ୱୀକାର୍ଯ୍ୟ । ପୁନଶ୍ଚ, ଉଦାର ଧର୍ମଚେତନା ବଳରେ ବ୍ୟକ୍ତି ଜୀବନ ଶୃଙ୍ଖଳିତ ହୋଇଥିଲେ ହିଁ ଆଦର୍ଶ ସମାଜ ପ୍ରତିଷ୍ଠା ସମ୍ଭବପର । ଏଣୁ ଧର୍ମବିହୀନ ରାଷ୍ଟ୍ରୀୟ ବ୍ୟବସ୍ଥା ପରିକଳ୍ପନା

ଯେ ନିତାନ୍ତ ସଙ୍କୀର୍ଣ୍ଣ, ସ୍ଥାଣୁ ଓ କ୍ଷଣସ୍ଥାୟୀ, ଏଥିରେ ମତଦ୍ୱୈଧର ଅବକାଶ ନାହିଁ । ଏଥିପାଇଁ ଆଧ୍ୟାତ୍ମିକତା ବିବର୍ଜିତ ରାଜନୀତି ଚଳମାନ ସୂକ୍ଷ୍ମ ବାଲୁକାସ୍ତୂପ ଉପରେ ହିଁ ପ୍ରତିଷ୍ଠିତ ( Rests on a foundation of shifting sand ) ବୋଲି କୁହାଯାଇଥାଏ ଏବଂ ଏହା ଫଳରେ ରାଜନୀତି ସମସ୍ତ ଉନ୍ନତ ଆଦର୍ଶ ଓ ମୂଲ୍ୟବୋଧ ଚ୍ୟୁତ ହୋଇ ପଣ୍ୟବସ୍ତୁରେ ପରିଣତ ହେବାର ଆଶଙ୍କା ରହିଥାଏ । (୧)

ଅନ୍ୟ ପକ୍ଷରେ, ରାଜନୈତିକ ବ୍ୟବସ୍ଥା ବିନା ମଧ୍ୟ ଆଧ୍ୟାତ୍ମିକ ସତ୍ତାର ସ୍ଥିତି ଓ ବିକାଶ ବିପନ୍ନ । ଏକ ସୁସ୍ଥ ଓ ଆଦର୍ଶ ରାଜନୈତିକ ବ୍ୟବସ୍ଥା ଦ୍ୱାରା ହିଁ ସମୃଦ୍ଧ ଓ ସୁଶୃଙ୍ଖଳିତ ସମାଜର ବିକାଶ ସମ୍ଭବ ହୋଇଥାଏ; ଏବଂ ଏଭଳି ସାମାଜିକ ପରିବେଶ ବିନା ଧାର୍ମିକ ଆଦର୍ଶର ପରିକଳ୍ପନା ଅଳୀକ ଓ ନିରର୍ଥକ ବୋଧହେବା ସ୍ୱାଭାବିକ । ଏକ ବିବିକ୍ତ ମରୁପ୍ରାନ୍ତର ବା ନିଘଞ୍ଚ ଅରଣ୍ୟ ମଧ୍ୟରେ ଆବଦ୍ଧ ଧାର୍ମିକ ଆଦର୍ଶ ତାର ମହତ୍ତର ଲକ୍ଷ୍ୟ ସାଧନ କରିବା ନିତାନ୍ତ ଅସମ୍ଭବ । ସୁତରାଂ, ଧର୍ମନୀତି ଓ ରାଜନୀତି ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଏଣୁ ରାଜନୀତିକୁ ଧର୍ମନୀତିର ବୃହତ୍ତର ସମ୍ପ୍ରସାରଣ ବୋଲି କୁହାଯାଇପାରେ । (୨)

କେବଳ ଭାରତୀୟ ନାହିଁକି, ଗ୍ରୀକ୍, ରୋମାନ ଓ ବିଭିନ୍ନ ପାଶ୍ଚାତ୍ୟ ରାଜନୀତି-ବିଶାରଦଗଣ ଆଦିମ କାଳରୁ ଧର୍ମପ୍ରତିଷ୍ଠିତ ରାଜନୈତିକ ଦର୍ଶନ ଉପରେ ପ୍ରାଧାନ୍ୟ ଆରୋପ କରି ଆସିଛନ୍ତି । ସକ୍ରେଟିସ୍, ପ୍ଲୁଟୋ, ଆରିଷ୍ଟୋଟଲଙ୍କ ଠାରୁ ଆରମ୍ଭ କରି ସେନେକା, ମାରକାସ୍, ସେଣ୍ଟପଲ୍, ଅଗଷ୍ଟାଇନ୍, ଗ୍ରିଗୋରି ଓ ଲୟୁଲଙ୍କ ପର୍ଯ୍ୟନ୍ତ ବହୁ ରାଜନୀତି-ଦାର୍ଶନିକ ରାଜନୈତିକ ବ୍ୟବସ୍ଥାରେ ଧାର୍ମିକ ମୂଲ୍ୟବୋଧ ତଥା ନୈତିକ ଆଦର୍ଶର ଗୁରୁତ୍ୱକୁ ସ୍ୱୀକାର କରିଅଛନ୍ତି । ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଯେତେବେଳେ ଯେଉଁଠାରେ ରାଜନୈତିକ ସ୍ୱେଚ୍ଛାଚାରିତା ଫଳରେ ଧାର୍ମିକ ବନ୍ଧନ ଶିଥିଳ ହୋଇପଡ଼ିଛି, ଅଥବା ଶାସନତାନ୍ତ୍ରିକ ଦୁର୍ବଳତା ଯୋଗୁଁ ଧର୍ମାନ୍ଧତା ବୃଦ୍ଧି ପାଇଛି, ସେତେବେଳେ ସେଠାରେ ସାମାଜିକ କ୍ଷେତ୍ରରେ ଘୋର ବିଶୃଙ୍ଖଳା ଦେଖାଦେଇଛି । ନିରୋଙ୍କ ଅତ୍ୟାଚାର, ରୋମ ସାମ୍ରାଜ୍ୟର ପତନ, ଶତାବ୍ଦୀ ବ୍ୟାପୀ ( ଖ୍ରୀ· ୧୦୯୬-୧୨୯୧ ) କ୍ରୁଶଯୁଦ୍ଧ ବା ଧର୍ମଯୁଦ୍ଧ ପ୍ରଭୃତି ବହୁ ଦୃଷ୍ଟାନ୍ତ ଇତିହାସ ପୃଷ୍ଠାରେ ଜାଜ୍ୱଲ୍ୟମାନ ।

(୧) Ashirvatham, Dr. Eddy - Political Theory (The Upper India Publishing House (p) Ltd, Lucknow, 11th Ed. (1980 P. 11

(୨) Ibid—P. 12

## ରାଜନୈତିକ ଆଦର୍ଶର ଧାର୍ମିକ ପୃଷ୍ଠଭୂମି

ସାରଳା ଦାସଙ୍କ ପକ୍ଷରେ ତାଙ୍କ ପୂର୍ବବର୍ତ୍ତୀ ବିଶ୍ୱରାଜନୈତିକ ଇତିହାସର ବିବର୍ତ୍ତନ ଧାରା ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ସମ୍ଭବ ନ ହୋଇଥିଲେ ମଧ୍ୟ ଭାରତର ଅନ୍ୟାନ୍ୟ ମନୀଷୀମାନଙ୍କ ପକ୍ଷରେ ତାହା ଅସମ୍ଭବ ନଥିଲା । କାରଣ ଅଶୋକଙ୍କ ଆବିର୍ଭାବ ପୂର୍ବରୁ ହିଁ ମିଶର, ଗ୍ରୀସ୍, ରୋମ, ଚୀନ, ଆଫଗାନିସ୍ଥାନ, ଇରାକ୍ ଇରାନ୍, ବର୍ମା, ତିବ୍ବତ, ପେର୍ସିଆ, କାମ୍ବୋଡିଆ, ନେପାଳ, ସିଂହଳ ପ୍ରଭୃତି ବହିଃଦେଶ ସହିତ ଭାରତର ଘନିଷ୍ଠ ସାଂସ୍କୃତିକ ଯୋଗାଯୋଗ ସ୍ଥାପିତ ହୋଇ-ସାରିଥିବା ଇତିହାସସମ୍ମତ । (୩) ଏଣୁ ସମସାମୟିକ ଭାରତରେ ଏକ ବିଶିଷ୍ଟ ଭୂଖଣ୍ଡ ରୂପେ ପରିଚିତ ଉତ୍କଳର ବରିଷ୍ଠ ସାହିତ୍ୟ ସାଧକ ସାରଳା ଦାସ ଯେ ସେସବୁ ଆନ୍ତର୍ଜାତୀୟ ରାଜନୈତିକ ତଥା ଆଧ୍ୟାତ୍ମିକ ଚିନ୍ତାଧାରା ବା ଘଟଣାପ୍ରବାହ ସହିତ ପରୋକ୍ଷ ଭାବରେ ଅବହିତ ହୋଇନଥିବେ, ଏକଥା କୁହାଯାଇ ନପାରେ ।

ଏହା ବ୍ୟତୀତ, ଭାରତୀୟ ରାଜନୈତିକ ଚିନ୍ତାଦର୍ଶ କ୍ଷେତ୍ରରେ ଅତି ପ୍ରାଚୀନ କାଳରୁ ରାଜନୀତି ସହିତ ଧର୍ମାଦର୍ଶର ସଂପର୍କ ଅତି ନିବିଡ଼ । ପ୍ରାଚୀନ ଭାରତରେ ବ୍ୟକ୍ତିର ସମଗ୍ର ଜୀବନ ତଥା ସମସ୍ତ ଜ୍ଞାନର ସୀମା ଓ ପରିଧି ଧର୍ମ, ଅର୍ଥ, କାମ, ମୋକ୍ଷ— ଏହି ଚତୁର୍ବର୍ଗ ମଧ୍ୟରେ ହିଁ ଆବଦ୍ଧ ଥିଲା । କିନ୍ତୁ କ୍ରମଶଃ ଧର୍ମର ପ୍ରଭାବ ଅନ୍ୟ ତିନି ବର୍ଗ ଉପରେ ପ୍ରାଧାନ୍ୟ ବିସ୍ତାର କରିଥିବା 'ବୈଦିକ ଶାସନାଦର୍ଶ' ଓ ମନୁଙ୍କ ରାଜନୀତି ଦର୍ଶନରୁ ସ୍ପଷ୍ଟ ପ୍ରତିପାଦିତ ହୁଏ । ପରବର୍ତ୍ତୀ ସମୟରେ ମଧ୍ୟ ଏହାର ପ୍ରତିକ୍ରିୟା ସ୍ୱରୂପ ବୃହସ୍ପତି ଓ ଶୁକ୍ର ରାଜନୀତିକୁ ଧର୍ମପାଶରୁ ମୁକ୍ତ କରି କୃଷି, ପଶୁପାଳନ, ବାଣିଜ୍ୟ ଓ ଦଣ୍ଡନୀତି ଉପରେ ଗୁରୁତ୍ୱ ଦେବା ପାଇଁ ପ୍ରୟାସୀ ହୋଇ-ଥିଲେ ହେଁ, ସେମାନେ ରାଜନୀତି ତଥା ଶାସନ କ୍ଷେତ୍ରରେ ଧର୍ମର ପ୍ରାଧାନ୍ୟକୁ ଅସ୍ୱୀକାର କରିନାହାନ୍ତି । କୌଟିଲ୍ୟ ରାଜନୀତି ତଥା ରାଜ୍ୟଶାସନ କ୍ଷେତ୍ରରେ

---

(୩) Pusalker, A. D.—Cultural inter-relation between India and the outside world before Asoka (Essay) Radhakrishnan, Dr. S. Ed. The Cultural Heritage of India—Vol. I—PP. 144 159. & Sabine, G..H - A History of Political Glory (New York, 1937) Ch. I.

(୩-କ) ମହାପାତ୍ର, କେଦାରନାଥ—ଓଡ଼ିଶାର ସାଂସ୍କୃତିକ ଇତିହାସ (ଗ୍ରନ୍ଥ ମନ୍ଦିର, କଟକ, ୧୯୭୮) ପୃ. ୨-୫

କୂଟନୀତିର ଉପଯୋଗିତା ସଂପର୍କରେ ସବିଶେଷ ଆଲୋଚନା କରି ମନ୍ତ୍ରୋପଚାର, ଭୈଷଜ୍ୟ ଅନ୍ତର୍ନାଦ ବ୍ୟବହାର ଓ ବିଷ ପ୍ରୟୋଗ ଭଳି କେତେକ ଧର୍ମବିରୋଧୀ ପନ୍ଥାର ନିର୍ଦ୍ଦେଶ ଦେଇଥିଲେ ହେଁ (୪) ତାହା ଅଧାର୍ମିକ ଶତ୍ରୁମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ । ସେ ମଧ୍ୟ ବର୍ଣ୍ଣାଶ୍ରମ ଧର୍ମ ପାଳନ, ଅନ୍ତଃଶୁଦ୍ଧି ଓ ବହିଃଶୁଦ୍ଧି ରକ୍ଷା, ସତ୍ୟ, ଅହିଂସା, ଦୟା, କ୍ଷମାଦି ଉତ୍ତମ ଗୁଣ ତଥା ସାମ ଦାନ ଦଣ୍ଡ ଭେଦାଦି ବୈଧିକ ବିଧାନରେ ଶାସନ ପରିଚାଳନା କରାଯିବା ସପକ୍ଷରେ ଦୃଢ଼ ମତ ପ୍ରଦାନ କରିଅଛନ୍ତି । (୫)

ପ୍ରାଚୀନ ଭାରତୀୟ ରାଜନୈତିକ ପରଂପରା ଅନୁଧ୍ୟାନ କଲେ ଜଣାଯାଏ ଯେ ଏଠାରେ ରାଜତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ବ୍ୟକ୍ତି-ସ୍ୱାଧୀନତା ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାଯାଉନାହିଁ । କାରଣ ଆମର ସାମାଜିକ ଜୀବନଧାରା ସର୍ବଦା ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ ହେବା ଫଳରେ ଅନ୍ୟାନ୍ୟ ବୈଷୟିକ ଦିଗପ୍ରତି ବୀତସ୍ପୃହ ଥିବା ଲକ୍ଷ୍ୟ କରାଯାଏ । ଦୈନନ୍ଦିନ ପୂଜାର୍ଚ୍ଚନା ମଧ୍ୟରେ ସୁଶୃଙ୍ଖଳିତ ବ୍ୟକ୍ତି-ଜୀବନ ରାଜନୈତିକ ବିପ୍ଳବ ପାଇଁ ଯେତିକି ନିସ୍ପୃହ ରହିଥିଲା, ଯଜନ, ଯାଜନ ଓ ପ୍ରଜାନୁରଞ୍ଜନ ଭିତ୍ତିକ ଧର୍ମାନୁମୋଦିତ ସୁଶାସନ ବ୍ୟବସ୍ଥା ପ୍ରବର୍ତ୍ତନ ପୂର୍ବକ ଶାସକବୃନ୍ଦ ମଧ୍ୟ ଗଣ-ଅସନ୍ତୋଷ ପ୍ରକାଶ ଲାଗି ଅବକାଶ ସୃଷ୍ଟି କରୁନଥିଲେ । ବ୍ୟକ୍ତିସତ୍ତାକୁ ବିଶ୍ୱସତ୍ତାରେ ହଜାଇ ଦେଇ 'ବସୁଧୈବ କୁଟୁମ୍ବକମ୍' ଆଦର୍ଶ ପ୍ରତିଷ୍ଠା କରିବା ଥିଲା ଶାସକ ଓ ଶାସିତ ଉଭୟଙ୍କର ଲକ୍ଷ୍ୟ ଏବଂ ଏହି ଲକ୍ଷ୍ୟ ହାସଲ ପଥରେ ଯାହା ଅନ୍ତରାୟର କାରଣ ରୂପେ ପ୍ରତିଭାତ ହେଉଥିଲା, ସେ ସବୁକୁ 'ପାପ' ବୋଲି ବିବେଚନା କରାଯାଉଥିଲା । (୬) ଭାରତୀୟ ରାଜନୀତିରେ ଅନ୍ତର୍ନିହିତ ଏହି ଆଧ୍ୟାତ୍ମିକ ଆଦର୍ଶ ଓ ପାପବୋଧ ବ୍ରିଟିଶ ଉପନିବେଶବାଦ ବିରୋଧୀ ସଂଗ୍ରାମ

---

(୪) କୌଟିଲ୍ୟ ଅର୍ଥଶାସ୍ତ୍ରମ-୧୪ଶ ଅଧିକରଣ ୧ମରୁ ୪ର୍ଥ ଅଧ୍ୟାୟ ।

(୫) ତସ୍ମାତ୍ ସ୍ୱଧର୍ମଂ ଭୂତାନାଂ ରାଜା ନ ବ୍ୟଭିଚାରୟେତ୍
ସ୍ୱଧର୍ମଂ ସଂଦଧାନୋହି ପ୍ରେତ୍ୟ ଚେହନ ନନ୍ଦତି
ବ୍ୟବସ୍ଥିତାର୍ଯ୍ୟ ମର୍ଯ୍ୟାଦଃ କୃତ ବର୍ଣ୍ଣାଶ୍ରମ ସ୍ଥିତିଃ
ତ୍ରୟ୍ୟାହି ରକ୍ଷିତୋ ଲୋକଃ ପ୍ରସୀଦତି ନ ସୀଦତି ।
(ଅର୍ଥଶାସ୍ତ୍ରମ-୧ମ ଅଧିକରଣ-୩ୟ ଅଧ୍ୟାୟ (ପୂର୍ବୋକ୍ତ-ପୃ. ୨୧)

(୬) Tagore, Rabindranath : The Religion of Man (Unwin Books, George Allen & Unwin Ltd., London, 1967) pp. 112-117

ରଚନା କାଳରେ ମଧ୍ୟ ଶିଥିଳ ହୋଇନାହିଁ । ଏଥିପାଇଁ ଗାନ୍ଧୀ, ବିବେକାନନ୍ଦ, ରବୀନ୍ଦ୍ରନାଥ ପ୍ରମୁଖ ଚିନ୍ତାନାୟକଙ୍କ ଦର୍ଶନରେ ସତ୍ୟ, ଶାନ୍ତି, ଅହିଂସା, ମୈତ୍ରୀ ତଥା ବିଶ୍ୱଭ୍ରାତୃତ୍ୱ ଓ ମାନବତାବାଦ ନିକଟରେ କ୍ଷମତାସର୍ବସ୍ୱ ରାଜନୈତିକ ଆଦର୍ଶ ଗୌଣ ହୋଇ ପଡ଼ିଛି । (୭) ପୁନଶ୍ଚ, ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପ୍ରାଚୀନ ଭାରତରେ ଏହି ଆଦର୍ଶ ପରବର୍ତ୍ତୀ କାଳରେ ପାଶ୍ଚାତ୍ୟ ଚିନ୍ତାନାୟକ-ମାନଙ୍କୁ ମଧ୍ୟ ପ୍ରଭାବିତ କରିପାରିଛି । ମେକ୍ସ ମୁଲର, ବେଟ୍ରାଣ୍ଡ ରସେଲ୍, ଆଲବର୍ଟ ସ୍ୱିଜର ପ୍ରମୁଖଙ୍କ ଦର୍ଶନରେ ବିଶ୍ୱବୋଧ, ଜ୍ଞାନଗରିମା, ଜାତୀୟ ସମତା ଓ ରାଜନୈତିକ ସଚେତନତା ପରିବର୍ତ୍ତେ 'ଅଦ୍ୱୈତଂ ତତ୍ତ୍ୱ' (Monism) (୮), ମାନବ ପ୍ରେମ (୯) ତଥା ମାନବତାବାଦ (୧୦) ବିଶେଷ ପ୍ରାଧାନ୍ୟ ଲାଭ କରିଛି । କେବଳ ଏତିକ ନୁହେଁ, ଏହି ପ୍ରାଚୀନ ଭାରତୀୟ ପରଂପରା ସହିତ ପରିଚିତ ହେବା ଦ୍ୱାରା ହିଁ ଜାତୀୟ ସ୍ୱକୀୟତା ତଥା ସମଗ୍ର ବିଶ୍ୱମାନବ ସମାଜକୁ ଭ୍ରାନ୍ତି ଓ ବିଲୟ ପ୍ରକ୍ରିୟାରୁ ରକ୍ଷା କରାଯାଇପାରିବ ବୋଲି ଆଶା ପ୍ରକାଶ କରାଯାଉଛି । (୧୧)

ଏହିପରି ବିଶ୍ୱବିଶ୍ରୁତ ଆଧ୍ୟାତ୍ମିକ ଆଦର୍ଶ ସମୃଦ୍ଧ ଜାତୀୟ ରାଜନୈତିକ ପରଂପରା ସ୍ରୋତ ଠାରୁ ନିଜକୁ ବିଚ୍ଛିନ୍ନ କରି ସାରଳା ଦାସ ମହାଭାରତ ଭଳି ଏକ ସର୍ବତନ୍ତ୍ର ସମ୍ବଳିତ ସୁବିଶାଳ କୃତି ସମ୍ପନ୍ନ କରିବା ଯେ ଅସମ୍ଭବ, କହିବା ବାହୁଲ୍ୟ ମାତ୍ର । ପୁନଶ୍ଚ, ତତ୍କାଳୀନ ଉତ୍କଳୀୟ ଆଧ୍ୟାତ୍ମିକ ପରିବେଶର ଆହ୍ୱାନରେ ଉଦ୍‌ବୁଦ୍ଧ ହେବା ତାଙ୍କ ପକ୍ଷରେ ନିତାନ୍ତ ସ୍ୱାଭାବିକ ଥିଲା ବୋଲି କୁହାଯାଇପାରେ ।

---

(୭) Swami, Nirvedananda-Ed. Swami Vivekananda on India and her Problems (Advaita Ashrama, Calcutta, Ist Ed. 1963) pp. 118-119

(୮) Max Muller, F. The Six Systems of Indian Philosophy (Oxford, London, 1899) P. 51

(୯) Russell, Bertrand : Political Ideals (George Allen and Unwin Ltd. London, 1963) P. 90.

(୧୦) Schweitzer, Albert : The Decay and the Restoration of Civilization (George Allen & Unwin Ltd., London, 1961) P. 91.

(୧୧) Rajgopalachary, C.Mahabharat (Bharatiya Vidya Bhavan Bombay, 25th Ed, 1983)

ତାଙ୍କ ଚେତନାରେ ଧର୍ମ ଏକ ସାଂପ୍ରଦାୟିକ ମତବାଦ ନୁହେଁ, ମାନବର ଶୁଦ୍ଧ ଆଚରଣ ହିଁ ଧର୍ମ । (୧୨) ଏହି ପରିପ୍ରେକ୍ଷୀରେ, ସାରଳା ମହାଭାରତରୁ ଉପଲବ୍ଧ କବିଙ୍କ ଧର୍ମାନୁରକ୍ତ ତଥା ଆଧ୍ୟାତ୍ମିକ ଚିନ୍ତାଧାରାର ବ୍ୟାପକତା କିଭଳି ସାରଳାଙ୍କ ରାଜନୈତିକ ଆଦର୍ଶକୁ ସମୃଦ୍ଧ କରିଛି, ତାହା ହିଁ ଏଠାରେ ସଂକ୍ଷେପରେ ଆଲୋଚନା କରାଯାଉଛି ।

## ଓଡ଼ିଶାର ଧାର୍ମିକ ପରଂପରାରେ ସାରଳା ଦାସ

ସାରଳାଙ୍କ ସମସାମୟିକ ଓଡ଼ିଶୀୟ ଜୀବନଧାରା ଆଧ୍ୟାତ୍ମିକ ଦିଗରୁ ବହୁଧା ବିଭକ୍ତ ଓ ବିକଶିତ ହୋଇପଡିଥିଲା । ଏକ ପକ୍ଷରେ ବ୍ରାହ୍ମଣ୍ୟ ସଂସ୍କୃତି ବିରୁଦ୍ଧରେ ପ୍ରବଳ ପ୍ରତିକ୍ରିୟା ଓ ବିଦ୍ରୋହ, ଅନ୍ୟ ପକ୍ଷରେ ବଜ୍ରଯାନ, ସହଜ-ସାଧନା ଓ ତନ୍ତ୍ରାଚାରର ବିକାଶ ପରିପ୍ରକାଶ ସହିତ ସୌର, ଶାକ୍ତ, ଗାଣପତ୍ୟ, ଶୈବ ଓ ବୈଷ୍ଣବମାନଙ୍କର ପଞ୍ଚଦେବତା ଉପାସନା ପରମ୍ପରାର ପ୍ରଭାବ ଫଳରେ ଯେଉଁତେବେଳେ ଏକ ନବୀନ ସର୍ବଧର୍ମ ସମନ୍ୱୟମୂଳକ ଆଧ୍ୟାତ୍ମିକ ଓ ସାଂସ୍କୃତିକ ଚେତନାର ଅଭ୍ୟୁଦୟ ଘଟିଥିଲା । ସମଗ୍ର ଦେଶରେ ବହୁ ମନ୍ଦିର, ଶୈବ ଓ ଶାକ୍ତ ପୀଠର ଅଭ୍ୟୁଦୟ ସହିତ ବିଭିନ୍ନ ତୀର୍ଥକ୍ଷେତ୍ର ତଥା ପବିତ୍ର ନଦନଦୀ, ସାଗର ସରୋବରର ସାମୂହିକ ଆକର୍ଷଣ ଭାରତୀୟ ଜନମାନସକୁ ଆଧ୍ୟାତ୍ମିକ ମହାନୁଭବତା ତଥା ସାଂସ୍କୃତିକ ଐକ୍ୟ ଓ ସଂହତି ଦିଗରେ ଗଭୀର ଭାବେ ଅନୁପ୍ରାଣିତ କରିଥିଲା । ଏହା ବ୍ୟତୀତ, ପରବର୍ତ୍ତୀ ପଞ୍ଚସଖା ଯୁଗୀୟ ସ୍ରଷ୍ଟାଙ୍କ କୃତିରେ ଆଧ୍ୟାତ୍ମିକ ସାଧନା ରୂପେ ପ୍ରତିଷ୍ଠା ଲାଭ କରିଥିବା ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓ ଶୂନ୍ୟବାଦୀ ଆଦର୍ଶର ଆଦ୍ୟ ଉନ୍ମେଷ ସାରଳାଙ୍କ ସମୟରୁ ହିଁ ସଙ୍ଘଟିତ ହୋଇଥିଲା । (୧୩) ତେଣୁ ସାରଳା ବାହ୍ୟତଃ ଶାକ୍ତଭାବାପନ୍ନ ଥିଲେ ହେଁ 'ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା' ରୂପକ ପାରମ୍ପରିକ ଧର୍ମଧାରଣା ଦ୍ୱାରା ପ୍ରଭାବିତ ହୋଇ ପଞ୍ଚଦେବୋପାସନା ପ୍ରତି ଗଭୀର ବିଶ୍ୱାସ ଓ ଅସୀମ ନିଷ୍ଠା ପ୍ରଦର୍ଶନ କରିଛନ୍ତି । ଏହା ସହିତ ବୌଦ୍ଧ, ଜୈନ, ରାମ, କୃଷ୍ଣ, ବଳରାମ, ହନୁମାନ, ଅଗ୍ନି ପ୍ରମୁଖଙ୍କ ସ୍ତୁତିଗାନପୂର୍ବକ ସମସ୍ତ ସାଧକ ସଂପ୍ରଦାୟଙ୍କ ସ୍ୱତନ୍ତ୍ର ଚିନ୍ତାଧାରା ଜଗନ୍ନାଥ ତତ୍ତ୍ୱରେ ବିଲୀନ ହୋଇ ନିଜସ୍ୱ

---

(୧୨) (କ) ସାହୁ, ଡକ୍ଟର କୃଷ୍ଣଚରଣ : ସାରଳା ମହାଭାରତ-ସଂପାଦନା ଓ ଆଲୋଚନା (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୭୮) ମୁଖବନ୍ଧ-ପୃ. ୫୮

(ଖ) ବେହେରା, ଅଜୟକୁମାର—ଧର୍ମବୋଧ ଓ ରାଜବୋଧ (ପ୍ରବନ୍ଧ) ମିଶ୍ର, ଦୀନକୃଷ୍ଣ —(ସଂ) ନିସ୍ୱତ କଟକ, (ଜୁନ୍ ୧୯୮୧) ପୃ. ୧୩

(୧୩) ମହାନ୍ତି : ଓଡ଼ିଆ ସାହିତ୍ୟର ଆଦିପର୍ବ-ପୃ. ୧୩୬-୧୩୭

ସର୍ବଧର୍ମ ସମନ୍ୱୟ ମତବାଦ ପ୍ରତିଷ୍ଠା କରି ଅଭିନବ ଜଗନ୍ନାଥ ସ୍ତୁତିର ଆଦ୍ୟ ଓଁକାର ଉଚ୍ଚାରଣ କରିଯାଇଛନ୍ତି । (୧୪) ସୁତରାଂ, ଧାର୍ମିକ ଭାବନା କ୍ଷେତ୍ରରେ ସାରଳାଙ୍କ ଦୃଷ୍ଟିକୋଣ ଥିଲା ଉଦାର ସାମ୍ପ୍ରଦାୟିକ ସଚେତନତାର ବଳିଷ୍ଠ ସଙ୍କେତ ଏବଂ ତାହା ଥିଲା ଉତ୍କଳୀୟ ଆଧ୍ୟାତ୍ମିକ ପରମ୍ପରାର ଅପୂର୍ବ ବିଶେଷତ୍ୱ ।

ଏହି ପରଂପରାରେ ବିଶ୍ୱାସୀ ସାରଳା ଦାସ ତତ୍କାଳୀନ ସମାଜରେ ସର୍ବଧର୍ମ ସମନ୍ୱୟ ଆଦର୍ଶ ପ୍ରତିଷ୍ଠାପୂର୍ବକ ସମାଜ-ଜୀବନର ସାମୂହିକ ଉନ୍ନତି ଦିଗରେ ବ୍ରତୀ ହୋଇଥିଲେ । ଏହି ଧର୍ମବିଶ୍ୱାସ ହିଁ ସାରଳାଙ୍କ ସମସ୍ତ ସୃଷ୍ଟି ମଧ୍ୟରେ ମୂଳତତ୍ତ୍ୱ ରୂପେ ପ୍ରତିଭାତ । ଧର୍ମ ହିଁ ମାନବ ଜୀବନର ରକ୍ଷାକବଚ, ଏହା ଦୃଢ଼ କଣ୍ଠରେ ଘୋଷଣା କରିବାକୁ ଯାଇ ସାରଳା ଲେଖିଛନ୍ତି—

ଯୁଗେ ଯୁଗେ ଧର୍ମେ ଲକ୍ଷ୍ମୀ ବର୍ଦ୍ଧିତରେ ବାବୁ
ଧର୍ମେ ଚଳଇରେ ଭ୍ରାତ ଚରାଚର ସବୁ ।
ଧର୍ମେ ଥିଲେ ହିଁ ନାଶ ନାହିଁଟି ପ୍ରାଣୀର
ଧର୍ମ ହିଁ କରି ପାରଇ ବିପଦରୁ ପାର । (୧୫)

×                    ×

କପଟ ମୁଁ ଜାଣେ ନାହିଁ ମିଛ ନ କହଇ
ସବୁବେଳେ ଧର୍ମପଥ ଆଶ୍ରା କରିଥାଇ ।
ଧର୍ମ ଆଶ୍ରିତ ଜନର ସଦା ହୁଏ ଜୟ
ସେ ପ୍ରାଣୀ କି ନ ପଡ଼ଇ କେବେ ଅପଚୟ । (୧୬)

### ସାରଳା ଚଣ୍ଡୀ ଓ ସାରଳା ଦାସ

ସାରଳା ଦାସ ପ୍ରଥମେ 'ବିଲଙ୍କା ରାମାୟଣ', ପରେ 'ମହାଭାରତ' ଓ ତତ୍‌ପରେ 'ଚଣ୍ଡୀପୁରାଣ' ରଚନା କରିଥିଲେ (୧୭) ଏବଂ 'ବିଲଙ୍କା ରାମାୟଣ'ରେ

---

(୧୪) ମିଶ୍ର, ଡ଼କ୍ଟର କାହ୍ନୁଚରଣ : ଓଡ଼ିଆ ସାହିତ୍ୟରେ ଧର୍ମଧାରା (ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୮୭) ପୃ. ୪୭

(୧୫) ସା : ମ : ଭା : (ରା)-ଆଦ୍ୟ-ପୃ. ୧୪୭

(୧୬) ସା : ମ : ଭା : (ରା)-ଗଦା-ପୃ. ୨୯

(୧୭) "ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିଶୁ ଭାଗବତ ।"
—ଚଣ୍ଡୀ ପୁରାଣ (ଓଡ଼ିଶା ଜଗନ୍ନାଥ କଂପାନୀ, କଟକ, ୧୯୭୨) ପୃ. ୩୫

ନିଜକୁ ସିଦ୍ଧେଶ୍ୱର ଦାସ ଭାବରେ ପରିଚିତ କରାଇଥିଲେ । (୧୮) 'ବିଲଙ୍କା ରାମାୟଣ' ରଚନା ପରେ ସେ ଝଙ୍କଡ଼ ସ୍ଥିତ ସାରଳା ଠାକୁରାଣୀଙ୍କ ପ୍ରସାଦରୁ 'ମହାଭାରତ' ପ୍ରଣୟନ ଲାଗି ସମର୍ଥ ହୋଇଥିବାରୁ ନିଜର ପିତୃଦତ୍ତ ନାମ 'ସିଦ୍ଧେଶ୍ୱର' ପରିବର୍ତ୍ତନ କରି 'ସାରଳା' ନାମରେ ପରିଚିତ ହୋଇଥିଲେ ଏବଂ ବଂଶାନୁକ୍ରମିକ 'ପରିଡ଼ା' ସଂଜ୍ଞା ବଦଳାଇ 'ଦାସ' ଭାବରେ ହିଁ ନିଜକୁ ଜ୍ଞାପିତ କରାଇଥିଲେ । (୧୯) କବି ସ୍ୱର୍ଗାରୋହଣ ପର୍ବରେ ନିଜର ଜନ୍ମ ଜନ୍ମାନ୍ତରର ଯେଉଁ ବିବରଣୀ ଦେଇଛନ୍ତି, ସେଥିରେ ମଧ୍ୟ ନିଜକୁ ସାରଳା ଦାସ ରୂପେ ପରିଚିତ କରାଇଛନ୍ତି । (୨୦)

ସାରଳା ଦାସଙ୍କ କବିପ୍ରତିଭା ସ୍ଫୁରଣ ମୂଳରେ ସ୍ୱୟଂ ସାରଳା ଠାକୁରାଣୀଙ୍କ ପ୍ରତ୍ୟକ୍ଷ ଆଶୀର୍ବାଦ ନିହିତ ଥିବା ବିଷୟରେ ଅନେକ କିମ୍ବଦନ୍ତୀ ପରିଲକ୍ଷିତ ହୁଏ, କିନ୍ତୁ ସେସବୁର ସତ୍ୟତା ସମ୍ପୂର୍ଣ୍ଣ ସନ୍ଦେହମୁକ୍ତ ନୁହେଁ । କିନ୍ତୁ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ସଂପାଦିତ ସାରଳା ମହାଭାରତ ଆଦିପର୍ବର ପରିଶିଷ୍ଟରେ ସଯୋଜିତ 'ସାରଳାଙ୍କ ବନ୍ଦନା' କ୍ରମରେ କବିଙ୍କ ନିଜ ରଚନାରୁ ଯାହା ଜଣାଯାଏ, ଦେବୀ ସାରଳା ତାଙ୍କ ଭକ୍ତିରେ ପ୍ରସନ୍ନ ହୋଇ ଶ୍ରୀ ମହାଭାରତ ଓ ଅଷ୍ଟାଦଶ ପୁରାଣ ରଚନା କରିବା ନିମିତ୍ତ ନିର୍ଦ୍ଦେଶ ଦେଇଥିଲେ ଏବଂ ଏଥିପାଇଁ ଦେବୀ ଆବଶ୍ୟକ ପଦମାନ କଣ୍ଠରେ ବିଜେ ହୋଇ କହିଦେବା ଲାଗି ପ୍ରତିଶ୍ରୁତି ଦେବା ସଙ୍ଗେ ସଙ୍ଗେ କବିଙ୍କ ସମ୍ମୁଖରେ ଲେଖନପତ୍ର ଥୋଇଦେଇ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । (୨୧)

---

(୧୮) "ମୁହିଁ ସିଦ୍ଧେଶ୍ୱର ଦାସ ମୂର୍ଖ ଅପଣ୍ଡିତ

ଶ୍ରୀ ହିଙ୍ଗୁଳା ପରସନ୍ନେ କଲଇଁ ବ୍ୟକତ ।

—ବିଲଙ୍କା ରାମାୟଣ (ବାଣୀ ଭଣ୍ଡାର, ବ୍ରହ୍ମପୁର) ପୃ. ୨୮

(୧୯) ଋଥ : ଶାରଳା ଚରିତ –ପୃ. ୪୬-୪୭ ଏବଂ 'ନବ ରବି' (ସଂ-ପ୍ରଣଜା ରଞ୍ଜନ କୁମାର, ୫ ପ୍ରଫୁଲ୍ଲ ସରକାର ଷ୍ଟ୍ରୀଟ, କଲିକତା) ୧ମ ବର୍ଷ ୫ମ ସଂଖ୍ୟା (ନଭେମ୍ବର ୧୯୬୦) ରେ ପ୍ରକାଶିତ ଶ୍ରୀ ରଘୁନାଥ ପାଢ଼ୀ ଶର୍ମାଙ୍କ ପ୍ରବନ୍ଧ—ସାରଳା ଦାସଙ୍କ ଆଦିଗ୍ରନ୍ଥ—ବିଚିତ୍ର ରାମାୟଣ ।

(୨୦) "ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ / ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ହଂସ / ତୃତୀୟ ଜନ୍ମରେ ସାରଳା ଦାସ ମହାକବି / ଆଉ ଏକ ଜନ୍ମ ପୁଣି ମର୍ତ୍ତ୍ୟରେ ଜନ୍ମିବି । (ସା ମ: ଭା: (ସା) ସ୍ୱର୍ଗାରୋହଣ-ପୃ. ୧୦)

(୨୧) ସା : ମ : ଭା : (ସା) ଆଦି—ପୃ. ୧୦୪୨-୧୦୪୫

ପରବର୍ତ୍ତୀ ସମୟରେ ମଧ୍ୟ ଦେବୀ ସାରଳା କବିଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ତାଙ୍କୁ ତାଙ୍କର ପୂର୍ବଜନ୍ମ ବିବରଣୀ ଶୁଣାଇ ସେ ପାଣ୍ଡବଙ୍କର ଧର୍ମପୁତ୍ର ଥିଲେ ବୋଲି ସୂଚନା ଦେଇଛନ୍ତି । (୧୨)

ପୂର୍ବଜନ୍ମରେ ଅଖଣ୍ଡ ବିଶ୍ୱାସୀ ସାରଳା ଦାସ ନିଜକୁ ମାହେଶ୍ୱରୀ, ମହାଯୋଗେଶ୍ୱରୀ, ପରମ ବୈଷ୍ଣବୀ, ପରମା ସାଧ୍ୱୀ, ସାକ୍ଷାତ ଭୈରବୀ ଶ୍ରୀ ସାରଳା ଚଣ୍ଡୀଙ୍କର ପୁତ୍ର ମନେକରି ଦେବୀଙ୍କ ଆଜ୍ଞାରେ ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଅଷ୍ଟାଦଶ ପର୍ବ ବିଶିଷ୍ଟ ମହାଭାରତ ରଚନା କରିଥିବାର ସ୍ୱୀକାର କରିଅଛନ୍ତି । ଝଙ୍କଡ଼ର ଅଷ୍ଟଭୁଜା ସାରଳାଙ୍କୁ ସେ ଅଭୟାମଙ୍ଗଳା ବା ସର୍ବମଙ୍ଗଳା, ବଗଳା, ହିଙ୍ଗୁଳି ପିଙ୍ଗଳା, କାମାକ୍ଷୀ, ମୋହିନୀ, କାତ୍ୟାୟିନୀ, ଅନାଦି, ମାତଙ୍ଗୀ, ଅପର୍ଣ୍ଣା, ଅମ୍ବିକା, ନାରାୟଣୀ, ଭବାନୀ, ଛିନ୍ନମସ୍ତା, ମହିଷାମର୍ଦ୍ଦିନୀ ଦୁର୍ଗା ବ୍ୟତୀତ ଶାରଦା ବା ସରସ୍ୱତୀ ତଥା ମହାସରସ୍ୱତୀ ରୂପରେ ଗ୍ରହଣ କରି ପାରମ୍ପରିକ ଜୈନ ଓ ବୌଦ୍ଧ ସଂସ୍କୃତିକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ରାଜ୍ୟରେ ଦେବୀ ସାରଳାଙ୍କୁ ବାକ୍ଦେବୀ ସରସ୍ୱତୀ ଭାବରେ ପରିଚିତ କରାଇଛନ୍ତି । ସାରଳା ଦାସଙ୍କ ମତରେ ସତ୍ୟଯୁଗରେ ମହାମୁନି କୃପାଜଳଙ୍କ ଗାୟତ୍ରୀ ସ୍ତବ ଯୋଗୁଁ ତାଙ୍କର ଉଦ୍ଭବ; ସେ ଦ୍ୱାପରର କଂସ ହସ୍ତରୁ ଅନ୍ତର୍ହିତା ବିଜୁଳି କନ୍ୟା; ତ୍ରେତୟାରେ ପର୍ଶୁରାମଙ୍କ ସହିତ ରୁଧିର ସ୍ନାନରତା; କଳିରେ ଜରାୟିତ ରାଜା ଅଜପତି ପାଳିତା । ଚନ୍ଦ୍ରସ୍ୱ ଶିଳାରୁ ପର୍ଶୁରାମଙ୍କ ଶରମୁନି ଦ୍ୱାରା ଆବିଷ୍କୃତା ହେତୁ ସେ ଶାରଳା, ସାରୋଳର ଅଧିଷ୍ଠାତ୍ରୀ ଯୋଗୁଁ ସାରଳା ଏବଂ ସରଳ ଭାବରେ ସାର (ବିଦ୍ୟା) ଦାତ୍ରୀ ହୋଇଥିବାରୁ ସେ ସାରଳା ଓ ସାରଦା ମଧ୍ୟ । (୧୩) ଝଙ୍କଡ଼ର ସାରଳା ଠାକୁରାଣୀ ଏବଂ ମହାଭାରତ ପ୍ରଣେତା ସାରଳା ଦାସ ଉଭୟଙ୍କର ଆତ୍ମିକ ସଂଯୋଗ ଓଡ଼ିଆ ଜାତି ତଥା ଉତ୍କଳୀୟ ସଂସ୍କୃତିକୁ ଅଖଣ୍ଡ ଗୌରବର ଅଧିକାରୀ କରି ତୋଳିଛି, ଏଥିରେ ସନ୍ଦେହ ନାହିଁ ।

---

(୧୨) ସା: ମ: ଭା (ସ୍ୱା) ପୃ. ୧୦୪୫-୧୦୪୯

(୧୩) କ । ସା: ମ: ଭା: (ସ୍ୱା) ଆଦ୍ୟ-ପୃ. ୧୮, ୨୪, ୬୫, ୮୨, ୨୨୯ ଓ ୨୪୨ ।

ଖ । —ଏଜନ—ମଧ୍ୟ-ପୃ. ୨୦୪ ଓ ୨୧୧ ଓ ଦ୍ରୋଣ-୭୮ (ସଂ)-୧୭-୧୮

ଗ । ମିଶ୍ର : ଓଡ଼ିଆ ସାହିତ୍ୟରେ ଧର୍ମଧାରା-ପୃ. ୪୭-୪୮

ଘ । ରାଉଳ, ରମାକାନ୍ତ : ଝଙ୍କଡ଼ ସାରଳା (୧୯୮୯) ପୃ. ୩-୧୪

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳା ଦାସ ନିଜକୁ ସାରଳାଙ୍କ ସନ୍ତାନ ତଥା ତାଙ୍କ ପ୍ରେରଣାରେ ହିଁ ମହାଭାରତ ରଚନା କରିଥିବାର ସ୍ୱୀକାର କରିଥିଲେ ମଧ୍ୟ ଭାରତୀୟ ତଥା ଉତ୍କଳୀୟ ପରଂପରାକୁ ମାନିନେଇ ଗ୍ରନ୍ଥାରମ୍ଭରେ ପ୍ରଥମେ ସାରଳାଙ୍କ ସ୍ତୁତିଗାନ ନ କରି ଅଗ୍ରପୂଜ୍ୟ ଗଣେଶଙ୍କର ହିଁ ବନ୍ଦନା କରିଛନ୍ତି ଏବଂ ତତ୍ପରେ ସାରଳାଙ୍କ ବନ୍ଦନା ସନ୍ନିବେଶିତ ହୋଇଅଛି । (୧୪)

## ସାରଳାଙ୍କ ଦୃଷ୍ଟିରେ ଶ୍ରୀ ଗଣେଶ

ସନାତନ ହିନ୍ଦୁଧର୍ମାବଲମ୍ବୀମାନେ ବହୁସଂଖ୍ୟକ ଦେବଦେବୀଙ୍କର ଉପାସନା କରୁଥିଲେ ସୁଦ୍ଧା ପ୍ରତ୍ୟେକ ଶୁଭ ଅନୁଷ୍ଠାନ ପ୍ରାରମ୍ଭରେ ବିଘ୍ନରାଜ ଗଣେଶଙ୍କର ହିଁ ପ୍ରଥମପୂଜନ କରିଥାନ୍ତି, କାରଣ ପଞ୍ଚଦେବତା ଉପାସନା ପରଂପରାରେ ସେ ଅଗ୍ରପୂଜ୍ୟ । (୧୫) ବ୍ୟାସଦେବଙ୍କ ବିରଚିତ ମୂଳ ସଂସ୍କୃତ ମହାଭାରତ ଗ୍ରନ୍ଥକୁ ସ୍ୱୟଂ ଗଣେଶ ହିଁ ଲେଖନୀ ମୁନରେ ରୂପ ପ୍ରଦାନ କରି ଲୋକଲୋଚନକୁ ଆଣିଥିଲେ ବୋଲି ଲୋକ-ବିଶ୍ୱାସ ରହିଥିବାରୁ, ଦେବୀଭକ୍ତ ସାରଳା ମଧ୍ୟ ସ୍ୱପ୍ରଣୀତ ମହାଭାରତର ପ୍ରାରମ୍ଭରେ ଗଣପତିଙ୍କ ସ୍ତୁତିଗାନ କରିଛନ୍ତି । କବି ଲେଖନୀରେ ସେ ଦଧିମଙ୍ଗଳ, ବିଘ୍ନରାଜ, ଶଙ୍ଖ ଚକ୍ର ପଦ୍ମ ଧର, ସର୍ବବିଘ୍ନହର, ସିଦ୍ଧ ଲମ୍ବୋଦର, ଯୋଗଯୋଗେଶ୍ୱର, ସର୍ବ-ଦେବ ବନ୍ଦିତ, ମହାବ୍ରହ୍ମ ଲୋକେଶ ରୂପେ ନାମିତ । (୧୬) ଗ୍ରନ୍ଥାରମ୍ଭ ବ୍ୟତୀତ, ସାରଳା ସଭା, ବିରାଟ, ଉଦ୍‌ଯୋଗ ଓ ଭୀଷ୍ମପର୍ବର ଆରମ୍ଭରେ ମଧ୍ୟ ଗଣେଶଙ୍କ ବନ୍ଦନା କରିଛନ୍ତି ।

ଏହା ବ୍ୟତୀତ, ସାରଳା ମଧ୍ୟପର୍ବରେ ମୂଢ଼ାସୁରର ବରପ୍ରାପ୍ତି ପ୍ରସଙ୍ଗରେ ଗଣେଶଙ୍କ ବିସ୍ତୃତ ବର୍ଣ୍ଣନା କରିଛନ୍ତି ଏବଂ ନାଗେନ୍ଦ୍ରୀହରଣ ଆଖ୍ୟାନ ଆରମ୍ଭରେ ଗଣେଶଙ୍କୁ ଅନନ୍ତ ବାସୁକୀ ନାଗ ଧାରଣକାରୀ ବିଘ୍ନବିନାଶକ ରୂପେ ଆବାହନ କରି କାର୍ତ୍ତିକଙ୍କ ସହ ତାଙ୍କୁ ମଧ୍ୟ ଯୁଦ୍ଧଭୂମିରେ ଅବତୀର୍ଣ୍ଣ କରାଇଛନ୍ତି । (୧୭) ସେ

---

(୧୪) ସା: ମ: ଭା: (ରା) ଆଦ୍ୟ-ପୃ. ୨-୩ ଏବଂ
ସା: ମ: ଭା: (ସା) ଆଦି-ପୃ. ୧-୫ ।

(୧୫) ଜେନା, କୁଳମଣି—ଶ୍ରୀ ଗଣେଶ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧ମ ସଂସ୍କରଣ ୧୯୭୯ ) ପୃ. ୮

(୧୬) ସା: ମ: ଭା: (ରା) ଆଦ୍ୟ-ପୃ.୨

(୧୭) ସା: ମ: ଭା: (ରା) ମଧ୍ୟ-ପୃ. ୨୧୧-୨୧୨, ୨୨୪-୨୩୫ ଓ ୩୮୯ ।

ଗଣେଶଙ୍କୁ କେବଳ ଜ୍ଞାନଦାତା, ସର୍ବଶାସ୍ତ୍ରଜ୍ଞାତା, ମନ୍ତ୍ରବ୍ରହ୍ମବେତ୍ତା, ବରଦାତା, ଜୀବିକାଦାତା ଓ ବିଘ୍ନନାଶନକର୍ତ୍ତା ରୂପେ ବର୍ଣ୍ଣନା କରି କ୍ଷାନ୍ତ ରହି ନାହାନ୍ତି, ତାହା ସହିତ ତାଙ୍କୁ ନୃତ୍ୟରଙ୍ଗର ନାୟକ ବିନାୟକ, ସା-ରେ-ଗା-ମା ଦି ସ୍ୱରସାଧକ ଏବଂ ମଧୁକେଦାର, ରାମକେରୀ, ଭୈରବ, ମହ୍ଲାର, ଗୁର୍ଜରୀ ପ୍ରଭୃତି ଛତିଶ ରାଗର ଜନ୍ମଦାତା ତଥା ବସୁ କୁମ୍ଭାରର କୁଷ୍ଠବ୍ୟାଧି ମୋଚନ କର୍ତ୍ତା ରୂପେ ଚିତ୍ରଣ (୨୮) କରି ଗାଣପତ୍ୟ ଧର୍ମ ପ୍ରତି ନିଜର ଗଭୀର ଆନ୍ତରିକତା ପ୍ରକାଶ କରିବା ସହିତ ତାଙ୍କୁ ଅଣାକାର ଓ ଦଧିବାମନ ବିଷ୍ଣୁ ରୂପେ ଗ୍ରହଣ କରି ଗଣପତି ଉପାସନାର ପ୍ରାଧାନ୍ୟ ପ୍ରତିପାଦନ କରିଛନ୍ତି ।

## ସାରଳାଙ୍କ ଶାକ୍ତଚେତନା

ସାରଳା କେବଳ ଦେବୀ ସାରଳାଙ୍କର ଏକନିଷ୍ଠ ଭକ୍ତ, ସେବକ ଓ ଉପାସକ ନ ଥିଲେ, ତାଙ୍କଠାରେ ଦୁର୍ଗା, ଅପର୍ଣ୍ଣା, ପାର୍ବତୀ, ନାରାୟଣୀ, ଭବାନୀ, କାତ୍ୟାୟିନୀ, ଚଣ୍ଡୀ, ଭୈରବୀ, ଭଗବତୀ, ମଙ୍ଗଳା, ହିଙ୍ଗୁଳା ଆଦି ବିଭିନ୍ନ ନାମରେ ପରିଚିତା ମହାଶକ୍ତିର ସତ୍ତା ଉପଲବ୍ଧି କରିଥିଲେ । ତାଙ୍କ ଦୃଷ୍ଟିରେ ସତ୍ୟ, ତ୍ରେତୟା, ଦ୍ୱାପର, କଳି ଚାରି ଯୁଗରେ ଦେବୀ ଆଦି, ଅନାଦି ଓ ସିଦ୍ଧକାୟା ଅଟନ୍ତି ଏବଂ ଅସଂଖ୍ୟ ଚଣ୍ଡୀ ଚାମୁଣ୍ଡା, ଚୌଷଠି ଯୋଗିନୀ ଓ ନବକୋଟି କାତ୍ୟାୟିନୀଙ୍କ ଗହଣରେ ସିଂହାରୂଢ଼ା ହୋଇ ମଧ୍ୟରାତ୍ରିରେ ବିଚରଣ କରୁଥାନ୍ତି । ସେ ଝଙ୍କଡ଼ରେ ସାରଳା, କାଟକପୁରରେ ମଙ୍ଗଳା, ପୁରୀରେ ବିମଳା, କୋଣାର୍କରେ ରାମଚଣ୍ଡୀ, ବାଙ୍କୀରେ ଚର୍ଚ୍ଚିକା, ଯାଜପୁରରେ ବିରଜା, ବାଣପୁରରେ ଭଗବତୀ, ଭୁବନେଶ୍ୱରରେ ଗୌରୀ, ସମ୍ବଲପୁରରେ ସମଲେଶ୍ୱରୀ ନାମରେ ପ୍ରଖ୍ୟାତା । (୨୯)

ସାରଳାଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଦେବୀ ରଣାଙ୍ଗନରେ ନାରାୟଣୀ ନାମରେ, ଜଳରେ ମାହେଶ୍ୱରୀ ଭାବରେ ଏବଂ ଅଟବୀରେ ସର୍ବମଙ୍ଗଳା ରୂପରେ ମାନବର ରକ୍ଷାକାରିଣୀ । ସେ ଶ୍ଲେଷ୍ମ ବ୍ୟାଧିଗ୍ରସ୍ତ ବ୍ୟକ୍ତିଙ୍କୁ ଭଦ୍ରାକାଳୀ ରୂପରେ, ନାତବୈରୀଙ୍କୁ ବାରାହୀ ଭାବରେ, ଗର୍ଭିଣୀମାନଙ୍କୁ ଭୈରବୀ ସ୍ୱରୂପରେ ସାହାଯ୍ୟ କରିଥାନ୍ତି । ରୋଗପୀଡ଼ାବେଳେ ପିଙ୍ଗଳାକ୍ଷୀ, କାମାର୍ତ୍ତି କାଳରେ କାମାକ୍ଷୀ, ବିପଦ ସମୟରେ କାଳିକା, ଯାତ୍ରାନୁକୂଳରେ ମଙ୍ଗଳା, ପାକ ପ୍ରସ୍ତୁତି କାଳରେ

---

(୨୮) ସା: ମ: ଭା: (ସ) ବନ-ପୃ. ୩୯-୩୨, ସ୍ୱର୍ଗ-ପୃ-୨ ।

(୨୯) ସା: ମ: ଭା: (ସ) ମଧ୍ୟ-ପୃ. ୨-୩

ଦ୍ୱାଦଶୀ, ଭୋଜନବେଳେ ବାସେଲୀ, ଅଙ୍ଗାର୍ଣ୍ଣ ସ୍ନାନରେ ଭଗବତୀ, ଶୟନ ସମୟରେ ଜାଗୁଲାଈ, ଦ୍ୟୂତାରମ୍ଭରେ ବରୁଣାଈ ଓ ମୃଗୟାବେଳେ ହରଚଣ୍ଡୀ ନାମରେ ଦେବୀଙ୍କୁ ସ୍ମରଣ କରିବା ବିଧେୟ ବୋଲି ସାରଳା ସୂଚନା ଦେଇ ଅଛନ୍ତି । (୩୦)

'ଚଣ୍ଡୀ ପୁରାଣ'ରେ ସାରଳା ଚଉଷଠି ଯୋଗିନୀ ଓ ସେମାନଙ୍କର ବାହନ ସମ୍ପର୍କୀୟ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ତାହା ଯେପରି ପୂର୍ଣ୍ଣାଙ୍ଗ ନୁହେଁ, 'ବନପର୍ବ'ରେ ପ୍ରଦତ୍ତ ଚଉଷଠି ଅପର୍ଣ୍ଣାଙ୍କ ବିବରଣୀ ମଧ୍ୟ ସେହିପରି ସମ୍ପୂର୍ଣ୍ଣତା ଲାଭ କରି ନାହିଁ । ସାରଳାଙ୍କ ସୃଷ୍ଟିରେ ପାର୍ବତୀଙ୍କର ବର୍ଣ୍ଣନା ଜଣେ ସାଧାରଣ ଉତ୍କଳୀୟ ଗୃହିଣୀର ଚିତ୍ର ତୁଲ୍ୟ ପ୍ରତୀତ ହୁଏ । (୩୧) ଏଥିରୁ ମନେ ହୁଏ ଯେ ତାଙ୍କ ସମୟକୁ ତାନ୍ତ୍ରିକ ମତବାଦର ପ୍ରଭାବ କ୍ରମଶଃ କ୍ଷୁଣ୍ଣ ହୋଇ ବୈଷ୍ଣବଧର୍ମର ପ୍ରାଧାନ୍ୟ ପ୍ରସାର ଲାଭ କରୁଥିଲା । (୩୨) ବୋଧହୁଏ ଏହି କାରଣରୁ ହିଁ ସେ ସମୟରେ ଦୁର୍ଗାଙ୍କ ସହ ମାଧବଙ୍କୁ ସଂଶ୍ଳିଷ୍ଟ କରି ଦୁର୍ଗାମାଧବ ଉପାସନା ଆରମ୍ଭ ହୋଇଅଛି । ସାରଳା ମଧ୍ୟ ଦୁର୍ଗାଙ୍କ ସହିତ ମାଧବ ତଥା ଦୁର୍ଗାମାଧବଙ୍କ ଜୟଗାନ କରିଛନ୍ତି । (୩୩) ତେବେ, ସେ ମାତୃରୂପିଣୀ 'ଦୁର୍ଗା' ଓ ତାଙ୍କର 'ଧବ' (ପତି) ରୂପକ ଶିବଙ୍କ କଳ୍ପନା କରି ଦୁର୍ଗାମାଧବଙ୍କ ଠାରେ ଶିବ ଓ ଶକ୍ତିଙ୍କର ସମନ୍ୱୟ ସ୍ଥାପନ କରିଛନ୍ତି । (୩୪)

---

(୩୦) ସା: ମ: ଭା: (ସା) ବନ-ପୃ. ୨-୩

(୩୧) ସା: ମ: ଭା: (ସା) ବନ-ପୃ. ୨୭-୩୦

(୩୨) ଆଚାର୍ଯ୍ୟ, ଡକ୍ଟର ବୃନ୍ଦାବନ—କବି ସାରଳାଦାସଙ୍କ ବର୍ଣ୍ଣନାରେ ଚଉଷଠି ଯୋଗିନୀ ମୂର୍ତ୍ତି (ପ୍ରବନ୍ଧ) ଡକ୍ଟର ଉପେନ୍ଦ୍ରନାଥ ମହାନ୍ତି ସମ୍ପାଦିତ 'ବିପ୍ଳବୀ କବି ସାରଳା ଦାସ' (ଓଡ଼ିଆ ସାହିତ୍ୟ ସଂସଦ, ଦୟାନନ୍ଦ ଆଙ୍ଗ୍ଲୋବୈଦିକ ମହାବିଦ୍ୟାଳୟ, ଟିଟିଲାଗଡ଼, ୧୯୮୬) ପୃ. ୧୧୮-୧୨୧

(୩୩) ସା: ମ: ଭା: (ସା) ବିରାଟ—ପୃ. ୧୮୭

(୩୪) ପଟ୍ଟନାୟକ, ଗଣେଶପ୍ରସାଦ—ଶାରଳା ସାହିତ୍ୟରେ ଶାକ୍ତଧର୍ମ (ପ୍ରବନ୍ଧ) ହୋତା, ପାତକଡ଼ (ସ) ଶାରଳା ସାହିତ୍ୟରେ ଧର୍ମ (ଶାରଳା ସ୍ମାରକ, ତେନ୍ତୁଳିପଦା, ଝାଡ଼ଖଣ୍ଡ, ୧୯୮୦) ପୃ. ୧୦୬

ଏତଦ୍ ବ୍ୟତୀତ, ସାରଳା ଶକ୍ତିଙ୍କର ସଂଯୋଗ ବିନା ଶିବ 'ଶବ'ରେ ପରିଣତ ହେବା ପାରଂପରିକ ବିଶ୍ୱାସ (୩୫) ପ୍ରତି ସମ୍ମାନ ପ୍ରଦର୍ଶନ କରିଥିବା ହେତୁ ମହାଭାରତରେ ସେ ଦ୍ରୌପଦୀଙ୍କୁ କେଉଁଣ ଓ 'ବିଲଙ୍କା ରାମାୟଣ'ରେ ସୀତାଙ୍କୁ ଶକ୍ତି ରୂପରେ ଗ୍ରହଣ କରି ନେଇଅଛନ୍ତି । (୩୬) ପୁନଶ୍ଚ, ଶକ୍ତିଙ୍କ ଆଶୀର୍ବାଦ ବଳରେ ଯୁଗେ ଯୁଗେ ରୁଦ୍ର ବା ଶିବ ପୁନର୍ଜୀବନ ଲଭ କରି ଅର୍ଦ୍ଧନାରୀଶ୍ୱର ନାମକୁ ସାର୍ଥକ କରୁଥିବା ପରିକଳ୍ପନା ସାରଳାଙ୍କ ପ୍ରତିଭାରେ ଏକ ନବୀନ ରୂପ ଲାଭ କରିଅଛି । (୩୭) ସର୍ବୋପରି, 'ଚଣ୍ଡୀପୁରାଣ'ରେ ମହାଶକ୍ତିଙ୍କ ଦ୍ୱାରା ମହିଷାସୁର ବଧ ବର୍ଣ୍ଣନା ମାଧ୍ୟମରେ ସାରଳା ଇନ୍ଦ୍ରିୟ ସଂଯମ, ପ୍ରବୃତ୍ତି ଦମନ ଓ ନିବୃତ୍ତି ବିସ୍ତାରର ସୂଚନା ମଧ୍ୟ ଦେଇଛନ୍ତି । (୩୮)

## ସାରଳା ମହାଭାରତରେ ଶୈବଚେତନା

ଉତ୍କଳରେ ଗଙ୍ଗବଂଶୀ ରାଜା ତଥା ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବଙ୍କ ଅମଳରେ ଶିବ ଓ ବିଷ୍ଣୁ ଉପାସନା ସମାନ୍ତରାଳ ଭାବରେ ମୁଣ୍ଡଟେକି ଉଠିଥିଲା ଏବଂ ପ୍ରାଚୀନ ଲିଙ୍ଗାୟତ୍ତ ସମ୍ପ୍ରଦାୟର ଧର୍ମଧାରଣା ଅପସୃତ ହୋଇ ଯାଇଥିଲା । ଏଥିପାଇଁ ସାରଳା ମହାଭାରତରେ ଏ ସଂପର୍କୀୟ ଯେଉଁ ବର୍ଣ୍ଣନା ମିଳେ ସେଥିରୁ ଶିବଙ୍କ ପ୍ରାଧାନ୍ୟ ଓ ଲୋକପ୍ରିୟତାର ବ୍ୟାପକତା ପରିସ୍ଫୁଟ ହୁଏ । ଶିବ ନାଗଗୋଷ୍ଠୀୟ ନାଗାର୍ଜୁନଙ୍କ ନିକଟରେ ସେତିକି ପ୍ରିୟ, ଆର୍ଯ୍ୟବୀର ଅର୍ଜୁନଙ୍କ ଦ୍ୱାରା ସେତିକି ଆଦୃତ । ତାଙ୍କୁ ଆଶୁତୋଷ, ତପେ ତୋଷ ଓ କୋପେ ତୋଷ, ଉଦାର ବରଦାତା ଭାବରେ ସାରଳା ମହାଭାରତରେ ଚିତ୍ରଣ କରାଯାଇଛି । (୩୯) ସେ କିରାତବେଶୀ ଅର୍ଜୁନଙ୍କ ଧନୁ ହୁଲରେ କୁରାଳ ଚକ୍ରତୁଲ୍ୟ ଶୂନ୍ୟରେ ଘୂର୍ଣ୍ଣନପୂର୍ବକ ରକ୍ତବମନ କଲାପରେ ତାଙ୍କ ବଳବିକ୍ରମରେ ସନ୍ତୁଷ୍ଟ ହୋଇ ଅକ୍ଷୟ ତୂଣୀର ଓ ପାଶୁପତ ଶର ପ୍ରଦାନ କରିଅଛନ୍ତି ।

---

(୩୫) "ଶିବଃ ଶକ୍ତ୍ୟାଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ
ନଚେ ଦେବଂ ଦେବୋନ ଖଳୁ କୁଶଳଃ ସ୍ପନ୍ଦିତୁମପି ।
(ଆନନ୍ଦ ଲହରୀ—ଶଙ୍କରାଚାର୍ଯ୍ୟ)

(୩୬) ସା: ମ: ଭା: (ସା) ମଧ୍ୟ—ପୃ. ୨୯୫-୩୦୨ ଓ ବିଲଙ୍କା ରାମାୟଣ—ପୃ. ୭୮

(୩୭) ସା: ମ: ଭା: (ସା) ସଭା·ପୃ. ୧୭୮

(୩୮) ମହାନ୍ତି, ଡ଼କ୍ଟର ବିଚିତ୍ରାନନ୍ଦ—ସାରଳା ଦାସଙ୍କ ଚଣ୍ଡୀ ପୁରାଣ (ପ୍ରବନ୍ଧ) ସାରଳା ସାହିତ୍ୟ ସଂସଦ, କଟକ, ସଂପାଦିତ 'ସାରଳା ସାହିତ୍ୟ ସମୀକ୍ଷା' (ତାରତାରିଣୀ ବୁକ୍ ଷ୍ଟୋର, କଟକ, ୧୯୮୩) ପୃ. ୭୯ ।

(୩୯) ସା: ମ: ଭା: (ସା) ମଧ୍ୟ-ପୃ. ୧୩-୧୫ ଓ ସଭା-ପୃ. ୩୩୮-୩୩୯

ଅଥଚ, ଅପର ପକ୍ଷରେ, ଉର୍ଦ୍ଧ୍ୱରେତା ହୋଇ ଦୀର୍ଘ ପାଞ୍ଚ ବର୍ଷ କାଳ କଠୋର ତପସ୍ୟା କରିପରେ ସେ ନାଗାର୍ଜ୍ଜୁନଙ୍କୁ ନିର୍ଜିତା ହେବା ଲାଗି ଅଭୟ ବର ଦେଇଛନ୍ତି। ଅନ୍ୟତ୍ର ଆଠଜଣ ସାଧାରଣ ବାଳିକାଙ୍କର ଧୂଳିଖେଳରେ ସନ୍ତୁଷ୍ଟ ହୋଇ ସେମାନଙ୍କ ପରିଚଯ୍ୟା ଜିଜ୍ଞାସା କରି ସେହି ଅଠଜଣ ବାଳିକା ( ରମ୍ଭା, ଉର୍ବଶୀ, ମେନକା, କାମସେଣା, ମୋହିନୀ, ଅମ୍ବିକା, ମଦନିକା ଓ ଚିତ୍ରରେଖା)ଙ୍କୁ ଅଷ୍ଟ ଅପ୍ସରା ହୋଇ କଳ୍ପାନ୍ତ ଭୋଗ କରିବା ନିମିତ୍ତ ବର ପ୍ରଦାନ କରିଛନ୍ତି। (୪୦)

ସାରଳାଙ୍କ ପରିକଳ୍ପନାରେ ଶିବ ଏକାଧାରରେ ବିଶ୍ୱହର୍ତ୍ତା, ବିଶ୍ୱନାଥ, ତ୍ରିଅମ୍ବକ, ଶୂଳହସ୍ତ, ଆଦିନିରଞ୍ଜନ, ଅନାଦି ଈଶାଣ, ମହେଶ, ତତ୍ତ୍ୱପୁରୁଷ, ମହାଯୋଗୀ, ମହାଭୋଗୀ, ଅଣାକାର, ସାକାର, ଜଟାଜୁଟଧାରୀ, ଦିଗମ୍ବର, ମହାସିଦ୍ଧେଶ୍ୱର, ଅର୍ଦ୍ଧାଙ୍ଗ ପାର୍ବତୀ ମଣ୍ଡିତା ଓ ସର୍ବପାତକ ହରଣକର୍ତ୍ତା। (୪୧) ଅନ୍ୟ ରୂପରେ ସେ ବ୍ୟାଘ୍ରଚର୍ମ ପରିହିତ, ଡମ୍ବରୁ ପିନାକ ପାଶ ଅଙ୍କୁଶ ଓ ତ୍ରିଶୂଳଧାରୀ, ହାଡ଼ମାଳା ଓ ଅନନ୍ତନାଗ ବିଭୂଷିତ, ଭସ୍ମ ବିଲେପିତ, ପଞ୍ଚମସ୍ତକ, ଜଟାଜୁଟ ଲମ୍ବିତ, ମସ୍ତକରେ ଗଙ୍ଗା ଯମୁନା ସରସ୍ୱତୀ ତ୍ରିଧାରା ଶୋଭିତ, ଅଷ୍ଟକୁଳ ନାଗ ବିଭୂଷିତ, ସୋମ, ସୂର୍ଯ୍ୟ ଓ ଅନଳ ସମ ତ୍ରିନେତ୍ରଧାରୀ ଏବଂ ଗରଳହାରୀ ନୀଳକଣ୍ଠ। (୪୨)

ସାରଳାଙ୍କ ଦୃଷ୍ଟିରେ ଶିବ ଓ ବିଷ୍ଣୁ ସମଶକ୍ତିମାନ୍। ତେଣୁ କୃଷ୍ଣ ଓ ବଳରାମଙ୍କ ସହିତ ଯୁଦ୍ଧକାଳରେ କେହି କାହାକୁ ପରାସ୍ତ କରି ପାରିନାହାନ୍ତି। ଫଳରେ, ମହାପ୍ରଳୟକାଳୀନ ପରିସ୍ଥିତି ସୃଷ୍ଟି ହୋଇଛି ଏବଂ ପରିଶେଷରେ ସ୍ୱୟଂ ବ୍ରହ୍ମା ଉଭୟ ପକ୍ଷର ମଧ୍ୟସ୍ଥତା କରି ଶାନ୍ତି ସ୍ଥାପନ କରିଛନ୍ତି। (୪୩) ଏହା ବ୍ୟତୀତ, କାର୍ତ୍ତିକେୟ ଓ ଚନ୍ଦ୍ରଧ୍ୱଜଙ୍କ କଳହ ପ୍ରସଙ୍ଗରେ ସାରଳା ଶିବ ଓ ପାର୍ବତୀଙ୍କୁ ସାଧାରଣ ଗୃହୀ ଓ ଘରଣୀ ଭାବରେ ଚିତ୍ରଣ କରି ଶିବଙ୍କୁ ଭଣ୍ଡ, ନଗ୍ନ, ଫକୀର, କାଦମ୍ବରୀଭୋଳା, ଲମ୍ବୋଦରମ୍ଭାଧାରୀ, ଶ୍ମଶାନାଗ୍ନୀ ଓ ଗୋହତ୍ୟାକାରୀ ରୂପେ ଅଭିହିତ କରାଇଛନ୍ତି ଏବଂ ପାର୍ବତୀ ଏହି ପାରିବାରିକ କଳହ ଫଳରେ ଷୋଡ଼ଶ ଦିବସ ଉପବାସ ରହିବା ପରେ ହିମାଳୟ ପରିତ୍ୟାଗ କରିବା ଲାଗି ସଂକଳ୍ପବଦ୍ଧା ହୋଇଛନ୍ତି। (୪୪)

---

(୪୦) ସା: ମ: ଭା (ସ) ବନ—ପୃ. ୨୧୫-୨୧୭

(୪୧) — ଏଜନ—ଆଦ୍ୟ—ପୃ. ୧୯୪-୧୯୫ ଓ ସଭା-ପୃ. ୩୩୮

(୪୨) — ଏଜନ—ବନ—ପୃ. ୪୭, ଭୀଷ୍ମ-ପୃ. ୩୨ ଓ ଦ୍ରୋଣ ପୃ. ୨୫

(୪୩) — ଏଜନ—ସଭା—ପୃ. ୩୫୬-୩୫୭, ମଧ୍ୟ ପୃ. ୨୩୪-୨୩୫

(୪୪) ସା: ମ: ଭା: (ସ) ବନ—ପୃ. ୨୬-୩୦

ମହାଦେବଙ୍କୁ କେବେ ସାଧାରଣ ମାନବ ରୂପରେ ଚିତ୍ରଣ କରିବା ସଙ୍ଗେ ନାରାର୍ଜ୍ଜୁନର ତପସ୍ୟା, ଯୁଧିଷ୍ଠିରଙ୍କ ମହେନ୍ଦ୍ରଗିରିରେ ଗୋକର୍ଣ୍ଣେଶ୍ୱର ପୂଜା, କୁନ୍ତୀ ଓ ଗାନ୍ଧାରୀଙ୍କର ବିଘ୍ନେଶ୍ୱର ଲିଙ୍ଗ ପୂଜା, ଭୀମଙ୍କର ପାରେଶ୍ୱରନାଥ ସ୍ଥାପନ, ଅର୍ଜ୍ଜୁନଙ୍କର ବିଶ୍ୱନାଥ ଓ ନେପାଳ ପଶୁପତିନାଥ ଦର୍ଶନ, ସୁହାଣୀ କନ୍ୟା ଓ ଯୁଧିଷ୍ଠିରଙ୍କ ଶିଖରେଶ୍ୱର, ବଟେଶ୍ୱର ଓ ଏକାମ୍ରେଶ୍ୱର ଦର୍ଶନ ଓ ଉପାସନା ଇତ୍ୟାଦି ପ୍ରସଙ୍ଗରେ ତାଙ୍କର ଯେଉଁ ଅପାର ମହିମା ବର୍ଣ୍ଣନା କରାଯାଇଛି ଏବଂ ଚମ୍ପା, କେତକୀ, ଅରଖ, ତରାଟ, ଦୁଦୁରା, ନାଗେଶ୍ୱର, ଗଙ୍ଗଶିଉଳି ଓ ମାଳୋପ୍ତଳ ପୁଷ୍ପରେ ବିବାହ, ନବବଧୂଯାତ୍ରା, ଜାତୋତ୍ସବାଦି ପ୍ରତ୍ୟେକ ଶୁଭ କାର୍ଯ୍ୟରେ ତାଙ୍କର ଆରାଧନା ତଥା ଦୁର୍ଗାଧାଭିଷେକର ଦୃଷ୍ଟାନ୍ତ ଦିଆଯାଇଛି (୪୫), ସେଥିରୁ ପ୍ରତିପାଦିତ ହୁଏ ଯେ ସାଧାରଣ ମନୁଷ୍ୟର ଗୁଣାଗୁଣ ମଧ୍ୟରେ ହିଁ ସାରଳା ପରିକଳ୍ପିତ ଶିବଙ୍କ ଦେବତ୍ୱର ମହିମାସ୍ତତା ପରିସ୍ଫୁଟ । (୪୬) ଏସବୁ ଦୃଷ୍ଟିରୁ ସାରଳା ମହାଭାରତକୁ ଶିବପୂଜା ତଥା ଶୈବକ୍ଷେତ୍ରର ଇତିହାସ ରୂପେ ମାନ୍ୟତା ପ୍ରଦାନ କରାଗଲେ ଅଯଥାର୍ଥ ହେବ ନାହିଁ ।

## ସାରଳା ମହାଭାରତରେ ବିଷ୍ଣୁ ଉପାସନାର ମହତ୍ତ୍ୱ

ସାରଳାଙ୍କୁ ମୁଖ୍ୟତଃ ଶାକ୍ତ ଏବଂ ପରେ ଶିବଭକ୍ତ ଭାବରେ ଗ୍ରହଣ କରାଯାଇଥିଲେ ହେଁ ତାଙ୍କ ରଚିତ ମହାଭାରତରେ ବିଷ୍ଣୁ ତଥା ନାରାୟଣ ଏବଂ ଶ୍ରୀକୃଷ୍ଣ ଓ ଶ୍ରୀରାମଙ୍କ ଯେଉଁ ମାହାତ୍ମ୍ୟ ପ୍ରକୀର୍ତ୍ତିତ ହୋଇଅଛି, ସେଥିରୁ ତାଙ୍କର ବୈଷ୍ଣବଧର୍ମ ପ୍ରତି ମମତା ଓ ଆନ୍ତରିକତାର ଯଥେଷ୍ଟ ପରିଚୟ ମିଳେ । ସାରଳାଙ୍କ ସମସ୍ତ ବେଳକୁ ଉତ୍କଳରେ ବୌଦ୍ଧଧର୍ମର ପ୍ରଭାବ ସମ୍ପୂର୍ଣ୍ଣ ବିଲୋପ ନ ହୋଇଥିଲେ ମଧ୍ୟ ବହୁମାତ୍ରାରେ ହ୍ରାସପ୍ରାପ୍ତ ହୋଇଥିଲା ଏବଂ ବାସୁଦେବ ଉପାସନା କ୍ରମେ ମାଧବ ( ବା ନୀଳମାଧବ ) ଉପାସନାରେ ପରିଣତ ହୋଇ ଶେଷରେ ଜଗନ୍ନାଥ ଧର୍ମ ରୂପେ ପ୍ରତିଷ୍ଠା ଲାଭ କରିପାରିଥିଲା । ମହାନଦୀର କୂଳେ କୂଳେ, ପ୍ରାଚୀ ଉପତ୍ୟକାରେ ଏବଂ ନିଆଳି ଓ ମାଧବ ଗ୍ରାମ ମଧ୍ୟବର୍ତ୍ତୀ ଅଞ୍ଚଳରେ ବହୁ ମାଧବମୂର୍ତ୍ତି ପ୍ରତିଷ୍ଠା ଲାଭ କରିଥିଲା । ଯେତେ-

---

(୪୫) ସା: ମ ଭା. (ରା) ଆଦ୍ୟ—ପୃ ୨୯୪-୨୯୫, ମଧ୍ୟ ପୃ. ୨୪୯-୨୫୧ ଓ ସ୍ୱର୍ଗାରୋହଣ—ପୃ. ୧୩-୧୮

(୪୬) ସାହୁ, ଡ଼କ୍ଟର କୃଷ୍ଣଚରଣ—ଶିବ ଉପାସନା ଓ ସାରଳା ଦାସ (ପ୍ରବନ୍ଧ) ଶାରଳା ସ୍ମାରକ ସମ୍ପାଦିତ—ଶାରଳା ସାହିତ୍ୟରେ ଧର୍ମ—ପୃ. ୧୩୬

(୪୭) ତତ୍ରୈବ—ପୃ. ୧୩୭

ବେଳକୁ 'ଗୀତଗୋବିନ୍ଦ'ର ପ୍ରଭାବ ଫଳରେ ଚତୁର୍ଭୁଜ ମାଧବ ଦ୍ୱିଭୁଜବିଶିଷ୍ଟ କୃଷ୍ଣ-ଗୋପୀନାଥ ଭାବରେ ଗୃହୀତ ହୋଇ ଯାଇଥିଲେ ଏବଂ ଜଗନ୍ନାଥଙ୍କଠାରେ କୃଷ୍ଣଙ୍କ ଆରୋପିତ ହୋଇ ସାରିଥିଲା । ବୈଦିକ ଯୁଗର ବହୁକାଳ ପରେ ପୁଣି ଥରେ ବିଷ୍ଣୁ ପରମେଶ୍ୱର ଭାବରେ ପ୍ରାଧାନ୍ୟ ଲାଭ କରିବା ଫଳରେ ଏହି ସମୟରେ ବାସୁଦେବ, ଭଗବତ, କୃଷ୍ଣ, ନାରାୟଣ, ମାଧବ, ଗୋପୀନାଥ, ଜଗନ୍ନାଥାଦି ସମସ୍ତେ ବିଷ୍ଣୁ ରୂପରେ ଉପାସିତ ହେଉଥିଲେ । ଏହା ବ୍ୟତୀତ, ବୈଷ୍ଣବାଚାର୍ଯ୍ୟ ବିଷ୍ଣୁସ୍ୱାମୀ ଜଗନ୍ନାଥଙ୍କ ମଧ୍ୟରେ ରାମଚନ୍ଦ୍ରର ସନ୍ଧାନ କରି ସାରିଥିଲେ ଏବଂ ସ୍କନ୍ଦପୁରାଣ ବର୍ଣ୍ଣିତ ଯଜ୍ଞ ନୃସିଂହ ମଧ୍ୟ ନୃସିଂହରୂପୀ ଜଗନ୍ନାଥରେ ପରିଣତ ହୋଇସାଇଥିଲେ । (୪୮)

ଏହି କାରଣରୁ ସମକାଳୀନ ଆଧ୍ୟାତ୍ମିକ ଭାବଧାରାରୁ ବିଚ୍ଛିନ୍ନ ନ ହୋଇ ସାରଳା ଦାସ ବିଷ୍ଣୁଙ୍କୁ କେତେବେଳେ ନୀଳକଣ୍ଠ, ବନମାଳୀ, ଜଗତ୍ଜନବନ୍ଧୁ, କୃପାସିନ୍ଧୁ, ଶ୍ରୀ ମାୟାଧର ରୂପରେ (୪୯) ଚିତ୍ରଣ କରିଛନ୍ତି ତ, ଅନ୍ୟ କେତେବେଳେ ତାଙ୍କୁ ସିଦ୍ଧଯୋଗୀ, ତ୍ରୈଲୋକ୍ୟଯୋଗୀ, ଅଣାକାର, ଗତିମୁକ୍ତିଦାତା, ପରମେଶ୍ୱର ଭାବରେ ବର୍ଣ୍ଣନା କରିଛନ୍ତି । (୫୦) ଅନ୍ୟ କେଉଁଠି ସେ ବିଷ୍ଣୁଙ୍କୁ ଶଙ୍ଖାସୁର ବିଦାରନ, କୂର୍ମ, ବାମନ, ବରାହ, ନୃସିଂହ, ପର୍ଶୁରାମ, ରାମ, ବଳରାମାଦି ଅବତାର (୫୧) ରୂପେ ସ୍ୱୀକାର କରିଛନ୍ତି ତ, କେତେକ ସ୍ଥଳେ ସେ ତାଙ୍କୁ ଶ୍ରୀ ପୁରୁଷୋତ୍ତମ, ଶ୍ରୀରାମ, ଯଶୋଦା ନନ୍ଦନ ସିରୁଲା, ଗୋପୀହୃଦସ୍ୱମାଳା, ଦେବକୀ ଗର୍ଭସମ୍ଭୂତ, ବସୁଦେବ ସୁତ ବାସୁଦେବ ଓ ଅରୂପାନନ୍ଦ ସ୍ୱାମୀ ବୋଲି ମଧ୍ୟ ସମ୍ବୋଧନ କରିଛନ୍ତି । (୫୨) ଏହା ବ୍ୟତୀତ, ସାରଳା ତାଙ୍କୁ ଜଗତ ପିତା, ଶଙ୍ଖଚକ୍ରଧାରୀ ଶରଣରକ୍ଷଣ

---

(୪୮) ସାହୁ, ଡକ୍ଟର ବାସୁଦେବ—ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ (ପ୍ରବନ୍ଧ) ମହାନ୍ତି, ଡ଼କ୍ଟର ବିଚିତ୍ରାନନ୍ଦ, ଦାସ, ସୂର୍ଯ୍ୟନାରାୟଣ ଓ ତ୍ରିପାଠୀ ପରମେଶ୍ୱର ସମ୍ପାଦିତ 'ଓଡ଼ିଶାର ଦେବଦେବୀ' (ଦ୍ୱିତୀୟ ଖଣ୍ଡ) (ଉତ୍କଳ ପାଠକ ସଂସଦ, କଟକ, ୧୯୮୧) ପୃ. ୩୨-୩୯

(୪୯) ସା: ମ: ଭା: (ରା) ଆଦ୍ୟ—ପୃ. ୨୭୧-୨୭୨

(୫୦) ସା: ମ: ଭା: (ରା) ସଭା—ପୃ. ୪୭

(୫୧) - ଏଜନ - ମଧ୍ୟ—ପୃ. ୨୧୩-୨୧୪, ସଭା, ପୃ ୨୫ ଓ ଉଦ୍ଯୋଗ ପୃ. ୧୩୨

(୫୨) - ଏଜନ - . ଶଲ୍ୟ—ପୃ. ୨

ନାରାୟଣ ରୂପରେ (୫୩) ଆବାହନ କରିବା ସଙ୍ଗେ ସଙ୍ଗେ ଆଦ୍ୟ, ଅନାଦ୍ୟ, ସର୍ବକାର୍ଯ୍ୟ ସିଦ୍ଧିକାରୀ, ରୋଗ ଶତ୍ରୁହାରୀ, କରୁଣା ଜଳଧି, ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପ୍ରଦାନକାରୀ 'ମାଧବ' ତଥା ଅନାଦ୍ୟ ଅନନ୍ତ 'ନୀଳମାଧବ' ରୂପେ (୫୪) ଗ୍ରହଣ କରି ନେଇଛନ୍ତି ଏବଂ କମଳା ବିଳାସ, ପୀତବାସ, ଗରୁଡ଼ାସନ, କରୁଣାନିଧାନ, ମଣି କୌସ୍ତୁଭଧାରୀ 'ଦଧିବାମନ' ମୂର୍ତ୍ତି ସ୍ତବରେ (୫୫) ଭକ୍ତି ନିବେଦନ ଜଣାଇଛନ୍ତି ।

କେବଳ ଏତିକି ନୁହେଁ, ଇକ୍ଷ୍ୱାକୁ ବଂଶଧର, ରାବଣ ଦର୍ପହର, ସୁରବର ଶ୍ରୀରାମ (୫୬), ତେଜୋବନ୍ତ ମହାଯୋଗୀ ପୁରୁଷ, ପର୍ଶୁଧ୍ୱଜ, ଜମଦଗ୍ନିବାଳ ପର୍ଶୁରାମ (୫୭), ରେବତୀରମଣ, ହଳାୟୁଧ ପାଣି, ଅନନ୍ତରୂପ, କାମପାଳ, ରୋହିଣୀବାଳ ବଳଭଦ୍ର ବା ବଳରାମ (୫୮) ସର୍ବଭୟହର, ସର୍ବବ୍ୟାଧି ବିନାଶକ, ଗତିମୁକ୍ତିଦାତା ବହୁରୂପୀ ନୃସିଂହ (୫୯) ପ୍ରମୁଖଙ୍କ ସ୍ତୁତିଗାନରେ ମଧ୍ୟ ସାରଳା ମୁକ୍ତକଣ୍ଠ ହୋଇ ପଡ଼ିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳା ବିଷ୍ଣୁ ବା କୃଷ୍ଣଙ୍କୁ କେବଳ ଗୋପୀ ଚିତ୍ତଚୋର, ଗୋପୀନାଥ ମାଧବ ବା ରାଧାନାଥ ରୂପରେ ଚିତ୍ରଣ (୬୦) କରି କ୍ଷାନ୍ତ ରହି ନାହାନ୍ତି, ଶ୍ରୀକୃଷ୍ଣ ଓ ଶ୍ରୀରାମଙ୍କ ମଧ୍ୟରେ ଅଭେଦତ୍ୱ କଳ୍ପନା କରି ସତ୍ୟଭାମା ମୁଖରେ ଉଭୟଙ୍କର ଜୟଗାନ କରିଛନ୍ତି ।

"ଜୟ ଜୟ ଜାନକୀବଲ୍ଲଭ କୋଦଣ୍ଡ କାଣ୍ଡପାଣି
ଜୟ ଜୟ ସତ୍ୟା ସତୀର ବଲ୍ଲଭ ଚକ୍ରପାଣି । (୬୧)

---

(୫୩) ସା: ମା: ଭା: (ର) ଖଣ୍ଡ—ପୃ. ୩ ଓ ୩୦

(୫୪) - ଏଜନ - ଆଦ୍ୟ—ପୃ. ୬୦, ଖଣ୍ଡ-୨୪, ମୂଷଳୀ-୨୯ ଓ ସ୍ୱର୍ଗାରୋହଣ ପୃ. ୧୪ ୧୫

(୫୫) - ଏଜନ - ଆଦ୍ୟ—ପୃ. ୨୪୭

(୫୬) - ଏଜନ - ଆଦ୍ୟ—ପୃ. ୧୪୭, ୧୯୮, ସଭା-ପୃ: ୯୧, ଦ୍ରୋଣ-ପୃ: ୧୩୫

(୫୭) - ଏଜନ - ବନ—ପୃ: ୨୧-୨୨

(୫୮) - ଏଜନ - ଆଦ୍ୟ—ପୃ: ୨୧୫, ମଧ୍ୟ—ପୃ: ୧୪୮

(୫୯) ସା: ମ: ଭା: (ରା) ଖଣ୍ଡ ପୃ: ୧୧-୧୨

(୬୦) —ଏଜନ—ସଭା ପୃ: ୧୩୩ ଓ ୨୭୭

(୬୧) ସା: ମ: ଭା: (ସା) ମଧ୍ୟ ପୃ: ୨୬୫

ସାରଳା ଯେତେବେଳେ ଯେଉଁ ରୂପରେ ଦେବଦେବୀଙ୍କର ସ୍ତୁତିଗାନ କରିଛନ୍ତି, ସେହି ନିର୍ଦ୍ଦିଷ୍ଟ ଦେବତା ବା ଦେବୀଙ୍କୁ ପିତାମାତା, ସଖାବନ୍ଧୁ, ସର୍ବଶକ୍ତିର ଆଧାର ଓ ଗତିମୁକ୍ତିଦାତା ରୂପେ ଗ୍ରହଣ କରି ନେଇଛନ୍ତି । ପୁନଶ୍ଚ, ଶିବ, ଗଣେଶ ଓ ଶ୍ରୀରାମ ସମସ୍ତଙ୍କୁ ଜଗତଜନ ତାତମାତ, ଆଦି ନିରଞ୍ଜନ, ମହାଯୋଗେଶ୍ୱର ଭାବରେ ଗ୍ରହଣ କରିଛନ୍ତି । ଗଣେଶ ଓ ଶ୍ରୀରାମ ଉଭୟଙ୍କୁ ସେ ବିଷ୍ଣୁ ବା ନାରାୟଣ ରୂପରେହିଁ ଦେଖିଛନ୍ତି । ବିରାଟ ବେଶରେ ଅର୍ଜୁନଙ୍କ ବନବାସ କାଳରେ ଶ୍ରୀକୃଷ୍ଣ ନବଗୁଞ୍ଜର ମୂର୍ତ୍ତି ଧାରଣ କରି ତାଙ୍କ ସମ୍ମୁଖରେ ଆବିର୍ଭାବ ହେବା ଏବଂ ଶ୍ରୀକୃଷ୍ଣଙ୍କ ଗର୍ଭରେ ଅର୍ଜୁନ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଦର୍ଶନ କରିବା ପରିକଳ୍ପନା ସାରଳାଙ୍କ ଅସୀମ ଦିବ୍ୟଦୃଷ୍ଟିର ପ୍ରକୃଷ୍ଟ ଦୃଷ୍ଟାନ୍ତ ।

ଶ୍ରୀକୃଷ୍ଣଙ୍କ ଗର୍ଭରେ ବିଶ୍ୱଦର୍ଶନ କାଳରେ ଅର୍ଜୁନ ଦେଖିଛନ୍ତି ସପ୍ତବ୍ରହ୍ମାଣ୍ଡ, ସପ୍ତଦ୍ୱୀପ, ସପ୍ତମହୀ, ସପ୍ତସାଗର, ସପ୍ତଶୃଙ୍ଗ, ଶ୍ରୀରାମରାବଣ ସମର, ଦୁର୍ଗା-ମହିଷାସୁର ଯୁଦ୍ଧ ଓ ବିଷ୍ଣୁଙ୍କ ଦଶାବତାର ଲୀଳାର ପ୍ରତ୍ୟକ୍ଷ ଦୃଶ୍ୟାବଳୀ । (୭୨) ଅର୍ଜୁନ ଶ୍ରୀକୃଷ୍ଣଙ୍କର ଯେଉଁ ବିଶ୍ୱରୂପ ଦର୍ଶନ କରିଛନ୍ତି, ସାରଳାଙ୍କ ଭାଷାରେ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି ।

ଆକାଶେଣ ଶିର ପାଦ ଯେ ରସାତଳ
ମଧ୍ୟଭୁବନ ହୋଇଲା ନାଭି ଯେ ମଣ୍ଡଳ ।
ଶୂନ୍ୟମଣ୍ଡଳ ଯେ ବକ୍ଷସ୍ଥଳ ହୋଇଲା
ମଣ୍ଡଳ ଶିଖା ଖଣ୍ଡି ଗଣ୍ଡସ୍ଥଳେ ପ୍ରକାଶିଲା ।
ବେନି ଲୋଚନ ଯେ ହୋଇଲା ଚନ୍ଦ୍ର ସୂର୍ଯ୍ୟେ
ଦେବତାଏ ରୋମାବଳୀ ହୋଇଲେ ସହଜେ ।
କରତଳ ମଧ୍ୟେ ଯେ ପ୍ରକାଶିଲେ ଅଙ୍ଗୁଷ୍ଟି
ପର୍ବତମାନେ ତହିଁ ହୋଇଲେ ଗୋପ୍ୟାନଟି ।
ସପତ ସାଗର ଯେ ସିନ୍ଧୁ ମହାଘୋର
ଦକ୍ଷିଣ କରସ୍ଥଳେ ସେ ହୋଇଲା ଗଣ୍ଡୂଷ ।
ନାରାୟଣ କରତଳେ ରହିଲା ସନ୍ଧ୍ୟ ପାଣି
ତହୁଁ ସେ ଭୂଜକୁ ପାଣି ବୋଲିଣ ବଖାଣି ।
ସୃଷ୍ଟିଖାନ ଚଉରାଶୀ କୋଟି ଜୀବ ପୃଥ୍ୱୀର ମୂଳେ
ଏମାନେ ରହିଲେ ନାରାୟଣଙ୍କ ବାମ କରତଳେ ।
ଯେସନେକ ବିଶ୍ୱରୂପ ଧରିଲେ ଜଗତଭୂତ
ଯେବେ ଶରୀର ପ୍ରକାଶିଲା ତିନ ଯେ ଜଗତ । (୭୩)

---

(୭୨) ସା: ମ: ଭା: (ବି) କର୍ଣ୍ଣ-ପୃ. ୨୧ (୭୩) ସା: ମ: ଭା: (ସା) ଆଦି-ପୃ. ୨୬୦

ଏଭଳି ବର୍ଣ୍ଣନା ଦ୍ୱାରା ସାରଳା କୃଷ୍ଣ ବା ବିଷ୍ଣୁଙ୍କୁ ସର୍ବଜୀବ, ସର୍ବଧର୍ମ, ସର୍ବଦେବ ଓ ନବରସର ସମନ୍ୱିତ ରୂପ ଭାବରେ ପ୍ରତିପାଦନ କରିଯାଇଛନ୍ତି । ଏଠାରେ ନବଗୁଞ୍ଜର ରୂପ ଅବତାରଣାର ତାତ୍ପର୍ଯ୍ୟ ବିଶେଷ ।

**ନବଗୁଞ୍ଜର ରୂପର ସଂକେତ**

ସାରଳାଙ୍କ ବର୍ଣ୍ଣନା ଅନୁଯାୟୀ ମାୟାଧର ଶ୍ରୀକୃଷ୍ଣ ହସ୍ତୀର ଶରୀର, ମୟୂରର କଣ୍ଠ, ସିଂହକଟୀ, ଅଶ୍ୱପୁଚ୍ଛ, ବୃଷଭ ଚୂଳ, କୁକ୍କୁଟ ମଥା ତଥା ବ୍ୟାଘ୍ର ଓ ଅଶ୍ୱର ପାଦ ଧାରଣ କରି, ଗଳାରେ ସର୍ପହାର ଶୋଭିତ ହୋଇ, ନରହସ୍ତରେ ପଦ୍ମଫୁଲଟିଏ ଧରି ବିଚିତ୍ର ରୂପରେ ଲତା ହିଡ଼ାଭିତରୁ ନାଚି ନାଚି ଆବିର୍ଭୂତ ହୋଇଛନ୍ତି । (୬୪) ଏହି ବେଶରେ ଯେଉଁସବୁ ପଶୁ, ପକ୍ଷୀ ଓ ପୁଷ୍ପର ସମାହାର ଘଟିଛି, ତାହା ବିଭିନ୍ନ ଧର୍ମ ଓ ରସର ପ୍ରତୀକ ରୂପେ ଗ୍ରହଣୀୟ । (୬୫)

ଅଶ୍ୱ —ସୂର୍ଯ୍ୟଙ୍କ ବାହନ, ବୈଦିକ ଧର୍ମ ଓ କରୁଣ ରସର ପ୍ରତୀକ;
ହସ୍ତୀ —ଇନ୍ଦ୍ରଙ୍କ ବାହନ, ବୌଦ୍ଧଧର୍ମ ଓ ବୀଭତ୍ସ ରସର ପ୍ରତୀକ;
ସିଂହ —ଦୁର୍ଗାଙ୍କ ବାହନ, ଶାକ୍ତଧର୍ମ ଓ ବୀର ରସର ପ୍ରତୀକ;
ବ୍ୟାଘ୍ର —ଅମ୍ବିକାଙ୍କ ବାହନ, ଶାକ୍ତଧର୍ମ ଓ ଅଦ୍ଭୁତ ରସର ପ୍ରତୀକ;
ବୃଷଭ —ଶିବଙ୍କ ବାହନ, ଶୈବଧର୍ମ ଓ ହାସ୍ୟ ରସର ପ୍ରତୀକ;
ସର୍ପ —ଶିବଙ୍କ ଭୂଷଣ, ଶୈବଧର୍ମ ଓ ଭୟାନକ ରସର ପ୍ରତୀକ;
ମୟୂର —କାର୍ତ୍ତିକେୟଙ୍କ ବାହନ ଓ କୃଷ୍ଣଙ୍କ ଭୂଷଣ, ଶୈବ ଓ ବୈଷ୍ଣବ ଧର୍ମ ତଥା ଶୃଙ୍ଗାର ରସର ପ୍ରତୀକ;
କୁକ୍କୁଟ—ଶାବର ବା ବନ୍ୟଧର୍ମ ଏବଂ ରୌଦ୍ର ରସର ପ୍ରତୀକ;
ପଦ୍ମପାଣି—ବୌଦ୍ଧ ଓ ବୈଷ୍ଣବଧର୍ମ ତଥା ଶାନ୍ତରସର ପ୍ରତୀକ ଅଟେ ।

ତେବେ, ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସାରଳାଙ୍କ ଦୃଷ୍ଟିରେ ଏ ସମସ୍ତ ଧର୍ମ ଓ ସମସ୍ତ ରସ ଜଗନ୍ନାଥଙ୍କ ଠାରେ ଏକାକାର ହୋଇଯାଇଛି ଏବଂ ସେ ତାଙ୍କୁ ସର୍ବଧର୍ମର ପ୍ରତୀକ ରୂପେ ଗ୍ରହଣ କରିନେଇଛନ୍ତି ।

---

(୬୪) ସା: ମ: ଭା: (ର) ମଧ୍ୟ-ପୃ. ୧୮-୧୯ ଓ ସା: ମ: ଭା: (ସା)—ମଧ୍ୟ-ପୃ. ୪୩
(୬୫) ନାୟକ, ଗୀତାଞ୍ଜଳି—ଶାରଳା ସାହିତ୍ୟରେ ନବଗୁଞ୍ଜର ନବରସ ଓ ପ୍ରଭୁ ଜଗନ୍ନାଥ (ପ୍ରବନ୍ଧ)—ସାରଳା ସାରକ (ସ) ଶାରଳା ସାହିତ୍ୟରେ ଧର୍ମ— ପୃ. ୮୫-୮୭

## ସାରଳା ଦାସ : ସମନ୍ୱିତ ଜଗନ୍ନାଥ ତତ୍ତ୍ୱର ଆଦ୍ୟ ପ୍ରବକ୍ତା

ସାରଳା ଜଗନ୍ନାଥଙ୍କୁ ଏକାଧାରରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତଥା ବୁଦ୍ଧ, ରାମ, କୃଷ୍ଣ, ଲକ୍ଷ୍ମୀନାରାୟଣ, ଶବରୀ ନାରାୟଣ, ମାଧବ, ନୀଳ ମାଧବ ଓ ପୁରୁଷୋତ୍ତମ ଭାବରେ ବର୍ଣ୍ଣନା କରି ତାଙ୍କୁ ସର୍ବଧର୍ମ ଓ ସର୍ବଦେବତାଙ୍କର ପ୍ରମୂର୍ତ୍ତି ପ୍ରତୀକ ରୂପେ ଚିତ୍ରଣ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ସୁଭଦ୍ରା ପରିଣୟବେଳେ ଶ୍ରୀକୃଷ୍ଣଙ୍କ କୋଳରେ ଅର୍ଜୁନଙ୍କ ଉପବେଶନ, ସତ୍ୟଭାମା ସୁଭଦ୍ରାଙ୍କୁ ଅର୍ଜୁନଙ୍କ ପାଖରେ ପହଞ୍ଚାଇ ଶ୍ରୀକୃଷ୍ଣଙ୍କ ସନ୍ଦେଶ ପ୍ରଦାନ, ଦ୍ୱାରକାରୁ କୃଷ୍ଣଙ୍କୁ ଆନୟନ ଇତ୍ୟାଦି ବହୁ ପ୍ରସଙ୍ଗରେ ସାରଳା 'କୃଷ୍ଣ' ପରିବର୍ତ୍ତେ 'ଜଗନ୍ନାଥ'ଙ୍କ ନାମୋଲ୍ଲେଖ କରି ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ଏକତ୍ୱ ପ୍ରତିପାଦନ କରିଛନ୍ତି । (୭୬) ଜଗନ୍ନାଥ ଓ ବୁଦ୍ଧଙ୍କ ମଧ୍ୟରେ ବହୁ ସ୍ଥଳରେ ଅଭେଦତ୍ୱ ପ୍ରତିପାଦନ କରି ସାରଳା ଜଗନ୍ନାଥଙ୍କୁ ବୌଦ୍ଧରୂପୀ ଦେବତା ଭାବରେ ଗ୍ରହଣ କରିବାକୁ ମଧ୍ୟ ପଶ୍ଚାଦ୍‌ପଦ ହୋଇନାହାନ୍ତି । (୭୭)

---

(୭୬) — ମାନବ ଯୋନି ଜନମ ଅଟଇ ଯେ ପୁଣି
ଜଗନ୍ନାଥ କୋଳେ ତେଣୁ ବସିଲେ ଫାଲ୍‌ଗୁନି ।
(ସା: ମ: ଭା: (ଗ) ମଧ୍ୟ-ପୃ.୧୧୦)

ପଲଙ୍କରେ ବସି ଶରୀ ଗଣେ ବୀର ପାର୍ଥ
ସୁଭଦ୍ରାଙ୍କୁ ଘେନି ଦ୍ୱାରେ ସତ୍ୟା ମାରେ ହାତ ।
କବାଟ ଫେଡି ତୁ ପାର୍ଥ ସନ୍ନିଧିକୁ ଆସ
ଜଗନ୍ନାଥ ଦେଇଛନ୍ତି ତୋଠାକୁ ସନ୍ଦେଶ ।
(ସା: ମ: ଭା: (ଗ)—ମଧ୍ୟ-ପୃ. ୮୨)

ତୁ ହୋ ଅର୍ଜୁନ ବେଗରେ ଚଳିବୁ ଦ୍ୱାରକା
ଶ୍ରୀ ଜଗନ୍ନାଥଙ୍କୁ ଘେନି ଆସ ଯାଇ ଏକା ।
(ସା: ମ: ଭା: (ଗ) ଉଦ୍‌ଯୋଗ-ପୃ. ୧୧)

(୭୭) — ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖଚକ୍ର ବହି ।
(ସା: ମ: ଭା: (ଗ) ସଭା-ପୃ. ୮୭)

ନମଇଁ ଶ୍ରୀ ନୀଳଗିରି ନାଥ ଜଗନ୍ନାଥ
ବଉଦ୍ଧ ରୂପେ ହୋଇବ ଶଙ୍ଖଚକ୍ର ହସ୍ତ ।
(ସା: ମ: ଭା: (ଗ) ଦ୍ରୋଣ-ପୃ. ୧୨୭)

ମୁଷଳୀ ପର୍ବରେ ବର୍ଣ୍ଣିତ ଶବରର ପାଷାଣରୂପୀ ନାରାୟଣ ପୂଜା, ବସୁ ବ୍ରାହ୍ମଣର ମାଧବ ମୂର୍ତ୍ତି ଦର୍ଶନ ଓ ନୀଳମାଧବ ଉପାଖ୍ୟାନ ତଥା ଇନ୍ଦ୍ରଦ୍ୟୁମ୍ନ କର୍ତ୍ତୃକ ନିର୍ମିତ ମନ୍ଦିରରେ ଜଗନ୍ନାଥଙ୍କ ସ୍ଥାପନା ଆଦି ପ୍ରସଙ୍ଗରେ ମଧ୍ୟ ସାରଳା ଦାସ କୃଷ୍ଣ ଓ ଜଗନ୍ନାଥ ତଥା ଜଗନ୍ନାଥ ଓ ବୁଦ୍ଧଙ୍କ ମଧ୍ୟରେ କୌଣସି ପ୍ରଭେଦ ଲକ୍ଷ୍ୟ କରି ନାହାନ୍ତି । ସଂକ୍ଷେପରେ କହିଲେ, ସାରଳାଙ୍କ ବର୍ଣ୍ଣନାରେ ଶ୍ରୀକୃଷ୍ଣଙ୍କ ଅର୍ଦ୍ଧଦଗ୍ଧ ପିଣ୍ଡ ହିଁ ବୌଦ୍ଧାବତାର ଦାରୁରୂପୀ ଜଗନ୍ନାଥ ଭାବରେ ପ୍ରତିଷ୍ଠିତ ଓ ପୂଜିତ । ତାଙ୍କ ଭାଷାରେ—

ଜାରା ଶବର ସ୍ମରଣ ଶ୍ରୀକୃଷ୍ଣ ଜାଣିଲେ
ସିନ୍ଧୁ ମଧ୍ୟୁ ଆସି ବ୍ୟାଧ ପାଶେ ଉଭା ହେଲେ ।
ଦେଖିଣ ପ୍ରଭୁଙ୍କୁ ଜାରା ହୋଇ ପରଣାମି
ବୋଇଲା ନୀଳଗିରିକୁ ବିଜେ କର ସ୍ୱାମୀ ।
ଶ୍ରୀକୃଷ୍ଣ ବୋଇଲେ ଏହା ବ୍ରହ୍ମାଙ୍କର ବାଞ୍ଛା
କଳି ଯୁଗେ ରହିବାକୁ କରୁ ଥିଲ ଇଚ୍ଛା ।
ବଉଦ୍ଧ ଅବତାରେ ନିଷ୍ଟେ ବିହରିବୁ
ଦୁଷ୍ଟ ଜନ ମାରି ସନ୍ଥଜନଙ୍କୁ ପାଳିବୁ ।
କ୍ଷୀରସିନ୍ଧୁ ତୀରେ ତାହା ଦେବେଛନ୍ତି କହି
ଯିବି ନୀଳଗିରିକୁ ମୁଁ ଏବେ ମିଥ୍ୟାନାହିଁ ।

---

(୬୭) — ବାମେ ଛନ୍ତି ମାରକଣ୍ଡ ଦକ୍ଷେ ଯମେଶ୍ୱର
ପୁରୁଷୋତ୍ତମ ପ୍ରଭୁ ଆସନ ଯୋଗର ।
ବଉଦ୍ଧ ରୂପରେ କଳିକାଳ ପାପ ନାଶି
ଗୁଣ ବିକାଶୁଛ ରତ୍ନ ସିଂହାସନେ ବସି ।
(ସା: ମ: ଭା: (ଗ) ବିରାଟ-ପୃ. ୧୧୪)
ଜୟ ନୀଳାଦ୍ରି ବିହାରୀ ହେ ଜଗତ ନାଥ
ବୌଦ୍ଧରୂପେ କଳିଯୁଗେ ମହିମା ବିଖ୍ୟାତ ।
× × ×
କଳିଯୁଗେ ପାପୀଙ୍କର ଉଦ୍ଧାର ନିମିତ୍ତ
ନୀଳଶୈଳେ ବୌଦ୍ଧ ରୂପେ ବିଜେ ଲକ୍ଷ୍ମୀକାନ୍ତ ।
(ସା: ମ: ଭ: (ଗ) ନାଭିଶିକା-ପୃ. ୨-୩)

ଏହା ଶୁଣି ଜାରା ବ୍ୟାଧ କହେ ସବଶେଷି
ତୁମ୍ଭ ପ୍ରତିମା ପୂଜନେ ରାଜା ଅଭିଳାଷୀ ।

ହେ ଦେବ ବନ୍ଧୁ ଆନନ୍ଦେ ଇନ୍ଦ୍ରଦ୍ୟୁମ୍ନ ରାଜା
ଦେଉଳ କରିଛ ତୋତେ କରିବ ସେ ପୂଜା ।
ଶ୍ରୀକୃଷ୍ଣ ବୋଇଲେ ତାକୁ ଯେନହାଅ ନେଇ
ରୋହିଣୀ କୁଣ୍ଡ ପାଖରେ କାଲି ଥିବ କରି ।

ରୋହିଣୀ କୁଣ୍ଡରେ ଆମ୍ଭେ କାଷ୍ଠା ବଦଳିବୁ
ବଉଦ୍ଧ ଅବତାରର କାଷ୍ଠା ଦେଖାଇବୁ ।
ଏ ପିଣ୍ଡ କୋଟିକ ମୋର ଚନ୍ଦ୍ରେ ଦାରୁ ହେବ
ରାଜାଙ୍କୁ କହିଣ ମୋତେ ଯତ୍ନେ ଗଢ଼ାଇବ ।

(ସାଂ: ମ: ଖ: (ର) ମୁଷଲୀ-ପୃ. ୬୮)

କେବଳ ଏତିକି ନୁହେଁ, ସାରଳାଙ୍କ ଦୃଷ୍ଟିରେ ଚକାଡ଼ୋଳା ଜଗତ୍‌କର୍ତ୍ତା ଜଗନ୍ନାଥ ଏକାଧାରରେ ସମସ୍ତ ଅବତାରର ମୂଳାଧାର, ନାନା ମୂର୍ତ୍ତିଧର, ତ୍ରୈଲୋକ୍ୟ ପିତା, ଜଗତଜନଙ୍କ ଉଦ୍ଧାରକର୍ତ୍ତା । ସେ ସତ୍ୟଯୁଗରେ ମତ୍ସ୍ୟ ଅବତାରରେ ଶଙ୍ଖାସୁରକୁ ବଧ କରି ବେଦ ଉଦ୍ଧାର କରିଛନ୍ତି, କଚ୍ଛପ ରୂପରେ ଜଳରୁ ପୃଥିବୀକୁ ରକ୍ଷା କରିଛନ୍ତି ଓ ବରାହ ରୂପରେ ଦନ୍ତାଗ୍ରେ ମେଦିନୀ ଧାରଣ କରିଛନ୍ତି । ଏହା ବ୍ୟତୀତ, ନୃସିଂହ ରୂପରେ ହିରଣ୍ୟ ବିଦାରଣ, ବାମନ ରୂପରେ ବଳି ଦମନ, ପର୍ଶୁ ଧାରଣ କରି ପୃଥିବୀକୁ ଏକବିଂଶବାର ନିକ୍ଷତ୍ରୀକରଣ, ତ୍ରେତୟାରେ ରାମ ଅବତାରରେ ବାଳି ନିଧନ, ରାବଣ ସଂହାର ଓ ରାଜନୀତି-ଧର୍ମନୀତି ପ୍ରଚାର, ଦ୍ୱାପର ଯୁଗରେ କୃଷ୍ଣ ରୂପରେ କଂସ ସଂହାର କଲା ପରେ ଶେଷରେ କଳିଯୁଗରେ ବୌଦ୍ଧରୂପରେ ନୀଳଶୈଳରେ ବିହାର କରୁଛନ୍ତି । (୬୮) କାର୍ତ୍ତିଶିକା ପର୍ବର ଏତାଦୃଶ ବସ୍ତୁତ ବର୍ଣ୍ଣନା ପୂର୍ବରୁ ମଧ୍ୟପର୍ବରେ ସାରଳା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି—

ମତ୍ସ୍ୟ କଚ୍ଛପ ବରାହ ରୂ ନରକେଶରି
ବାମନ ପରଶୁରାମ ରାମରୂପ ହରି ।

ବଉଦ୍ଧ କଳଙ୍କି ଏହି ଦଶ ଅବତାର
ଅସୁରଙ୍କ ନିବାରଣେ ଏତେ ରୂପ ତୋର ।

---

(୬୮) ସାଂ: ମ: ଖ: (ର)—କାର୍ତ୍ତିଶିକା-ପୃ. ୨୦୩

ବଳଭଦ୍ର, ଜଗନ୍ନାଥ ଭଦ୍ରା ସୁଦର୍ଶନ
ଶ୍ରୀ ନୀଳକନ୍ଦରେ ବିଜେ ଚତୁର୍ଦ୍ଧା ରୂପେଣ ।
(ସା: ମ: ଭା: (ବା) ମଧ୍ୟ ପୃ. ୬୭)

ସର୍ବୋପରି, ସାରଳା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଯଥାକ୍ରମେ ବିଷ୍ଣୁ, ଶିବ ଓ ବ୍ରହ୍ମାଙ୍କର ଅବତାର ତଥା ସତ୍ତ୍ୱ, ରଜ, ତମ ତ୍ରିଗୁଣାତ୍ମକ ପ୍ରତୀକ ରୂପେ ଗ୍ରହଣ କରି ଏହି ତ୍ରିମୂର୍ତ୍ତି ଦ୍ୱାପର ଶେଷଠାରୁ ଚାରି ଲକ୍ଷ ବତିଶ ସହସ୍ର ବର୍ଷ ପର୍ଯ୍ୟନ୍ତ ପୂଜା ପାଇବେ ବୋଲି କଳ୍ପନା ଚକ୍ଷୁରେ ଦେଖିଛନ୍ତି । ସାରଳାଙ୍କ ଭାଷାରେ—

ପୀତ କୁଙ୍କୁମ ବରନ ସେହି ବ୍ରହ୍ମମୂର୍ତ୍ତି
ଡାହାଣେ ଶୁକଳ ବର୍ଣ୍ଣ ମହାଦେବ ଜ୍ୟୋତି ।
ରୂପରେ ତ ନାରାୟଣ ବର୍ଣ୍ଣ ଅଟେ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ଦେବ ମେଳା ।
(ସା: ମ: ଭା: (ବା) ବନ—ପୃ. ୨୨୭)

ଶ୍ୱେତ ପୀତ କୃଷ୍ଣ ବର୍ଣ୍ଣ ତିନୋଟି ମୂରତି
ସତ୍ତ୍ୱ ରଜ ତମ ଗୁଣ ହୋଇ ବିରାଜନ୍ତି ।
(ସା ମ: ଭା: (ବା) ମୂଷଳୀ—ପୃ ୪୨)

ରାମ କୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହରି ହର ବ୍ରହ୍ମା ।
ହରି ହର ଏକ ଆତ୍ମା ଅଟନ୍ତି ଯେ ବେନି
ଏକାବେଳକେ ପୂଜନ୍ତେ ସନ୍ତୋଷ ସେ ପୁଣି ।
ଚାରିଲକ୍ଷ ବତିଶ ସହସ୍ର ବର୍ଷ କଳିଯୁଗ
ଭୋଗ କରିବାକୁ ପ୍ରଭୁ କଲେ ଉଦ୍‌ଯୋଗ ।
(ସା: ମ: ଭା: (ବା) ମୁଷଳୀ—ପୃ. ୮୧)

ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ବୌଦ୍ଧ, ବ୍ରାହ୍ମଣ୍ୟ ଓ ଆଦିବାସୀ ଧର୍ମର ସୁସମନ୍ୱୟରେ ମୌଳିକ ଜଗନ୍ନାଥ ତତ୍ତ୍ୱର ବିକାଶ ସାଧନ କ୍ଷେତ୍ରରେ ସାରଳାଙ୍କ ଅବଦାନ ଅନବଦ୍ୟ ।

## ସାରଳା ମହାଭାରତରେ ସୂର୍ଯ୍ୟୋପାସନାର ସଂକେତ

ଅତି ପ୍ରାଚୀନ କାଳରୁ ବିଷ୍ଣୁ ଉପାସନା ସହିତ ସୂର୍ଯ୍ୟ ଉପାସନା ଅବିଚ୍ଛେଦ୍ୟ ଭାବେ ଚାଲି ଆସିଅଛି । ବୈଦିକ ସାହିତ୍ୟରେ ସୂର୍ଯ୍ୟଙ୍କୁ ବିଶ୍ୱଚକ୍ଷୁ ରୂପେ ପରିକଳ୍ପନା

କରାଯିବା ସଙ୍ଗେ ସଙ୍ଗେ ତାଙ୍କୁ ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟର ହେତୁ ସ୍ୱରୂପ ତଥା 'ତ୍ରୈମୟ' ଓ 'ତ୍ରିଗୁଣାତ୍ମକ' ବୋଲି ଅଭିହିତ କରାଯାଇଅଛି । (୬୯) ଏହା ବ୍ୟତୀତ, ତାଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତ୍ରିମୂର୍ତ୍ତିଧାରୀ ଭାବରେ ଗ୍ରହଣ କରାଯାଇ ବିଷ୍ଣୁଙ୍କୁ ସବିତୃମଣ୍ଡଳ ମଧ୍ୟବର୍ତ୍ତୀ ରୂପେ କଳ୍ପନା କରି ଉଭୟଙ୍କର ଅଭେଦତ୍ୱ ପ୍ରତିଷ୍ଠା ନିମିତ୍ତ ପ୍ରୟାସ କରାଯାଇଅଛି । (୭୦)

ସାରଳାଙ୍କ ମହାଭାରତ ରଚନାବେଳକୁ ଉତ୍କଳରେ ଅର୍କତୀର୍ଥର ମାହାତ୍ମ୍ୟ ତଥା ସୂର୍ଯ୍ୟୋପାସନାର ମହତ୍ତ୍ୱ ବେଶ ପ୍ରତିଷ୍ଠିତ ହୋଇ ସାରିଥିଲା । ଏ ସମ୍ପର୍କରେ ଶାମ୍ବପୁରାଣ, ବାୟୁପୁରାଣ, ଅଗ୍ନିପୁରାଣ ଓ ନୀଳାଦ୍ରି ମହୋଦୟ ଗ୍ରନ୍ଥରୁ ସୂଚନା ମିଳେ ଏବଂ ଶେଷୋକ୍ତ ଗ୍ରନ୍ଥରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ ସୂର୍ଯ୍ୟଙ୍କ ପୂଜା ନକରି ବିଷ୍ଣୁପୂଜା କରିବା ନିତାନ୍ତ ମୂର୍ଖତା ଓ ତାହା ରାକ୍ଷସୀ ପୂଜା ଅଟେ । (୭୧) ଏପରିକି ତଦନୁସାରେ ଜଗନ୍ନାଥଙ୍କ ମଧ୍ୟାହ୍ନ ପୂଜା କାଳରେ ତାଙ୍କୁ ସୂର୍ଯ୍ୟ ରୂପରେ ହିଁ ଧ୍ୟାନ କରାଯାଇଥାଏ । (୭୨) ଏଣୁ ବିଭିନ୍ନ ପ୍ରସଙ୍ଗରେ ସାରଳା ସ୍ୱପ୍ରଣୀତ ମହାଭାରତରେ ସୂର୍ଯ୍ୟୋପାସନା ଉପରେ ଯଥେଷ୍ଟ ଆଲୋକପାତ କରିଛନ୍ତି ।

କୁନ୍ତୀଙ୍କ ସୂର୍ଯ୍ୟ ଆରାଧନା ଓ ସୂର୍ଯ୍ୟଙ୍କ ପ୍ରସାଦରୁ କୁମାରୀ ଅବସ୍ଥାରେ ତାଙ୍କର ପୁତ୍ରପ୍ରାପ୍ତି ବିଷୟରୁ ଆରମ୍ଭ କରି ସୂର୍ଯ୍ୟଙ୍କଠାରୁ କର୍ଣ୍ଣଙ୍କ କବଚକୁଣ୍ଡଳ ଏବଂ ସତ୍ୟବ୍ରତ,

---

(୬୯) ନମଃ ସବିତ୍ରେ ଜଗଦେକ ଚକ୍ଷୁଷେ ଜଗତ୍ ପ୍ରସୂତିସ୍ଥିତିନାଶ ହେତବେ
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ ବିରଞ୍ଚିନାରାୟଣ ଶଙ୍କରାତ୍ମନେ ।

(୭୦) ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ ନାରାୟଣଃ ସରସିଜାସନ ସନ୍ନିବିଷ୍ଟଃ
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟିହାରୀ ହିରଣ୍ମୟବପୁ ଧୃତ ଶଙ୍ଖଚକ୍ରଃ

ଉଦୟେ ବ୍ରହ୍ମଣୋରୂପଂ, ମଧ୍ୟାହ୍ନେ ତୁ ମହେଶ୍ୱରଃ
ଅସ୍ତମାନେ ସ୍ୱୟଂ ବିଷ୍ଣୁଃ ତ୍ରିମୂର୍ତ୍ତିଶ୍ଚ ଦିବାକର ।

(୭୧) ସୂର୍ଯ୍ୟପୂଜା ବିନା ବିଷ୍ଣୋ ପୂଜା ଯୋ ମୂଢ଼ଧୀଶ୍ଚରେତ୍
ସା ପୂଜା ରାକ୍ଷସୀର୍ଜ୍ଞେୟା ପ୍ରୀତ୍ୟୈନସ୍ୟା ଜନାର୍ଦ୍ଦନ ।

(୭୨) ମଧ୍ୟାହ୍ନେ ପୂଜନେ ଭୂପ ସୂର୍ଯ୍ୟମେବ ଚ ଚିନ୍ତୟେତ୍
ଚନ୍ଦ୍ରସ୍ଥିଭୁର୍ଦ୍ଧ୍ୱସ୍ୱେଦ୍ ବିଷ୍ଣୋ ନୀଳାଦ୍ରୌ ଦାରୁରୂପିଣମ୍ ।

( ନୀଳାଦ୍ରି ମହୋଦୟ )

ତ୍ୟାଗୀ ଓ ଦାତା ହେବା ଲାଗି ବରଲାଭ, ଅର୍ଜୁନଙ୍କର ସୂର୍ଯ୍ୟପୂଜା, ନଗର ମାନ ନିବାରଣ ନିମନ୍ତେ ଦ୍ରୌପଦୀଙ୍କର ସୂର୍ଯ୍ୟସ୍ତବ, କୁଷ୍ଠରୋଗରୁ ମୁକ୍ତ ହେବା ଲାଗି ଶାମ୍ବଙ୍କ ସୂର୍ଯ୍ୟ ବନ୍ଦନା, ଯୁଧିଷ୍ଠିରଙ୍କ ସୂର୍ଯ୍ୟଙ୍କୁ ସ୍ତୁତି ପ୍ରଭୃତି ଅନେକ ସ୍ଥଳେ ସାରଳା ମହାଭାରତରେ ସୂର୍ଯ୍ୟୋପାସନାର ଗୁରୁତ୍ୱ ପ୍ରତିପାଦିତ ହୋଇଛି । (୭୩) ସାରଳାଙ୍କ ବର୍ଣ୍ଣନାନୁସାରେ ସୂର୍ଯ୍ୟ ଏକାଧାରରେ ଧର୍ମ ନିରଞ୍ଜନ, ଦେବ ବିକର୍ତ୍ତନ, ଗଗନବିହାରୀ, ଅଂଶୁମାଳାଧାରୀ କମଳଲୋଚନ, ଦିନକର, ଆଦି ଅନାଦିନାଥ, ନାରାୟଣ, ସିଦ୍ଧିଦାତା, କର୍ତ୍ତାପୁରୁଷ, ଯୋଗେଶ୍ୱର, ଜଗତ୍‌ଜନ ବନ୍ଧୁ, ଅକ୍ଷୟ, ଅବ୍ୟୟ, ନିରାକାର, ନିରଞ୍ଜନ, ଅଚିକାର ପୁରୁଷ, ତମ ନିବାରଣନାଥ, ବ୍ରହ୍ମାଣ୍ଡ ଧାରଣକାରୀ, ବରିଷ୍ଠ ନାରାୟଣ, ଚେତନା ପୁରୁଷ, ସଦାଶିବ, ସର୍ବଜ୍ଞତା, ତ୍ରିକାଳ ସାକ୍ଷୀ, ସଙ୍କଟ ମୋଚନ କର୍ତ୍ତା, ବିଶ୍ୱାଧିଦେବ, ସଜ୍ଞାବଲ୍ଲଭ, ଗ୍ରହପତି, ଜ୍ୟୋତିରୂପ, ଧର୍ମମାର୍ତ୍ତଣ୍ଡ ଓ ଦିବ୍ୟଚକ୍ଷୁ ପୁରୁଷ । (୭୪)

ଏହା ବ୍ୟତୀତ, ସୂର୍ଯ୍ୟଦେବ କାମାର୍ତ୍ତ ହୋଇ କପଟ୍ ଅରଜୋବତୀ କୁନ୍ତୀଙ୍କ କର୍ଣ୍ଣ ଗହ୍ୱରରେ ବୀର୍ଯ୍ୟଦାନ କରିଛନ୍ତି ଏବଂ ଗୌତମ ରମଣୀ ଅହଲ୍ୟାଙ୍କୁ ହରଣ କରିଛନ୍ତି, ତାହା ମଧ୍ୟ ସାରଳାଙ୍କ ବର୍ଣ୍ଣନାରୁ ବାଦ ପଡ଼ିନାହିଁ । ସଜ୍ଞାଙ୍କ ଶାପରେ ଯମ କୁଷ୍ଠରୋଗଗ୍ରସ୍ତ ହେବାରୁ ସେ ତାର ନିବାରଣ ନିମିତ୍ତ ଅଶ୍ୱ ରୂପରେ ଘୋଟକୀ ରୂପିଣୀ ସଜ୍ଞାଙ୍କ ସହ ରମଣ କରି ଅଶ୍ୱିନୀକୁମାରଙ୍କୁ ଜନ୍ମ ଦେଇଛନ୍ତି । ପୁଣି, ଦ୍ରୌପଦୀଙ୍କ ବସ୍ତ୍ର ହରଣ କାଳରେ ଛପନ କୋଟି ବସ୍ତ୍ର ପ୍ରଦାନ କରିଛନ୍ତି, ଯୁଧିଷ୍ଠିରଙ୍କ ପ୍ରତି ପ୍ରସନ୍ନ ହୋଇ ଅଖଣ୍ଡ ବ୍ରାହ୍ମଣ ଭୋଜନକୁ ଅବ୍ୟାହତ ରଖିଛନ୍ତି ଏବଂ ଶାମ୍ବଙ୍କର କୁଷ୍ଠବ୍ୟାଧି ନିବାରଣ ନିମନ୍ତେ ବରଦାନ ଦେଇଛନ୍ତି । ସର୍ବୋପରି ସେ ଅର୍କ ଦୈତ୍ୟକୁ ସଂହାର କରି ସେହି ସ୍ଥାନକୁ ଏକପବିତ୍ର ତୀର୍ଥକ୍ଷେତ୍ରରେ ପରିଣତ କରିଛନ୍ତି । (୭୫) ମହାଭାରତ

---

(୭୩) ସା: ମ: ଭା: (ବା)—ଆଦ୍ୟ ପୃ. ୪୧-୪୨, ସଭା—ପୃ. ୨୨୫, ୩୨୮ ଓ ବନ ପୃ. ୫୮ ଓ ୨୦୮

(୭୪) ତତ୍ରୈବ

(୭୫) (କ) Sorensen, S. An Index to the names of Mahabharat (Motilal Banarasidas, Calcutta, 1963), P. 172

(ଖ) ମିଶ୍ର, ଡ଼କ୍ଟର ପ୍ରସନ୍ନକୁମାର : ପୂର୍ବ-ଭାରତର ହିନ୍ଦୁ ଲୋକଧର୍ମ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୧) ପୃ. ୯୫—୧୦୯

ନ୍ୟାତ, ଚଣ୍ଡୀ ପୁରାଣରେ 'ଭାସ୍କର ଦୈତ୍ୟର ଅମୋଘ ବରପ୍ରାପ୍ତି ଓ ସୂର୍ଯ୍ୟମଣ୍ଡଳ ରଥ ବର୍ଣ୍ଣନା' ପ୍ରସଙ୍ଗରେ ମଧ୍ୟ ସୂର୍ଯ୍ୟୋପାସନାର ସଙ୍କେତ ଦେଖିବାକୁ ମିଳେ । (୭୬)

## ସ୍ତୁତି-ସ୍ତୋତ୍ରର ଗନ୍ତାଘର—ସାରଳା ମହାଭାରତ

ଉଲ୍ଲିଖିତ ପଞ୍ଚଦେବତାଙ୍କ ବ୍ୟତୀତ ସାରଳା ମହାଭାରତରେ ବହୁ ଦେବଦେବୀ, ନଦୀ ପର୍ବତ, ପଶୁପକ୍ଷୀ, ବୃକ୍ଷଲତା ପ୍ରଭୃତିର ସ୍ତୁତିସ୍ତୋତ୍ର ଦେଖିବାକୁ ମିଳେ । ପଞ୍ଚଦଶ ଶତାବ୍ଦୀ ବେଳକୁ ପ୍ରକୃତି ଉପାସନାର ପ୍ରଭାବ ପ୍ରାପ୍ତ ତନ୍ତ୍ରୋହିତ ହୋଇ ଆସିଲା ବେଳେ ସାରଳାଙ୍କ ଏ ଉଦ୍ୟମ କେବଳ ତାଙ୍କର ନୁହେଁ, ସମଗ୍ର ଓଡ଼ିଆ ଜାତିର ପାରଂପରିକ ଧର୍ମଧାରଣାର ସୁରକ୍ଷା ପାଇଁ ଏକ ସୁଷ୍ଠୁ ପ୍ରସ୍ତାବଭଳି ମନେହୁଏ ।

ପଞ୍ଚ ଦେବତାଙ୍କ ଉପାସନା ବ୍ୟତୀତ ସାରଳା ମହାଭାରତର ବିଭିନ୍ନ ପ୍ରସଙ୍ଗରେ ଅଗ୍ନି, ହନୁମାନ, ଗରୁଡ଼, ସରସ୍ୱତୀ ଓ ଗୋମାତା ପ୍ରଭୃତିଙ୍କ ସ୍ତୁତିଗାନ ମଧ୍ୟ କରାଯାଇଛି । ସାରଳା ଅଗ୍ନିଙ୍କୁ ଆଦିତ୍ୟ ଭ୍ରାତା, ଅଭୟଦାତା, ମହାବ୍ରହ୍ମ, ପରଂବ୍ରହ୍ମ, କାଳାନଳ, ପିଙ୍ଗଳଜ୍ୱାଳା, କୋଟାନଳନାଥ, ବର୍ଣ୍ଣାନଳନାଥ, ମହାବଜ୍ର ସୂଚୀ, ନିରାକାର, ଅଣାକାର, କୃତାନ୍ତକ, ବ୍ରହ୍ମାନ୍ତକ, ମଙ୍ଗଳା, ହିଙ୍ଗୁଳା, ପଦ୍ମନାଭ, ରୁଦ୍ରସ୍ୱରୂପ, ସର୍ବଭକ୍ଷ, ଦର୍ପଗଞ୍ଜନ, ମହାତେଜମୂର୍ତ୍ତି ରୂପେ ଚିତ୍ରଣ କରିଛନ୍ତି । (୭୭) ଆନ୍ତନେୟ ହନୁମାନଙ୍କୁ ସେ ଭକ୍ତବତ୍ସଳ, କରୁଣାସାଗର, ରାମଭକ୍ତ, ରୁଦ୍ରମୂର୍ତ୍ତି, ବୀରଦର୍ପ ଶୂଳ, ତ୍ରେତାଯୁଗ ମହାମଲ୍ଲ, ମହାପଣ୍ଡିତ ଓ ମହାଯୋଧ ଭାବରେ ଗ୍ରହଣ କରିଛନ୍ତି । (୭୮) ପ୍ରଚଣ୍ଡ ମହାବଳସ୍ୱରୂପ, ମହାବଳୀ, ସ୍ୱର୍ଣ୍ଣତେଜପ୍ରଭ, ଅକ୍ଷୟ, ଅବ୍ୟୟ, ଅକାଳ, ଅକାମ, ବିକ୍ରମ, ବିଶ୍ୱକାୟ ବିନତାନନ୍ଦନ ଗରୁଡ଼ ଓ ଅରୁଣଙ୍କୁ ମଧ୍ୟ ସେ ସବିନୟ ପ୍ରଣିପାତ ଜଣାଇଛନ୍ତି । (୭୯) 'ଗଜ କଚ୍ଛପ ଯୁଦ୍ଧରେ ମହାବଳଶାଳୀ ଗରୁଡ଼ଙ୍କ ମହନୀୟ ଅବଦାନର ସୂଚନା ଦେଇଛନ୍ତି । ବିଦ୍ୟାଦାୟିନୀ ସରସ୍ୱତୀଙ୍କୁ ମଧ୍ୟ ସାରଳା ବାକ୍ୟଦେବୀ, ବୀଣାପାଣି, ଦୁର୍ଗା, ନାରାୟଣୀ ଓ ବ୍ରହ୍ମ

---

(୭୬) ସାରଳାଙ୍କ ସମୟକୁ କୋଣାର୍କ ସୂର୍ଯ୍ୟମନ୍ଦିର ଅକ୍ଷୁଣ୍ଣ ଥିଲା ଏବଂ ତଦ୍ୱାରା ସେ ପ୍ରଭାବିତ ହୋଇଥିଲେ । (ସାରଳା ସାହିତ୍ୟରେ ଧର୍ମ—ପୃ. ୧୧୭)

(୭୭) ସା: ମ: ଭା: (ରା) ଆଦ୍ୟ ପୃ. ୭୧, ୧୫୯-୬୦ ଓ ବିରାଟ ପୃ. ୮୪

(୭୮) - ଏଜନ - ମଧ୍ୟ ପୃ. ୨୦୫

(୭୯) - ଏଜନ - ବନ ପୃ ୨୨୦-୨୨୧

ବିନାଶିନୀ ରୂପେ ବନ୍ଦନା କରିଥିବା ପରିଦୃଷ୍ଟ ହୁଏ । (୮୦) ଏତଦ୍ ବ୍ୟତୀତ, ସୁରଭୀ, ନନ୍ଦିନୀ, କାମଧେନୁ ପ୍ରଭୃତି ଗୋମାତାମାନଙ୍କ ବିବରଣୀ ତଥା ଗୋମୁଖୀ କେଶବଙ୍କର ବର୍ଣ୍ଣନା ପ୍ରସଙ୍ଗରେ ଗୋ-ଉପାସନର ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । (୮୧)

କେବଳ ଏତିକି ନୁହେଁ, ସେ ନର୍ଯାତନନ୍ଦିନୀ, ପବିତ୍ରକାରିଣୀ, ମକରବାହିନୀ, ଅନାଗ୍ରବାହିନୀ, ସର୍ବଭୂତେଶ୍ୱରୀ, ସର୍ବପହାରିଣୀ, ପାପ ବିମୋଚନୀ, ଚରାଚର ଜୀବନ ତୋଷିଣୀ, ତାରିଣୀ, କାରିଣୀ, ଜଗଜ୍ଜନନୀ ଗଙ୍ଗାଙ୍କ (୮୨) ସମେତ ସରଯୂ, ଯମୁନା, କାବେରୀ, ଗୋଦାବରୀ, ବୈତରଣୀ, ତମସା, ଗଣ୍ଡକୀ, ଗୋମତୀ, ସରସ୍ୱତୀ ପ୍ରଭୃତି ପବିତ୍ର ନଦୀଗୁଡ଼ିକୁ ଦେବୀ ରୂପରେ ପରିକଳ୍ପନା କରି ଭକ୍ତି ଗଦ୍‌ଗଦ ଚିତ୍ତରେ ସ୍ତୁତିଗାନ କରିବା ପାଇଁ ପଶ୍ଚାଦ୍‌ପଦ ହୋଇନାହାନ୍ତି । (୮୩) ବିଭିନ୍ନ ବୃକ୍ଷଲତା ଉଦ୍ଭିଦାଦିର ଆଧ୍ୟାତ୍ମିକ ପ୍ରଭାବ ସୂଚାଇବାକୁ ଯାଇ ସାରଳା ଉଲ୍ଲେଖ କରିଛନ୍ତି ଯେ ବରକୋଳି ପତ୍ର ଧାରଣରେ ଶନି କ୍ଷୟ ହୁଏ; ଶ୍ୱେତ ଦୂର୍ବାଦଳ ମଥାରେ ଖୋସିଲେ ନାନାଦୋଷ ନାଶଯାଏ; ତୁଳସୀ ପତ୍ର ଧାରଣ ଦ୍ୱାରା ସକଳ ପାତକ ନଷ୍ଟ ହୁଏ ଏବଂ ସାହାଡ଼ା ପତ୍ରଟିଏ ଧରିଲେ ଦିବ୍ୟଭୋଜନ ମିଳିଥାଏ । (୮୪) ତୁଳସୀ ବୃକ୍ଷକୁ 'ସନ୍ତତି ଜାତକ ବୃକ୍ଷରାଜ' ରୂପେ ସେ ବିଶେଷ ସମ୍ମାନ ଦେଇଛନ୍ତି । (୮୫)

ଏହା ବ୍ୟତୀତ, ଶତଶୃଙ୍ଗବିଶିଷ୍ଟ ହୈମବନ୍ତ ନନ୍ଦନ, ଗିରିଜାଭ୍ରାତା, ଶରଣ ରକ୍ଷଣ, ତ୍ରିଜଗତର ରକ୍ଷାକର୍ତ୍ତା, ମହତ ପର୍ବତ, ଗିରିବର ହିମାଳୟ; ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର ମିଳନ କ୍ଷେତ୍ର, ପଞ୍ଚପାଣ୍ଡବଙ୍କ ଆରାଧ୍ୟ ଲୋକତ୍ରୈଶ୍ୱର ବିରାଜିତ ଓ ପାପବିନାଶିନୀ କୁଣ୍ଡ ବିମଣ୍ଡିତ ମହାଗିରି ମହେନ୍ଦ୍ର ଏବଂ ବିନ୍ଧ୍ୟ, ଗନ୍ଧମାଦନ, ଅନନ୍ତ-ଗିରି, ରୈବତ, ଋଷ୍ୟମୂକ, କପିଳାସ ପ୍ରଭୃତି ପବିତ୍ର ପର୍ବତମାନଙ୍କର (୮୬) ମହତ୍ତ୍ୱ ପ୍ରତିପାଦନ ଦିଗରେ ସାରଳାଙ୍କ ଆନ୍ତରିକତାରୁ ତାଙ୍କର ପ୍ରକୃତି ଉପାସନାର ମହନୀୟତା ପ୍ରକଟିତ ହୁଏ । କେବଳ ଏତିକି ନୁହେଁ, ଆବର୍ତ୍ତିକ, ସମ୍ବର୍ତ୍ତିକ, ଦ୍ରୋଣ, ଅରୁଣ, ବରୁଣ, ପୁଷ୍କର, ନର୍ଯାତ, ଅନନ୍ତ, କାମ୍ୟକ, ତପ୍ତାନ୍ତକ, ନାଗାନ୍ତକ,

---

(୮୦) ସା: ମ: ଭା: (ଗ) ଉଦ୍‌ଯୋଗ ପୃ ୨୫

(୮୧) —ଏଜନ—ସଭା ପୃ. ୧୫ ଓ ମୁଷଳୀ ପୃ. ୩୫

(୮୨) —ଏଜନ—ବନ-ପୃ. ୧୫୧

(୮୩) —ଏଜନ— ବନ-ପୃ. ୧୦୮-୧୦୯

(୮୪) —ଏଜନ— ଆଦ୍ୟ-ପୃ. ୩୭-୩୮ (୮୫) —ଏଜନ— ଆଦ୍ୟ-ପୃ. ୭୯

(୮୬) —ଏଜନ— ଆଦ୍ୟ-ପୃ. ୯୦, ୧୯୪, ଉତ୍ତ-ପୃ. ୩୩୫-୩୩୭ ଓ
ବନ-ପୃ. ୧୮୭

ଯମଘଣ୍ଟ, ଯୁଗପାଳାଦି ମେଘ ମେଖଳାର ଜନ୍ମସ୍ଥାନରେ ସେ ଯେପରି ଶତରିନ୍ଧ୍ର (୮୭), କାଳାନ୍ତକ, କୃତାନ୍ତକ, ଜଳାନ୍ତକ, ମଳୟ, ବସନ୍ତ, ଶିଶିର, ବଭୈଳ, ଉଦଣ୍ଡ, ଉଦାନ, ପ୍ରାଣ, ଯୋଗ, ଧୀମନ୍ତ, ପ୍ରାଣନ୍ତ, ନୈଋତ, ଧୂମ୍ରାକ୍ଷ, ମାତଙ୍ଗ, ତାରଣ, ପୂରଣ, ଲେହିତ, ଚନ୍ଦ୍ରାର୍କ, ଭେଳ, ଜଠରାଦି ଅଣଗୃଣ ପବନର ସ୍ଥିତସ୍ଥାନରେ ସେହିପରି ମୁକ୍ତକଣ୍ଠ । (୮୮)

## ସାରଳାଙ୍କ ଧର୍ମଚେତନାର ଅନ୍ୟ ଦିଗ

ଦେବଦେବୀ, ନଦନଦୀ, ଗିରିପର୍ବତ, ପଶୁପକ୍ଷୀ ଆଦି ଦେବତା, ଜୀବଜଗତ ଓ ପ୍ରକୃତିର ଉପାସନା ସାଙ୍ଗକୁ ସାରଳା ଅଦ୍ୱୈତ ବ୍ରହ୍ମବାଦ ତଥା ଗୀତାତତ୍ତ୍ୱ, ପିଣ୍ଡବ୍ରହ୍ମାଣ୍ଡ ବାଦ, ଶୂନ୍ୟବାଦ ଓ ଯୋଗସାଧନାଦି ଧର୍ମତତ୍ତ୍ୱ ଓ ଆଧ୍ୟାତ୍ମିକ ଦର୍ଶନବାଦ ସମ୍ବନ୍ଧରେ ମଧ୍ୟ ସବିଶେଷ ଆଲୋକପାତ କରିଛନ୍ତି । ବ୍ରହ୍ମହିଁ ସତ୍ୟ, ଅନ୍ୟ ସମସ୍ତ ଅସତ୍ୟ ତଥା ଜୀବାତ୍ମା ଓ ପରମାତ୍ମାର ଅଭେଦତ୍ୱରେ ବିଶ୍ୱାସ ପୋଷଣ କରି ସେ ବେଦ ବେଦାନ୍ତ, ସାଂଖ୍ୟ ଦର୍ଶନ ତଥା ଗୀତା ଓ ଉପନିଷଦର ଗୂଢ଼ତତ୍ତ୍ୱଗୁଡ଼ିକୁ ଅତି ସରଳ ଓ ପ୍ରାଞ୍ଜଳ ଭାବରେ ଉପସ୍ଥାପନ କରିବାରେ ବେଶ୍ ସଫଳ ହୋଇଛନ୍ତି । ସାରଳାଙ୍କ ଏହି ତାତ୍ତ୍ୱିକ ବିଶ୍ଳେଷଣର କିୟଦଂଶ ଏଠାରେ ଉଦ୍ଧାର କରାଗଲା ।

ତୁ ଦେବ ପରମ ଅନାଦି ଧର୍ମବ୍ରହ୍ମ
ଅକ୍ଷରହୁଁ ବିବର୍ଜିତ ନାମ ତୋର ସୂକ୍ଷ୍ମ ।
ଶ୍ରୁତି ସୃଷ୍ଟି ପ୍ରକୃତି ଆପଣେ ଅର୍ଜିଲୁ ଏକା
ଅନେକ ରୂପ ସ୍ୱାମୀ ନାହିଁ ତୋର ଲେଖା ।
ସତ୍ତ୍ୱ ରଜ ତମ ତ୍ରିଗୁଣ ଅନ୍ତର
ସନାତନ ପୁରୁଷ ତୋତେ ନାହିଁ ପଟାନ୍ତର ।
ଅନ୍ତର ଅନନ୍ତ ରୂପ ଧରୁ ଯେ କାମମୂର୍ତ୍ତି
ଜଳ ସ୍ଥଳ ଅନଳେ ତୁହି ସିନା ସ୍ଥିତି ।

(ସା: ମ: ଭା: (ସା) ମଧ୍ୟ-ପୃ. ୧୧୨୮)

ବ୍ରହ୍ମ ସ୍ୱରୂପରେ ରୂପରେଖ ଧରି
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦି କରି ।
କାଷ୍ଠ ପାଷାଣ ମୃତ୍ତିକା ହିଁ ସେହି
ଯୋଗବ୍ରହ୍ମ ନିରାକୁଳ ନିଚଳ ସେ ଶୂନ୍ୟଦେହୀ ।

---

(୮୭) ସା: ମ: ଭା: (ସା) ସଭା-ପୃ. ୨୩୭
(୮୮) —ଏଜନ— ବନ-ପୃ. ୯୭

ଆଧ ଅନ୍ତ ମଧ ଯାହାର ସର୍ଜନା
ମାନ ଦାନ ଧ୍ୟାନ କାରଣ ସମ୍ପୂର୍ଣ୍ଣା ।
ସକଳ ବିଦ୍ୟାରେ ସେ ସକଳ ଘଟେ ହିର
ଅନନ୍ତ ବ୍ରହ୍ମମୟ ସକଳ ଘଟେ ପୂର ।

(ସା: ମ: ଭା: (ସା) ଭୀଷ୍ମ-ପୃ. ୨୫)

## ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ

ଜୀବବ୍ରହ୍ମ ଏକାତ୍ମବାଦରୁ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ଉଦ୍ଭବ । ତଦନୁଯାୟୀ ଏହି ଦେହହିଁ ଜୀବାତ୍ମାର ଅଧିଷ୍ଠାନ । ଜୀବାତ୍ମାହିଁ ବ୍ରହ୍ମ ଯାହା ବିଶ୍ୱବ୍ରହ୍ମାଣ୍ଡରେ ସର୍ବଥା ପରିବ୍ୟାପ୍ତ । ମନୁଷ୍ୟର ଶରୀରରେହିଁ ଅଖିଳ ବିଶ୍ୱବ୍ରହ୍ମାଣ୍ଡର ସ୍ଥିତି । ସେ ହିରଣ୍ୟଗର୍ଭ ତଥା ତେତିଶି କୋଟି ଦେବତାଙ୍କର ଭାବବିଗ୍ରହ । (୮୯) ଏହି ତତ୍ତ୍ୱ ସାରଳା ଅଗ୍ନିଙ୍କ ମୁଖରେ ପଣ୍ଡୁଙ୍କୁ ଉପଦେଶ ପ୍ରଦାନ ଛଳରେ ବୁଝାଇଛନ୍ତି । ସାରଳାଙ୍କ ବର୍ଣ୍ଣନା ଅନୁଯାୟୀ ଭୀମ ବହୁଭୋଜୀ ଓ ଖାଦ୍ୟାତୁର । ପାକ ପ୍ରସ୍ତୁତ ସଙ୍ଗେ ସଙ୍ଗେ ହିଁ ସେ ଖାଦ୍ୟ ପଦାର୍ଥ ଉଦରସ୍ଥ କରିଦେଉଥିଲେ । ଏହା ଜାଣି ନପାରି ପଣ୍ଡୁ ତାଙ୍କ ଉଚ୍ଛିଷ୍ଟ ହିଁ ଅଗ୍ନିଙ୍କୁ ସମର୍ପଣ କରି ନିଜେ ଆହାର କରୁଥିଲେ । କିନ୍ତୁ ଏ ରହସ୍ୟ ଉଦ୍‌ଘାଟନ ପରେ ପଣ୍ଡୁ ପ୍ରଚଣ୍ଡ କ୍ରୋଧବଶତଃ ଭୀମଙ୍କୁ ହତ୍ୟା କରିବା ଲାଗି ଉଦ୍ୟତ ହେଲବେଳେ ସ୍ୱୟଂ ଅଗ୍ନି ତାଙ୍କୁ ସେଥିରୁ ନିବୃତ୍ତ କରିବାକୁ ଯାଇ ସାନ୍ତ୍ୱନା ଦେଇ କହିଛନ୍ତି—

ଦେବତାଏ କାହିଁ ଆନ୍ତ ଆହେ ମହୀପାଳ
ନିଜ କଣ୍ଠରେ ଦେବତା ବଦନ୍ତି ଅନଳ ।
ତାଳୁରେ ଶିରରେ ବିଜେ କରିଛନ୍ତି ବ୍ରହ୍ମା
କପାଳ ପଟରେ ନାରାୟଣ ଯେ ମହାତ୍ମା ।
ଚନ୍ଦ୍ର ସୂର୍ଯ୍ୟ ଦେବତା ଯେ ଚକ୍ଷୁ ପୁଣି ବେନି
ନାସିକାରେ ବସଇ ପବନ ମହାଜ୍ଞାନୀ ।
ବେନି ଶ୍ରବଣେ ବସଇ ଜାଣ ଚଇତନ
ପଦ କୁ ଭେଦ ବସଇ ଶୂନ୍ୟ ନିରଞ୍ଜନ ।
ନାସାର ତଳେ ଅଛଇ ଯେଉଁ ବେନି ଓଷ୍ଠ
ତହିଁ ଆସନ କରନ୍ତି ଇନ୍ଦ୍ର ସୁରଶ୍ରେଷ୍ଠ ।

(୮୯) ମହାନ୍ତି : ଓଡ଼ିଆ ସାହିତ୍ୟର ଆଦିପର୍ବ-ପୃ. ୧୩୯ ଏବଂ ଦାସ, ସର୍ବେଶ୍ୱର ; ମହାକବି ସାରଳା ଦାସ (ଗ୍ରନ୍ଥ ମନ୍ଦିର, କଟକ, ୨ୟ ସଂସ୍କରଣ, ୧୯୮୩) ପୃ. ୧୪୨-୧୪୩

କଣ୍ଠସ୍ଥଳବାସୀ ପଞ୍ଚଦଶ ଦେବତା
କୁହୁକ ତନୁ ଅନ୍ତକ କଢ଼ଣପ କ୍ରତା ।
ସଲ୍ଲଲ ନଳ କୁବେର ଶୋଭନ ଅମର
ମନ ଲକ୍ଷ୍ୟ ଜ୍ଞାନ ବୁଦ୍ଧି ବିବେକ ଆବର ।
ଏ ପେନ୍ଦ କଣ୍ଠେ ବସନ୍ତି ଏତେକ ଦେବତା
ପ୍ରେମେ ବସନ୍ତି ନକ୍ଷତ୍ର ତାସ୍ତୁ ଅପ୍ରମିତା ।

( ସା: ମ: ଭା: (ର) ଆଦ୍ୟ—ପୃ. ୭୦ )

ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ଏ ପରିକଳ୍ପନା ବଜ୍ରଯାନୀ ତଥା ସହଜଯାନୀ ବୌଦ୍ଧ ତାନ୍ତ୍ରିକ ପରଂପରାରୁ ଉତ୍କଳୀୟ ଧର୍ମଦର୍ଶନ ମଧ୍ୟକୁ ପ୍ରବେଶ କରିଥିବା ଇତିହାସ ପୃଷ୍ଠାରେ ଲିପିବଦ୍ଧ । କିନ୍ତୁ ଏ ଧାରଣା ସମଗ୍ରଗତ ଭାବରେ ଉତ୍କଳୀୟ ସାଧନ ପରଂପରାର ଏକ ଅନ୍ତରଙ୍ଗ ଉପାଦାନ ରୂପେ ବିବେଚିତ ହୋଇ ପଡ଼ିଥିଲା । କେବଳ ସାରଳାଦାସ ନୁହନ୍ତି, ସମସାମୟିକ ସମସ୍ତ ସିଦ୍ଧସାଧକ ପିଣ୍ଡ ଉପାସନା ମାଧ୍ୟମରେ ମୁକ୍ତିଲାଭର ପନ୍ଥା ଅନ୍ୱେଷଣ କରୁଥିଲେ । ବିଭିନ୍ନ ଦେବତା ଉପାସନାର କନ୍ଦଳ ମଧ୍ୟରୁ ମୁକ୍ତିଲାଭ କରି ନିଜସ୍ୱ ସାଧନା ବଳରେ ନିର୍ବାଣ ପ୍ରାପ୍ତିର ଏହି ସୁଗମ ପନ୍ଥା ସାରଳା ଦାସଙ୍କ ପାଇଁ ମଧ୍ୟ ଗ୍ରହଣୀୟ ମନେ ହୋଇଥିଲା । ଏଥିପାଇଁ ସେ କେବଳ ଗୋଟିଏ ସ୍ଥାନରେ ନୁହେଁ, ମହାଭାରତର ବିଭିନ୍ନ ସ୍ଥଳରେ ଏହି ତତ୍ତ୍ୱର ବହୁମୁଖୀ ବ୍ୟାଖ୍ୟା ପ୍ରଦାନ କରି ଯାଇଛନ୍ତି । କେବଳ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ନୁହେଁ, ତା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଶୂନ୍ୟସାଧନା ଓ ଯୋଗତତ୍ତ୍ୱର ବହୁଳ ଉଲ୍ଲେଖ ମଧ୍ୟ ସାରଳା ମହାଭାରତରେ ଦେଖିବାକୁ ମିଳେ ।

ଆଦ୍ୟ ପର୍ବରେ ପରିବେଷିତ ଅଶ୍ୱତ୍ଥାମାଙ୍କ ଯୋଗ ସାଧନାର ଚିତ୍ର ମହାଯାନୀ ଶୂନ୍ୟ ସାଧନାର ଏକ ଅନୁଗତ କ୍ରିୟା ମାତ୍ର । ନିଦ୍ରା ଅଳସ ଭଙ୍ଗି ପବନ ନିରୋଧି ଦ୍ୱାଦଶ ଇନ୍ଦ୍ରିୟ ଏକୀଭୂତ କରି ବାସ୍ତ୍ରର ମୁଦ୍ରା ଛନ୍ଦ ଧାରୁଦୃଢ଼ ହୋଇ ଏକ ଲକ୍ଷ୍ୟରେ ଶୂନ୍ୟକୁ ଗୃହି ଅଶ୍ୱତ୍ଥାମା ଯେଉଁଭଳି ବ୍ରହ୍ମଜ୍ଞାନ ସାଧନା କରିଛନ୍ତି, ତାହାର ସ୍ୱରୂପ ସାରଳାଙ୍କ ଲେଖନୀରେ ଏହିପରି ଭାବେ ଉପସ୍ଥାପିତ ।

ଦେଖିଲେ ଅଶ୍ୱତ୍ଥାମାର ଏକଇ ଆସନ
ଚଉଦ ବର୍ଷ ହୋଇଲା ଏକଇ ନିଶ୍ଚଳ ନୟନ ।
କାହାରଇ ନାମ ଯେ ନଧରଇ ତାର ମନେ
ଶୂନ୍ୟକୁ ଲକ୍ଷ୍ୟ କରି ଗୃହିଁଇ ଗଗନେ ।
ବୋଧଇ ଅଣାକାର ସାଧଇ ବ୍ରହ୍ମଜ୍ଞାନ
ସ୍ୱେମନ୍ତେ ଚଉଦ ବରଷ ଏକ ଲକ୍ଷ୍ୟେ ମନ ।

ପବନ ନିରୋଧିଲା ଟେକଇ ଉଜାଣି
ଦ୍ୱାଦଶ ଇନ୍ଦ୍ରିୟ ଏକତ୍ର କରି ଆଣି ।

× × ×

ଛନ୍ଦାଇ ପକାଇଲା ବାନ୍ଧିଣ ଯେ ମୁଦ୍ରା
ଧାତୁଦୃଢ଼ କରିଣ ଭାଜିଲା ମହାନିଦ୍ରା ।
ନିଦ୍ରା ପୁରୁଷଟି ଅଟଇ ଯେ କାଳ
ସ୍ୱେଦ୍ଧ ସେ ନାଶ କରଇ ସକଳ ।
ପବନ ଉଜାଣି ଯାଇ ନବଦ୍ୱାର ବାଟେ
ତାହା ସବୁ ବନ୍ଧନ ଶିଶୁମୁନା ବାଟେ ।
ନବଦ୍ୱାର ନିରୋଧି ବସିଲା ମହାତ୍ମା
ଦେଖି ନ ଦେଖିଲା ଶୂନ୍ୟ ଶଙ୍କ ସୀମା ।
ଜିହ୍ୱା ଗୋପ୍ୟନ କଲା ସେ ଘଣ୍ଟିକାର ମୂଳେ
ତହିଁରୁ ଅମୃତ ପାନ କଲା ସବୁକାଳେ ।
ସାତୁକା ପୁରୁଷ ସେ ଅଭସ୍ତ କାଳକୁ
ଅମାପ୍ତା ପୁରୁଷ ସେ ଗୃହିଁଇ ଶୂନ୍ୟକୁ ।
ନାହିଁ ନାହିଁ ପବନ ନାହିଁ ପଞ୍ଚଶାଖା
ନାହିଁ ନାହିଁକ ଅଙ୍ଗ ନାହିଁ ବାଟ ରେଖା ।
ନାହିଁ ପରସନ୍ନ ନାହିଁ ନା ଅପ୍ରସନ୍ନ
ଜିହ୍ୱା ଇନ୍ଦ୍ରି ଗୋପ୍ୟ କଲା ନିରନ୍ତ୍ର ବାସନ ।

( ସାଂ ମ: ଭା: (ସା) ଆଦ—ପୃ. ୬୨୫୯ )

ଧର୍ମବକର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଯୁଧିଷ୍ଠିର ଏ ପ୍ରସଙ୍ଗରେ ଷଟ୍‌ଚକ୍ର (ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧାଖ୍ୟ ଓ ଆଜ୍ଞାଖ୍ୟ) କ୍ରମେ ୪, ୬, ୧୦, ୧୨, ୧୬ ଓ ୨ (ଅର୍ଥାତ୍ ପଞ୍ଚାଶତ) ପଦ୍ମଦଳ ସଂଖ୍ୟାର-ଯେଉଁ ସୂଚନା ଦେଇଛନ୍ତି, ତାହା ସାରଳା ଅତି ତାତ୍ପର୍ଯ୍ୟପୂର୍ଣ୍ଣ ଭାଷାରେ ପରିବେଷଣ କରିଛନ୍ତି (୧୦)

କାଳ ବୋଲଣ ହାଦେ ଯେଉଁଣ ପୁରୁଷ ଈଶ୍ୱର
ଅକ୍ଷୟ ଅବ୍ୟକ୍ତ ଅବିକାର ଅଣାକାର ।

(୧୦) ଦାଶ, ସର୍ବେଶ୍ୱର—ମହାକବି ସାରଳା ଦାସ-ପୃ. ୧୨୬

ଷଡ଼ପଦ୍ମ ପରେ ପୁଣି ତ୍ରିବେଣୀ ସଙ୍ଗମ
ନାସିକା ଚକ୍ଷୁ ମଧ୍ୟରେ କର ହେ। ସନ୍ଧାନ।
ସେ କର୍ମ ପୁରୁଷଙ୍କୁ ଭେଟିବ ବୃତ୍ତି ଚଳେ
ଅଜପା ଲକ୍ଷ୍ୟେ କରଣ ବସିବ ହୃଦ୍‌ସ୍ଥଳେ।
ମହା ଅନନ୍ତେ ଶିରେ ଶେଖରେ ମଣି ଆସନ
ବିଂଶ ଦ୍ୱାଦଶ ଷୋଡ଼ଶ ଦୁଇ ଦଳେଣ।
ନଯାଇ ନଥାଇ ନାଶ ନାହିଁ ଉଦେ ଅସ୍ତ
ନାହିଁ ନିଦ୍ରା ମଇଥୁନ ନାହିଁ ଦିବା ରାତ୍ର।
ପ୍ରଥମେ ସେ ଅବ୍ୟକ୍ତ ହେଲ ଲୋହିତର ବର୍ଣ୍ଣ
ସବ୍ୟକତ କାଳେ ହେଲ ସ୍ଫଟିକର ଚିହ୍ନ।
ନାଦ ବିନ୍ଦୁରୁ ବାହାର ମହାବ୍ରହ୍ମ ଭେଦ
ପଦ୍ମାସନ ହୋଇଣ ସେ ସ୍ଥୂଳ ଶୂନ୍ୟ ଶୁଦ୍ଧ।
(ସା: ମ: ଭା: (ସା) ବନ—ପୃ. ୩୪୦)

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସାରଳା ଏକ ପକ୍ଷରେ ଅଦ୍ୱୈତ ବ୍ରହ୍ମତତ୍ତ୍ୱ ଓ ଶୂନ୍ୟବାଦର ମହତ୍ତ୍ୱ ପ୍ରଖ୍ୟାପନ କରିବା ସଙ୍ଗେ ସଙ୍ଗେ, ଅନ୍ୟ ପକ୍ଷରେ ସାକାରବାଦ, ଦ୍ୱୈତ ଦର୍ଶନ ତଥା ଅବତାର ଲୀଳାର ସମର୍ଥନ କରିଛନ୍ତି। ବ୍ୟକ୍ତି କେଉଁ କାର୍ଯ୍ୟପାଇଁ କେଉଁ ଦେବୀଙ୍କୁ ସ୍ମରଣ କରିବା ଉଚିତ ତଥା କେଉଁ ଦେବୀ କେଉଁ କାର୍ଯ୍ୟର ସିଦ୍ଧିଦାତ୍ରୀ, ସାରଳା ବନ ପର୍ବରେ ତାର ଏକ ବିସ୍ତୃତ ବିବରଣୀ ଦେଇଛନ୍ତି। (ପୂର୍ବବର୍ତ୍ତୀ ପୃ. ୨୦୬-୨୦୭) ଏହା ବ୍ୟତୀତ, ବ୍ୟକ୍ତି କେଉଁ ଅଂଶରେ ଜନ୍ମ ଗ୍ରହଣ କଲେ ତାଠାରେ କେଉଁ ଗୁଣ ପ୍ରକାଶ ପାଏ, ତାର ମଧ୍ୟ ଏକ ସବିସ୍ତୃତ ବର୍ଣ୍ଣନା ବନପର୍ବରେ ପ୍ରଦତ୍ତ ହୋଇଅଛି। ଏହା ଅନୁସାରେ, ବ୍ୟକ୍ତି ବିଷ୍ଣୁଙ୍କ ଅଂଶରେ ଜନ୍ମଲାଭ କଲେ ସଦାତୃପ୍ତ, ହରଙ୍କ ଅଂଶରେ ଜାତ ହେଲେ ଧନବନ୍ତ, ବ୍ରହ୍ମାଂଶରେ ବେଦବିଦ୍, ଇନ୍ଦ୍ରାଂଶରେ ଲୋକମାନ୍ୟ, ବିଶ୍ୱକର୍ମା ଅଂଶୀ ଶିଳ୍ପପ୍ରବୀଣ, ଗନ୍ଧର୍ବ ଅଂଶୀ ବାଦ୍ୟଗୀତ ବିଶାରଦ, ବାୟୁଅଂଶୀ ବଳବାନ୍, କୁବେର ଅଂଶୀ ନିଧିବାନ୍, ଅଗ୍ନିଅଂଶୀ ମହାବାକ୍ୟସିଦ୍ଧ, ଭୋଜଅଂଶୀ କର୍ମପ୍ରସିଦ୍ଧ, ବିନାୟକ ଅଂଶୀ ବିଦ୍ୱାନ, ବୃହସ୍ପତି ଅଂଶୀ ଜ୍ୟୋତିଷୀ, ବିଦ୍ୟାଧର ଅଂଶୀ ନୃତ୍ୟପ୍ରବୀଣ, ସହଦେବ ଅଂଶୀ ବୁଦ୍ଧିବାନ୍, ନକୁଳ ଅଂଶୀ ଯୋଗୀ, ପ୍ରହ୍ଲାଦ ଅଂଶୀ ବୈଷ୍ଣବ, ଯମ ଅଂଶରେ ଅତୃପ୍ତ, ମୁନି ଅଂଶରେ ବାଗ୍ମୀ, ନର ଅଂଶରେ ବୈରୀ ଓ ଅସୁର ଅଂଶରେ ଜାତ ବ୍ୟକ୍ତି ଅମାନିଆ ହୁଏ। (୯୧)

(୯୧) ସା: ମ: ଭା: (ସା) ବନ ପୃ. ୨୨୭-୨୨୮

ଏହିପରି ଭାବରେ ବିଚାର କଲେ, ସାରଳାଙ୍କ ବିପୁଳ ସୃଷ୍ଟି ମଧ୍ୟରେ ପରଂପରାଗତ ଓ ସମସାମୟିକ ଧର୍ମ ଧାରଣାର ଏକ ବିସ୍ତୃତ ଚିତ୍ର ରୂପ ଲାଭ କରିଥିବା ସ୍ପଷ୍ଟ ପ୍ରତୀୟମାନ ହୁଏ । ସାରଳା ଦାସ ମୁଖ୍ୟତଃ ପୁରାଣପ୍ରଣେତା । ମାନବର ଧାର୍ମିକ ଅଭ୍ୟୁତ୍ଥାନ ପାଇଁହିଁ ପୁରାଣଗୁଡ଼ିକ ବିଶେଷ ଭାବେ ଉଦ୍ଦିଷ୍ଟ । ଏଣୁ ସାରଳା ମହାଭାରତରେ ଏହି ଲକ୍ଷ୍ୟପ୍ରତି ନିର୍ଦ୍ଦିଷ୍ଟ ପ୍ରୟାସ କରାଯାଇଥିବା ଏକାନ୍ତ ସ୍ୱାଭାବିକ । ସେଥିପାଇଁ କେବଳ ପଞ୍ଚଦେବତା ଉପାସନା, ଶୂନ୍ୟସାଧନା ଓ ଯୋଗାଗୃହ ତନ୍ତ୍ର ପ୍ରଭୃତିର ସ୍ଥୂଳ ପରିଚୟ ଦେବା ଅପେକ୍ଷା ସାରଳା ଦାସ ସେସବୁର ପୂଜା ପଦ୍ଧତି, ଆଚରଣ ପ୍ରକ୍ରିୟା ଓ ଫଳପ୍ରାପ୍ତି ବିଷୟ ବିଶ୍ଳେଷଣ କରିବା ସଙ୍ଗେ ସଙ୍ଗେ ବହୁ ଆଖ୍ୟାନ, ଉପାଖ୍ୟାନ ମାଧ୍ୟମରେ ଉଦାହରଣମାନ ଦେଇ ସେଥିର ମହତ୍ତ୍ୱ ମଧ୍ୟ ପ୍ରତିପାଦନ କରିଛନ୍ତି ।

## ସାରଳାଙ୍କ ଧାର୍ମିକଚେତନାର ରାଜନୈତିକ ବୈଶିଷ୍ଟ୍ୟ

ସାରଳାଙ୍କ ସାମଗ୍ରିକ ଧର୍ମ-ଚେତନାର ଏକ ସ୍ଥୂଳ ବିଶ୍ଳେଷଣ କଲେ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ବ୍ୟକ୍ତି ଜୀବନର ସୁସ୍ଥ ଓ ସାମୂହିକ ବିକାଶ ତଥା ସାମାଜିକ ସୁଖଶାନ୍ତି, ସ୍ୱାଚ୍ଛନ୍ଦ୍ୟ ଓ ଆନନ୍ଦ, ମାନସିକ ଶୁଦ୍ଧତା ଓ ପବିତ୍ରତା ଏବଂ ସର୍ବୋପରି ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଓ ସାମାଜିକ ଶୃଙ୍ଖଳା ପ୍ରତିଷ୍ଠା ଲକ୍ଷ୍ୟରେ ହିଁ ତାହା ଉଦ୍ଦିଷ୍ଟ । କହିବା ବାହୁଲ୍ୟ ଯେ ରାଜନୀତି କଦାପି ବ୍ୟକ୍ତି ଜୀବନ ବା ସାମାଜିକ ବିକାଶ ଧାରାରୁ ବିଚ୍ୟୁତ ହୋଇନପାରେ । ଜୀବନ ଓ ସମାଜର ନିଗଡ଼ ଭିତରେ ହିଁ ରାଜନୀତି ସର୍ବଦା ଆବଦ୍ଧ ! ଏହାର ଉର୍ଦ୍ଧ୍ୱ ପରିସରକୁ ରାଜନୀତି ଉନ୍ନୀତ ହୋଇ ପାରିବ ନାହିଁ । ଏଣୁ ରାଜନୈତିକ ଆଦର୍ଶର ସୁପ୍ରତିଷ୍ଠା ଲାଗି ଆଧ୍ୟାତ୍ମିକ ଚେତନା ସମୃଦ୍ଧ ଏକ ଶୃଙ୍ଖଳିତ ସମାଜ ଏବଂ ସୁସ୍ଥ ଓ ଅବିଚ୍ଛିନ୍ନ ମାନବ ଜୀବନ ଧାରାର ଆବଶ୍ୟକତା ନିତାନ୍ତ ଅପରିହାର୍ଯ୍ୟ । ଏଥିପାଇଁ ଶ୍ରେଷ୍ଠ ସାମାଜିକ ପ୍ରାଣୀ ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟକଳାପ ଧର୍ମାନୁକୂଳ ଓ ଧର୍ମାନୁମୋଦିତ ହେବାର ପ୍ରୟୋଜନୀୟତା ସାରଳା ଦାସ ଗମ୍ଭୀରଭାବେ ଅନୁଭବ କରିଛନ୍ତି । ମାନବୀୟ ଜୀବନ ଯାତ୍ରାର ପ୍ରତ୍ୟେକ କ୍ଷେତ୍ରରେ (ସ୍ନାନ, ଭୋଜନ, ଶୟନ, ସହବାସ, ମୃଗୟା, କ୍ରୀଡ଼ା, ବ୍ୟାଧି, ବିପତ୍ତି, ଯୁଦ୍ଧଯାତ୍ରା ଇତ୍ୟାଦିରେ) ଆଧ୍ୟାତ୍ମିକ ଶକ୍ତିର ଉପଯୋଗିତା ଉପଲବ୍ଧି କରି ବ୍ୟକ୍ତିକୁ ସେ ଦିଗରେ ସଚେତନ ରହିବା ଲାଗି ସାରଳା ଦାସ ପରାମର୍ଶ ଦେଇଛନ୍ତି ।

କେବଳ ମାନବର ବ୍ୟକ୍ତିଗତ ଜୀବନ ନୁହେଁ, ରାଜନୀତି କ୍ଷେତ୍ରରେ ମଧ୍ୟ ଏହି ଆଧ୍ୟାତ୍ମିକ ବଳହିଁ କ୍ଷତ୍ରିୟମାନଙ୍କର ରକ୍ଷାକବଚ ରୂପେ କାର୍ଯ୍ୟ କରିଥାଏ । ଏଥିପାଇଁ କୁରୁକ୍ଷେତ୍ର ଧର୍ମକ୍ଷେତ୍ର ଏବଂ ମହାଭାରତ ସମର ଧର୍ମଯୁଦ୍ଧ ନାମରେ ନାମିତ ।

ଏହି ଧର୍ମଯୁଦ୍ଧର ସୂତ୍ରଧର ରୂପେ ଶ୍ରୀକୃଷ୍ଣଙ୍କୁ ପରିକଳ୍ପନା କରାଯାଇଅଛି ଏବଂ ସେ ସ୍ୱୟଂ ଭଗବାନ ରୂପେ ଆରାଧିତ । ସାରଳା ପରିକଳ୍ପିତ ପ୍ରତ୍ୟକ୍ଷଦର୍ଶୀ ବେଲାଳ ସେନର ପ୍ରତ୍ୟକ୍ଷ ପ୍ରମାଣ ଅନୁଯାୟୀ ମହାଭାରତ ଯୁଦ୍ଧରେ ଉଭୟ ପକ୍ଷର ସଂହାର ନିମିତ୍ତ ଶ୍ରୀକୃଷ୍ଣଙ୍କ କରକମଳସ୍ଥିତ ଚକ୍ରହିଁ ଥିଲା ଏକମାତ୍ର ଅସ୍ତ୍ର । ତଥାପି ଲୌକିକ ଯୁଦ୍ଧର ଚିତ୍ର ମାଧ୍ୟମରେ ଆଧ୍ୟାତ୍ମିକ ଶକ୍ତିର ଗୁରୁତ୍ୱ ମହାଭାରତର ଛତ୍ରେ ଛତ୍ରେ ଲକ୍ଷ୍ୟ କରାଯାଇପାରିବ ! ଏଠାରେ ଗୋଟିଏ ଉଦାହରଣ ଦିଆଯାଇପାରେ । କର୍ଣ୍ଣ ପର୍ବରେ ସାରଳା ଦାସ ଦୁଇଜଣ ସାରଥିଙ୍କର ଅବତାରଣା କରିଛନ୍ତି— ଜଣେ ଅର୍ଜ୍ଜୁନଙ୍କ ନନ୍ଦିଘୋଷ ରଥର ସାରଥି ଶ୍ରୀକୃଷ୍ଣ, ଅନ୍ୟ ଜଣେ ଅର୍ଜ୍ଜୁନଙ୍କ ପ୍ରତିଦ୍ୱନ୍ଦ୍ୱୀ କର୍ଣ୍ଣଙ୍କ ରଥର ସାରଥି ମଦ୍ରାଧିପତି ଶଲ୍ୟ । ଯୁଦ୍ଧରେ ଅବତୀର୍ଣ୍ଣ ହେବା ପୂର୍ବରୁ ଉଭୟ ରଥୀ ନିଜ ନିଜର ସାରଥିମାନଙ୍କୁ ଜିଜ୍ଞାସା କରିଛନ୍ତି—'ମୋ ବିପତ୍ତି କାଳେ କିପରି କରିବ ଯତନ' । ଉତ୍ତରରେ ଉଭୟ ସାରଥି ଯାହା କହିଛନ୍ତି, ତାହା ହିଁ ସାରଳାଙ୍କ କଳ୍ପନାରେ ମାନବୀ ଶକ୍ତି ଓ ଆଧ୍ୟାତ୍ମିକ ଶକ୍ତି ମଧ୍ୟରେ ପାର୍ଥକ୍ୟର ସୂଚକ । ମଦ୍ରାଧିପତିଙ୍କ ଉତ୍ତର ଥିଲା—

"ଶଲ୍ୟ ବୋଇଲେ ଯଦ୍ୟପି ପଡ଼ିବୁ ସମରେ
ତେବେ ରଥ ବାହି ନେବି ରାଜାଙ୍କ ଗ୍ରାମୁରେ ।"

କିନ୍ତୁ ଅର୍ଜ୍ଜୁନଙ୍କ ଜିଜ୍ଞାସାର ଉତ୍ତରରେ ଶ୍ରୀକୃଷ୍ଣ କହିଥିଲେ—

"ଗୋବିନ୍ଦ ବୋଇଲେ ରଣେ ତୁ ହୋଇଲେ ଅଶକ୍ୟ
ଚକ୍ରରେ ଛେଦିବି ଶଲ୍ୟ କର୍ଣ୍ଣର ମସ୍ତକ ।"

ସାରଥିମାନଙ୍କର ଏଭଳି ଉତ୍ତରରୁ ଯୋଦ୍ଧାମାନଙ୍କର ତତ୍କାଳୀନ ମାନସିକ ସ୍ଥିତିର ବିଶ୍ଳେଷଣ ଅନାବଶ୍ୟକ । ଏହି ସାଧାରଣ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ସାରଳା ଦାସ ଆଧ୍ୟାତ୍ମିକ ପ୍ରେରଣାର ଯେଉଁ ଗୂଢ଼ ତତ୍ତ୍ୱଟି ଉଦ୍‌ଘାଟନ କରିଛନ୍ତି, ତାହା ତାଙ୍କ ସମଗ୍ର ରାଜନୈତିକ ଆଦର୍ଶ ପାଇଁ ଆଧ୍ୟାତ୍ମିକ ଆବଶ୍ୟକତାର ସୂଚନା ଦେଉନାହିଁ କି ? ସ୍ଥୂଳତଃ, ଈଶ୍ୱରଙ୍କ ନିର୍ଦ୍ଦେଶରେ ହିଁ ଏ ପୃଥିବୀ ପରିଚାଳିତ; ଈଶ୍ୱର ସର୍ବମସ୍ତକର୍ତ୍ତା, ଅନ୍ୟ ସମସ୍ତେ ନିମିତ୍ତ ମାତ୍ର । ଏହାହିଁ ମହାଭାରତ ସମରର ଏକମାତ୍ର ଅନୁଧ୍ୱନି । (୧୨)

ସାରଳା ସ୍ପଷ୍ଟ ହୃଦୟଙ୍ଗମ କରିଛନ୍ତି ଯେ ମନୁଷ୍ୟକୁ ସର୍ବୋତ୍ତମ ଗୁଣସମୂହର ଅଧିକାରୀ ହେବାକୁ ହେଲେ ସେ ବିଭିନ୍ନ ଦେବ ଅଂଶର ସୁଯୋଗ୍ୟ ଉତ୍ତରାଧିକାରୀ

(୧୨) ସାମନ୍ତରାୟ, ଡ଼: ନଟବର—ମୁଁ କାହାର ଗବେଷଣା କଲି (ବାଣୀଭବନ, ଭୁବନେଶ୍ୱର, ୧୯୭୭) ପୃ. ୭୩

ହେବା ଆବଶ୍ୟକ । କେବଳ ଏତିକି ନୁହେଁ, ଜୀବ ଜଗତ ଓ ପ୍ରକୃତି ଜଗତରୁ ମଧ୍ୟ ତାର ଅନେକ କିଛି ଶିକ୍ଷା କରିବାର ଅଛି । ସମୁଦ୍ରର ସୀମା ନ ଲଙ୍ଘିବା ଗୁଣ, ନଦୀର ନିମ୍ନଗାମୀ ସ୍ୱଭାବ, ବୃକ୍ଷର ନମ୍ରତା ଓ ଉଦାରତା, ତୁଙ୍ଗ ଗିରି ଶିଖରର ଦୃଢ଼ତା ତଥା ଅଟଳ ହୃଦୟବତ୍ତା, ବକର ଏକାଗ୍ରତା, ମୟୂରର ପ୍ରସନ୍ନତା, ଗାମ୍ଭୀର ଶାଳ୍ମଳୀର ବଦାନ୍ୟତା, ବଳୀବର୍ଦ୍ଧର ସହିଷ୍ଣୁତା ଓ କର୍ମନିଷ୍ଠା, ହନୁମାନର ତେଜୋଦୀପ୍ତ ନିର୍ଭୀକତାଦି ଗୁଣାବଳୀରେ ଭୂଷିତ ହେବାରେ ମଣିଷର ଧର୍ମ ତଥା ମାନବଜୀବନର ସାର୍ଥକତା । ଏସବୁ ଗୁଣସଂପନ୍ନ ନହେଲେ ବ୍ୟକ୍ତି ତଥା ସମାଜ-ଜୀବନର ଭୂୟୋଭିକାଶ ଅସମ୍ଭବ ଏବଂ ଏକ ଶ୍ରେୟସ୍କାମୀ ମାନବସମାଜ ବିନା ଶ୍ରେଷ୍ଠ ରାଜନୈତିକ ଆଦର୍ଶ ପ୍ରତିଷ୍ଠା ପରିକଳ୍ପନା ଚରିତାର୍ଥ ହୋଇପାରିବ ନାହିଁ । ଏଥିପାଇଁ ସାରଳା ଦାସ ଦୁଇଟି ପନ୍ଥାର ସନ୍ଧାନ ଦେଇଛନ୍ତି—ଶାରୀରିକ ଓ ଆଧ୍ୟାତ୍ମିକ । ମୂଳ ମହାଭାରତଠାରୁ ଦୂରେଇ ଯାଇ ସେ ଯେଉଁସବୁ ଚରିତ୍ରର ପରିକଳ୍ପନା କରିଛନ୍ତି, ସେସବୁ ଶିଷ୍ଟ ବା ଦୁଷ୍ଟ ହୁଅନ୍ତୁ ନା କାହିଁକି, ସେମାନଙ୍କୁ ଏହି ଉଭୟ ଦିଗରୁ ଶକ୍ତିଶାଳୀ କରିବା ପାଇଁ ତାଙ୍କର ପ୍ରୟାସ ଅବ୍ୟାହତ ରହିଛି । ସାରଳା ମହାଭାରତର ଦାନବ ଚରିତ୍ରଗୁଡ଼ିକ ଯେପରି ତପଃସିଦ୍ଧ, ସେହିପରି ମାନବଚରିତ୍ରଗୁଡ଼ିକ ଶରୀରଚର୍ଯ୍ୟା ଦ୍ୱାରା ବିପୁଳ ଶାରୀରିକ ବଳର ଅଧିକାରୀ । ଏହି ଉଭୟ ଗୋଷ୍ଠୀର ଚରିତ୍ରମାନଙ୍କ ମଧ୍ୟରେ ସାରଳା ଦାସ ସ୍ପଷ୍ଟ ସୂଚନା ଦେବା ପାଇଁ ଚାହିଁଛନ୍ତି ଯେ ମାନବ ଯେତେ ଶକ୍ତିଶାଳୀ ହେଲେ ସୁଦ୍ଧା ଧର୍ମପଥରୁ ବିଚ୍ୟୁତ ହେଲେ ତାର ବିନାଶ ଅବଶ୍ୟମ୍ଭାବୀ । ଏକ ସୁସ୍ଥ ବ୍ୟକ୍ତିଗତ ଓ ରାଜନୈତିକ ପରଂପରା ସୃଷ୍ଟିରେ ଦୁର୍ବଳ ଓ ସବଳ ଶ୍ରେଣୀ ମଧ୍ୟରେ ରହିଥିବା ତାରତମ୍ୟ ଦ୍ୱାରା ନିର୍ମିତ ଆଧ୍ୟାତ୍ମିକ ଚେତନାର ଆବଶ୍ୟକତା ସେ ଉପଲବ୍ଧି କରିଥିବା ଅନୁମେୟ । ସଂକ୍ଷେପରେ କହିବାକୁ ଗଲେ, ଗୀତାର ବାଣୀ 'ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ' ଦ୍ୱାରା ତାଙ୍କର ସମଗ୍ର ଆଦର୍ଶ ନିୟନ୍ତ୍ରିତ ।

ଅନ୍ୟ ଦିଗରୁ ବିଚାର କଲେ, ଧର୍ମ ଯେପରି ଶାନ୍ତି ଓ ସହତର ମୂଳସୂତ୍ର, ତାହା ସେହିପରି ବିପ୍ଳବ ଓ ବିଭେଦର ମଧ୍ୟ ମୂଳହେତୁ । ଧର୍ମଗତ ମତପାର୍ଥକ୍ୟ, ଧର୍ମ ଓ ଶାସନ କ୍ଷେତ୍ରରେ ବୈରିତା ତଥା ଧର୍ମାନ୍ଧ ଗୋଷ୍ଠୀବିଭେଦ ଚିନ୍ତାଧାରା ଯୋଗୁଁ ବହୁ ଯୁଦ୍ଧ ବିପ୍ଳବ ଯେ ସଙ୍ଘଟିତ, ଇତିହାସରୁ ଏହାର ଜ୍ୱଳନ୍ତ ପ୍ରମାଣ ମିଳେ । ଏଣୁ ସମସ୍ତ ଦେବତାଙ୍କ ଠାରେ ସମଶକ୍ତି ଓ ସମଗୁଣାବଳୀ ଆରୋପ କରି ସାରଳା ଧର୍ମଗତ ଭେଦଭାବର ପ୍ରାଚୀରକୁ କେବଳ ଧ୍ୱସ୍ତବିଧ୍ୱସ୍ତ କରି ଦେଇନାହାନ୍ତି, ବରଂ ଉଦାତ୍ତ କଣ୍ଠରେ ସର୍ବଧର୍ମ ସମନ୍ୱୟ ଆଦର୍ଶର ଜୟଗାନ କରି ଜାତୀୟ ସଂହତି ଐକ୍ୟ,

ତଥା ସାମାଜିକ ସଦ୍‌ଭାବର ଏକ ସୁସ୍ଥ ବାତାବରଣ ପ୍ରତିଷ୍ଠା ଲାଗି ପ୍ରୟାସୀ ହୋଇଛନ୍ତି । ସୁସ୍ଥ ରାଜନୈତିକ ଆଦର୍ଶ ପ୍ରତିଷ୍ଠା ନିମିତ୍ତ ତାଙ୍କର ଏ ପ୍ରକାର ଉଦ୍ୟମର ସାର୍ଥକତା ଅବିସମ୍ବାଦିତ । ଏଥିପାଇଁ ସାରଳା ମହାଭାରତକୁ ଉଦାର ଧର୍ମମତବାଦର ଏକ ଗୁରୁତ୍ୱପୂର୍ଣ୍ଣ ଦଲିଲ ବୋଲି କୁହାଯାଇପାରେ । (୧୩)

ସାରଳାଙ୍କ ସମକାଳରେ ସମସ୍ତ ଭାରତ ବର୍ଷରେ ଧର୍ମାନ୍ଧତାର ପ୍ରାବଲ୍ୟ ପରିଦୃଷ୍ଟ ହୋଇଥିଲା । ଏ ସମୟକୁ ହିନ୍ଦୁଧର୍ମ ମଧ୍ୟରେ ବିଭିନ୍ନ ମତବାଦ ସୃଷ୍ଟି ଲକ୍ଷ କରଯାଉଥିଲା । ପଞ୍ଚଦେବତା ଉପାସନାର ଦୋହାଇ ଦେଇ ଉପାସକମାନେ ଗୋଟିଏ ଗୋଟିଏ ଦେବତାର ପ୍ରାଧାନ୍ୟ ପ୍ରତିଷ୍ଠା ପାଇଁ ଅନାବଶ୍ୟକ ତତ୍ପରତା ପ୍ରକାଶ କରୁଥିଲେ । ସୋମାଚାର, କାୟାଚାର, ତନ୍ତ୍ରସାଧନା ପ୍ରଭୃତି ଏହାକୁ ପୁଣି ବହୁ ଭାବରେ ବିଭକ୍ତ କରୁଥିଲା । ଶୈବ, ଶାକ୍ତ ଓ ବୈଷ୍ଣବମାନଙ୍କ ମଧ୍ୟରେ ଅସମାହିତ ବୈରତା 'ହସ୍ତିନା ତାଡ୍ୟମାନେଽପି ନ ଗଚ୍ଛେତ୍ ଜୈନ ମନ୍ଦିରଂ' ପ୍ରଭୃତି ଉକ୍ତିରୁ ସ୍ପଷ୍ଟ ପ୍ରତୀୟମାନ । ଏହି ଧାର୍ମିକ ଅନୁଦାରତା କେବଳ ଧର୍ମଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ନରହି ସେତେବେଳେ ଭାରତୀୟ ରାଜନୀତିକୁ ମଧ୍ୟ ପ୍ରଭାବିତ କରୁଥିଲା । ଜଣେ ଜଣେ ଶାସକ ଗୋଟିଏ ଗୋଟିଏ ଧର୍ମ ମତବାଦର ଯେ ପୃଷ୍ଠପୋଷକତା କରୁଥିଲେ, ତାହା ନୁହେଁ; ଅନ୍ୟ ମତାବଲମ୍ବୀମାନଙ୍କ ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରିବା ପାଇଁ ମଧ୍ୟ ପଶ୍ଚାଦ୍‌ପଦ ହେଉନଥିଲେ । ଏହା ଫଳରେ ତତ୍କାଳୀନ ହିନ୍ଦୁ ରାଜଶକ୍ତି ସମଗ୍ର ଦେଶରେ ଦୁର୍ବଳ ହୋଇ ପଡ଼ୁଥିଲା । ରାଜନୀତି ଅଭିଜ୍ଞ ଓ ପ୍ରତ୍ୟକ୍ଷଦର୍ଶୀ ସାରଳା ଦାସ ଏହି ପରିସ୍ଥିତିରୁ ଯେଉଁ ବିପଦର ଆଶଙ୍କା କରୁଥିଲେ, ତାହାହିଁ ତାଙ୍କୁ ସର୍ବଧର୍ମ ସମନ୍ୱିତ ଏକ ଉଦାର ଧର୍ମାଦର୍ଶ ପରିପ୍ରେକ୍ଷୀର ପାଇଁ ଅନୁପ୍ରେରିତ କରିଥିଲା । ମହାଭାରତର ବିଭିନ୍ନ ସ୍ଥଳରେ ହରି-ହର, ଶିବ-ଶକ୍ତି, ହନୁମାନ, ଗଣପତି ପ୍ରଭୃତିଙ୍କ ମଧ୍ୟରେ ସଙ୍ଘଟିତ ସାମରିକ ଚକ୍ର (୧୪) ଏହି ଧାର୍ମିକ ଅନୁଦାରତା ଦୂରୀକରଣ ନିମିତ୍ତ ଯେ ଉଦ୍ଦିଷ୍ଟ କହିବା ବାହୁଲ୍ୟମାତ୍ର । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଶାସକମାନେ ଧର୍ମାନ୍ଧ ହେଲେ ରାଜନୈତିକ ବିପ୍ଳବ ଅବଶ୍ୟମ୍ଭାବୀ । ଏଣୁ ଧାର୍ମିକ ଉଦାରତାହିଁ ସୁସ୍ଥ ରାଜନୈତିକ ପରିବେଶ ସୃଷ୍ଟି ପାଇଁ

(୧୩) ଦାସ, ଡ଼: ହେମନ୍ତକୁମାର –ସାରଳା ଦାସ: ଏକ ଅନ୍ତରଙ୍ଗ ଅଧ୍ୟୟନ (ପ୍ରବନ୍ଧ) ସାରଳା ସୃଷ୍ଟିର ଦିଗ ଦିଗନ୍ତ (ସାରଳା ସାହିତ୍ୟ ସଂସଦ ସମ୍ପାଦିତ, ଓଡ଼ିଶା ବୁକ୍‌ ଷ୍ଟୋର, କଟକ, ୧୯୮୯) ପୃ. ୫୭ ।

(୧୪) ସା: ମ: ଭା: (ବ୍) ମଧ୍ୟ-ପୃ. ୨୨୨-୨୩୫, ସଭା-ପୃ. ୩୫୧-୩୫୨ ଓ ବନ-ପୃ. ୧୨୪

ଏକାନ୍ତ ଅନୁକୂଳ । ଏହା ସାରଳାଙ୍କ ରାଜନୈତିକ ଆଦର୍ଶର ଅନ୍ୟତମ ବୈଶିଷ୍ଟ୍ୟ ଆଭିମୁଖ୍ୟ ।

ରାଜା ନିଜେ ଧର୍ମାନୁରକ୍ତ ନହେଲେ ପ୍ରଜାମାନଙ୍କୁ ଧର୍ମ ପଥରେ ପ୍ରବର୍ତ୍ତାଇବା ସହଜସାଧ୍ୟ ହୋଇ ନ ପାରେ । ଏଥିପାଇଁ ସାରଳାଙ୍କ ମତରେ ରାଜାହିଁ ପ୍ରଥମେ ଯଜ୍ଞାନୁଷ୍ଠାନ, ଅତିଥିସତ୍କାର, ଗୋ-ବ୍ରାହ୍ମଣ ସେବା ପ୍ରଭୃତି ପଥରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିବା ବିଧେୟ । ଅନ୍ୟଥା, ଦାମ୍ଭିକତା ଓ ଅଧାର୍ମିକତା ଯୋଗୁଁ ପ୍ରଖ୍ୟାତଯଶା ନହୁଷ ନୃପତି ସର୍ପଜନ୍ମ ଗ୍ରହଣ କଲାପରି (୧୫) ଘୋର ଦୁର୍ଦ୍ଦଶାର ସମ୍ମୁଖୀନ ହେବା ଆଶଙ୍କା ଏଡ଼ାଇ ଦିଆଯାଇ ନପାରେ । ଧର୍ମକୁ କେବଳ ଆଖି ମିଟିକା ମାରିଦେଲେ ଯଦି କାର୍ଯ୍ୟ ସାଧନ ହୋଇ ପାରୁଥାନ୍ତା, ତେବେ କର୍ଣ୍ଣଙ୍କୁ କବଚକୁଣ୍ଡଳ ଦାନ କରିବାକୁ ପଡ଼ି ନଥାନ୍ତା କିମ୍ବା ଭୀଷ୍ମ ଆଦୌ ଶର ତ୍ୟାଗ କରି ନଥାନ୍ତେ । ଆଶ୍ରିତର ସୁରକ୍ଷା, ବନ୍ଧୁବର୍ଗଙ୍କ ପ୍ରତି ରାଜାର କର୍ତ୍ତବ୍ୟ, ଅଜ୍ଞାନବଶତଃ ସଂଘଟିତ ମନ୍ଦ ବା ପାପ କାର୍ଯ୍ୟ ପାଇଁ ପ୍ରାୟଶ୍ଚିତ୍ତ ବିଧାନ, ଗୋ-ବ୍ରାହ୍ମଣଙ୍କ ତୁଷ୍ଟି ସାଧନ, ଦେବତା ଓ ଗୁରୁଜନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ଓ ସର୍ବୋପରି ପ୍ରଜାନୁରଞ୍ଜନ ରାଜାର ପ୍ରଧାନ କର୍ତ୍ତବ୍ୟ । ଅନ୍ୟଥା, ପ୍ରଜାବୃନ୍ଦ ରାଜ୍ୟଶାସନ ପ୍ରତି ଅଟଳ ଆନୁଗତ୍ୟ ଓ ଭକ୍ତିଭାବ ପ୍ରକଟ କରିବାରେ ପ୍ରତିବନ୍ଧକ ଜନ୍ମିପାରେ ଏବଂ ପରିଣାମରେ ଆଦର୍ଶ ରାଜ୍ୟଶାସନ ବ୍ୟବସ୍ଥା ପରିକଳ୍ପନା ଭଙ୍ଗୁର ହୋଇଯାଇପାରେ ।

ଏ ଦୃଷ୍ଟିରୁ ସାରଳା ଦାସ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ରାଜା ଓ ପ୍ରଜା-ମାନଙ୍କର ଆଚରଣ ବିଧି ସମ୍ପର୍କରେ ବହୁ ସୂଚନା ପ୍ରଦାନ କରିଅଛନ୍ତି । ସମଗ୍ର ମହାଭାରତରେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ରୂପେ ଚର୍ଚ୍ଚିତ । ଏ ବିଷୟରେ ସେ ଓ ସମସାମୟିକ ରାଜନ୍ୟମଣ୍ଡଳୀ ମଧ୍ୟ ଅନବହିତ ନୁହନ୍ତି । କିନ୍ତୁ ଧାର୍ମିକ ଆଦର୍ଶର ପରିପ୍ରସାର ପାଇଁ ଭଗବାନ ଶ୍ରୀକୃଷ୍ଣ କୌଣସିଠାରେ ବିଧିସମ୍ମତ ଆଚରଣ ଉଲ୍ଲଙ୍ଘନ କରିଥିବା ଦେଖାଯାଏ ନାହିଁ । ଗୁରୁଜନମାନଙ୍କ ପ୍ରତି ଭକ୍ତି, ବନ୍ଧୁମାନଙ୍କଠାରେ ସୌହାର୍ଦ୍ଦ୍ୟ, ପରିଜନମାନଙ୍କ ପାଇଁ ସ୍ନେହ, ଦେବତା ଓ ଋଷିମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନରେ ସେ କଦାପି କାର୍ପଣ୍ୟ ପ୍ରକାଶ କରି ନାହାନ୍ତି । ଏପରିକି ସେ ଯେଉଁ-ଠାରେ ଆବଶ୍ୟକତା ଦୃଷ୍ଟିରୁ କୂଟନୀତିର ଆଶ୍ରୟ ନେଇଛନ୍ତି, ସେ କ୍ଷେତ୍ରରେ ମଧ୍ୟ ଧର୍ମାଚାର ଓ ଲୋକାଚାର ପ୍ରତି ସର୍ବଦା ସଜାଗ ରହିଥିବା ଦେଖାଯାଏ । ଉଦାହରଣ ସ୍ୱରୂପ ଏଠାରେ ଦୁର୍ଯ୍ୟୋଧନର ଶେଷ ସମର ପ୍ରସଙ୍ଗକୁ ନିଆଯାଇପାରେ ।

---

(୧୫) ସା: ମ: ଭା: (ସ) ବନ-ପୃ. ୬୬-୭୮

ଭୀମର ସିଂହନାଦରେ ଦୁର୍ଯ୍ୟୋଧନ ଯେତେବେଳେ ବ୍ୟାଘ୍ର ସରୋବର ମଝିରୁ ଆସି ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇଅଛି, ସେତେବେଳେ ଶ୍ରୀକୃଷ୍ଣ ତାକୁ କହିଛନ୍ତି ଯେ ସେ ଯାହା ସହିତ ଯୁଦ୍ଧ କରିବାକୁ ଚାହେଁ, ତାକୁ ଆହ୍ବାନ କରୁ। ଦୁର୍ଯ୍ୟୋଧନ ସେତେବେଳେ ସମର-ଧର୍ମ ଅନୁଯାୟୀ ରାଜାଙ୍କ ସହିତ ଯୁଦ୍ଧ କରିବା ପାଇଁ ଚାହିଁଥିଲ। ଶ୍ରୀକୃଷ୍ଣ ଜାଣନ୍ତି ଭୀମଙ୍କ ବ୍ୟତୀତ ଅନ୍ୟ କେହି ଦୁର୍ଯ୍ୟୋଧନକୁ ପରାସ୍ତ କରିବା ସମ୍ଭବ ନୁହେଁ । ତେଣୁ ସେ ଦୁର୍ଯ୍ୟୋଧନର ସମସ୍ତ ପାପକର୍ମକୁ ତା ନିକଟରେ ପ୍ରକାଶ କରିଥିଲେ ଏବଂ ଭୀମଙ୍କ ସହିତ ଅନ୍ୟାୟ ଯୁଦ୍ଧ ପାଇଁ ଅନୁମତି ଦେଇନାହାନ୍ତି । ପ୍ରଥମେ ଯେ ଭୀମଙ୍କ ମସ୍ତକରେ ରାଜମୁକୁଟ ବାନ୍ଧି ତାଙ୍କ ପାଦତଳେ ପ୍ରଣିପାତ କରିବା ପରେ ହିଁ ଭୀମ ଦୁର୍ଯ୍ୟୋଧନଙ୍କ ସମର ସଂଘଟିତ ହୋଇଛି । (୧୬) ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ନ୍ୟାୟ ନୀତି ଲଙ୍ଘନ ନ କରିବା ହିଁ ଶ୍ରେଷ୍ଠ ରାଜଧର୍ମ ।

ସେହିପରି ରାଜା ନିର୍ବିଚାରରେ ଅନ୍ୟ କଥାରେ ଭାସିଯାଇ କୌଣସି କାର୍ଯ୍ୟ କରିବା ଅନୁଚିତ । ମନେହୁଏ ସାରଳା ଦାସ ନାରଦଙ୍କ ଚରିତ୍ର ମାଧ୍ୟମରେ ଏହି ସତ୍ୟଟିକୁ ହିଁ ପ୍ରତିଷ୍ଠା କରିବା ପାଇଁ ଚାହିଁଛନ୍ତି । ମହାଭାରତର ସବୁଠି କଳିହର ସୂତ୍ରଧର ରୂପେ ନାରଦଙ୍କୁ ହିଁ ଅବତାରଣା କରାଯାଇଛି । ନୀଳେନ୍ଦ୍ରୀହରଣ ଅବସରରେ ନାରଦଙ୍କ କଥାରେ ପଡ଼ି ହରି ହର ଏକ ପ୍ରଳୟଙ୍କର ଅବସ୍ଥା ସୃଷ୍ଟି କରିଛନ୍ତି । ଅବଶ୍ୟ ବ୍ରହ୍ମାଙ୍କ ହସ୍ତକ୍ଷେପ ଫଳରେ ଏକ ସମାଧାନର ପନ୍ଥା ଉଦ୍ଭାବିତ ହୋଇପାରିଛି । (୧୭) କିନ୍ତୁ ସତ୍ୟାସତ୍ୟ ପରୀକ୍ଷା ନକରି ସରଳ ଭାବେ ଅନ୍ୟ କଥାରେ ବିଶ୍ୱାସ କଲେ କିପରି ବିପର୍ଯ୍ୟନକ ଅବସ୍ଥା ସୃଷ୍ଟି ହୁଏ, ଏହା ଏହି ଆଖ୍ୟାନରୁ ସୁସ୍ପଷ୍ଟ ।

ଏଭଳି ବହୁ ଆଖ୍ୟାନ ମାଧ୍ୟମରେ ସାରଳା ରାଜନୈତିକ ଆଦର୍ଶକୁ ସୁସମୃଦ୍ଧ ଓ ମୂର୍ତ୍ତିମନ୍ତ କରିବା ଲକ୍ଷ୍ୟରେ ତାର ମୂଳପିଣ୍ଡ ସ୍ୱରୂପ ବ୍ୟକ୍ତି ଓ ସମାଜଜୀବନକୁ ବିଶୁଦ୍ଧ ଆଧ୍ୟାତ୍ମିକ ରସରେ ରସାଣିତ କରିବାକୁ ଶ୍ରେୟଃ ମନେ କରିଛନ୍ତି । କେବଳ ଏତିକି ନୁହେଁ, ରାଜ୍ୟର ଆର୍ଥିକ ବ୍ୟବସ୍ଥା ତଥା ଅର୍ଥନୀତି ମଧ୍ୟ ଧର୍ମାନୁମୋଦିତ ହେବା ନିତାନ୍ତ ବାଞ୍ଛନୀୟ । (୧୮) ଅର୍ଥ ଯେ ସମସ୍ତ ପ୍ରକାର ଅନର୍ଥର ମୂଳହେତୁ

---

(୧୬) ସା: ମ: ଭା: (ରା)—ଗଦା-ପୃ. ୧୬-୧୭

(୧୭) —ଏଜନ— ମଧ୍ୟ-ପୃ. ୨୧୧-୨୩୭

(୧୮) ଗୌରୀଶଙ୍କର ଓଝା—ରାଜନୀତି ରତ୍ନାକର (ପ୍ରସ୍ତାବନା)-ପୃ. ୧

ତଥା ଆର୍ଥିକ କ୍ଷେତ୍ରରେ ଦୁର୍ବଳ ଓ ସବଳ ଶ୍ରେଣୀର ସୁସମନ୍ୱିତ ବିକାଶ ଦିଗରେ ଏକ ପ୍ରତିବନ୍ଧକ, ଏହା ସର୍ବବାଦୀସମ୍ମତ । ଆର୍ଥିକ ବ୍ୟବସ୍ଥାକୁ ଧର୍ମାନୁକୂଳ କରାଗଲେ ଆର୍ଥିକ ସାମ୍ୟ ପ୍ରତିଷ୍ଠା ଯେ ସୁଦୂର ପ୍ରତିହତ, ଏହା ସାରଳା ସ୍ପଷ୍ଟ ହୃଦୟଙ୍ଗମ କରିଥିଲେ ଏବଂ ତଜ୍ଜନିତ ରାଜନୈତିକ ଅସ୍ଥିରତା ଓ ଅନିଶ୍ଚିତତା ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ ଥିଲେ । ତେଣୁ କୃଷିର ଉନ୍ନତି, କୃଷକକୁଳର ସୁରକ୍ଷା, ଗୋଶାଳା ତଥା ଗୋପାଳମାନଙ୍କ ପ୍ରତି ଉଦାରତା, ଅନୁକୂଳ ଭାବେ ଜଳବୃଷ୍ଟି ଲାଗି ଯଜ୍ଞାନୁଷ୍ଠାନ ଇତ୍ୟାଦି ରାଜକର୍ତ୍ତବ୍ୟ ଉପରେ ସାରଳା ପ୍ରାଧାନ୍ୟ ଆରୋପ କରିଛନ୍ତି ।

ସାରଳା ଦାସଙ୍କ ବ୍ୟାପକ ଆଧ୍ୟାତ୍ମିକ ଚିନ୍ତାଧାରା ସମ୍ପର୍କରେ ଯେଉଁସବୁ ଆଲୋଚନା କରାଗଲା, ସେଥିରୁ ପ୍ରତିପାଦିତ ହୁଏ ଯେ ସେ କୌଣସି ପ୍ରକାର ଧର୍ମଗତ ଭେଦଭାବ ବା ଧାର୍ମିକ ବିଦ୍ୱେଷ ତଥା ଧର୍ମ-ସଂଘର୍ଷକୁ ପ୍ରଶ୍ରୟ ନ ଦେବାପାଇଁ ସେ ସର୍ବଧର୍ମ ସମନ୍ୱୟ ମତବାଦ ପ୍ରଚାର କରିବା ଦିଗରେ ବ୍ରତୀ ହୋଇଛନ୍ତି ଏବଂ ଜଗନ୍ନାଥ ତତ୍ତ୍ୱ ମାଧ୍ୟମରେ ଏକ ନୂତନ ସାର୍ବଜନୀନ ଧର୍ମାଦର୍ଶର ସୂଚନା ପ୍ରଦାନ କରିଛନ୍ତି । ଆଧ୍ୟାତ୍ମିକ ସଂହତି ଓ ସହନଶୀଳତା ଯେ ସୃଷ୍ଟିର ମୂଳହେତୁ ତଥା ସାମାଜିକ ଉତ୍କର୍ଷର ମୁଖ୍ୟ ଆଧାର ଏବଂ ଏହା ବିନା ଯେ ସମସ୍ତ ରାଜନୈତିକ ଆଦର୍ଶ ଓ ଶାସନ ବ୍ୟବସ୍ଥା ନିରର୍ଥକ, ଏହା ସେ ସ୍ପଷ୍ଟ ଉପଲବ୍ଧି କରିଥିଲେ । ତାଙ୍କ ମତରେ, ଶାସକର ଧର୍ମବଳରେ ହିଁ ପ୍ରଜାକୁଳର ଉନ୍ନତି ନିର୍ଭରଶୀଳ । ଏଣୁ ଉନ୍ନତ ଜୀବନ ତଥା ସୁସ୍ଥ ସମାଜ ଗଠନ ଲକ୍ଷ୍ୟରେ ହିଁ ତାଙ୍କ ରାଜନୈତିକ ଆଦର୍ଶ ରୂପାୟିତ ହୋଇଅଛି । ସେ ପୂର୍ଣ୍ଣମାତ୍ରାରେ ହୃଦୟଙ୍ଗମ କରିଛନ୍ତି ଯେ ଏକ ଧର୍ମଭିତ୍ତିକ ସଦାଚାରନିଷ୍ଠ ସମାଜରେ ହିଁ କେବଳ ଆଦର୍ଶ ରାଜନୈତିକ ବ୍ୟବସ୍ଥା ଦୃଢ଼ ଓ ଶୃଙ୍ଖଳିତ ଭାବରେ କାର୍ଯ୍ୟକାରୀ ହୋଇପାରିବ ।

□ □ □

## ପଞ୍ଚମ ପରିଚ୍ଛେଦ

---

# ସାରଳାଙ୍କ ରାଜନୈତିକ ଆଦର୍ଶ ଓ ସମକାଳୀନ ସାମାଜିକ ଚିତ୍ର

ବିଳିଷ୍ଟ ରାଜନୈତିକ ଆଦର୍ଶର ବିକାଶ ନିମିତ୍ତ ଏକ ସୁସ୍ଥ ସାମାଜିକ ବାତାବରଣର ଆବଶ୍ୟକତା ନିତାନ୍ତ ଅପରିହାର୍ଯ୍ୟ । ଜନସାଧାରଣଙ୍କର ସୁଖଶାନ୍ତି ରକ୍ଷା, ସମାଜସେବା ତଥା ସମାଜରେ ନ୍ୟାୟ ଓ ଶୃଙ୍ଖଳା ପ୍ରତିଷ୍ଠା ହିଁ ରାଜନୈତିକ ବ୍ୟବସ୍ଥାର ମୁଖ୍ୟ ଲକ୍ଷ୍ୟ । ବ୍ୟକ୍ତିର ହିତସାଧନ, ଜନତାର ସାମୂହିକ ମଙ୍ଗଳବିଧାନ ଏବଂ ରାଷ୍ଟ୍ରୀୟ ତଥା ବିଶ୍ୱସଭ୍ୟତାର ବିକାଶ ହିଁ ରାଜନୀତିର ଚରମ ଉଦ୍ଦେଶ୍ୟ । ଏଥିପାଇଁ ରାଜନୀତିବିଜ୍ଞାନର ଜନକ ଆରିଷ୍ଟୋଟଲଙ୍କ ସମୟରୁ ବ୍ୟକ୍ତିକୁ ଏକ ସାମାଜିକ ଜୀବ ରୂପେ ଗ୍ରହଣ କରାଯାଇ ବ୍ୟକ୍ତି ଓ ସମାଜକୁ ହିଁ କେନ୍ଦ୍ର କରି ରାଜନୀତିର ସ୍ୱରୂପ ନିର୍ଣ୍ଣୀତ ହୋଇଅଛି । ବିଶେଷତଃ ଭାରତୀୟ ରାଜନୈତିକ ବିବର୍ତ୍ତନ ଧାରାରୁ ସୂଚନା ମିଳେ ଯେ ଆଧ୍ୟାତ୍ମିକ ଜୀବନ ପ୍ରବାହ ଓ ସାମାଜିକ ଚେତନା ସ୍ରୋତର ସମାନ୍ତରାଳ ନିରବଚ୍ଛିନ୍ନ ଗତିଶୀଳତା ଯୋଗୁଁ ହିଁ ଏଠାରେ ରାଜନୈତିକ ଶୃଙ୍ଖଳା ଓ ସ୍ଥିରତା ଅକ୍ଷୁଣ୍ଣ ରହିପାରିଛି ଏବଂ ଜାତୀୟ ସଭ୍ୟତା ଓ ସଂସ୍କୃତିର ପ୍ରଗତି ପଥ ଅବରୁଦ୍ଧ ହୋଇନାହିଁ । ବହୁ ପାଶ୍ଚାତ୍ୟ ସଭ୍ୟତା ଯେଉଁଳି ଉତ୍ଥାନ ପତନ ମଧ୍ୟ ଦେଇ ଗତି କରିଛି, ଭାରତୀୟ ସଭ୍ୟତା ଓ ସଂସ୍କୃତି ସେଭଳି ଗୁରୁତର ସଙ୍କଟ ସମ୍ମୁଖୀନ ହେବାକୁ ପଡ଼ିନାହିଁ । ଏଠାରେ ସମୟର ପରିବର୍ତ୍ତନକ୍ରମେ ରାଜନୀତିର ସ୍ୱରୂପ ବା ବାହ୍ୟରୂପ ପରିବର୍ତ୍ତିତ ହୋଇଥିଲେ ହେଁ ରାଜନୈତିକ ଆଦର୍ଶର ଅନ୍ତର୍ନିହିତ ଆଧ୍ୟାତ୍ମିକ ଚେତନା ଓ ସାମାଜିକ ମୂଲ୍ୟବୋଧରେ ବିଶେଷ ପରିବର୍ତ୍ତନ ଘଟିନାହିଁ । ସାରଳାଙ୍କ ରାଜନୈତିକ ଆଦର୍ଶର ମୂଲ୍ୟାଙ୍କନ ମୂଲ୍ୟାୟନ ନିମିତ୍ତ ତାଙ୍କ ଧର୍ମଧାରଣାର ଅନୁଶୀଳନ ଯେତିକି ଉପଯୋଗୀ, ସାମାଜିକ ଦୃଷ୍ଟିଭଙ୍ଗୀର ବିଶ୍ଳେଷଣ ମଧ୍ୟ ସେତିକି ପ୍ରୟୋଜନ । ଅବଶ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ଯେ ସାରଳାଦାସ ଆଦର୍ଶ ସମାଜର ଚିତ୍ର ଅଙ୍କନ କଲାବେଳେ କେତେକ ସ୍ଥଳେ (ଜ୍ୟୋତିଷ ଓ ଶକୁନ ଶାସ୍ତ୍ର ପ୍ରତି ଗୁରୁତ୍ୱ,

ସ୍ତ୍ରୀ ରଜସ୍ୱଳା ଲକ୍ଷଣ, ଯୌତୁକ ପ୍ରଥା ଇତ୍ୟାଦି) ପାରଂପରିକ ସ୍ଥିର ପ୍ରଥା ଯେଉଁଠି ଦୃଢ ସମର୍ଥନ ଲାଭ କରିଛନ୍ତି, ତାହା ରାଜନୈତିକ ଆଦର୍ଶ ଦୃଷ୍ଟିରୁ ଆପାତତଃ ଅପ୍ରାସଙ୍ଗିକ ମନେ ହୋଇପାରେ; କିନ୍ତୁ ବ୍ୟକ୍ତିର ସାମାଜିକ ଆଚରଣ ତଥା ରାଜନୈତିକ ଆନୁଗତ୍ୟକୁ ନିୟନ୍ତ୍ରଣ କରି ଏକ ଶୃଙ୍ଖଳିତ ଜୀବନଯାପନ ପ୍ରଣାଳୀ ନିରୂପଣ କରିବା କ୍ଷେତ୍ରରେ ଏ ସବୁର ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ । ଏହି ଦୃଷ୍ଟିରୁ ଏଠାରେ ସାରଳାଙ୍କ ସମକାଳୀନ ସାମାଜିକ ପରିବେଶର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଉପସ୍ଥାପନ କରିବା ଆମର ଲକ୍ଷ୍ୟ ।

ଦୈନନ୍ଦିନ ସମାଜ-ଜୀବନ ଓ ଚଳଣିର ପ୍ରାଞ୍ଜଳ ବିବରଣୀ ସାରଳା ମହାଭାରତରେ ଯେଉଁଳି ନିପୁଣ ଓ ନିଖୁଣ ଭାବେ ଚିତ୍ରଣ କରାଯାଇଛି, ସେଥିରୁ ସାରଳା ଦାସଙ୍କ ଗଭୀର ଜୀବନ-ଜିଜ୍ଞାସା, ତୀବ୍ର ସତ୍ତାର ମନୋବୃତ୍ତି ଓ ଉନ୍ନତ ନୈତିକ ଚେତନାର ବଳିଷ୍ଠ ପରିଚୟ ମିଳେ । ବ୍ୟକ୍ତିର ଜନ୍ମଠାରୁ ତାର ମୃତ୍ୟୁ ଓ ଶ୍ରାଦ୍ଧକ୍ରିୟା ପର୍ଯ୍ୟନ୍ତ ଯେତେସବୁ ସାମାଜିକ କାର୍ଯ୍ୟକଳାପ ରହିଛି, ତାହା ଯେ କଲ୍ୟାଣବୃତ୍ତି ବୃତ୍ତର ପରିସରଭୁକ୍ତ, ଏହାର ଦ୍ୱିରୁକ୍ତି ଅନାବଶ୍ୟକ । ଏ ସବୁରୁ କିଛି ହେଲେ ସାରଳାଙ୍କ ସନ୍ଧାନୀ ଦୃଷ୍ଟିରୁ ବାଦ ପଡିନାହିଁ । ଜନ୍ମୋତ୍ସବ, ଶିକ୍ଷା ବ୍ୟବସ୍ଥା, ରଜସ୍ୱଳା ବିଧି, ବିବାହ ପଦ୍ଧତି, ଯୌନଚର୍ଯ୍ୟା ନିୟମ, ବେଶଭୂଷା ପରିଧାନ, ପାକବିନ୍ୟାସ, ପର୍ବପର୍ବାଣି ପାଳନ, ଦେବୋପାସନା, ଓଷା ବ୍ରତ, ତୀର୍ଥାଟନ, ସାମାଜିକ ଚଳଣି କରଣି, ଆଦିର ବ୍ୟବହାରବିଧି ପ୍ରତ୍ୟେକ ବିଷୟରେ ସାରଳାଙ୍କ ଗଭୀର ଅନୁଧ୍ୟାନ ଓ ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ବିଶେଷ ପ୍ରଣିଧାନଯୋଗ୍ୟ । ଏହା ବ୍ୟତୀତ, ଜ୍ୟୋତିଷ, ତନ୍ତ୍ର, ଯୋଗାଭ୍ୟାସ, ଚିକିତ୍ସା ବିଧାନ, ପଶୁପାଳନ, କୃଷି ଓ ବାଣିଜ୍ୟ ନିୟନ୍ତ୍ରଣ, ବିଭିନ୍ନ ବୃତ୍ତି ଓ ସଂସ୍କୃତିର ମହତ୍ତ୍ୱ ପ୍ରତିପାଦନ ଦୃଷ୍ଟିରୁ ସାରଳା ମହାଭାରତ ପ୍ରକୃତରେ ଏକ ବିଶ୍ୱକୋଷ ସଦୃଶ । (୧)

ବ୍ୟକ୍ତି ହିଁ ସମାଜର ମାନଦଣ୍ଡ । ବ୍ୟକ୍ତି ଜୀବନର ଶୁଦ୍ଧତା ଉପରେ ସାମାଜିକ ଉନ୍ନତି ନିର୍ଭରଶୀଳ । ଏଥିପାଇଁ ଅତି ପ୍ରାଚୀନ କାଳରୁ ଭାରତୀୟ ମନୀଷୀମାନେ ବ୍ୟକ୍ତି-ଜୀବନର ଶୁଦ୍ଧତା ଉପରେ ଗୁରୁତ୍ୱ ଆରୋପ କରି ଆସିଛନ୍ତି । ସ୍ମୃତିଶାସ୍ତ୍ର-ମାନଙ୍କରେ ଏଥିଲାଗି ପ୍ରାୟ ଚାଳିଶ ଗୋଟି (ଗର୍ଭାଧାନ, ପୁଂସବନ, ନାଭିଚ୍ଛେଦନ,

---

(୧) ସାମନ୍ତରାୟ, ଡକ୍ଟର ନଟବର—ମୁଁ କପର ଗବେଷଣା କଲି

(ବାଣୀଭବନ, ଭୁବନେଶ୍ୱର, ୧୯୭୬) ପୃ-୫୧

ଚୂଡ଼ାକରଣ, ନାମକରଣ, ଅନ୍ନପ୍ରାଶନ ଇତ୍ୟାଦି) ସଂସ୍କାରଦ୍ୱାରା ବ୍ୟକ୍ତିକୁ ଏକ ବିଶୁଦ୍ଧ ସାମାଜିକ ପ୍ରାଣୀରେ ପରିଣତ କରିବା ପାଇଁ ବ୍ୟବସ୍ଥା କରାଯାଇଅଛି । ଗର୍ଭାଧାନ ଠାରୁ ଅନ୍ତ୍ୟେଷ୍ଟି କ୍ରିୟା ପର୍ଯ୍ୟନ୍ତ ବିଭିନ୍ନ ସଂସ୍କାର ଦ୍ୱାରା ବ୍ୟକ୍ତିର ଶାରୀରିକ ଓ ମାନସିକ ବିକାଶ ସାଧନ ହିଁ ଏହାର ମୂଳ ଲକ୍ଷ୍ୟ । ଏକ ଉନ୍ନତ ରାଷ୍ଟ୍ର ଗଠନରେ ଏହି ସଂସ୍କାରପୂତ ବ୍ୟକ୍ତିର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସାରଳା ଦାସ ମଧ୍ୟ ଅସ୍ୱୀକାର କରି-ନାହାନ୍ତି । ଏଥିପାଇଁ ସେ ନିଜସ୍ୱ ଗତିରେ ବ୍ୟକ୍ତି ଓ ସମାଜ ଉଭୟର ଉନ୍ନତି ବିଧାନ ନିମିତ୍ତ କେତେକ ବିଧିବିଧାନର ଉଲ୍ଲେଖ କରିଯାଇଛନ୍ତି । ଏ ସତ୍ରରୁ ସାରଳାଙ୍କ ସାମାଜିକ ଆଦର୍ଶ ସମ୍ବନ୍ଧରେ ଏକ ସ୍ପଷ୍ଟ ଧାରଣା କରାଯାଇ ପାରିବ । ଗର୍ଭାଧାନ, ପୁଂସବନ ଓ ସୀମନ୍ତୋନ୍ନୟନ ପରି ଜନ୍ମପୂର୍ବର ବିଧିବିଧାନଗୁଡ଼ିକ ଉପରେ ଅଧିକ ଗୁରୁତ୍ୱ ଆରୋପ କରିବା ଅପେକ୍ଷା ଶିଶୁ ଭୂମିଷ୍ଠ ହେବା ପରଠାରୁ ତାକୁ ବିଭିନ୍ନ ସଂସ୍କାର ଦ୍ୱାରା ଶୁଦ୍ଧ କରିବା ପାଇଁ ସାରଳା ଦାସ ବିଶେଷ ଧ୍ୟାନ ଦେଇଛନ୍ତି । ତାଙ୍କ ସୃଷ୍ଟିରେ ଜାତସଂସ୍କାର ଠାରୁ ହିଁ ବିଶିଷ୍ଟ ବିଧିବିଧାନଗୁଡ଼ିକର ଉଲ୍ଲେଖ ଅଧିକ ମାତ୍ରାରେ ଦୃଷ୍ଟିଗୋଚର ହୁଏ ।

## ଜାତ ସଂସ୍କାର

ସାରଳାଙ୍କ ସମୟର ପରଂପରାସମ୍ମତ ପିତୃତାନ୍ତ୍ରିକ ପରିବାର ତଥା ପୁରୁଷ ପ୍ରଧାନ ସମାଜରେ ଅପୁତ୍ରିକ ରହିବା ଘୋର ପାପ ବିବେଚିତ ହେଉଥିଲା । ଏଥିପାଇଁ ସନ୍ତାନ ଜନ୍ମ ଘଟଣାକୁ ଏକ ସୌଭାଗ୍ୟ ରୂପେ ଗ୍ରହଣ କରାଯାଉଥିଲା । ଜନ ସାଧାରଣଙ୍କ ମନରେ ଅନ୍ଧବିଶ୍ୱାସ ଜମାଟ ବାନ୍ଧି ରହିଥିଲା ଯେ ସନ୍ତାନ ବିନା ସମସ୍ତ ଧାର୍ମିକ କ୍ରିୟାନୁଷ୍ଠାନ ବିଫଳ ହୁଏ, ବ୍ୟକ୍ତିକୁ ସଦ୍‌ଗତି ମିଳେ ନାହିଁ ଏବଂ ତାକୁ ପୁତ୍ ନାମକ ନର୍କରେ ବାସ କରିବାକୁ ହୁଏ । ଏପରିକି, ଅପୁତ୍ରିକମାନଙ୍କୁ ଗ୍ରାମରେ ବସ ବାସ କରିବାକୁ ଦିଆ ନ ଯାଉଥିବା ମଧ୍ୟ ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ । (ଶିବପୁରରୁ ଏଥିପାଇଁ ବିଷ୍ଣୁକର ପଣ୍ଡାଙ୍କୁ ବହିଷ୍କାର କରିଦିଆ ଯାଇଥିଲା ଏବଂ ପଞ୍ଚପାଣ୍ଡବଙ୍କ ଦର୍ଶନ ଲାଭ ପରେ ବ୍ରାହ୍ମଣୀ ଗର୍ଭବତୀ ହେବାରୁ ଗ୍ରାମବାସୀ ତାଙ୍କୁ ପୁଣି ଡ଼ାକି ଆଣି ରାଜପଦରେ ଅଭିଷିକ୍ତ କରିଛନ୍ତି) । (୨) ଏଥିଯୋଗୁଁ ସାରଳା ମହାଭାରତର ବିଭିନ୍ନ ସ୍ଥଳେ ପୁତ୍ର ସନ୍ତାନ ପ୍ରାପ୍ତି ଉପରେ ଅଧିକ ଗୁରୁତ୍ୱ ଆରୋପ

---

(୨) ସା: ମ: ଭ: (ରା) ଆଦ୍ୟ-ପୃ. ୨୨୯-୨୨୮

କରାଯାଇଛି । ସାରଳା ଦାସ ସନ୍ତାନ ପ୍ରାପ୍ତି ନିମିତ୍ତ ଷଟ୍‌କର୍ମଶାସ୍ତ୍ର ବିଧାନ ବା ଷଡ଼୍‌ବିଧ ଉପାୟର ସୂଚନା ପ୍ରଦାନ କରିଛନ୍ତି । (୩)

ଏହି ଦୃଷ୍ଟିରୁ ସନ୍ତାନର ଜନ୍ମୋତ୍ସବକୁ ଅତି ଆନନ୍ଦ ଓ ଆଡ଼ମ୍ବର ସହକାରେ ପାଳନ କରାଯାଉଥିଲା । ଜ୍ୟୋତିଷୀମାନଙ୍କ ଦ୍ୱାରା ଲଗ୍ନ ନିରୂପଣ, ଦେବ ମନ୍ଦିରରେ ଘୃତ-ପ୍ରଦୀପ ପ୍ରଜ୍ୱଳନ, ପ୍ରସୂତି ଗୃହରେ ପୁରନାରୀମାନଙ୍କର ଦନ୍ତାପନା ଓ ମଙ୍ଗଳାରୋପଣ, ବେଦବିଦ୍ ପଣ୍ଡିତମାନଙ୍କ ଦ୍ୱାରା ଆଶୀର୍ବଚନ ଉଚ୍ଚାରଣ, ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ସୁବର୍ଣ୍ଣ ମୁଦ୍ରା ପ୍ରଦାନ ପ୍ରଭୃତି ବିଧିବିଧାନ ଉପରେ ସାରଳା ଗୁରୁତ୍ୱ ଆରୋପ କରିଥିବା ଲକ୍ଷ୍ୟ କରାଯାଏ । ଏହା ବ୍ୟତୀତ, ଏହି ଅବସରରେ ମଙ୍ଗଳା ଓ ଷଷ୍ଠୀ ଦେବୀଙ୍କ ପୂଜା ସମ୍ପାଦନ ଏବଂ ମୁନିଋଷିମାନଙ୍କୁ ଫଳାହାରରେ ଆପ୍ୟାୟିତ କରି ତାଙ୍କର କଲ୍ୟାଣ କାମନା କରିବା ଆବଶ୍ୟକ ବିବେଚିତ ହୋଇଛି । ଶିଶୁର ଜନ୍ମକାଳୀନ ଅନ୍ୟାନ୍ୟ ବିଧିବିଧାନ ମଧ୍ୟରେ ନାଭିଚ୍ଛେଦନ, ସାନ୍ଧ୍ୟ ଅଗ୍ନି ପ୍ରଜ୍ୱଳନ, ତୁଳାଗ୍ରରେ ଶିଶୁକୁ କ୍ଷୀରଦାନ, ମାତାର ଗଣ୍ଡୂଷ ଭକ୍ଷଣ, ପଞ୍ଚୁଆତି, ଷଠୀପୂଜା, ଅଠୁଆଙ୍ଗ ବା ଉଠିଆଙ୍ଗ ଓ ଏକୋଇଶିଆ ଦିନ ଦୋଳାରୋହଣ ଓ ନାମକରଣ ବିଶେଷ ଉଲ୍ଲେଖଯୋଗ୍ୟ । ରାଶି ଓ ନକ୍ଷତ୍ର ଅନୁଯାୟୀ ନାମକରଣ ପ୍ରଥା ଉପରେ ସାରଳା ବିଶେଷ ଗୁରୁତ୍ୱ ଦେଇଛନ୍ତି । (ଯଥା—ରୋହିଣୀ ବୃଷ ରାଶିରେ ଚିତ୍ରାଙ୍ଗଦା-ଅର୍ଜ୍ଜୁନଙ୍କ ପୁତ୍ର ଜନ୍ମ ହୋଇଥିବାରୁ ତାର ନାମ ବଭ୍ରୁବାହନ) । (୪) ଏହା ବ୍ୟତୀତ, ସାରଳାଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ତତ୍କାଳୀନ ସମାଜରେ ପୁତ୍ରଜନ୍ମ ଉତ୍ସବ ଅତି ଆଡ଼ମ୍ବର ସହକାରେ ପାଳିତ ହେଉଥିଲେ ହେଁ କନ୍ୟା ଜନ୍ମରେ ଅନାଦର ଗ୍ରହଣୀୟ ଦେଖି ଯାଉ ନଥିଲା । ବରଂ ବହୁ ପୁତ୍ର ପରେ କନ୍ୟାଟିଏ ପାଇବା ପାଇଁ ପିତାମାତା ଆଗ୍ରହୀ ହୋଇ ଉଠୁଥିଲେ । (୫)

---

(୩) ସାରଳା ବର୍ଣ୍ଣିତ ପୁତ୍ର ପ୍ରାପ୍ତିର ଷଡ଼୍‌ବିଧ ଉପାୟ ହୋଉଛି (୧) ପୁତ୍ରେଷ୍ଟି ଯଜ୍ଞ ସମ୍ପାଦନ, (୨) ସ୍ୱାମୀ ଔରସରୁ ଅନ୍ୟ ସ୍ତ୍ରୀ ଠାରୁ ପୁତ୍ର ଉତ୍ପାଦନ, (୩) ତୀର୍ଥ କ୍ଷେତ୍ରରେ ଭୂମି ସ୍ୱର୍ଣ୍ଣାଦି ଦାନ, (୪) ସମ୍ପୂର୍ଣ୍ଣ ରାମାୟଣ ଶ୍ରବଣ, (୫) ପର ସନ୍ତାନ ପାଳନ ଓ (୬) ସ୍ୱାମୀର ଅନୁମତି ନେଇ ପରପୁରୁଷ ସହିତ ରମଣ ( ସା: ମ: ଭା: (ରା)—ଆଦ୍ୟ-ପୃ. ୪୯ ଓ ୯୨ )

(୪) ସା: ମ: ଭା: (ରା) ଆଦ୍ୟ-ପୃ. ୫୮-୫୯

(୫) —ଏଜନ— ଆଦ୍ୟ-ପୃ: ୨୧୦ ଓ ମଧ୍ୟ-ପୃ. ୩୬୯

ଜାତସଂସ୍କାର ପରେ ସନ୍ତାନ ସନ୍ତତିଙ୍କୁ ସମୁଚିତ ଶିକ୍ଷାପ୍ରଦାନ କରିବା ଥିଲା ପିତାମାତାଙ୍କର ଏକ ନୈତିକ ତଥା ସାମାଜିକ ଦାୟିତ୍ୱ । ଏଥିପାଇଁ ସେମାନେ ଉପଯୁକ୍ତ ଗୁରୁଙ୍କର ସନ୍ଧାନ କରି ପୁତ୍ର କନ୍ୟାମାନଙ୍କର ଶିକ୍ଷା ବ୍ୟବସ୍ଥା କରୁଥିଲେ । ପାଣ୍ଡୁ ଓ କୌରବ ପୁତ୍ରମାନଙ୍କର ଶିକ୍ଷା ଗ୍ରହଣ ବର୍ଣ୍ଣନା ପ୍ରସଙ୍ଗରେ ସାରଳା ଦାସ ମୂଳ ମହାଭାରତର ଅନୁସରଣ କରିବା ପାଇଁ ବାଧ୍ୟ ହୋଇଥିବାରୁ ତାଙ୍କ ସମସାମୟିକ ଓଡ଼ିଶାରେ ପ୍ରଚଳିତ ଶିକ୍ଷାଧାରାର ବିସ୍ତୃତ ପରିଚୟ ତା ମଧ୍ୟରୁ ଆହରଣ କରିବା ସମ୍ଭବ ହୋଇ ପାରୁନାହିଁ । ତଥାପି, ସେହି ପ୍ରସଙ୍ଗ ଓ ଅନ୍ୟାନ୍ୟ ସ୍ଥଳରେ ଶିକ୍ଷାଦାନ ଓ ଶିକ୍ଷା ଗ୍ରହଣ ପ୍ରଣାଳୀର ଯେଉଁ ମୌଳିକ ବର୍ଣ୍ଣନା ସାରଳା ମହାଭାରତରେ ଦେଖିବାକୁ ମିଳେ ସେଥିରୁ ସାରଳାକାଳୀନ ଓଡ଼ିଶାର ଶିକ୍ଷାବ୍ୟବସ୍ଥା ସମ୍ପର୍କରେ କିଛି ସୂଚନା ମିଳିଥାଏ ।

**ଶିକ୍ଷା ବ୍ୟବସ୍ଥା**

ସଞ୍ଜୟ, ବ୍ୟାସଦେବ, ଲୋକେଶ୍ୱର, ପରଶୁରାମ, କାଶୀପତି, ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ, ଶାନ୍ତିପନି ଓ ବଳରାମ ପ୍ରମୁଖ ଚରିତ୍ର ମାଧ୍ୟମରେ ସାରଳା ଅତି ପ୍ରାଞ୍ଜଳ ଭାବେ ଶାସ୍ତ୍ରବିଦ୍ୟା, ଅସ୍ତ୍ରବିଦ୍ୟା, ଧନୁର୍ବିଦ୍ୟା, ଗଦାବିଦ୍ୟା, ମଲ୍ଲବିଦ୍ୟା, ମନ୍ତ୍ରବିଦ୍ୟା, ତନ୍ତ୍ରବିଦ୍ୟା, ଯୋଗବିଦ୍ୟା, ଅକ୍ଷର ଶିକ୍ଷା, ଭାଷା ଶିକ୍ଷା, ପରିକଳ୍ପା, ଓଡ଼ାଙ୍କ, ମିଶାଣ, ଫେଡ଼ାଣ, ଗୁଣନ, ହରଣ ପ୍ରଭୃତି ସେ ସମୟରେ ପରିକଳ୍ପିତ ପାଠ୍ୟକ୍ରମର ସୂଚନା ଦେଇଛନ୍ତି । ଏହା ବ୍ୟତୀତ, ବେଦ, କର୍ମକାଣ୍ଡ, ପୁରାଣ, ଜ୍ୟୋତିଷ, ଯୋଗ, ବ୍ରହ୍ମ, ଗାରୁଡ଼, ଛେଦ, ଭେଦ, ତନ୍ତ୍ର, ମନ୍ତ୍ର, ଆୟୁର୍ବେଦ, ଗୋଚିକିତ୍ସା, ଅଶ୍ୱ ଚିକିତ୍ସା, ନୌକିକା ଚିକିତ୍ସା, ସ୍ତମ୍ଭନ, ମୋହନ, ବଶ୍ୟ, ଉଚ୍ଚାଟନ, ଝାଡ଼ଣ, ବନ୍ଧାଣ, ଆଡଣ, ଅଞ୍ଜନ, ଗୀତ, ବାଦ୍ୟ, ନୃତ୍ୟ, ସଙ୍ଗୀତ, ଚିତ୍ରାଙ୍କନ, ରତିବନ୍ଧ ପ୍ରଭୃତି ବହୁ ବିଷୟରେ ସେତେବେଳେ ଶିକ୍ଷା ଦିଆଯାଉଥିବାର ସୂଚନା ମିଳେ । ମଠ, ଚାଟଶାଳୀ, ଗୁରୁଗୃହ, ଆଖଡ଼ା, ଆଶ୍ରମ, ବନ୍ୟ ପରିବେଶ ଓ ତୀର୍ଥକ୍ଷେତ୍ର ପ୍ରଭୃତି ଶିକ୍ଷାକେନ୍ଦ୍ର ରୂପେ ବ୍ୟବହୃତ ହେଉଥିବା ସାରଳା ମହାଭାରତରୁ ଜଣାଯାଏ । (୬)

ଶାନ୍ତିପନି ଆଶ୍ରମରେ କୃଷ୍ଣ ଓ ବଳରାମ ଯେଉଁ ଶିକ୍ଷା ଲାଭ କରିଛନ୍ତି, ସାରଳାଙ୍କ ବର୍ଣ୍ଣନାନୁସାରେ ସେସବୁ ହେଉଛି ଚଉତିରିଶ ଅକ୍ଷର, ବାରମାତ୍ରା, ଚଉତିରିଶ ଫଳା,

(୬) ସା: ମ: ଭା: (ରା) ଆଦ୍ୟ-ପୃ. ୩୪, ୧୦୦, ୧୦୧ ମଧ୍ୟ-୪୦୯-୪୧୦ ଓ ମହାନ୍ତି, ଡ଼କ୍ଟର ବଂଶୀଧର : ଓଡ଼ିଆ ସାହିତ୍ୟର ଇତିହାସ (୨ୟ ଭାଗ) ପୃ. [illegible] ଏବଂ ରଥ, ଡ଼କ୍ଟର ଦୀନବନ୍ଧୁ—ସାରଳା ମହାଭାରତରେ ସାମାଜିକ ଜୀବନ ( ଗ୍ରନ୍ଥ ମନ୍ଦିର, କଟକ, ୧୯୭୪ ) ପୃ. ୧୫୪

ଚଉଷଠି ଭାଷା (ଓଡ଼ିଆ, ତେଲେଙ୍ଗା, ନାଗରୀ, ଦକ୍ଷିଣୀ, କନାଉଜ, ମରହଟ୍ଟା, ଗୁରୁଲେଖା, ଖାଂଜର୍ଣ୍ଣୀ, ଝାର, ଚୀର, ମହାଚୀର, ଦ୍ରାବିଡ଼, ମହାଭାଖା, ଡ଼ାହାଳ, ବେଲଉଲ, ଉତ୍କଟସ୍ତିନୀ, ପଶ୍ଚିମା, ମନ୍ଦାର, କାଉଁରୀ, ଗଉଡ଼ିଆ, ବଙ୍ଗ, ଭାରତୀ, ଦେବଭାଷା ବା ସଂସ୍କୃତ, ପିଶାଚୀ, ଦର୍ପଣୀ ପ୍ରଭୃତି), ଋଗବେଦ, ଚନ୍ଦ୍ରକଳା (ଜ୍ୟୋତିଷ), ପଞ୍ଜୀଙ୍କନ, ନବବ୍ରହ୍ମ ମନ୍ତ୍ର, ରତିଶାସ୍ତ୍ର, ସ୍ତମ୍ଭନ, ମୋହନ, ଯୋଗ, ବ୍ରହ୍ମ, ତ୍ରିକାଳ, ଗାରୁଡ଼, ଗୁଟିକା, ବାଗ୍‌ଦେବୀ ବିଦ୍ୟା, ଉଦେକ ବିଦ୍ୟା ଇତ୍ୟାଦି । (୭) କୃଷ୍ଣ, ଧୃଷ୍ଟଦ୍ୟୁମ୍ନ ଓ ଅର୍ଜ୍ଜୁନ ଗୁଟିକା ବିଦ୍ୟା, ସତ୍ୟଭାମା ଅନ୍ତନବିଦ୍ୟା, କେଶିନୀ, ( ଦ୍ରୌପଦୀଙ୍କ ମୁଦୁସୁଲୀ ) ଗଣିତ ବିଦ୍ୟା, ସହଦେବ ଗୋ-ଚିକିତ୍ସା ଓ ନକୁଳ ଅଶ୍ୱଚିକିତ୍ସାରେ ପାରଙ୍ଗମ ଥିବା ବିଷୟ ସାରଳା ସ୍ପଷ୍ଟ ଭାବେ ଉଲ୍ଲେଖ କରିଛନ୍ତି । ଦୁର୍ଯ୍ୟୋଧନାଦି ଏକୋଶତ ଶତଶିଷ୍ୟ, କର୍ଣ୍ଣ, ଅଶ୍ୱତ୍ଥାମା ଓ ପଞ୍ଚପାଣ୍ଡବ ( ମୋଟ ୧୦୮ ଜଣ ) ଦ୍ରୋଣାଚାର୍ଯ୍ୟଙ୍କ ଅଧୀନରେ ଧନୁର୍ବିଦ୍ୟା, ଅସ୍ତ୍ରବିଦ୍ୟା, ମଲ୍ଲବିଦ୍ୟାଦି ସମରଶାସ୍ତ୍ର ଅଭ୍ୟାସ କରିଥିଲେ । ଶାନ୍ତନୁ ଆଶ୍ରମରେ ମଧ୍ୟ ଏକ ସହସ୍ର ଛାତ୍ର ଅଧ୍ୟୟନ କରୁଥିବା କଥା ସାରଳାଙ୍କ ମହାଭାରତରେ ଉଲ୍ଲେଖ ଅଛି । (୮)

ଏହା ବ୍ୟତୀତ, ଇତିହାସ ଓ ଭୂଗୋଳ, ପତ୍ରଲିଖନ, ଜମିମାପ, ଶିଳ୍ପ ଶାସ୍ତ୍ର, ଶକୁନ ଶାସ୍ତ୍ର, ସପ୍ତାଙ୍ଗ ଯୋଗ, ସୂର୍ଯ୍ୟ ସିଦ୍ଧାନ୍ତ, ଅଷ୍ଟକବର୍ଗ ସାଧନ, ସ୍ୱପ୍ନ ବିଜ୍ଞାନ, ଅନ୍ତନ ବିଦ୍ୟା, ଉଲୁକ ବିଦ୍ୟା, ନାଗାନ୍ତ ବିଦ୍ୟା, ଚେରମୂଳ ବିଦ୍ୟା ବା ଟୁଣ୍ଟାମଣ୍ଟିଆ, ନୌକା ନିର୍ମାଣ, ବନ୍ୟଜନ୍ତୁ ଶିକାର ଇତ୍ୟାଦି ବୃତ୍ତି ଓ କାରିଗରୀ ବିଦ୍ୟା ବିଷୟରେ ତତ୍କାଳୀନ ସମାଜର ଜନସାଧାରଣ ବେଶ୍ ଅବହିତ ଥିଲେ । (୯)

---

(୭) ସା: ମ: ଭା: (ସା) ମଧ୍ୟ-ପୃ. ୬୮୦-୬୮୨

(୮) —ଏଜନ— ମଧ୍ୟ-ପୃ. ୭୧୦ ଓ ସା: ମ: ଭା: (ରା) ଆଦ୍ୟ-ପୃ. ୧୦୦ ଏବଂ ମଧ୍ୟ-ପୃ. ୪୧୨

(୯) ସା: ମ: ଭା: (ରା) ଆଦ୍ୟ-ପୃ. ୩୪, ୪୯, ୯୨, ୧୬୩, ୧୫୧-୧୫୨, ୨୫୩-୨୫୮, ୨୬୭; ମଧ୍ୟ-ପୃ. ୪, ୧୨୫, ୫୭; ବନ-ପୃ. ୨୪୦-୨୪୧ ଏବଂ କର୍ଣ୍ଣ-ପୃ. ୮

ସାରଳାଙ୍କ ସମୟରେ ଗୁରୁ ପରଂପରାର ପ୍ରାଧାନ୍ୟ ରହିଥିଲା । (୧୦) ସପ୍ତାଙ୍ଗ ଜ୍ୟୋତିଷ (ବାର, ତିଥି, ଯୋଗ, କରଣ, ନକ୍ଷତ୍ର, ଚନ୍ଦ୍ର ଓ ରବ୍ୟଂଶ) ଉପରେ ଗୁରୁତ୍ୱ ଦିଆଯାଉଥିଲା । (୧୧) ଶୁଭଦିନ ଓ ଶୁଭ ମୁହୂର୍ତ୍ତରେ ହିଁ ବିଦ୍ୟାରମ୍ଭ କରାଯାଉଥିଲା ଏବଂ ଏଥିପାଇଁ ବୁଧ, ଗୁରୁ ଓ ଶୁକ୍ରବାର ପ୍ରଶସ୍ତ ଥିଲା । (୧୨) ବିଦ୍ୟାରମ୍ଭ ସମୟରେ ଗଣେଶ, ଆଖଡ଼ା ଚଣ୍ଡୀ ଓ ବ୍ରାହ୍ମଣଙ୍କ ପୂଜା କରାଯାଇ ପ୍ରଥମେ 'ଶ୍ରୀ' ଓ 'ସିଦ୍ଧିରସ୍ତୁ' ଲେଖିବାକୁ ଦିଆଯାଉଥିଲା । ବିଭିନ୍ନ ବିଦ୍ୟାଶିକ୍ଷା ପାଇଁ ସମୟ ସୀମା ଏଗାରରୁ ଚଉଦ ବର୍ଷ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ରହିଥିଲା । (୧୩) ବିନାଗୁରୁରେ ଶିକ୍ଷାର୍ଜନ କଳ୍ପନାତୀତ ଥିଲା ଏବଂ ଗୁରୁ ଦକ୍ଷିଣା ପ୍ରଦାନରେ ହିଁ ଶିକ୍ଷାର ସାର୍ଥକତା ଉପଲବ୍ଧି କରାଯାଉଥିଲା । ଏଥିପାଇଁ ଜାରା ଶବର ଦ୍ରୋଣଙ୍କ ମୃତ୍ତିକା ପ୍ରତିମା ରଖି ଅସ୍ତ୍ରବିଦ୍ୟା ଶିକ୍ଷା କଲାପରେ ଗୁରୁ ଦକ୍ଷିଣା ସ୍ୱରୂପ ନିଜ ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ଦାନ କରି 'ଏକଲବ୍ୟ' ନାମରେ ପରିଚିତ ହୋଇଛି ଏବଂ କୃଷ୍ଣ ବଳରାମଙ୍କୁ ଅରଣ୍ୟରୁ କାଷ୍ଠ ସଂଗ୍ରହ କରି ଆଣିବା ସଙ୍ଗେ ସଙ୍ଗେ ଗୁରୁ ଶାନ୍ଦିପନିଙ୍କ ମୃତ ପଞ୍ଚପୁତ୍ରଙ୍କୁ ଯମପୁରରୁ ଫେରାଇ ଆଣିବାକୁ ପଡ଼ିଛି । (୧୪)

ସାରଳାଙ୍କ ବର୍ଣ୍ଣନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସେହି କାଳରେ ନାରୀମାନେ ମଧ୍ୟ ଉଚ୍ଚଶିକ୍ଷାରୁ ବଞ୍ଚିତା ନଥିଲେ । ସାରଳା ମହାଭାରତର ନାରୀ-ଚରିତ୍ରମାନଙ୍କ ମଧ୍ୟରେ ଦ୍ରୌପଦୀ, ଭାନୁମତୀ, ସୁଭଦ୍ରା, ସୁଦେଷ୍ଣା, ମାଦ୍ରୀ, ହାରାବତୀ, ଏପରିକି ଦ୍ରୌପଦୀଙ୍କ ପରିଚାରିକା କେଶିନୀ ମଧ୍ୟ ବିଭିନ୍ନ ଶାସ୍ତ୍ରରେ ଜ୍ଞାନ ଆହରଣ କରି ସୁଶିକ୍ଷିତା ଥିଲେ । ହାରାବତୀ, ମାୟାବତୀ ଓ ସତ୍ୟଭାମା ଥିଲେ ତନ୍ତ୍ରବିଦ୍ୟାରେ

(୧୦) ସା: ମ: ଭା: (ରା) ଆଦ୍ୟ-ପୃ. ୩୪, ସା: ମ: ଭା (ସା) ଆଦି-ପୃ ୯୧ ଏବଂ ମହାନ୍ତି, ଡ଼କ୍ଟର ଉପେନ୍ଦ୍ରନାଥ (ସଂ)-ବିପ୍ଳବୀ କବି ସାରଳା ଦାସ (ବାରିକ, ଡ଼କ୍ଟର ବନମାଳୀ—ସାରଳା ମହାଭାରତରେ ଗୁରୁ ପରଂପରା ଓ ଗୁରୁଦେବ ଦ୍ରୋଣାଚାର୍ଯ୍ୟ, ପ୍ରବନ୍ଧ) ପୃ. ୪୮-୫୨

(୧୧) ମହାନ୍ତି, ଡ଼କ୍ଟର ବଂଶୀଧର—ଓଡ଼ିଆ ସାହିତ୍ୟର ଇତିହାସ (୨ୟ ଭାଗ) (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୨ୟ ସଂସ୍କରଣ, ୧୯୮୨) ପୃ. ୬୩ ଏବଂ ସା: ମ: ଭା: (ରା) ମଧ୍ୟ—ପୃ. ୪

(୧୨) ସା: ମ: ଭା: (ରା) ଆଦ୍ୟ —ପୃ. ୩୪ ଓ ୧୦୦-୧୦୧

(୧୩) —ଏଜନ— ମଧ୍ୟ-ପୃ. ୪୦୯

(୧୪) —ଏଜନ—ଆଦ୍ୟ-ପୃ. ୧୦୬ ଏବଂ ମଧ୍ୟ-ପୃ. ୪୧୨-୪୧୭

ମାରଙ୍କମା; ସୁଦେଷ୍ଣା ପୁଞ୍ଜ, ରାଜନୀତ, ନୃତ୍ୟ ଓ ସଙ୍ଗୀତ ନିପୁଣା ଏବଂ କେଶିନୀ ଗଣିତଶାସ୍ତ୍ରଧାରିଣୀ । ସର୍ବୋପରି, ସ୍ତ୍ରୀମାନେ ସ୍ୱାମୀମାନଙ୍କୁ ସତ୍ ପରାମର୍ଶ ଦେଉଥିବା (ଯଥା—ଦୁର୍ଯ୍ୟୋଧନଙ୍କ ଭାନୁମତୀ) ଏବଂ ସେମାନଙ୍କ ଜୀବିକା ଅର୍ଜନରେ ସାହାଯ୍ୟ କରୁଥିବା (ଯଥା—ମେଲକ ଶୂଦ୍ରର ସ୍ତ୍ରୀ) ସାରଳାଙ୍କ ବର୍ଣ୍ଣନାରୁ ଅନୁମାନ କରାଯାଇପାରେ । (୧୫)

ବର୍ତ୍ତମାନର ତ୍ରିସ୍ତରୀୟ (୧୦+୨+୩) ଶିକ୍ଷା ବ୍ୟବସ୍ଥା ଓ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମରେ ବୃତ୍ତିଗତ ଶିକ୍ଷାନୀତି ତଥା ଜୀବନବ୍ୟାପୀ ଶିକ୍ଷାଦାନ ଉପରେ ଯେଉଁଳି ଗୁରୁତ୍ୱ ଦିଆଯାଉଅଛି, ସାରଳା ମଧ୍ୟ ସେହିପରି ଅନୌପଚାରିକ ଶିକ୍ଷା ବା ଅଣଆନୁଷ୍ଠାନିକ ଶିକ୍ଷା ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । କୃଷି, ଶିଳ୍ପ ଓ ବାଣିଜ୍ୟକଳା, ନାବନିର୍ମାଣ, ବନ୍ୟଜନ୍ତୁ ଶିକାର, ଗୃହ ସଜ୍ଜା, କେଶ ପ୍ରସାଧନ, ଅଙ୍ଗ ପ୍ରସାଧନ, ଅବସର ବିନୋଦନ ପାଇଁ ନୃତ୍ୟ, ସଙ୍ଗୀତ ଓ ଚିତ୍ରାଙ୍କନ ଏବଂ ସପ୍ତସ୍ୱର ମାଧ୍ୟମରେ ତତ୍କାଳୀନ ଉନ୍ନତ ଶିକ୍ଷାଦର୍ଶର କେତୋଟି ନିଦର୍ଶନ । (୧୬) ସଂକ୍ଷେପରେ ପ୍ରକାଶ କଲେ, ସାରଳାଙ୍କ ଶାରୀରିକ, ମାନସିକ ଓ ବୌଦ୍ଧିକ ଶିକ୍ଷାଦର୍ଶରେ ପ୍ରାଚୀନ ସଂସ୍କୃତି ଓ ଭିତ୍ତାଙ୍କନ ସହିତ ନୈତିକତା ଏବଂ ବିଭିନ୍ନ ବୃତ୍ତିଗତ ଆବଶ୍ୟକତାର ଏକ ସୁମଧୁର ସମନ୍ୱୟ ଘଟିଅଛି ।

ଶିକ୍ଷା ପରିସମାପ୍ତି ପରେ ଗୁରୁଦକ୍ଷିଣା ପ୍ରଦାନପୂର୍ବକ ଶିକ୍ଷାର୍ଥୀମାନେ ଯେତେବେଳେ ନିଜ ନିଜ ଗୃହକୁ ଫେରି ଆସନ୍ତି, ସେତେବେଳେ ସେମାନଙ୍କୁ ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ ପଡ଼ିଥାଏ । ଫଳରେ ପିତାମାତା ଉପଯୁକ୍ତ କନ୍ୟାର ଅନୁସନ୍ଧାନ କରି ପୁତ୍ରମାନଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରିଥାନ୍ତି । ଏଥିପାଇଁ କନ୍ୟାର ଶୁଭଲକ୍ଷଣ ଓ ନାକ୍ଷତ୍ରିକ ସ୍ଥିତି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଥିଲା । ବାଲ୍ୟ ବିବାହ କ୍ଷେତ୍ରରେ ଜନ୍ମକୁଣ୍ଡଳୀକୁ ବିଚାର କରାଗଲା ବେଳେ ଯୁବତୀ ବିବାହ କ୍ଷେତ୍ରରେ କନ୍ୟାର ପ୍ରଥମ ରଜୋଦର୍ଶନକାଳୀନ ଶୁଭାଶୁଭ ଗଣନା କରାଯାଇଥାଏ । ଶେଷୋକ୍ତ ବିଷୟଟି ଉପରେ ସାରଳା ଅଧିକ ଗୁରୁତ୍ୱ ଆରୋପ କରିଥିବା ତାଙ୍କ ମହାଭାରତରୁ ପରିଲକ୍ଷିତ ହୁଏ ।

---

(୧୫) ରାୟ, ଡ଼କ୍ଟର ପ୍ରଭାତ—ଆଦିକବି ସାରଳା ଦାସ ଓ ଆଜିର ଶିକ୍ଷାନୀତି (ପ୍ରବନ୍ଧ) ସାରଳା ସାହିତ୍ୟ ସମୀକ୍ଷା (ସଂ : ସାରଳା ସାହିତ୍ୟ ସଂସଦ, କଟକ, ୧୯୮୩) ପୃ. ୨୩୬

(୧୬) —ଏଜନ—ପୃ. ୨୨୩-୨୩୨

## ରଜସ୍ୱଳା ବିଧି

କନ୍ୟାମାନଙ୍କର ଜନ୍ମ ସମୟର ଦୋଷ, ପ୍ରଥମ ରଜୋବତୀକାଳୀନ ଦୋଷ ଗଣ୍ଡ ଦୋଷ, ବନ୍ଧ୍ୟା ଦୋଷ ଇତ୍ୟାଦି ବିଷୟରେ ସାରଳା ମହାଭାରତର ବିଭିନ୍ନ ପ୍ରସଙ୍ଗରେ ଯେଉଁଭଳି ବିସ୍ତୃତ ବର୍ଣ୍ଣନା ରହିଛି, ସେଥିରୁ ଅନୁମିତ ହୁଏ ଯେ ତତ୍କାଳୀନ ସମାଜରେ ଏହି ଦିଗ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଉଥିଲା । କେଉଁ ନକ୍ଷତ୍ରରେ ଜନ୍ମ ହେଲେ କେତେ ବର୍ଷ ଗଣ୍ଡଦୋଷ ଲାଗେ, କେଉଁ ନକ୍ଷତ୍ରରେ ଜାତ ବ୍ୟକ୍ତି ରାକ୍ଷସ, ଦେବତା ବା ନରଗଣରେ ଗଣାଯାଏ, ନଷ୍ଟଚନ୍ଦ୍ର (ବା ଅମାବାସ୍ୟା) ତିଥିରେ ଜନ୍ମିତା କନ୍ୟାକୁ ବିବାହ କରିବା ପୁରୁଷ କିଭଳି ଲକ୍ଷ୍ମୀଛଡ଼ା ଓ ଅଳ୍ପାୟୁ ହୁଏ, ସେ ସବୁ ସାରଳା ଦାସ ଅତି ପ୍ରାଞ୍ଜଳ ଭାବେ ଗାନ୍ଧାରୀ ଜନ୍ମ ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି । (୧୭) ପ୍ରଥମେ ସାହାଡ଼ା ବୃକ୍ଷ ସହିତ ବିବାହ କରାଇ ପରେ ଅନ୍ୟ ପୁରୁଷ ସହିତ ବିବାହ କରାଗଲେ ଉଆଁସୀ କନ୍ୟାର ବୈଧବ୍ୟ ଦୋଷ ଖଣ୍ଡନ ହେବାର ଏକ ନୂତନ ପରଂପରା ସାରଳାଙ୍କ ସମୟରୁ ହିଁ ସୃଷ୍ଟି ହୋଇଛି ।

ନାରୀର ଭାଗ୍ୟ ଓ ଭବିଷ୍ୟତ ତାର ପ୍ରଥମ ରଜସ୍ୱଳା ମୁହୂର୍ତ୍ତ ଉପରେ ନିର୍ଭରଶୀଳ ବୋଲି ଏକ ଦୃଢ଼ ସାମାଜିକ ବିଶ୍ୱାସ ରହିଥିଲା । ଏଣୁ ସାରଳା ମଧ୍ୟ ବାର, ତିଥି, ନକ୍ଷତ୍ର, ଯୋଗ, କରଣ ଅନୁଯାୟୀ ସ୍ତ୍ରୀମାନଙ୍କର ଆଦ୍ୟ ରଜୋବତୀ-କାଳୀନ ଫଳାଫଳର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ଏହି ଅବସରରେ ଜ୍ୟୋତିର୍ବିଦ-ମାନଙ୍କ ସପ୍ତାଙ୍ଗ ଯୋଗ ବିଚାର, ଚନ୍ଦନହଳଦୀ ମିଶ୍ରିତ ଜଳରେ ପିଚକା ଖେଳ, ମୃତ୍ତିକା ଲେପନ ପୂର୍ବକ ନଦୀ ଜଳରେ ସ୍ନାନ ପରେ ସପ୍ତମ ଦିବସରେ ସଧବା ସ୍ତ୍ରୀଙ୍କ ଦ୍ୱାରା ପୁଷ୍ପବତୀ ବନ୍ଦାପନା ଓ ହୋମ • ଦାନାଦି ବିଧିବିଧାନ ସଂପର୍କରେ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ସେହିଦିନ ହିଁ ପତିଗୃହ ଯାତ୍ରା କରିବା ବିଧି ବୋଲି ସାରଳା ସୂଚନା ଦେଇଛନ୍ତି । (୧୮)

---

(୧୭) ଅଶ୍ୱିନୀ ଦ୍ୱିତୀ ରୋହିଣୀ ପୁଷ୍ୟା ଅନୁରାଧା
ଶ୍ରବଣା ରେବତୀ ଶତଭିଷା କାମଦ୍ରିଢା ।
ଅଷ୍ଟ ନକ୍ଷତ୍ରେ ଉପୁଜେ ଯେ ପୁରୁଷ ସ୍ତ୍ରିଶି
ପୁରୁଷ କାମୀ ହୁଅଇ କାମିନୀ ଦୋଷିଣୀ ।
(ସା: ମ: ଭା: (ବା) ଆଦ୍ୟ-ପୃ. ୫୧)

(୧୮) ସା: ମ: ଭା: (ଗା) ମଧ୍ୟ-ପୃ. ୪-୬

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ କେଶବ ଦୈବଜ୍ଞଙ୍କ 'ଗ୍ରହ କୌତୁକ' ଓ 'ମୁହୂର୍ତ୍ତ ତତ୍ତ୍ୱ' ଏବଂ ବୈଦ୍ୟନାଥ ବିରଚିତ 'ଜାତକ ପାରିଜାତ' ଗ୍ରନ୍ଥ ସାରଳାଙ୍କ ସମକାଳୀନ ସାମାଜିକ ଜୀବନରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ବୈଦ୍ୟନାଥ ଜୈମିନୀସୂତ୍ର, ଗର୍ଗଜାତକ, ସର୍ବସିଦ୍ଧାନ୍ତ, କେଶବୀୟ ପଦ୍ଧତି, ପାରାଶରୀ ପଦ୍ଧତି, ମୁହୂର୍ତ୍ତ ମାର୍ତ୍ତଣ୍ଡ, ମୁହୂର୍ତ୍ତ ଚିନ୍ତାମଣି, ସର୍ବାର୍ଥ ଚିନ୍ତାମଣି ପ୍ରଭୃତି ବହୁ ସୂତ୍ରରୁ ଉପାଦାନ ସଂଗ୍ରହ କରି ତାଙ୍କର 'ଜାତକ ପାରିଜାତ' ଗ୍ରନ୍ଥ ରଚନା କରିଥିଲେ । (୧୯) ଏହି ଜାତକ ପାରିଜାତ ବର୍ଣ୍ଣିତ ତିଥି ବାର ନକ୍ଷତ୍ରାଦି ଫଳାଫଳ ଦ୍ୱାରା ସାରଳା ପ୍ରଭାବିତ ହୋଇଥିବା ମନେହୁଏ । ଗଣ୍ଡଦୋଷ ନିର୍ଣ୍ଣୟ କରିବାକୁ ଯାଇ 'ଅଶ୍ୱିନୀ ମଘା ମୂଳାରୁ ଆଦ୍ୟ ତିନିଦଣ୍ଡ, ଜ୍ୟେଷ୍ଠା ଅଶ୍ଳେଷା ରେବତୀ ଶେଷ ପାଞ୍ଚଦଣ୍ଡ' ବୋଲି ସାରଳା ଯାହା ଉଲ୍ଲେଖ କରିଛନ୍ତି, (୨୦) ତାହା ଜାତକ ପାରିଜାତ ଗ୍ରନ୍ଥରୁ ଗୃହୀତ ହୋଇଥିବା ଅନୁମେୟ । (୨୧)

ତେବେ, ସ୍ତ୍ରୀମାନଙ୍କର ଆଦ୍ୟ ରଜସ୍ୱଳାକାଳୀନ ଫଳାଫଳ ଯାହା ସାରଳା ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି, ସେଥିପ୍ରତି ତାଙ୍କର ଆନ୍ତରିକ ସମର୍ଥନ ଥିବା ଭଳି ମନେହୁଏ ନାହିଁ; ବରଂ ସେହି ଅତିରଞ୍ଜିତ ବର୍ଣ୍ଣନାରେ ବ୍ୟଙ୍ଗାତ୍ମକ ବ୍ୟଞ୍ଜନା ପରିଦୃଷ୍ଟ । କାରଣ ମୂଳ ଫଳିତଶାସ୍ତ୍ର ଅନୁସାରେ ପ୍ରଥମ ରଜୋଦର୍ଶନର ଯାହା ଫଳାଫଳ ନିର୍ଣ୍ଣୀତ ହୋଇଛି, ସାରଳା ତାହା ଅନୁରୂପ ଉଦ୍ଧାର କରି ନାହାନ୍ତି । ପୁନଶ୍ଚ, ଦ୍ରୌପଦୀଙ୍କ ରଜୋଦର୍ଶନ କାଳର ବର୍ଣ୍ଣନା ସହିତ ଉତ୍ତରାବାଳୀର ରଜୋବତୀ ହେବା ବେଳର ଫଳାଫଳ ବର୍ଣ୍ଣନାରେ ସାମଞ୍ଜସ୍ୟ ରକ୍ଷା କରାଯାଇନାହିଁ । (୨୨) ନିମ୍ନରେ ପ୍ରଦତ୍ତ ସାରଣୀରୁ ଏଭଳି କେତେକ ବ୍ୟତିକ୍ରମର ସୂଚନା ସୁସ୍ପଷ୍ଟ ।

---

(୧୯) ପୂଜାରୀ, ମଦନମୋହନ (ସଂକଳକ ଓ ଅନୁବାଦକ)—ଶ୍ରୀ ବୈଦ୍ୟନାଥ ବିରଚିତ 'ଜାତକ ପାରିଜାତ' (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୨) ମୁଖବନ୍ଧ—ପୃ. ୪-୮

(୨୦) ସା: ମା: ଭା: (ରା)—ଆଦ୍ୟ-ପୃ. ୩୭, ବନ-ପୃ. ୧୭

(୨୧) ମୂଳା ମଘାଶ୍ୱିନୀ ଚରଣେ ପ୍ରଥମେ ପିତୃଷ୍ଟ
ପୌଷ୍ଣେନ୍ଦ୍ରସ୍ୟୋଷ୍ଣ ଫଣିନସ୍ତୁ ଚତୁର୍ଥ ପାଦେ ।
( ଜାତକ ପାରିଜାତ—୯ । ୫୭ )

(୨୨) ମେହେର, ମନୋହର (ଅନୁବାଦକ)—ସ୍ତ୍ରୀ ପୁଷ୍ପବତୀ ଫଳ (ଲକ୍ଷ୍ମୀଧର ଦାଶ, କଟକ, ୧୯୫୭) ପୃ. ୨-୭ ଏବଂ ସା: ମ: ଭା: (ସୀ) ମଧ୍ୟ-ପୃ. ୩-୫ ଓ ଉଦ୍‌ଯୋଗ ପୃ. ୩୨-୩୬

## ସ୍ତ୍ରୀର ପ୍ରଥମ ରଜୋଦର୍ଶନକାଳୀନ ଫଳାଫଳ

| ତିଥି, ବାର ଓ ନକ୍ଷତ୍ର | ମୂଳ ସଂସ୍କୃତ ଶାସ୍ତ୍ରାନୁସାରେ | ମଧ୍ୟ ପର୍ବ (ଦ୍ରୌପଦୀ ପ୍ରସଙ୍ଗ) | ଉଦ୍‌ଯୋଗ ପର୍ବ (ଉତ୍ତରବାଳୀ ପ୍ରସଙ୍ଗ) |
|---|---|---|---|
| ମଙ୍ଗଳବାର | ମୃତବତ୍ସା ଓ ପର-ପୁରୁଷାଭିଳାଷିଣୀ | ବିଧବା ଓ ଅନାଗ୍ରହଣୀ | ପୁତ୍ରବତୀ ଓ ସ୍ୱାମୀ ଅଳ୍ପାୟୁ |
| ଶନିବାର | ବନ୍ଧ୍ୟା, ଚିରରୋଗିଣୀ | ନିଃସନ୍ତାନ | ଉଭୟଙ୍କ ମୃତ୍ୟୁ |
| ଅଷ୍ଟମୀ | ଦୁଃଖିନୀ | ପତିପୁତ୍ର ରୋଗଗ୍ରସ୍ତ | ଦୋଷରୁଣୀ |
| ଏକାଦଶୀ | ବିବିଧ କ୍ଳେଶ | ପରପୁରୁଷାଭିଳାଷିଣୀ | ପାପିଷ୍ଠା |
| ଅମାବାସ୍ୟା | ମୃତ୍ୟୁ | ନିଃସନ୍ତାନ | ବିକଳାଙ୍ଗ ସନ୍ତାନ |
| ପୂର୍ଣ୍ଣିମୀ | ବିଶେଷ ସୁଖ | ବହୁ ସନ୍ତତି | ଧର୍ମାତ୍ମା ପୁତ୍ର (କାକବନ୍ଧ୍ୟା) |
| ଅଶ୍ୱିନୀ | ସୁଖ, ଐଶ୍ୱର୍ଯ୍ୟ | ସୁଖୀ, ପୁଣ୍ୟବତୀ | ମଧ୍ୟମା |
| କୃତ୍ତିକା | ବିଧବା, ବ୍ୟଭିଚାରିଣୀ | ଦୁଃଖୀ | ପିଶାଚୁଣୀ |
| ଆର୍ଦ୍ରା | ଦୁଷ୍ଟା, କୁଳଟା | ଦୁଃଖୀ | ବଂଶନାଶିନୀ |
| ରେବତୀ | ସୁଗୁଣା, ପୁତ୍ରବତୀ | ସୁଖୀ | ବନ୍ଧ୍ୟା |

କନ୍ୟା ରଜୋବତୀ ହେବା ପରେ ହିଁ ମାତୃତ୍ୱ ଲାଭର ଅଧିକାରିଣୀ ହୁଏ । ସେ ଯେଉଁ ସନ୍ତାନମାନଙ୍କୁ ଜନ୍ମଦିଏ, ସେମାନେ ହିଁ ହୁଅନ୍ତି ଦେଶର ଭବିଷ୍ୟତ ନାଗରିକ ତଥା ଧାତ୍ତ୍ରନାୟକ । ଏଣୁ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମାଜବିଜ୍ଞାନୀ ଉପଯୁକ୍ତ ସନ୍ତାନ ପ୍ରଦ୍‌ଭୃତ ସମ୍ପର୍କରେ ସୁଚିନ୍ତିତ ମତାମତ ଦେବା ସମ୍ପର୍କରେ ବ୍ୟସ୍ତ ହୋଇନାହାନ୍ତି । ଯୌନ ସମ୍ପର୍କର ସାମର୍ଥ୍ୟ, ଶୁଦ୍ଧତା ଓ ବୈଧତା ଉପରେ ହିଁ ଏହା ନିର୍ଭରଶୀଳ । ସେଥିପାଇଁ ସାରଳା ଦାସ ନାରୀମାନଙ୍କ ଶିକ୍ଷାଦୀକ୍ଷା ଓ ସଚ୍ଚରିତ୍ରତା ସହିତ ବୈବାହିକ ପଦ୍ଧତି ଓ ପ୍ରକ୍ରିୟାର ସବିଶେଷ ବିଶ୍ଳେଷଣ କରିଥିବା ମନେହୁଏ ।

ସାରଳା ଦାସ ମହାଭାରତ ରଚନା କଲାବେଳକୁ ମୂଳ ମହାଭାରତ ରଚନାକାଳୀନ ବହୁ ସାମାଜିକ ପ୍ରଥା ପରିବର୍ତ୍ତିତ କିମ୍ବା ଅବଲୁପ୍ତ ହୋଇ ସାରିଥିଲା । କିନ୍ତୁ ଆହୃତ କଥାବସ୍ତୁକୁ ନୂତନ ରୂପ ପ୍ରଦାନ କଲାବେଳେ ସାରଳା ସେହି ପ୍ରାଚୀନ ପ୍ରଥାଗୁଡ଼ିକୁ ପରିତ୍ୟାଗ କରିବା ପାଇଁ ସମର୍ଥ ହୋଇ ପାରିନାହାନ୍ତି । ଉଦାହରଣ ସ୍ୱରୂପ, ଦ୍ରୌପଦୀଙ୍କ ପଞ୍ଚପତି ବରଣ, ପଣରକ୍ଷା ମାଧ୍ୟମରେ ତାଙ୍କର ବିବାହ, ପୁତ୍ର ନିମିତ୍ତ ସ୍ୱାମୀଙ୍କ ଭ୍ରାତାମାନଙ୍କ ସହିତ ସହବାସ କିମ୍ବା ସ୍ୱୟମ୍ବର ମାଧ୍ୟମରେ ସାବିତ୍ରୀ, ଦମୟନ୍ତୀ, ଭାନୁମତୀଙ୍କ ପତି ପତି ନିର୍ବାଚନ ପ୍ରଭୃତି ପ୍ରଥା ସାରଳାଙ୍କ ବେଳକୁ ଉତ୍କଳୀୟ ସମାଜରେ ପ୍ରଚଳିତ ନଥିଲା । ଏଣୁ ସାରଳାଙ୍କ ମହାଭାରତରୁ ତାଙ୍କ ସମସାମୟିକ ସମାଜରେ ପ୍ରଚଳିତ ଥିବା ବିବାହ ପ୍ରଥାର ଏକ ପ୍ରାମାଣିକ ଚିତ୍ର ଉପସ୍ଥାପନ କରିବା ସହଜସାଧ୍ୟ ନୁହେଁ । ତଥାପି, ବିବାହ ପ୍ରସଙ୍ଗମାନଙ୍କରେ ଉଲ୍ଲେଖ କରାଯାଇଥିବା ଲେଖକଙ୍କ ମନ୍ତବ୍ୟ ଓ ବର୍ଣ୍ଣନା ପାଠବିତା ମଧ୍ୟରୁ ଏ ସମ୍ପର୍କୀୟ ଅନେକ ତଥ୍ୟ ଉପସ୍ଥାପନ କରାଯାଇପାରେ । ବର କନ୍ୟାଙ୍କ କୋଷ୍ଠୀ ବିଚାର, ବିବାହ ଲଗ୍ନ ନିରୂପଣ, ନିର୍ବନ୍ଧ ବା ସ୍ୱୀକୃତ ବିଧି, ବାଗ୍‌ଦାନ, ଗନ୍ଧାଧିବାସ, ତୋଳାପାଣି ସଂଗ୍ରହ, ଲବଣ ଚଉଁରା, ମାତୃକା ପୂଜା, ଅସରଳା ସୂତା ବା କୌତୁକ ସୂତା ପରିଧାନ, କନ୍ୟା ଭ୍ରାତା ଦ୍ୱାରା ବରର ପଦ ପ୍ରକ୍ଷାଳନ, କନ୍ୟା ପିତାର ଦଶଦୋଷ କ୍ଷମା ପ୍ରାର୍ଥନା, ବିବାହୋତ୍ତର କଉଡ଼ି ଖେଳ ଏବଂ ବର କନ୍ୟାଙ୍କ ଏକତ୍ର ଘୃତାନ୍ନ ଭୋଜନ ଓ ତାମ୍ବୂଲ ସେବନ ପ୍ରଭୃତି ସାରଳାଙ୍କ ସମକାଳୀନ ସମାଜର ଚିତ୍ର ରୂପେ ଗ୍ରହଣୀୟ ।

**ବିବାହ ପ୍ରଥା**

ସାରଳାଙ୍କ ସମୟରେ ବାଲ୍ୟବିବାହ ପ୍ରଥା ବିଶେଷ ଭାବେ ପ୍ରଚଳିତ ଥିଲା ଏବଂ ପିତା ଗୃହରେ କନ୍ୟା ରଜୋବତୀ ହେଲେ ସେହି ଶୋଣିତରେ ପିତୃଲୋକ

ସ୍ଥାନ କରିଥାନ୍ତି ବୋଲି ବିଶ୍ୱାସ କରାଯାଉଥିଲା । (୧୩) ଏଣୁ ବାଳିକାମାନେ ସାଧାରଣତଃ ୭ ବର୍ଷରୁ ୧୦ ବର୍ଷ ମଧ୍ୟରେ ବିବାହ ବନ୍ଧନରେ ଆବଦ୍ଧ ହେଉଥିଲେ; କାରଣ ଦଶବର୍ଷ ବୟସ ପରେ କନ୍ୟା ରଜୋବତୀ ରୂପେ ଗୃହୀତ ହେଉଥିଲା । ଏପରିକି, ଦଶ ବର୍ଷରୁ ଊର୍ଦ୍ଧ୍ୱ କନ୍ୟାଙ୍କ ବିବାହ ପାଇଁ ଗୁରୁ, ରବି ଚନ୍ଦ୍ରାଦି ଶୁଦ୍ଧି ନ ଦେଖି କେବଳ ବିବାହ ଅବସର ଲଗ୍ନଶୁଦ୍ଧି ନିରୂପଣ କରାଯିବା ଉଚିତ ବୋଲି ସ୍ମୃତିକାରମାନେ ନିର୍ଦ୍ଦେଶ ଦେଇ ଯାଇଛନ୍ତି । (୧୪) ସାରଳା ମହାଭାରତରେ ଭାନୁମତୀ, ଦ୍ରୌପଦୀ, ମଧୁମତୀ, ଉତ୍ତରା ପ୍ରମୁଖଙ୍କ ବିବାହ ଯୌବନପ୍ରାପ୍ତି ପୂର୍ବରୁ ହିଁ ସମ୍ପନ୍ନ ହୋଇଥିବାର ବର୍ଣ୍ଣନା ମିଳେ । ବିବାହ ପୂର୍ବରୁ ନିର୍ବନ୍ଧ ପ୍ରଥା ମଧ୍ୟ ପ୍ରଚଳିତ ଥିବା ଲକ୍ଷ୍ୟ କରାଯାଏ । (୧୫) ଅଭିଭାବକଙ୍କ ଦ୍ୱାରା ଯୋଗାଯୋଗ ଜନିତ ବିବାହ ବ୍ୟତୀତ ସାରଳାଙ୍କ ରଚନାରେ ସ୍ୱୟମ୍ବର ପ୍ରଥାର ବର୍ଣ୍ଣନା ମଧ୍ୟ ପରିଦୃଷ୍ଟ ହୁଏ । ଏହା ମୁଖ୍ୟତଃ ଏକ ରାଜନ୍ୟ ତଥା ସମ୍ଭ୍ରାନ୍ତବାଦୀ ବା ସାମନ୍ତବାଦୀ ପ୍ରଥା । ଏଥିରେ ବହୁ ରାଜା, ଜମିଦାରଙ୍କୁ କନ୍ୟାର ଚିତ୍ରପଟ ଦେଖାଇ ସାଡ଼ମ୍ବରେ ନିମନ୍ତ୍ରଣ କରି ଅଣାଯାଉଥିଲା ଏବଂ ଦାସଦାସୀ, ବାଦ୍ୟ ନିଶାଣ, ନଗର ସଜ୍ଜା ଓ ବାରାଙ୍ଗନା ନୃତ୍ୟାଦି ଦ୍ୱାରା ଆପ୍ୟାୟିତ କରାଯାଉଥିଲା । ହାଣ୍ଡୋଳାରେ କନ୍ୟାକୁ ସୁବେଶ କରାଇ ଦାସୀଙ୍କ ଗହଣରେ ସଭାସ୍ଥଳକୁ ଆଣିବା ପରେ ସେ ଉପସ୍ଥିତ ବ୍ୟକ୍ତିଙ୍କ ମଧ୍ୟରୁ ଯାହାଙ୍କୁ ଶ୍ରେଷ୍ଠ ବା ଯୋଗ୍ୟ ମନେ କରୁଥିଲା, ପରେ ତାଙ୍କ ସହିତ ବିଧିପୂର୍ବକ ବିବାହ ସମାହିତ ହେଉଥିଲା । (୧୬) ଏହା ବ୍ୟତୀତ,

---

(୧୩) ସା: ମ: ଭା: (ରା) ଆଦ୍ୟ-ପୃ. ୩୭, ବନ-ପୃ. ୨୩୨

(୧୪) (କ) ଅଷ୍ଟବର୍ଷା ଭବେଦ୍ ଗୌରୀ ନବ ବର୍ଷାଚ ରୋହିଣୀ
ଦଶବର୍ଷା ଭବେତ୍କନ୍ୟା ତଦୂର୍ଦ୍ଧ୍ୱଂଚ ରଜସ୍ୱଲା ।
ଗୌରୀ ଗୁର୍ବକ ସଂଶୁଦ୍ଧା ରବି ଶୁଦ୍ଧା ଚ ରୋହିଣୀ
କନ୍ୟା ଚନ୍ଦ୍ର ବିଶୁଦ୍ଧା ସ୍ୟାତ୍ ତୋ ଲଗ୍ନ ବଳନେ ରୁ ।
ପ୍ରାପ୍ତେ ତୁ ଦ୍ୱାଦଶେ ବର୍ଷେ ଯଃ କନ୍ୟାଂ ନ ପ୍ରୟଚ୍ଛନ୍ତି
ମାସି ମାସି ରଜସ୍ତସ୍ୟାଃ ପିବନ୍ତି ପିତରଃ ସ୍ୱୟମ୍ ।। ( ପରାଶର ସଂହିତା )

(ଖ) ବାଜପେୟୀ, ବିଦ୍ୟାଧର : ନିତ୍ୟାଗ୍ନିର ପଦ୍ଧତି
(ଏସିଆଟିକ ସୋସାଇଟି, ୧୯୦୩) ପୃ. ୨୮୧-୨୮୫

(୧୫) ସା: ମ: ଭା: (ରା) ବିରାଟ-ପୃ. ୧୭୨-୧୭୪

(୧୬) ସା: ମ: ଭା: (ରା) ଆଦ୍ୟ-ପୃ. ୧୧୪-୧୧୭ ଓ ୨୪୯-୨୫୯

ବଳାତ୍କାରପୂର୍ବକ ସ୍ତ୍ରୀ ହରଣ ମାଧ୍ୟମରେ ପୁଣି ବିବାହ ଅନୁଷ୍ଠିତ ହେବାର ବର୍ଣ୍ଣନା ଦେଖିବାକୁ ମିଳେ । (୨୭) ପୁନଶ୍ଚ, କାଳିନ୍ଦୀ ରାକ୍ଷସୀକୁ ଭୀମ ବିବାହ କଲାଭଳି ଗାନ୍ଧର୍ବ ରୀତରେ ମଧ୍ୟ ତାହା ସମ୍ପାଦନ କରାଯାଉଥିଲା । (୨୮)

ସୁଭଦ୍ରା, ସୁରେଖା, ଊଷା, ଶୋଭାବତୀ, ହାରାବତୀ ପ୍ରମୁଖଙ୍କ ବିବାହରୁ ଯୁବତୀ ବିବାହର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ । ବାଲବିଧବା ତଥା ଅକ୍ଷତା ବିବାହିତା କନ୍ୟାମାନଙ୍କର ପୁନର୍ବିବାହ ପ୍ରତି ସାରଳାଙ୍କ ସମର୍ଥନ ରହିଥିବା ଗାନ୍ଧାରୀଙ୍କ ବିବାହ ବର୍ଣ୍ଣନାରୁ ସ୍ପଷ୍ଟୀଭୂତ ହୁଏ । ଉଆଁସୀ କନ୍ୟା ଗାନ୍ଧାରୀଙ୍କୁ ବିବାହ କରି ବହୁ ଯୁବକ ମୃତ୍ୟୁ ମୁଖରେ ପତିତ ହେଲପରେ ସାହାଡ଼ା ବୃକ୍ଷ ସହିତ ବିବାହ କଲପରେ ସେ ଧୃତରାଷ୍ଟ୍ରଙ୍କୁ ବରଣ କରିବାରୁ ତାଙ୍କର ବୈବାହିକ ଜୀବନ ସାର୍ଥକ ହୋଇଛି ଏବଂ 'ଯଥା ଧୃତରାଷ୍ଟ୍ରସ୍ୟ ଗାନ୍ଧାରୀ' ଆଦର୍ଶ ଯୁଗ ଯୁଗ ପାଇଁ ଶାଶ୍ୱତ ହୋଇ ରହିପାରିଛି ।

---

(୨୭) ସାରଳା ମହାଭାରତରେ କ୍ରମରେ ସୂଚିତ ଅନେକ ନାରୀହରଣ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । (ବନ୍ଧନୀରେ ସା: ମ: ଭା: (ରା)ର ପୃଷ୍ଠାଙ୍କ ସୂଚିତ) ।

୧ । ବନ୍ୟମାଳୀ ହରଣ (ମଧ୍ୟ—୪୧-୫୪)
୨ । ସୁଭଦ୍ରା ହରଣ (ମଧ୍ୟ—୧୦୮-୧୫୫)
୩ । ଷୋହଳ ସହସ୍ର କନ୍ୟା ଓ ପାରିଜାତ ହରଣ (ମଧ୍ୟ—୧୭୪-୧୮୧)
୪ । ନୀଳେନ୍ଦ୍ରୀ ହରଣ (ମଧ୍ୟ—୨୧୧-୨୩୮)
୫ । ଚନ୍ଦ୍ରାବତୀ ହରଣ (ମଧ୍ୟ—୨୫୨-୨୬୭)
୬ । ସୁରେଖା ହରଣ (ମଧ୍ୟ—୨୮୧-୨୯୪)
୭ । ଶୋଭାବତୀ ହରଣ (ମଧ୍ୟ—୩୩୩-୩୫୬)
୮ । ଊଷା ହରଣ (ମଧ୍ୟ—୩୬୭-୩୮୬)
୯ । ହାରାବତୀ ହରଣ (ବନ—୧୫୬-୧୬୮)
୧୦ । ସଚଳା ହରଣ (ବନ—୧୭୭-୧୮୪)
୧୧ । ତ୍ରିପୁରମୋହିନୀ ହରଣ (ବନ-୨୮୬-୨୯୧)

(ଜୟଦ୍ରଥଙ୍କ ଦ୍ୱାରା ଦ୍ରୌପଦୀ ହରଣ ଏ ପ୍ରସଙ୍ଗରେ ବିଚାର୍ଯ୍ୟ ନୁହେଁ, କାରଣ ଉଭୟଙ୍କର ବିବାହ ସମ୍ପନ୍ନ ହୋଇନାହିଁ ।)

(୨୮) ସା: ମ: ଭା (ରା) ବନ-ପୃ. ୨୭୬-୨୭୭

ସାରଳା ମହାଭାରତରେ ତତ୍କାଳୀନ ବିବାହ ପଦ୍ଧତି, କନ୍ୟାର ବିବାହକାଳୀନ ବେଶଭୂଷା, ଗୃହ ସାଜସଜ୍ଜା, ବଧୂ ବିଦାୟନା ବିଧି ଇତ୍ୟାଦିର ବିସ୍ତୃତ ଚିତ୍ର ପ୍ରଦାନ କରାଯାଇଛି । ଦୁଃଶୀଳା, ଦ୍ରୌପଦୀ, ଭାନୁମତୀ, ସୁରେଖା, ଚନ୍ଦ୍ରାଙ୍ଗଦା, ଉତ୍ତରା ପ୍ରମୁଖଙ୍କ ବିବାହ ବର୍ଣ୍ଣନାରୁ ଜଣାଯାଏ ଯେ ପ୍ରଥମେ ବିବାହ ନିମନ୍ତେ ବାର, ତିଥି, ଲଗ୍ନାଦି ଶୁଭ ମୁହୂର୍ତ୍ତ ନିରୂପିତ ହେଉଥିଲା । ଗ୍ରାମ ଦେବତାଙ୍କ ଦର୍ଶନ (ବା ବଉଁ ମଙ୍ଗଳା) ପରେ ମଙ୍ଗଳନ କନ୍ୟାକୁ ଅଁଳା ହଳଦୀ କୁଙ୍କୁମ ଲଗାଇ ନଦୀ ଜଳରେ ସ୍ନାନ ମାର୍ଜନା କରାଯାଉଥିଲା । ଏହାପରେ ଦାସଦାସୀ ତଥା ପରିଜନମାନେ 'କନ୍ୟାକୁ କେଶ ପ୍ରସାଧନ, କସ୍ତୁରୀ ଚନ୍ଦନ ବିଲେପନ ଓ ନାନା ଅଳଙ୍କାର ଓ ବସନ ଦ୍ୱାରା ବିଭୂଷିତ କରୁଥିଲେ । ତତ୍ପରେ, ଶଙ୍ଖ ମହୁରୀ ହୁଳହୁଳି ସୁମଧୁର ନାଦ ମଧ୍ୟରେ ବିଭୂଷିତା କନ୍ୟାକୁ ବିବାହ ମଣ୍ଡପକୁ ଅଣାଯାଉଥିଲା । (୨୯)

## ବିବାହକାଳୀନ ବେଶଭୂଷା

ସାରଳାଙ୍କ ଲେଖନୀରେ ବିବାହକାଳୀନ ବେଶଭୂଷଣ ବର୍ଣ୍ଣନା ପ୍ରକୃତରେ ଅତୀବ ଜୀବନ୍ତ ଓ ବାସ୍ତବ ରୂପ ପରିଗ୍ରହ କରିଅଛି । (୩୦) ଅଗୁରୁ, ଗୁମର, ଧୂପ ମାଧ୍ୟମରେ କନ୍ୟାର ପ୍ରକ୍ଷାଳିତ କେଶପାଶକୁ ସୁରଭିତ କରି ସେଥିରେ ଯୁଇ, ଜାଇ, ମଲ୍ଲୀ, ସେବତୀ, ମାଳତୀ ଆଦି ପୁଷ୍ପଗୁଚ୍ଛ ବିନ୍ୟାସ କରାଗଲା ପରେ ତାର କବରୀରେ ମୁକ୍ତା ଜାଲି, ମଥାରେ ସୀମନ୍ତିନୀ ମଣି, ଲଲାଟରେ ହୀରା ଖଞ୍ଜଣୀ, ବାହୁରେ ପଦ୍ମରାଗର ତାଟକ, କର୍ଣ୍ଣରେ ରତ୍ନବେଣ୍ଟ, ନାସାରେ ଅଷ୍ଟରତ୍ନ ବସଣୀ, ଗଳାରେ ଗୃପସରିମାଳ, ହୃଦରେ ମୁକ୍ତାହାର, ଭୁଜରେ କଙ୍କଣ, ହସ୍ତରେ ଦିବ୍ୟରତ୍ନ ଚୁଡ଼ି, ଅଙ୍ଗୁଳିରେ ଅଷ୍ଟରତ୍ନ ଖଚିତ ବିଦ ମୁଦ୍ରିକା, ପାଦରେ ସ୍ୱର୍ଣ୍ଣକଳା ଓ ନୂପୁର, ପସ୍ତରରେ ଅଳତା, କୁଚରେ କସ୍ତୁରୀର ଚିତ୍ର ଓ ମଥାରେ ପାଟ ଉପରିଣିଦେଇ ତାକୁ ବଧୂବେଶରେ ସଜ୍ଜିତ କରାଯାଉଥିଲା ।

---

(୨୯) ସା: ମ: ଭା: (ସ୍ୱା) ଆଦ୍ୟ-ପୃ. ୨୫୧, ୩୧୦

ମଧ୍ୟ-ପୃ. ୫୫, ୧୪୧-୧୫୩ ଓ ୩୦୧-୩୦୯

(୩୦) ଦାସ, ଦୀନକୃଷ୍ଣ—ଅଳଙ୍କାର ବୋଲି (ଅରୁଣୋଦୟ ପ୍ରେସ୍, କଟକ, ୧୯୨୨)

ପୃ ୫-୮

## ବିବାହ ପଦ୍ଧତି

ବରକନ୍ୟାଙ୍କୁ ହଳଦୀ ବିଲେପନପୂର୍ବକ ଶିଳପୁଆ ଉପରେ ବସାଇ ତୋଳା ପାଣିରେ ସ୍ନାନ କରାଯାଉଥିଲା । ଏହି ପାଣି ସଧବା ସ୍ତ୍ରୀମାନେ ଶଙ୍ଖ ହୁଳହୁଳି ଓ ମଙ୍ଗଳ ଗୀତ ଗାଇ ସାତଟି ଘରୁ ସଂଗ୍ରହ କରି ଆଣୁଥିଲେ । ସ୍ନାନ ପରେ ଦେଶ କାଳ ଗୋତ୍ର ଉଚ୍ଚାରଣପୂର୍ବକ ସ୍ୱୀକୃତିବରଣ, ବରୁଣ ପୂଜା ଓ ସଂକଳ୍ପବିଧାନ ଅନୁଷ୍ଠିତ ହେଉଥିଲା । ଏହାପରେ ଲବଣ ଚଉରି ବିଧି ପାଳନ ଅବସରରେ କନ୍ୟା ବର ଉପରକୁ ଲବଣ କ୍ଷେପଣ କରୁଥିଲା । କନ୍ୟା-ଭ୍ରାତା କାଂସ୍ୟ ପାତ୍ରରେ ବରପାତ୍ରର ପଦ ପ୍ରକ୍ଷାଳନ କଲାପରେ ନବଗ୍ରହ, ଅଷ୍ଟନାଗ ଓ ଦଶଦିଗପାଳଙ୍କ ପୂଜା ଓ ଦେବତା ବରଣ କରାଯାଉଥିଲା । ତତ୍ପରେ ବରକନ୍ୟାଙ୍କୁ ସ୍ଥାନାନ୍ତର କରାଯାଇ ଅନ୍ୟତ୍ର ମାତୃକା ପୂଜା ଶେଷ କରି ପୁଣି ଉଭୟଙ୍କୁ ବେଦୀ ଉପରକୁ ଅଣା ଯାଉଥିଲା । ଏଠାରେ ପିତୃ କ୍ରୋଡ଼ରେ ଆସୀନା କନ୍ୟା ହସ୍ତରେ ପିତୃପୁରୁଷଙ୍କ ଆବାହନପୂର୍ବକ ଅଭିମନ୍ତ୍ରିତ କୌତୁକ ସୂତା (ଅସରଳା ସୂତା) ବନ୍ଧନ କରିବା ବିଧି । ଏହା ପରେ ଉଭୟଙ୍କ ନାମ ଗୋତ୍ର ଓ ପିତୃ ପରଂପରା ଉଚ୍ଚାରଣପୂର୍ବକ କୁଶ କମ୍ବା ଦୂର୍ବାବଦ୍ଧ ଅକ୍ଷତ ଦ୍ୱାରା ହସ୍ତଗ୍ରନ୍ଥି ବିଧାନ ସମ୍ପନ୍ନ ହୁଏ । ଏ ସମୟରେ କନ୍ୟାପିତା ଦୁହିତାର ଦଶ ଦୋଷ (ଅନୃତ, ସାହସୀ, ମାୟା, ନିର୍ଲଜ୍ଜା, ନିଷ୍ଠୀ, ଗୈରିକା, ଆଳସ୍ୟ, ଅପାକୀ, ମୂର୍ଖତ୍ୱ ଓ ନିଦ୍ରା) କ୍ଷମା କରିବା ନିମନ୍ତେ ଜାମାତାଙ୍କୁ ଅନୁରୋଧ କରୁଥିଲେ । ଲାଜା ହୋମ ଓ ଯୌତୁକ ପ୍ରଦାନ ପରେ ବିବାହ କର୍ମ ସମାପ୍ତ ହେଉଥିଲା । ଗଣିକାଙ୍କ ନୃତ୍ୟଗାନ, ଶଙ୍ଖ ମହୁରି ବାଦ୍ୟ ବାଦନ, ଗୁସ୍ମାମଣ୍ଡପ ନିର୍ମାଣ, ସୁବର୍ଣ୍ଣ କଳସ ସ୍ଥାପନ, ଚନ୍ଦ୍ରାଙ୍କନ ଏବଂ ଚାଉଳ ଓ ସ୍ଫଟିକ ପାବଚ୍ଛ ଦ୍ୱାରା ଗୃହମଣ୍ଡନ ପ୍ରଭୃତି ଥିଲା ତତ୍କାଳୀନ ବିବାହୋତ୍ସବର ଆନୁଷଙ୍ଗିକ ସାଧାରଣ କାର୍ଯ୍ୟକ୍ରମ । (୩୧)

ବିବାହ ଶେଷରେ ମଧୁଶଯ୍ୟା ବିଧି, ଦ୍ୱିତୀୟ ଦିବସରେ ବରବଧୂ ବନ୍ଦାପନା ବା ପ୍ରୀତ୍ୟୁତ୍ସବ ଓ ଇନ୍ଦ୍ରାଣୀ ବ୍ରତ ପଠନ, ଚତୁର୍ଥୀ ଦିନ ଚଉଠି ବିଧି ଓ ବ୍ରାହ୍ମଣ ଭୋଜନ, ପଞ୍ଚମ ଦିବସରେ ରଙ୍ଗଖେଳ, ପିଠକା ମରାମରି, କର୍ଦ୍ଦମ କ୍ରୀଡ଼ା, ହାସ୍ୟ

(୩୧) (କ) ସା: ମ: ଭା: (ସ୍ୱା) ଆଦ୍ୟ-ପୃ. ୯, ୩୧୦, ମଧ୍ୟ-ପୃ ୪୪, ୧୪୧, ୧୪୩, ୩୦୧-୩୦୯, ବିରାଟ-ପୃ. ୧୭୬-୧୮୪

(ଖ) ରଥ, ଡ଼କ୍ଟର ଦୀନବନ୍ଧୁ—ସାରଳା ମହାଭାରତରେ ସାମାଜିକ ଜୀବନ (ଗ୍ରନ୍ଥ ମନ୍ଦିର, କଟକ, ୧୯୭୪) ପୃ. ୩୨-୬୪

ପରିହାସ ଏବଂ ସପ୍ତମ ଦିନ ରଜଉତ୍ସବ ସପ୍ତମଙ୍ଗଳା ବିଧି ପାରଂପରିକ ଭାବରେ ଅନୁଷ୍ଠିତ ହେଉଥିଲା । (୩୨) ବାଲ୍ୟ ବିବାହର ଅଷ୍ଟମ ଦିନ ପ୍ରତ୍ୟୁଷରୁ ବର ଶ୍ୱଶୁରାଳୟରୁ ସ୍ୱଗୃହକୁ ବା ଅନ୍ୟତ୍ର ଯାତ୍ରା କରିବା ବିଧି ଥିଲା ଏବଂ କନ୍ୟା ଅଷ୍ଟମଙ୍ଗଳାକୁ ବରଣ କରୁଥିଲା । (୩୩) ପରବର୍ତ୍ତୀ ସମୟରେ କନ୍ୟା ରଜୋବତୀ ହେବାର ସପ୍ତମ ଦିବସରେ ନବବଧୂର ପତିଗୃହ ଯାତ୍ରା ସମାହିତ ହେଉଥିଲା । ଯୁବତୀ ବିବାହ କ୍ଷେତ୍ରରେ ସପ୍ତମଙ୍ଗଳା ବିଧି ଶେଷରେ ବରସହ ବଧୂ ପତିଗୃହକୁ ଯାତ୍ରା କରୁଥିଲା । (୩୪) ଦ୍ରୌପଦୀ, ଉତ୍ତରାକୁମାରୀ ଓ ମଧୁମତୀ ବିବାହର ବହୁ ସମୟ ପରେ ରଜୋବତୀ ହୋଇଛନ୍ତି; ଜୟଦ୍ରଥ ଅଷ୍ଟମଙ୍ଗଳା ବିଧାନ ସାରିବାପରେ ଦୁଃଶୀଳାଙ୍କ ସହ ସିନ୍ଧୁପୁରୀକୁ ପ୍ରତ୍ୟାଗମନ କରିଛନ୍ତି ଏବଂ ସୁଭଦ୍ରା, ସୁରେଖା ଓ ଚିତ୍ରାଙ୍ଗଦାଙ୍କ କ୍ଷେତ୍ରରେ ବିବାହ ବିଧାନ ସମାପ୍ତ ହେବା ସଙ୍ଗେ ସଙ୍ଗେ ହିଁ ବଧୂ ବନ୍ଦାପନା ସମ୍ପନ୍ନ ହୋଇଛି ।

**ନବବଧୂ ଯାତ୍ରା**

ବଧୂ ମାଛ ଅନୁକୂଳ କରି ହାନ୍ଦୋଳାରେ ବସି ଦାସୀପରିଚାରିକାଙ୍କ ଦ୍ୱାରା ପରିବେଷ୍ଟିତା ହୋଇ, ଶଙ୍ଖ ମହୁରୀ ଭେରୀ ତୂରୀ ବାଦ୍ୟରୋଳ ମଧ୍ୟରେ ଖୁବ୍ ଆଡ଼ମ୍ବର ସହକାରେ ନବବଧୂ ପତିଗୃହକୁ ଯାତ୍ରା କରୁଥିଲା । ଏ ସମୟରେ କନ୍ୟାର ପିତାମାତା ଓ ବନ୍ଧୁ ପରିଜନମାନଙ୍କର ହୃଦୟ ଶୋକାପ୍ଲୁତ ହୋଇ ଉଠୁଥିଲା । ଶ୍ୱଶୁର ଘରେ ସଧବା ସ୍ତ୍ରୀମାନେ ନବବଧୂକୁ ହାନ୍ଦୋଳାରୁ ଅବତରଣ କରାଇ ଅର୍ଘ୍ୟ ବନ୍ଦାପନା ପୂର୍ବକ ଗୃହମଧ୍ୟକୁ ପାଛୋଟି ନେଉଥିଲେ ଏବଂ ପୁରୋହିତ ମନ୍ତ୍ରୋଚ୍ଚାରଣ ପୂର୍ବକ ଲାଜାହୋମ ସଂପାଦନ କରୁଥିଲେ (୩୫) । ସେହି ହୋମଶିଖାର ସ୍ୱରୂପ ଅନୁଯାୟୀ ନବଦମ୍ପତିଙ୍କ ଭାବୀ ଜୀବନର ସୁଖ ଦୁଃଖ ନିରୂପଣ କରାଯାଉଥିଲା । (୩୬)

---

(୩୨) ସା: ମ: ଭା: (ସା)—ଆଦ୍ୟ-ପୃ. ୩୧୪, ମଧ୍ୟ-ପୃ. ୧୫୩ ଓ ବିରାଟ-ପୃ. ୯୪

(୩୩) —ଏକନ— ଆଦ୍ୟ-ପୃ. ୩୧୪ ଓ ମଧ୍ୟ-ପୃ. ୧୫୩ ଓ ୨୮୮

(୩୪) —ଏକନ— ଅଦ୍ୟ-ପୃ. ୨୧୨, ୨୧୩ ଓ ମଧ୍ୟ ପୃ. ୧୫୩

(୩୫) —ଏକନ— ମଧ୍ୟ-ପୃ. ୬ ଓ ୩୦୮ ଏବଂ ବିରାଟ-ପୃ. ୯୮୩-୯୮୪

(୩୬) ସାରଳାଙ୍କ ବର୍ଣ୍ଣନା ଅନୁଯାୟୀ ଆହୁତ ଅଗ୍ନିଙ୍କର ପୃଷ୍ଠଦେଶରେ ପଡିଲେ ମନୋମାଳିନ୍ୟ, ନାସିକାରେ ପଡିଲେ ଏକମାତ୍ର ପୁତ୍ରଲାଭ, କଣ୍ଠରେ ସନ୍ତାନ ସନ୍ତତି ନଷ୍ଟ, ଗଣ୍ଡ ସ୍ଥଳେ କନ୍ୟାର ମୃତ୍ୟୁ, ହୃଦୟରେ ବହୁ ସନ୍ତାନ ଲାଭ ଓ

ଏହାପରେ ନବ ଦମ୍ପତ୍ତିଙ୍କୁ ଏକତ୍ର ଅନ୍ନପ୍ରାଶନ କରାଇ ମଧୁଶଯ୍ୟା ସଦନରେ ଛାଡ଼ି ଦିଆଯାଉଥିଲା । ଏହି ଅବସରରେ ବାଜା ଖେଳ ଓ ନୃତ୍ୟ ଗୀତାଦି ଆୟୋଜିତ ହେଉଥିଲା । (୩୭)

ଏଠାରେ ସ୍ମରଣଯୋଗ୍ୟ ଯେ ସାରଳା ପାରଂପରିକ ବାଲ୍ୟବିବାହ ପ୍ରଥାର ପ୍ରତ୍ୟକ୍ଷ ପ୍ରତିବାଦ କରି ନଥିଲେ ସୁଦ୍ଧା ଯୁବତୀ ବିବାହକୁ ପରୋକ୍ଷରେ ସମର୍ଥନ କରାଇଛନ୍ତି । ତାଙ୍କର ସ୍ପଷ୍ଟ ମତ ଯେ ସ୍ତ୍ରୀ ପୁରୁଷଙ୍କର ଉପଯୁକ୍ତ ମିଳନ ନିମନ୍ତେ ସ୍ତ୍ରୀକୁ ଷୋହଳ ଓ ପୁରୁଷକୁ ତିରିଶ ବର୍ଷ ବୟସ ହେବା ବାଞ୍ଛନୀୟ । (୩୮) ସେ ନାରୀ ହରଣର ଘୋର ବିରୋଧୀ ଥିଲେ ଏବଂ ପରସ୍ତ୍ରୀ ବୟସ୍କା ଗମର୍ଣ୍ଣା ଏପରିକି ବେଶ୍ୟା ଉପଭୋଗକୁ ମଧ୍ୟ ଘୃଣା କରୁଥିଲେ । (୩୯) ସ୍ତ୍ରୀର ସତୀତ୍ୱ ଓ ପୁରୁଷର ଏକପତ୍ନୀ ନୀତିରେ ତାଙ୍କର ଅଟଳ ବିଶ୍ୱାସ ରହିଥିଲା । ଏଣୁ ଭୀମ, ଅର୍ଜ୍ଜୁନଙ୍କ ଭଳି ବହୁପତ୍ନୀ ବିଳାସୀଙ୍କ ମୁଖରେ ସେ କେବଳ ଏକ ପତ୍ନୀ ଆଦର୍ଶର ଶ୍ରେୟଃ ବାଣୀ ଶୁଣାଇ ନାହାନ୍ତି, ତାହା ସଙ୍ଗେ ସଙ୍ଗେ 'ନ ବାଞ୍ଛୁ ମୋ ଚିତ୍ତ ପରଦାର ସଙ୍ଗ ପ୍ରତି' ବୋଲି କାକୁସ୍ଥ ପ୍ରାର୍ଥନା ମଧ୍ୟ କରିଛନ୍ତି । (୪୦)

### ଯୌତୁକ ପ୍ରଥା

ସାରଳା ମହାଭାରତ ଆଦ୍ୟପର୍ବରେ ଅମ୍ବା, ଅମ୍ବିକା ଓ ଅମ୍ବାଳିକାଙ୍କ ସହିତ ଭୀଷ୍ମ, ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦାଙ୍କ ବିବାହ ଠାରୁ ଆରମ୍ଭ କରି ସ୍ୱର୍ଗାରୋହଣ ପର୍ବରେ ସୁହାଣୀ କନ୍ୟା ସହିତ ଯୁଧିଷ୍ଠିରଙ୍କ ବିବାହ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ

---

ଭାଗ୍ୟବାନ, ସ୍କନ୍ଧଦେଶରେ ଦୈନ୍ୟ, ବାମ ଭୁଜରେ ପରପୁରୁଷ ପ୍ରୀତି ଓ ସ୍ୱାମୀରେ ଅପ୍ରୀତି, ଦକ୍ଷିଣ ଭୁଜରେ ସ୍ୱାମୀ ଦ୍ୱାରା ପରିତ୍ୟକ୍ତା, କଟୀରେ ବହୁ-କନ୍ୟା ସନ୍ତାନ, ଜାନୁରେ ଅପୂର୍ବ ଓ ଅପାର ପ୍ରୀତି, ତାଳୁରେ ଦରିଦ୍ର ଓ କଳହ ଏବଂ ଅଗ୍ନି ଭୂମିରେ ପତିତ ହେଲେ ବରକନ୍ୟା ଉଭୟେ ଭିକ୍ଷାଜୀବୀ ହୁଅନ୍ତି । (ସା: ମ: ଭା: (ବା) ବିରାଟ-ପୃ. ୯୮୩ ଓ ସା: ମ: ଭା: (ସା) ବିରାଟ -ପୃ. ୬୮୯-୬୯୧)

(୩୭) ସା: ମ: ଭା: (ବା) ଆଦ୍ୟ ପୃ. ୧୨୨, ମଧ୍ୟ-ପୃ. ୩୦୮ ଓ ବିରାଟ-ପୃ. ୯୮୪

(୩୮) ସା: ମ: ଭା: (ସା)—ମଧ୍ୟ-ପୃ. ୨୫୮ (ସା: ମ: ଭା: (ବା)— ମଧ୍ୟ-ପୃ. ୧୨୮ରେ ସ୍ତ୍ରୀର ବୟସ ଅଷ୍ଟାଦଶ ଲେଖା ଅଛି ।)

(୩୯) ସା: ମ: ଭା: (ବା) ଆଦ୍ୟ-ପୃ. ୧୫୩, ମଧ୍ୟ-ପୃ. ୧୦୩, ବନ-ପୃ. ୫୬ ଓ ୧୫୮

(୪୦) ସା: ମ: ଭା: (ବା)—ଆଦ୍ୟ-ପୃ. ୧୫୩

ବିବାହ ଶେଷରେ ଯୌତୁକ ପ୍ରଦାନର ବର୍ଣ୍ଣନା ପରିଲକ୍ଷିତ ହୁଏ । ସାରଳାଙ୍କ ବର୍ଣ୍ଣନା ଅନୁଯାୟୀ ଗୋଧନ, ଅଶ୍ୱ, ଗଜ, ବାଜା, ସ୍ୱର୍ଣ୍ଣ, ରତ୍ନ, ପାଟଛତ୍ର, ରଥ, ପାରିଦଣ୍ଡ, ଉଦଣ୍ଡ, ଅସ୍ତ୍ରଶସ୍ତ୍ର, ସ୍ୱର୍ଣ୍ଣପାତ୍ର, ଗଣିକା, ନର୍ତ୍ତକୀ, ପରିଚାରିକା, ଏପରିକି ଭୂମି, ନଗ୍ର, ଗ୍ରାମ, ବନ, ମଧ୍ୟ ଯୌତୁକର ଅନ୍ତର୍ଭୁକ୍ତ ଥିଲା । (୪୧) କିନ୍ତୁ, ତତ୍କାଳୀନ ସମାଜରେ ଯୌତୁକ କନ୍ୟାଦାନର ଦକ୍ଷିଣା ରୂପେ ପରିଗଣିତ ହେଉଥିଲା ଏବଂ ତାହା ଦାବୀ କରାଯାଉ ନଥିଲା । କନ୍ୟାପିତାଙ୍କ ପକ୍ଷରୁ ଆଗତ ପ୍ରସ୍ତାବକୁ ଉପେକ୍ଷା କରିବା ଦୋଷାବହ ବିବେଚିତ ହେଉଥିଲା । ଯାଚିବା କନ୍ୟାକୁ ଉପେକ୍ଷା ନକରିବାର ଆଦର୍ଶ ସାରଳା ଯେଭଳି ଦୃଢ଼ ସ୍ୱରରେ ପ୍ରଚାର କରିଛନ୍ତି, ସେଥିରେ ଯୌତୁକ ଦାବି ଲାଗି କୌଣସି ଅବକାଶର ପ୍ରଶ୍ନ ନାହିଁ । (୪୨)

**ଯୌନଚର୍ଯ୍ୟା**

ବିବାହିତ ଦମ୍ପତ୍ତିଙ୍କର ଯୌନଜୀବନଚର୍ଯ୍ୟା କ୍ଷେତ୍ରରେ ସାରଳା ବାତ୍ସାୟନଙ୍କ କାମଶାସ୍ତ୍ର ଓ ମାନବର ମନସ୍ତାତ୍ତ୍ୱିକ ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ସଂଯମ, ନୈତିକତା ଓ ସନ୍ତାନଧର୍ମ ପାଳନ ପ୍ରତି ମଧ୍ୟ ଦୃଷ୍ଟି ଦେଇଛନ୍ତି । ଯୌବନର ସମ୍ପୂର୍ଣ୍ଣ ଉପଭୋଗ ନିମନ୍ତେ ସେ ଦମ୍ପତ୍ତିମାନଙ୍କୁ ଦୈହିକ ସମ୍ଭୋଗ ପାଇଁ ଚନ୍ଦ୍ରଚାଳନା, (୪୩) ଚଉଷଠି ବନ୍ଧ ଓ ବାହ୍ୟର କ୍ରୀଡ଼ାରସର (୪୪) ଉପଯୋଗ ଲାଗି ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ତିଥି ନକ୍ଷତ୍ର ତଥା ସ୍ତ୍ରୀର ରଜସ୍ୱଳା ଦିବସ ଅନୁଯାୟୀ ଶୃଙ୍ଗାର ବା ସହବାସର ଫଳାଫଳ ସମ୍ପର୍କରେ ସଚେତନ କରାଇଛନ୍ତି । ରଜୋବନ୍ତୀ ନାରୀ ପ୍ରଥମ ଚାରିଦିନ ଅସ୍ପୃଶ୍ୟା ଏବଂ ପଞ୍ଚମ ଦିବସରୁ ବିଂଶ ଦିବସ ପର୍ଯ୍ୟନ୍ତ ତିଥି ବେଳା ଅନୁଯାୟୀ ରାତିର ନିର୍ଦ୍ଦିଷ୍ଟ କାଳରେ ହିଁ ସହବାସ ସ୍ପୃହଣୀୟ ବୋଲି ସାରଳା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । (୪୫) ତାଙ୍କ ଭାଷାରେ—

---

(୪୧) ଆଦ୍ୟ—ପୃ: ୧୨୨, ୩୧୧, ମଧ୍ୟ—ପୃ. ୫୭, ୩୦୭
ସା: ମ: ଭା: (ସା) ସ୍ୱର୍ଗାରୋହଣ ପୃ ୧୩

(୪୨) (କ) - ଏଜନ - ଆଦ୍ୟ—୧୫୪, ମଧ୍ୟ ପୃ. ୧୫୨
(ଖ) କର, ବିରୂପାକ୍ଷ—ଉତ୍କଳରେ ବୌଦ୍ଧଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୧) ପୃ. ୬୨

(୪୩) ସା: ମ: ଭା: (ରା) ଆଦ୍ୟ—ପୃ. ୧୨୪-୧୨୫

(୪୪) ସା: ମ: ଭା: (ସ୍ୱା) ମଧ୍ୟ—ପୃ-୨୬୨-୨୬୩

(୪୫) ସା: ମ: ଭା: (ରା) ଆଦ୍ୟ—ପୃ- ୨୩

ଋତୋଶ ଦିନେ ଅସ୍ପୃଶ୍ୟା ହୁଅନ୍ତି ସେ ନାରୀ
ତାକୁ ଛୁଇଁଲେ ଚଣ୍ଡାଳ ଛୁଆଁ ଦୋଷ ସରି ।
ଯେ ବସ୍ତ୍ରେ ଛୁଇଁବ ସେହି ବସ୍ତ୍ରେ କରି ସ୍ନାନ
ଉପବାସେ ରହି ବ୍ରତ କରିବ ସେଦିନ ।
ଦ୍ୱିତୀୟ ଦିନେ ଛୁଅନ୍ତି ଯେବେ ସେହି ନାରୀ
ପ୍ରତ୍ୟକ୍ଷେ ହୁଅଇ ବ୍ରହ୍ମହତ୍ୟା ଦୋଷ ସରି ।
ଯେବଣ ନରେ ତୃତୀୟ ଦିବସେ ଛୁଅଁନ୍ତି
ଅପୂଜା ଲିଙ୍ଗ ଭଙ୍ଗିବା ଅଘଟକ ପାନ୍ତି ।
ଚତୁର୍ଥ ଦିବସେ ଯାନ୍ତି ଯେ ସ୍ତ୍ରୀଙ୍କ ପାଶ
ପଞ୍ଚ ମହାପାପ କଲା ସରି ପାଇ ଦୋଷ ।
ଶୁଦ୍ଧ ସ୍ନାନ କରିବ ସେ ପଞ୍ଚମ ଦିବସେ
ସେ ଦିନ ପୁରୁଷ ଯିବ ଜାଣ ତାର ପାଶେ ।
ପଞ୍ଚମ ଦିନୁ ସପ୍ତମ ଦିନ ପରିଯନ୍ତ
ଯେ ପୁରୁଷ ଉପେକ୍ଷନ୍ତି ଦୋଷେ ହୁଅନ୍ତି ଲିପ୍ତ । (ଆଦ୍ୟ (ବା) ୨୩)

× × ×

ରଜ ମୁକୁତ ଉତ୍ତାରେ ତା ସଙ୍ଗ ନକଲେ
ସେ ଶୋଣିତ ପିତୃଲୋକ ପିଅନ୍ତିଟି ଭଲେ । (ମଧ୍ୟ (ବା) ପୃ· ୭)

× × ×

ଅହେ ସ୍ୱାମୀ ଶୁଣ ଅଟେ ଷୋଡ଼ଶ ଯେ ଘଡ଼ି
ସାତ ଦଣ୍ଡେ ପଣ୍ଡେ କାଳ ପୁରୁଷଙ୍କ ଧାଡ଼ି
ପ୍ରଥମ ଘଡ଼ିରେ ଯେବେ ସ୍ତ୍ରୀସଙ୍ଗ କରଇ
ଜନମ ହୋଇଲା କ୍ଷଣି କୁମର ମରଇ ।
ଚାରି ଦଣ୍ଡଠାରେ ଯେବେ ହୁଏ ସ୍ତ୍ରୀଙ୍କ ସଙ୍ଗ
ବରଷକ ଭିତରେ ସେହି ମରେ ଭୋଗୀ ରୋଗ ।
ପାଞ୍ଚ ଦଣ୍ଡଠାରେ ସ୍ତ୍ରୀଙ୍କ ସଙ୍ଗ ଯେ କରଇ
ତିରିଶ ବର୍ଷରେ ପୁତ୍ର ମରଣ ଲଭଇ ।
ଛଅ ଦଣ୍ଡ ମଧ୍ୟରେଟି ଯେବେ ଗର୍ଭେ ରହେ
ତରୁଣ ବୟସେ କାଳ ହରଇ ନିଶ୍ଚୟେ ।
ଯେଉଁ ଗାର୍ଯ୍ୟ ରହଇଟି ସାତ ଦଣ୍ଡ ମଧ୍ୟେ
ପଚିଶ ବର୍ଷେ ସେ ପୁତ୍ର ନାଶ ଯାଇ ହାଦେ ।

ଅଠଦଣ୍ଡ ମଧ୍ୟେ ଯେଉଁ ଉପୁଜଇ ବାଳ
ସେହୁ ପୁତ୍ର ପରମାୟୁ ସତୁର ବତ୍ସର ।
ନବ ଦଣ୍ଡ ମଧ୍ୟରେ ଯେ ଉପୁଜେ ସନ୍ତତି
ସେ ସନ୍ତାନ ଅଶୀ ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି । (ମଧ୍ୟ (ଖ) ପୃ. ୪୯୫)

କେବଳ ଏତିକି ନୁହେଁ, ସାରଳା ଦିବା ସହବାସକୁ ଦୃଢ଼କଣ୍ଠରେ ବିରୋଧ କରିଛନ୍ତି ଏବଂ ଅଶୁଭ ତିଥି ଓ ବେଳାରେ ବୀର୍ଯ୍ୟଦାନ ନ କରିବା ପାଇଁ ସ୍ପଷ୍ଟ ଚେତାବନୀ ଶୁଣାଇଛନ୍ତି ।

ଦିବସେ ଶୃଙ୍ଗାର କଲେ ହୁଏ ବଡ଼ ଦୋଷ
ଶିରଚ୍ଛେଦନ ଶାସ୍ତ୍ରିକ କହେ କଳୁଷିଣୀ ।
ଦିବସେ ଶୃଙ୍ଗାର କଲେ ଆୟୁ ହୁଏ କ୍ଷୟ
ଜନମ ହୋଇଲେ ଦୁଷ୍ଟ ହୁଅଇ ତନୟ ।
ଦୁହିତା ହୋଇଲେ ହୁଏ ମହାରୋଗେ ରୋଗୀ
ମୂର୍ଖତ୍ୱ ହୁଅଇ ଆୟୁ ନାଶ ଯାଏ ବେଗି । (ଆଦ୍ୟ (ଖ) ପୃ. ୨୮)

X X X

ଅଶୁଭ ବେଳାରେ ଯେବେ ବୀର୍ଯ୍ୟ ପଡ଼ିଥାଇ
ସେ ପୁତ୍ର ଅଯୋଗ୍ୟ ହୋଇ ଅଳ୍ପାୟୁ ହୁଅଇ ।
ପୂର୍ଣ୍ଣିମୀ, ପଞ୍ଚମୀ, ଦଶମୀ ଏ ତିନି ତିଥି
ଏଥି ବୀର୍ଯ୍ୟ ଦେଲେ ପୁତ୍ର କେଭେ ନ ବଂଚନ୍ତି ।
ପ୍ରତିପଦା, ଚତୁର୍ଦ୍ଦଶୀ, ଏକାଦଶୀ ଦିନ
ଏଥି ବୀର୍ଯ୍ୟ ଦେଲେ ରୋଗୀ ହୁଅଇ ନନ୍ଦନ ।
ତୃତୀୟା, ଦ୍ୱାଦଶୀ, ତ୍ରୟୋଦଶୀ ତିନିଦିନ
ଏଥି ବୀର୍ଯ୍ୟ ଦେଲେ ପୁତ୍ର ହୁଏ କର୍ମହୀନ ।
ସଂକ୍ରାନ୍ତି ଅମାବାସ୍ୟା ଗ୍ରହଣ ଏ ତିନି
ଖଣ୍ଡିଆ କୁବୃଜା ଖଞ୍ଜ ହୁଅନ୍ତି ଜନମି । (ଦ୍ରୋଣ (ଖ) ପୃ. ୪୮)

ଏହା ବ୍ୟତୀତ, ଅସଂଯତ ସହବାସରେ ବଳ, ବପୁ ଓ ଆୟୁ ହାନି ଅନିବାର୍ଯ୍ୟ; ତେଣୁ ସାରଳା ଅବାଧ ଶୃଙ୍ଗାରକୁ ନିରୁତ୍ସାହିତ କରିବାକୁ ଯାଇ ମାସକ ମଧ୍ୟରେ ତିନିଥର ସହବାସ ସର୍ବଶ୍ରେଷ୍ଠ ବୋଲି ମତ ଦେଇଛନ୍ତି । (୪୬) ଏପରିକି, ମାସକୁ ମାତ୍ର

---

(୪୬) ମାସକେ ଯେ ତିନି ବେଳ ଯୋଗ ସ୍ୱାମୀଠାରେ
ତେବେ ସିନା ବଳ ବପୁ ଥାଇ ଏ ଶରୀରେ ।

ଏକବାର ଶୃଙ୍ଗାର ରଚନା ଉଦ୍ଦେଶ୍ୟରେ ବିଧାତା ବାର ମାସରେ ବାର ଥର ଦାମ୍ପତ୍ୟ ସଙ୍ଗ କରାଯିବା ପାଇଁ ବର୍ଷକରେ ବାରମାସ ସୃଷ୍ଟି କରିଛନ୍ତି ବୋଲି ତାଙ୍କର ଅଭିମତ ଅତ୍ୟନ୍ତ କୌତୂହଳୋଦ୍ଦୀପକ । (୪୬) ତେବେ, ସ୍ତ୍ରୀ ସନ୍ତୋଗ କାଳରେ ସମ୍ପୂର୍ଣ୍ଣ ରତିସୁଖ ଉପଭୋଗର ଆବଶ୍ୟକତା ଉପଲବ୍ଧି କରି ସାରଳା ଶୃଙ୍ଗାର ଭଙ୍ଗକୁ ଲିଙ୍ଗଭଙ୍ଗ ଦୋଷ ତଥା ବ୍ରହ୍ମହତ୍ୟା ପାତକ ସଙ୍ଗେ ସମାନ ବୋଲି ଅଭିହିତ କରିଛନ୍ତି । (୪୮) ସର୍ବୋପରି, ସାରଳା ମହାଭାରତରେ ଦୁଇନାରୀଙ୍କ ମଧ୍ୟରେ ସମଲିଙ୍ଗୀ ରତିକ୍ରିୟା ଦ୍ୱାରା ଭଗୀରଥଙ୍କ ଭଳି ପୁତ୍ର ଜାତ ହେବାର କଳ୍ପନା କରାଯାଇଛି । (୪୯)

ଉପର୍ଯ୍ୟୁକ୍ତ ଆଲୋଚନାରୁ ଅବଧାରିତ ହୁଏ ଯେ ଅଧୁନା ଜନସଂଖ୍ୟା ନିୟନ୍ତ୍ରଣ ଦିଗରେ ଯେଉଁ ସବୁ ବ୍ୟବସ୍ଥା ଗ୍ରହଣ କରାଯାଉଛି ଏବଂ ପ୍ରୋତ୍ସାହନମୂଳକ ପଦକ୍ଷେପ-ମାନ ନିଆଯାଉଛି, ତା ତୁଳନାରେ ସାରଳାଙ୍କ ସମୟର ସାମାଜିକ

---

ଅମିତ ମହବାସରେ ଆୟୁ ହୁଏ ହାନି
ତାହା ଯେ ଗ୍ରାମ ନବୁଝି ଆସଇ ଅଜ୍ଞାନୀ । (ମଧ୍ୟ (ଗ) ପୃ. ୮)

(୪୬) ଧାତା ସୃଜିଲା ଅଛଇ ଦ୍ୱାଦଶ ମାସକୁ
ଦ୍ୱାଦଶ ବେଳ ଶୃଙ୍ଗାର କଲା ସମ୍ବତ୍ସରକୁ । ( ମଧ୍ୟ (ସା) ପୃ. ୨୫୮)

(୪୮) ଦନକର ବୋଇଲେ ହୋ ରତିରଙ୍ଗ କଲେ
ଲିଙ୍ଗ ଭଗ୍ନ ଦୋଷ ହୋଇ ବାର୍ଯ୍ୟ ନ ଗ୍ରହିଲେ । (ଆଦ୍ୟ (ଗ) ପୃ: ୪୧)

X X X

ଯୁବତେ ପର ଶୃଙ୍ଗାର ଭଙ୍ଗି ନ ଯୋଗାଇ
ଲିଙ୍ଗ ଭଗ୍ନ ଦୋଷସର ବ୍ରହ୍ମହତ୍ୟା ପାଇ । (ଆଦ୍ୟ (ଗ) ପୃ. ୪୬)

(୪୯) ଶିବଙ୍କ ଆଦେଶେ ଦୁଇ ରାଣୀ କଲେ ରତି ।
ରତି କରନ୍ତେ ଗୋଟିଏ ହେଲା ଗର୍ଭବତୀ ॥
ଦଶମାସ ଅନ୍ତେ ହେଲା ପ୍ରସବର କାଳ ।
ମାଂସ ପିଣ୍ଡସର ଜନ୍ମ ହେଲା ଏକ ବାଳ ॥

X X X

ସେ ପୁତ୍ର ଫିଙ୍ଗିବା ପାଇଁ ବିଚାରନ୍ତି ମନେ ।
ଶୂନ୍ୟବାଣୀ ହେଲା ତାକୁ ପାଳ ଅତି ଯତ୍ନେ ॥
ନିଷ୍ପତ୍ତି ସଦ୍‌ଗତି ହେବ ତୁମ୍ଭଙ୍କୁ ଏ ପୁତ୍ର ।
ଯତନେ ପାଳ ସ୍ୱା ନାମ ଦେଉ ଭଗୀରଥ ॥

(ସା: ମ: ଭା. (ଖ) ବନ—ପୃ. ୧୪୪)

ପଦକ୍ଷେପଗୁଡ଼ିକ ଅଧିକ ଫଳବତୀ ଥିଲା । ସାମ୍ପ୍ରତିକ 'ଗ୍ରୀନ୍ କାର୍ଡ' (୫୦) ବ୍ୟବହାର ଆର୍ଥିକ ଓ ସାମାଜିକ ପ୍ରୋତ୍ସାହନ ଅପେକ୍ଷା ତତ୍କାଳୀନ ଲୋକାଚାର ଧର୍ମ ଜନସଂଖ୍ୟା ନିୟନ୍ତ୍ରଣ ନିମିତ୍ତ ଅଧିକ ଉପଯୋଗୀ ଓ ହିତକର ହୋଇଥିବା ପରି ମନେହୁଏ । ପୁନଶ୍ଚ, ସୁସ୍ଥ ଯୌନଜୀବନ ଯାପନ ଦ୍ୱାରା ମାନବର ବ୍ୟକ୍ତିଗତ ଜୀବନ ଯେ କେବଳ ଆନନ୍ଦମୁଖର ହୋଇଉଠେ, ତା' ନୁହେଁ; ବରଂ, ସାମାଜିକ ଉନ୍ନତିର ପଥ ମଧ୍ୟ ପୁଷ୍ପିତ ହୁଏ । ଅସଂଯତ ଯୌନଚର୍ଯ୍ୟା ବ୍ୟକ୍ତି, ସମାଜ ଓ ରାଷ୍ଟ୍ରକୁ ଧ୍ୱଂସାଭିମୁଖୀ କରିଥାଏ । ରାଜା ଏ କ୍ଷେତ୍ରରେ ଅସଂଯମୀ ହେଲେ ରାଷ୍ଟ୍ରର ଅଧଃପତନ ଯେ ଅବଶ୍ୟମ୍ଭାବୀ, ଏହା ସାରଳାଙ୍କ ବିଭିନ୍ନ ଉପାଖ୍ୟାନରୁ ବ୍ୟଞ୍ଜିତ । ପୌରାଣିକ କଳ୍ପନା ବଳୟର ଅନ୍ତରାଳରେ ସାମାଜିକ ଜୀବନର କଳ୍ପିତ ଆଦର୍ଶ ସାରଳାଙ୍କ ଆଦର୍ଶ ରାଷ୍ଟ୍ର ପରିକଳ୍ପନାର ପରିପୂରକ ମାତ୍ର ।

## ସାରଳା ମହାଭାରତରେ ଆଦର୍ଶ ସାମାଜିକ ଜୀବନର ରୂପରେଖ

ସାରଳାଙ୍କ ସମକାଳୀନ ସମାଜରେ ସହଜିଆ ଧର୍ମ ଓ ତାନ୍ତ୍ରିକ ଉପାସନାର ପ୍ରଭାବରେ ନାରୀଙ୍କୁ ଏକ ଉପଭୋଗ୍ୟ ସାମଗ୍ରୀରେ ପରିଣତ କରାଯିବା ଦିଗରେ ଉଦ୍ୟମ ହୋଇଥିଲେ ହେଁ, ସାରଳା ସେହି ବୀଭତ୍ସ ଓ କୁତ୍ସିତ ଅପପ୍ରୟାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏକ ଆଦର୍ଶ ଓ ନୈତିକତାପୂର୍ଣ୍ଣ ସାମାଜିକ ଜୀବନର ସନ୍ଧାନ ଦେବାଲାଗି ଚେଷ୍ଟା କରିଥିଲେ । ଦୁହିତା, ଜାୟା, ଜନନୀ ଓ ଭଗିନୀ ଭୂମିକାରେ ନାରୀଜାତିର ପବିତ୍ରତା ଓ ମହତ୍ତ୍ୱ ପ୍ରକୀର୍ତ୍ତନ କରିବା ଥିଲା ତାଙ୍କର ମୁଖ୍ୟ ଲକ୍ଷ୍ୟ । ଏଥିପାଇଁ ଶୈଶବରୁ ହିଁ ପିତାମାତା ଓ ଗୁରୁଜନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ପାଇଁ ସେ ଉପଦେଶ ବାଣୀ ଶୁଣାଇଛନ୍ତି । କାରଣ, ତାଙ୍କ ମତରେ ଗୁରୁଜନଙ୍କ ଅବମାନନା ଫଳରେ ବଂଶ, ଧର୍ମ, ବିଦ୍ୟା, ଆୟୁ ପ୍ରଭୃତି କ୍ଷୟ ହୁଏ । (୫୧) ଗର୍ଭକଷ୍ଟ, ପ୍ରସବ ବେଦନା ଓ ଶିଶୁର ଲାଳନପାଳନ ଦାୟିତ୍ୱ ସମ୍ପାଦନ

---

(୫୦) ତା ୧୧।୧୦।୮୩ ଠାରୁ ଓଡ଼ିଶା ସରକାର ଦୁଇଟି ସନ୍ତାନର ପିତାମାତା ସ୍ଥାୟୀଭାବେ ପରିବାର ନିୟନ୍ତ୍ରଣ ବ୍ୟବସ୍ଥା ଅବଲମ୍ବନ କଲେ ତାଙ୍କୁ ବାର୍ଷିକ ବର୍ଦ୍ଧିତ ଦରମା ହାରର ଦୁଇଟି ଜଡି ଏକକାଳୀନ ପ୍ରୋତ୍ସାହନ ଭତ୍ତା ସ୍ୱରୂପ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ସନ୍ତାନସନ୍ତତିଙ୍କୁ ଶିକ୍ଷା ଓ କର୍ମନିଯୁକ୍ତି କ୍ଷେତ୍ରରେ ଅଗ୍ରାଧିକାର ଦେବା ଲାଗି ଏକ ନିୟମ ପ୍ରବର୍ତ୍ତନ କରିଛନ୍ତି । ଏଭଳି ଦମ୍ପତିଙ୍କୁ ଏକ 'ଗ୍ରୀନ୍ କାର୍ଡ଼' ଦିଆଯାଇଥାଏ ।

(୫୧) ପିତାରୁ ବାକ୍ୟ ଯେବେ ଖଣ୍ଡନ କରଇ ପୁତ୍ର
ଆୟୁଷ କ୍ଷୁଣ୍ଣ ହୋଇ ହୁଅଇ ନିଶ୍ରାନ୍ତ ।

ଦୃଷ୍ଟିରୁ ସନ୍ତାନ ଉପରେ ମାତାହିଁ ଅଧିକାରିଣୀ; କିନ୍ତୁ ପିତାଙ୍କ ବୀର୍ଯଦାନ ଦ୍ୱାରହିଁ ମାତା ସନ୍ତାନସମ୍ଭବା ହୋଇପାରୁ ଥିବାରୁ ପୁତ୍ରର ପ୍ରକୃତ ଅଧିକାରୀ ପିତା । ଏ ଦୃଷ୍ଟିରୁ ପିତାମାତାଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ପୁତ୍ରର ଶ୍ରେଷ୍ଠ ସାଧାରଣ କର୍ତ୍ତବ୍ୟ ରୂପେ ପରିଗୃହୀତ । (୫୨) ସେ 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ନୀତିରେ ବିଶ୍ୱାସ ପୋଷଣ ପୂର୍ବକ ବଂଶରକ୍ଷା ଉଦ୍ଦେଶ୍ୟରେ ପୁତ୍ରଲାଭ ନିମିତ୍ତ ବହୁ ଉପାୟ ନିର୍ଦ୍ଦେଶ କରିଥିଲେହେଁ କୁଳାଙ୍ଗାର ବା ଅନାଗୃହୀ ପୁତ୍ରକୁ ଏକ ସାମାଜିକ କଳଙ୍କ ରୂପେ ଗ୍ରହଣ କରି ସେଭଳି ପୁତ୍ର ଜାତ ନ ହେବାହିଁ ଉଚିତ ବୋଲି ମତବ୍ୟକ୍ତ କରିଛନ୍ତି । (୫୩) ଏପରିକି ଦୁଷ୍ଟ ପୁତ୍ରର ହତ୍ୟାରେ ପିତା ଅପରାଧୀ ହୁଏନାହିଁ ବୋଲି ସାରଳା ମହାଭାରତରେ ସ୍ପଷ୍ଟ ଉଲ୍ଲେଖ ଅଛି । (୫୪)

ବଂଶରକ୍ଷା ଅପେକ୍ଷା ବଂଶର ସୁନାମ ରକ୍ଷା ତଥା ମାନବଜୀବନର ସାର୍ଥକତା ଉପରେ ସାରଳା ବିଶେଷ ଗୁରୁତ୍ୱ ଦେଇଛନ୍ତି । ପରିବାର ସମାଜର ପ୍ରାଣକେନ୍ଦ୍ର । ତେଣୁ ପରିବାର ମଧ୍ୟରେ ଆଦର୍ଶ ଜୀବନର ବିକାଶ ତଥା ପାରିବାରିକ ସୁସମ୍ପର୍କ ପ୍ରତିଷ୍ଠାର ଆବଶ୍ୟକତା ସେ ଉପଲବ୍‌ଧି କରିଥିଲେ । ବକାସୁର ନିକଟରେ ପାଳି ଅନୁସାରେ ଆତ୍ମବଳି ଦେବାପାଇଁ ବେଦଗ୍ରିବା ପଣ୍ଡା, ତାର ପତ୍ନୀ ରମାଦେଇ, ନାବାଳକ ପୁତ୍ର ବିଦ୍ୟାଧର ଓ କିଶୋରୀ କନ୍ୟା ଭାନୁମତୀଙ୍କ ମଧ୍ୟରେ ଯେଉଁ ଅଦମ୍ୟ

---

ଶାଶୁର ବଚନ ଯେବେ ମେଣ୍ଟାଇ କୁଳବଧୂ
ସନ୍ତାନ ହାନି ହୁଅଇ ଜନ ମୁଖେ ଅସାଧୁ ।
ସ୍ୱାମୀର ବଚନ ଯେବେ ମେଣ୍ଟଣ କରଇ ଘରଣୀ
ଘରବାସ ଅପ୍ରାପତ ହୁଅଇ ଦୋଗ୍ଧରୁଣୀ ।
ଗୁରୁ ବଚନ ଯେବେ ମେଣ୍ଟଣ କରେ ଶିଷ୍ୟ
ହତମୂର୍ଖ ହୁଅଇ ବିଦ୍ୟା ଲୁହଇ ପ୍ରାପତ ।

(୫୨) ସା: ମ: ଭା: (ଗ୍ରା) ବନ ପୃ. ୧୯-୨୧

(୫୩) ବଂଶ ନ ରହୁ ପଛକେ ହୋଇବ ଅପୁତ୍ର
ଅନାଗୃହୀ ହୋଇ ପୁତ୍ର ନୋହୁ ପୁଣ ଜାତ ।
(ସା: ମ: ଭା: (ଗ୍ରା) ଆଦ୍ୟ-ପୃ. ୧୨୯)

(୫୪) ପୁତ୍ର ଜାତ ହୋଇ ଦୁଷ୍ଟ ମୂର୍ଖହିଁ ହୋଇଲେ
ପାତକ ନ ଲାଗଇ ସେ ପୁତ୍ର ବଧ କଲେ ।
(ସା: ମ: ଭା: (ଗ୍ରା) ମଧ୍ୟ-ପୃ. ୩୩)

ଉତ୍ସାହ ପ୍ରକାଶ ପାଇଛି । (୫୫) ସେଥିରୁ ସୌହାର୍ଦ୍ଦ୍ୟପୂର୍ଣ୍ଣ ପାରିବାରିକ ଜୀବନ ତଥା ଚକ୍ରବର୍ତ୍ତୀ ଯୋଗ ମନୋବୃତ୍ତିର ପରିଚୟ ମିଳିଥାଏ । ପରିବାରର ସମସ୍ତ ସଦସ୍ୟଙ୍କ ପ୍ରତି ପିତାମାତାଙ୍କର ସମଦୃଷ୍ଟି ଏବଂ ଭ୍ରାତାମାନଙ୍କ ମଧ୍ୟରେ ଏକାତ୍ମ ଭାବନା ପାରିବାରିକ ସୁଖଶାନ୍ତିର ମୂଳ ମନ୍ତ୍ର । କୁନ୍ତୀ ଓ ଦୁର୍ଯ୍ୟୋଧନଙ୍କ ପ୍ରତି ଗାନ୍ଧାରୀଙ୍କ ଉପଦେଶରୁ ଏହା ସୁସ୍ପଷ୍ଟ । (୫୬) 'ପୁତ୍ରାତ୍ ଚ୍ଛତ୍ରାତ୍ ପରାଜୟମ୍' ନୀତିବାଣୀ ଅନୁସରଣରେ ସାରଳା ମଧ୍ୟ ପୁତ୍ରଠାରୁ ପରାଜୟକୁ ଏକ ସମ୍ମାନଜନକ ଘଟଣା ରୂପେ ଗ୍ରହଣ କରିଛନ୍ତି । ନାଗାର୍ଜ୍ଜୁନ ଦ୍ୱାରା ପରାଭୂତ ଅର୍ଜ୍ଜୁନ ତଳେ ମାତ୍ର ଅବଶୋଷ ପ୍ରକାଶ ନକରି କହିଛନ୍ତି—'ମୋ ପୁତ୍ର ମୋତେ ଜିଣିଲା ଏଥିରେ କି ଲାଜ ।' (୫୭)

ପରିବାର ମଧ୍ୟରେ ଭ୍ରାତା ଓ ଭଗିନୀଙ୍କ ସମ୍ବନ୍ଧ ଅତି ପବିତ୍ର । ଏଥିପାଇଁ ଜୟଦ୍ରଥ ଯେତେବେଳେ ଶାଳକଙ୍କ ଭାର୍ଯ୍ୟା ଦ୍ରୌପଦୀଙ୍କୁ ବଳାତ୍କାର ହରଣ କରି-ନେଇଛି ଓ ତାର ପ୍ରତିଶୋଧ ନେବା ପକାଶେ ଭୀମ ଜୟଦ୍ରଥକୁ ହତ୍ୟା କରିବା ପାଇଁ ଉଦ୍ୟତ ହୋଇଛି, ସେତେବେଳେ ଯୁଧିଷ୍ଠିର ନିଜର ଭଗିନୀ ଦୁଃଶୀଳାକୁ ବୈଧବ୍ୟରୁ ରକ୍ଷା କରିବା ନିମନ୍ତେ ଭୀମକୁ ସେଥିରୁ ନିବୃତ୍ତ କରିଛନ୍ତି । (୫୮) ସେହିପରି ଉତ୍ସବକାଳରେ ଜାମାତାଙ୍କୁ ବରଣ କରିବା କୋଟିଏ ଅଶ୍ୱମେଧ ଯାଗ ସଙ୍ଗେ ସମାନ ବୋଲି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଅବରଣରେ ଶ୍ୱଶୁରାଳୟକୁ ଗମନ କରିବା ଜାମାତା ମନୁଷ୍ୟରେ ଗଣ୍ୟ ନୁହନ୍ତି ବୋଲି ସାରଳାଙ୍କ ଅଭିମତ ଅତ୍ୟନ୍ତ କୌତୂହଳୋଦ୍ଦୀପକ । (୫୯) ପୁନଶ୍ଚ, ଜାମାତାମାନେ ଶ୍ୱଶୁରାଳୟରେ ଅତେଇ ଦିନରୁ ଅଧିକ ରହିବା ଅନୁଚିତ ବୋଲି ସେ ସ୍ପଷ୍ଟ ମତ ପ୍ରକାଶ କରିଛନ୍ତି । ଏପରିକି, ତାଙ୍କ ଉକ୍ତି ଅନୁଯାୟୀ, ଯେଉଁ ଜାମାତାମାନେ ଶ୍ୱଶୁର ଘର ଅନ୍ନରେ ପ୍ରତିପାଳିତ ହୁଅନ୍ତି କିମ୍ବା ଘର ଜୁଆଁଇଁ ହୋଇ ରହନ୍ତି, ସେମାନେ ଜୀବିତାବସ୍ଥାରେ ପଣ୍ୟପାତ୍ର ହେବା ସଙ୍ଗେ ସଙ୍ଗେ ମୃତ୍ୟୁ ପରେ କୀଟଜନ୍ମ ଲାଭ କରନ୍ତି । (୬୦) ଏହା ବ୍ୟତୀତ, ବିନା ଆମନ୍ତ୍ରଣରେ ବନ୍ଧୁ ଗୃହକୁ ଯାତ୍ରା କରିବା କିମ୍ବା କନ୍ୟା ମଧ୍ୟ ପିତ୍ରାଳୟକୁ ଯିବା ଅନୁଚିତ ବୋଲି ସେ ଦର୍ଶାଇଛନ୍ତି । (୬୧)

---

(୫୫) ସା: ମ: ଭା: (ରା) ଆଦ୍ୟ-ପୃ. ୨୩୧-୨୩୨

(୫୬) —ଏଜନ— ଆଦ୍ୟ-ପୃ. ୧୩୧-୧୩୨ ଓ ୧୪୨

(୫୭) —ଏଜନ— ସଭା-ପୃ. ୩୬୦ (୫୮) —ଏଜନ— ବିରାଟ-ପୃ. ୬୧-୬୩

(୫୯) —ଏଜନ— (ରା) ଗଦା-ପୃ. ୧୦ (୬୦) —ଏଜନ— ବନ-ପୃ. ୨୭-୨୮

(୬୧) —ଏଜନ— ଗଦା-ପୃ. ୧୦

## ସାରଳାଙ୍କ ଦୃଷ୍ଟିରେ ନାରୀର ଆଦର୍ଶ

ସ୍ୱାମୀ ହିଁ ସ୍ତ୍ରୀର ଶ୍ରେଷ୍ଠ ଭୂଷଣ ଓ ପ୍ରଧାନ ଆଶ୍ରୟ । ସ୍ୱାମୀସେବା ନାରୀର ଧର୍ମ । (୬୨) ସ୍ୱାମୀ ବିନା ସ୍ତ୍ରୀର ଅନ୍ୟ ଗତି ନାହିଁ । ସ୍ୱାମୀର ବିୟୋଗରେ ସେ ହୁଏତ ଦୁଃଖିନୀ ଜୀବନ ଯାପନ କରେ ଅଥବା ଦୋଚାରୁଣୀ ହୋଇଯାଏ । (୬୩) ତେବେ, ପାତିବ୍ରତ୍ୟ ତଥା ସତୀତ୍ୱର ପରାକାଷ୍ଠା ବଳରେ ନାରୀ ବହୁ ଅସାଧ୍ୟ ସାଧନ କରିପାରେ । ସେ ଅଦିନରେ ଆମ୍ବ ଫଳାଇପାରେ (୬୪), ସାତଦିନ ପର୍ଯ୍ୟନ୍ତ ସୂର୍ଯ୍ୟୋଦୟ ସ୍ଥଗିତ ରଖିଦେଇପାରେ (୬୫) ଏବଂ ପନ୍ଦର ବର୍ଷ ଛ ମାସ ପରେ ବି ପତିଶାପର ପରିଣତି ଭୋଗିବାକୁ ପଡ଼େ । (୬୬) ଏଣୁ ସ୍ତ୍ରୀମାନଙ୍କୁ ନାରୀଧର୍ମ ବିଚ୍ୟୁତ ହୋଇ ନୀଚକର୍ମ ତଥା ପରପୁରୁଷ ଶୃଙ୍ଗାରରେ ପ୍ରବୃତ୍ତ ନହେବା ପାଇଁ ବିଭିନ୍ନ ଉପାଖ୍ୟାନ ଛଳରେ ସାରଳା ପରାମର୍ଶ ଦେଇଛନ୍ତି ଏବଂ ଚୌର୍ଯ୍ୟଶୃଙ୍ଗାର ରୂପକ କ୍ଷଣିକ ପାପରେ ବୃହସ୍ପତିଙ୍କ ପତ୍ନୀ ତାରା ଓ ଗୌତମଙ୍କ ସହଧର୍ମିଣୀ ଅହଲ୍ୟାଙ୍କର ନାରୀ ଜନ୍ମ କିପରି ବିନଷ୍ଟ ହୋଇ ପଡ଼ିଛି, ତାର ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ଏପରିକି, ସ୍ୱାମୀ ଆଗରେ ମିଥ୍ୟା କହିବା ମଧ୍ୟ ଘୋର ପାପ ରୂପେ ତାଙ୍କ ଦୃଷ୍ଟିରେ ବିବେଚିତ ହୋଇଛି । (୬୭)

ସାରଳାଙ୍କ ସମକାଳୀନ ସମାଜରେ ସତୀପ୍ରଥା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ଯେଉଁ ସ୍ତ୍ରୀମାନେ ସ୍ୱାମୀର ଚିତାଗ୍ନିରେ ଝାସ ନ ଦିଅନ୍ତି, ସେମାନେ ଜୀବିତାବସ୍ଥାରେ ହୀନ ହୋଇ ମୃତ୍ୟୁପରେ ନର୍କରେ ପଡ଼ନ୍ତି ଏବଂ ଯେଉଁମାନେ ସ୍ୱାମୀଙ୍କ ସଙ୍ଗରେ ସହଗମନ କରନ୍ତି, ସେମାନେ ପିତୃ ଓ ପତି ଉଭୟ କୁଳ ଉଦ୍ଧାର କରନ୍ତି ବୋଲି ବିଶ୍ୱାସ ରହିଥିଲା । ଏହି ଅନ୍ଧବିଶ୍ୱାସ ଓ ଘୃଣ୍ୟ ପରଂପରା ଖ୍ରୀ: ୧୮୨୯ରେ ଲର୍ଡ ବେଣ୍ଟିଙ୍କଙ୍କ ଦ୍ୱାରା ପ୍ରବର୍ତ୍ତିତ ସତୀଦାହ ନିରୋଧ ଆଇନ ବଳରେ ନିଷିଦ୍ଧ ହେବା ପର୍ଯ୍ୟନ୍ତ ଭାରତର ବିଭିନ୍ନ ଅଞ୍ଚଳରେ (ବିଶେଷତଃ ବଙ୍ଗ, ବିହାର ଓ ଉତ୍ତର ପ୍ରଦେଶରେ) ଅତି ବ୍ୟାପକ ମାତ୍ରାରେ ପ୍ରଚଳିତ ଥିଲା । ଏପରିକି, ବେଣ୍ଟିଙ୍କଙ୍କ ଉକ୍ତ ସପ୍ତଦଶ ରେଗୁଲେସନ୍ ପ୍ରବର୍ତ୍ତନର ପୂର୍ବବର୍ତ୍ତୀ ଦଶନ୍ଧି କାଳରେ (୧୮୧୮ ଠାରୁ ୧୮୨୮ ମଧ୍ୟରେ) କେବଳ କଲିକତା, ପାଟନା ଓ ବାରାଣସୀରେ

---

(୬୨) ସା: ମ: ଭା: (ସା) ବନ-ପୃ. ୨୮୪ ଓ ଦ୍ରୋଣ-ପୃ. ୫୩

(୬୩) —ଏଜନ— ଆଦ୍ୟ-ପୃ. ୨୩୨ (୬୪) —ଏଜନ— ବନ-ପୃ. ୧୬୩

(୬୫) —ଏଜନ— ବନ-ପୃ. ୨୮୫ (୬୬) —ଏଜନ— କର୍ଣ୍ଣ-ପୃ. ୩୫

(୬୭)—ଏଜନ —ମଧ୍ୟ-ପୃ. ୨୦୩ ଓ ସା: ମ: ଭା: (ସା) ମଧ୍ୟ-ପୃ. ୨୮

ଯଥାକ୍ରମେ ୫୧୦୦, ୭୦୧ ଓ ୧୧୬୩ ଗୋଟି ସତୀଦାହ ଘଟଣା ଦୃଷ୍ଟିଗୋଚର ହୋଇଥିଲା । (୬୮)

କିନ୍ତୁ ପଞ୍ଚଦଶ ଶତାବ୍ଦୀର ସଦାଗରପ୍ରସୂତ ଉତ୍କଳୀୟ ସାହିତ୍ୟସାଧକ ସାରଳା ସତୀଦାହ ଭଳି ଏକ ପାରଂପରିକ ନିର୍ମମ ଅନ୍ଧବିଶ୍ୱାସକୁ ସମର୍ଥନ ନକରି ସ୍ୱୀୟ ମହାଭାରତ ଗ୍ରନ୍ଥରେ ନିଜର ଗଠନମୂଳକ ମନୋଭାବ ପ୍ରକାଶ କରିବା ସମାଜଧର୍ମୀ ରାଜନୈତିକ ଆଦର୍ଶ ପ୍ରଖ୍ୟାପନ ଦୃଷ୍ଟିରୁ କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ଦ୍ରୋଣପର୍ବରେ ଶ୍ରୀକୃଷ୍ଣଙ୍କ ମୁଖରେ ଉତ୍ତରାଙ୍କୁ ବୁଝାଇବା ଛଳରେ ସେ ଉପଦେଶବାଣୀ ଶୁଣାଇଛନ୍ତି ଯେ ସଂସାର ଏକ ମାୟାର ବନ୍ଧନ, ମୃତ୍ୟୁ ଏଠାରେ ଅନିବାର୍ଯ୍ୟ, କେହି ଅମର ନୁହନ୍ତି । ଯମ ଦେବତା ସବୁ କାଳେ ଅବିଚାର କରି ଆସିଛନ୍ତି । ପିତା ମାତାଙ୍କ ଜୀବିତାବସ୍ଥାରେ ପୁତ୍ରକୁ ମୃତ୍ୟୁ ମୁଖକୁ ଟାଣି ନେବାର ବହୁ ଦୃଷ୍ଟାନ୍ତ ରହିଛି । ମୃତ୍ୟୁପଥର ଯାତ୍ରୀ କେବେ ଫେରି ଆସେନାହିଁ । ଆତ୍ମହତ୍ୟା ଓ ଶିଶୁହତ୍ୟାଠୁଁ ବଳି ପାପ ନାହିଁ । ଏଣୁ ବିଧବା ସ୍ତ୍ରୀ ପକ୍ଷେ ଆତ୍ମାହୁତି ଦେବା ଅତ୍ୟନ୍ତ ଗର୍ହିତ । ବରଂ, ସେ ଜୀବିତ ରହି ପୁତ୍ରର ଉତ୍ତମ ରକ୍ଷଣାବେକ୍ଷଣ ଦ୍ୱାରା ତା ସାହାଯ୍ୟରେ ଇହଲୋକ ଓ ପରଲୋକ ଉଦ୍ଧାର କରିପାରିବ । (୬୯) ଏ ପ୍ରସଙ୍ଗରେ ସାରଳା ପୌରାଣିକ ତତ୍ତ୍ୱ ଅବତାରଣାପୂର୍ବକ ସତୀ ଓ ମହାସତୀଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ସତୀଙ୍କ ଅପେକ୍ଷା ମହାସତୀଗଣ ଲକ୍ଷେ ଗୁଣ ଶ୍ରେଷ୍ଠତର ବୋଲି କହିଛନ୍ତି । କାରଣ, ଏମାନେ ଭର୍ତ୍ତାଙ୍କ ମୃତ୍ୟୁ ପରେ ମଧ୍ୟ ଆପଣା ଆୟୁଷ ଦାନ କରି ସେମାନଙ୍କ ସ୍ୱାମୀମାନଙ୍କୁ ବଞ୍ଚାଇ ଥାଆନ୍ତି ଏବଂ ଚିରଜୀବୀ ହୋଇ କୋଟିକଳ୍ପକାଳ ପାର୍ଥିବ ସୁଖ ଭୋଗ କରିଥାନ୍ତି । (୬୯-କ) ସ୍ୱୀୟ ମହାଭାରତ ଗ୍ରନ୍ଥରେ ବିଧବାମାନଙ୍କ ପ୍ରତି ଏତାଦୃଶ ସମ୍ବେଦନଶୀଳ ମନୋଭାବ ପ୍ରଦର୍ଶନ ଦ୍ୱାରା

---

(୬୮) Dutt, Dev : Customs Made Murder (Essay) Mathew, K. M. (Ed.) The Week (Vol. 5. No. 43, Oct. 11—17, 1987) P. 18

(୬୯) ସା: ମ: ଭା: (ରା) ଦ୍ରୋଣ—ପୃ. ୫୪

(୬୯କ) ସାରଳାଙ୍କ ଅନୁସାରେ, ଶଚୀ, ତାରା, ମନ୍ଦୋଦରୀ, ଅହଲ୍ୟା, ପାର୍ବତୀ— ଏମାନେ ପଞ୍ଚସତୀ, ସତୀ, ସାବିତ୍ରୀ, ପାର୍ବତୀ, ତାରା, ରୋହିଣୀ, ସ୍ୱାହା, ସ୍ୱଧା, ଭଗବତୀ—ଏ ଅଷ୍ଟକନ୍ୟା ମହାସତୀ ଅଟନ୍ତି । (ସା:ମ:ଭା: (ରା) ମଧ୍ୟ-ପୃ. ୧୧୩)

ସାରଳା ଏ ସମ୍ପର୍କରେ ପ୍ରାଚୀନ ବୈଦିକ ଆଦର୍ଶର (୭୦) ନିକଟବର୍ତ୍ତୀ ହୋଇ ପାରିଛନ୍ତି ବୋଲି କୁହାଯାଇପାରେ ।

ତେବେ, ଟିକିଏ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କଲେ ଜଣାଯାଏ ଯେ ସାରଳାଙ୍କ ସମକାଳୀନ ସମାଜରେ ନାରୀର ସ୍ଥିତି ଥିଲା ଅତୀବ ଦୋଦୁଲ୍ୟମାନ । ସହଜିଆ ଧର୍ମ ଓ ତନ୍ତ୍ର ସାଧନାର ବଶବର୍ତ୍ତୀ ହୋଇ ଗୋଟିଏ ଗୋଷ୍ଠୀ ତାକୁ ଭୋଗ୍ୟ ସାମଗ୍ରୀ ଭାବରେ ଗ୍ରହଣ କରୁଥିଲା ବେଳେ, ପାରଂପରିକ ମୂଲ୍ୟବୋଧ ଦୃଷ୍ଟିରୁ ଅନ୍ୟ ଗୋଷ୍ଠୀର ଚକ୍ଷୁରେ ସେ ଥିଲା ସତୀ, ସାଧ୍ୱୀ, ମାତୃକଳ୍ପା ଓ ଦେବୀସ୍ୱରୂପା । ସାରଳାଙ୍କ ରଚନାରେ ନାରୀର ଏହି ଦ୍ୱିବିଧ ରୂପ ଯଥାର୍ଥ ଭାବେ ପ୍ରକାଶ ଲାଭ କରିଛି । ସେ ସୁନ୍ଦରୀ ସ୍ତ୍ରୀକୁ ବିପଦର କାରଣ ରୂପେ ଅଭିହିତ କରିଛନ୍ତି ଏବଂ ସ୍ତ୍ରୀମାନେ ଅଗ୍ନି ଘୃତାହୁତିରେ ଶାନ୍ତ ହେଲାଭଳି ଗାଢ଼ ଶୃଙ୍ଗାରରେ ହିଁ ଆତ୍ମତୃପ୍ତି ଲାଭ କରନ୍ତି ବୋଲି ମତପ୍ରକାଶ କରିଛନ୍ତି ।

---

(୭୦) (କ) ଇମା ନାରୀରବିଧବାଃ ସୁପତ୍ନୀ ରାଞ୍ଜନେନ ସର୍ପିଷା ସଂବିଶନ୍ତୁ
ଅନଶ୍ରବୋଽନମୀବାଃ ସୁରତ୍ନା ଆରୋହନ୍ତୁ ଜନୟୋ ଯୋନିମଗ୍ରେ ।
ଉଦୀର୍ଷ୍ୱ ନାର୍ଯଭି ଜୀବଲୋକ ଗତାସୁମେତମୁପ ଶେଷ ଏହି
ହସ୍ତଗ୍ରାଭସ୍ୟ ଦିଧିଷୋସ୍ତବେଦଂ ପତ୍ୟୁର୍ଜନିତ୍ୱମଭି ସମ୍ବଭୂଥ ।
ଧନୁର୍ହସ୍ତାଦାଦଦାନୋ ମୃତସ୍ୟାସେ କ୍ଷତ୍ରାୟବର୍ଚ ସେ ବଲାୟ
ଅତ୍ରୈବ ତ୍ୱମିହବୟଂ ସୁବୀରା ବିଶ୍ୱାଃ ସ୍ପୃଧୋ ଅଭିମତୀର୍ଜୟେମ ।
ଋଗ୍‌ବେଦ ( ୧୦।୧୮।୭-୯ )

( ହେ ମୃତବ୍ୟକ୍ତିର ପତ୍ନୀ ! ତୁମ ପତି ମୃତ୍ୟୁବରଣ କରି ସାରିଛନ୍ତି । ତୁମେ ବୃଥାରେ ତାଙ୍କ ନିକଟରେ ବସିଛ । ନିଜର ପୁତ୍ର ଓ ଘରର ଭବିଷ୍ୟତକୁ ଭାବି ଏବେ ଉଠ । ତୁମେ ତ ପତିଙ୍କ ସହିତ ଗର୍ଭଧାରଣାଦି ସ୍ତ୍ରୀର କର୍ତ୍ତବ୍ୟ ସମ୍ପୂର୍ଣ୍ଣ କରି ସାରିଛ; ତୁମେ ମଧ୍ୟ ଜାଣିଛ ଯେ ସେ ପ୍ରାଣତ୍ୟାଗ କରି ଚାଲିଯାଇଛନ୍ତି । ଏଣୁ ଗୃହକୁ ଫେରିଯାଅ, ମୃତ ପତି ହାତରେ ଧନୁ ଧାରଣ କଲାପରି ତୁମେ ନିଜ ସନ୍ତାନ ସହିତ ଯୁକ୍ତହୁଅ ଏବଂ ନିଜର ଅହଂକାରୀ ଶତ୍ରୁଙ୍କୁ ପରାସ୍ତ କର । )

(ଖ) ମହାପାତ୍ର, ଡ଼: ଗୋପୀନାଥ—ସତୀ ଓ ବିଧବା : ଏକ ଶାସ୍ତ୍ରୀୟ ପର୍ଯ୍ୟାଲୋଚନା (ପ୍ରବନ୍ଧ) ରାଧାମୋହନ ଗଡ଼ନାୟକ ସମ୍ପାଦିତ 'କୋଣାର୍କ' ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର (୭୫ତମ ସଂଖ୍ୟା, ୧୯୮୭). ପୃ. ୬୬-୬୭

(୭୧) ଏପରିକି ଶିଥିଳ ଯୌନସମ୍ଭୋଗରେ ଅତୃପ୍ତା ନାରୀ ଶାଳ୍ମନୀ ଭଳି ସ୍ୱାମୀଙ୍କ ଖାଦ୍ୟରେ ମୂହାଗ ଔଷଧ ପ୍ରୟୋଗ କରିବା ଦୃଷ୍ଟାନ୍ତ ମଧ୍ୟ ସେ ଦର୍ଶାଇଛନ୍ତି । (୭୨) ସ୍ତ୍ରୀମାନେ ସ୍ୱଭାବତଃ ସୁନ୍ଦର ପୁରୁଷ ପ୍ରତି ଯେ ଆକୃଷ୍ଟ ହୋଇଥାନ୍ତି ଏବଂ ସୁବେଶ ଓ ଶୃଙ୍ଗାରବନ୍ତ ପୁରୁଷ ଦେଖିଲେ, ସେ ଭ୍ରାତା ବା ପୁତ୍ର ହୋଇଥିଲେ ହେଁ ତାଙ୍କ ପ୍ରତି ମନ ବଳାଇଥାନ୍ତି, ଏହା ଦ୍ରୌପଦୀଙ୍କ ଉକ୍ତିରୁ ଅନୁମେୟ । (୭୩)

କେବଳ ସେତିକି ନୁହେଁ, ସ୍ତ୍ରୀମାନେ ଶରୀର ଦାନକରି ମଧ୍ୟ ପୁରୁଷର ସେବାକାରିଣୀ (୭୪) ଭାବରେ ଅସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଜୀବନ ବିତାଉଥିବା ଏବଂ ଅକୁଣ୍ଠରେ ମିଥ୍ୟାର ଆଶ୍ରୟ ନେଉଥିବାର (୭୫) ନିଦର୍ଶନ ରହିଛି । ଏଥିପାଇଁ ପୂର୍ବଜନ୍ମର ପାପ ଫଳରେ ହିଁ ସ୍ତ୍ରୀଜନ୍ମ ପ୍ରାପ୍ତହୁଏ ଏବଂ ସ୍ତ୍ରୀଜାତି ନିତାନ୍ତ ପାତକୀ, ଏହା ସାରଳା ନିର୍ମମ ଭାବେ ଘୋଷଣା କରିଛନ୍ତି । (୭୬) ନାରୀମାନଙ୍କର କେତେକ ଅସଦାଚରଣର

---

(୭୧) (କ) ସା: ମ: ଭା: (ରା) ବନ ପୃ. ୫୬ ଓ ୧୪୯

(ଖ) ସ୍ତ୍ରୀଗଣଙ୍କର ସ୍ୱଭାବ ସେ ଗାଢ଼ ଶୃଙ୍ଗାରେଣ ନିପୁଣ
ଅଗ୍ନି ଦେବତା ଯେହ୍ନେ ଘୃତେ ହୋନ୍ତି ଶାନ୍ତମୂର୍ତ୍ତି ।
ମନ୍ତ୍ର ତନ୍ତ୍ର ଯେନ ଯେବଣ ପୁରୁଷ ପାରନ୍ତି କେଳି
ଗ୍ରନ୍ଥ ଦିବସେ ସେ ସନ୍ଧି ପାରନ୍ତି ଅଦୋଳି ।
(ସା: ମ: ଭା: (ସା) ବନ—ପୃ. ୫୭୯)

(୭୨) ସା: ମ: ଭା: (ରା) ବନ ପୃ. ୧୮୦-୧୮୧

(୭୩) ଦ୍ରୌପଦୀ ବୋଇଲେ ସ୍ତ୍ରୀଙ୍କର ଯେସନେକ ପ୍ରକୃତି
ଶୃଙ୍ଗାରବନ୍ତ ସୁନ୍ଦର ପୁରୁଷ ଦେଖିଲେ ସେ ଅବଶ୍ୟ ବଳାବନ୍ତ ମତି ।
ଯଦ୍ୟପି ଅବା ଭ୍ରାତା ପୁତ୍ରହିଁ ଯେବେ ହେଉ
ସୁବେଶ ପୁରୁଷ ଦେଖିଲେ ଚିତ୍ତ ନେଇ ଥୋଉ ।
(ସା: ମ: ଭା: (ସା) ବନ—ପୃ. ୫୭୯)

(୭୪) ସା: ମ: ଭା: (ରା) ମଧ୍ୟ—ପୃ. ୧୨୦ (୭୫)
ସା: ମ: ଭା: (ସା) ମଧ୍ୟ—ପୃ. ୫୭୯

(୭୬) ପୋଡ଼ୁ ପୋଡ଼ୁ ସଖୀ ଏହି ସ୍ତ୍ରୀ କନ୍ମ ଗୋଟା
ଯୁବା କାଳରେ କାମର ହୁଏ ଯେତେ ଚେଷ୍ଟା ।
ଶରୀର ଦେଇ କରୁ ପରର ଭୃତ୍ୟକାର୍ଯ୍ୟ
ଅତି ପାତକୀ ହୋଇଣ ନିର୍ମିତ ଯେ ସ୍ତ୍ରୀ । (ମଧ୍ୟ—(ରା) ପୃ. ୧୨୦)

ଉଦାହରଣ ଦେବାକୁ ଯାଇ ସାରଳା ମାତା ପୁତ୍ର, ଦେବଶତ୍ରୁର ଭ୍ରାତୃବଧୂ ଏବଂ ବ୍ରାହ୍ମଣୀ ଓ ଚଣ୍ଡାଳର ସମ୍ବନ୍ଧକୁ ମହାପାତକ ରୂପେ ଅଭିହିତ କରିଛନ୍ତି । (୭୭) ହସ୍ତରେ ପାଣି ଢ଼ାଳି ଅଗ୍ନି ନିର୍ବାପିତ କରିବା, ପରିବାରଜନଙ୍କୁ ଲୁଚାଇ ନିଜେ ସୁଖାଦ୍ୟ ଭକ୍ଷଣ କରିବା ଓ ଅନ୍ୟ ସ୍ତ୍ରୀର ରୋଦନ ଶୁଣି ତାକୁ ସାନ୍ତ୍ୱନା ବା ପ୍ରବୋଧନା ନ ଦେବା ସ୍ତ୍ରୀଜାତି ପକ୍ଷରେ ଗୋଟିଏ ଗୋଟିଏ ଘୋର ପାତକ ଏବଂ ଏହା ଦ୍ୱାରା ନାରୀ ନର୍କଗାମୀ ପାଏ ତଥା ଆଗାମୀ ଜନ୍ମରେ କାଠବେଙ୍ଗ ଭାବରେ ଜନ୍ମଗ୍ରହଣ କରେ ବୋଲି ସାରଳାଙ୍କ ବିଶ୍ୱାସ । ଦୁଷ୍ଟା ଭାର୍ଯ୍ୟା ନିତାନ୍ତ ତ୍ୟାଜ୍ୟ ବୋଲି ମଧ୍ୟ ସେ ସ୍ପଷ୍ଟ ମତ ଦେଇଛନ୍ତି । (୭୮) ଉର୍ବଶୀ, ମାୟାବତୀ, ହିଡ଼ିମ୍ବିକା, ଶାଲ୍ମଳୀ, ବାଲକ୍ଷି, ରତ୍ନାବତୀ ପ୍ରଭୃତି ନାରୀ ଚରିତ୍ରଗୁଡ଼ିକୁ ସାରଳା ଅତ୍ୟନ୍ତ କାମାତୁରା ଓ ସ୍ୱେଚ୍ଛାଚାରିଣୀ ଭାବରେ ଚିତ୍ରଣ କରିଥିଲେ ମଧ୍ୟ ନାରୀଜାତିର ସମ୍ମାନ ବୃଦ୍ଧି ନିମନ୍ତେ ସେ ବିଶେଷ ସଚେତନ ଥିବା ଜଣାଯାଏ । ଏଥିପାଇଁ ସାରଳା ଗୁଣି ଗାରେଡ଼ି ତଥା ଚେରମୂଳ ଔଷଧର ଭୟାବହ କୁପ୍ରଭାବ ସମ୍ପର୍କରେ ଜନସାଧାରଣଙ୍କୁ ସତର୍କ କରାଇ ଦେଇଛନ୍ତି ଏବଂ ଏପରି କଲେ ଶତାଗ୍ନିରେ ତାର ମାଂସ ଅସ୍ଥି ପୋଡ଼ା ହେବ ଓ ସେ ଜନ୍ମ ନିପରେ ଭେକ ରୂପେ ଜନ୍ମଗ୍ରହଣ କରେ ବୋଲି ସୂଚାଇଛନ୍ତି । (୭୯)

ପ୍ରକୃତରେ ସୁସ୍ଥ ସମାଜ ଗଠନରେ ପୁରୁଷ ଅପେକ୍ଷା ନାରୀର ଭୂମିକା ଅଧିକ । ସ୍ତ୍ରୀ ଜାତି ପୁରୁଷ ସମାଜର ମୂଳ ହେତୁ; ସ୍ତ୍ରୀଠାରୁ ହିଁ ପୁରୁଷର ଉତ୍ପତ୍ତି । ଏଥିପାଇଁ ସ୍ତ୍ରୀମାନଙ୍କୁ ଗୌଣ ଦୃଷ୍ଟିରେ ଦେଖିବା ଯେ ଆଦୌ ବାଞ୍ଛନୀୟ ନୁହେଁ, ଏହା ମଧ୍ୟ ସାରଳାଙ୍କର ହୃଦ୍‌ବୋଧ ହୋଇଛି । (୮୦) ସ୍ତ୍ରୀଠାରେ ହିଁ ପୁରୁଷ ତାର ପ୍ରେମ ନିବେଦନ କରେ ଏବଂ ନିଜର ଦୈନ୍ୟ ପ୍ରକାଶ କରେ । ଏହି କାରଣରୁ ହିଁ ପୁରୁଷର ନାମ ପୂର୍ବରୁ ସ୍ତ୍ରୀର ନାମ (ଯଥା—ଲକ୍ଷ୍ମୀ ନାରାୟଣ ଓ ଉମା ମହେଶ୍ୱର) ସଂଯୋଜିତ ହୋଇ ଆସିଛି ବୋଲି ସାରଳା କଳ୍ପନା କରିଛନ୍ତି । (୮୧) ସାରଳା ଏହା ହୃଦୟଙ୍ଗମ କରିଥିଲେ ଯେ ସତୀ ସ୍ତ୍ରୀର ପୁଣ୍ୟବିଭୂତିରେ ସ୍ତ୍ରୀ ପୁରୁଷ ଉଭୟେ ଈଶ୍ୱରଙ୍କ ସୃଷ୍ଟିରେ ଶ୍ରେଷ୍ଠତ୍ୱ ଲାଭ କରନ୍ତି ବୋଲି ମତ ପ୍ରକାଶ କରିଛନ୍ତି । ତାଙ୍କ ମତରେ,

---

(୭୭) ସା: ମ: ଭା. (ର) ଆଦ୍ୟ—ପୃ. ୨୨, ୨୬ ଓ ମଧ୍ୟ ପୃ. ୫୨
(୭୮) —ଏଜନ—ଆଦ୍ୟ—ପୃ. ୨୬, ୩୦୭ ଓ ଦ୍ରୋଣ ପୃ. ୫୭
(୭୯)—ଏଜନ— (ରା) ଆଦ୍ୟ-ପୃ. ପୃ ୫୯, ବନ-ପୃ. ୨୪୯ ଓ ଉଦ୍‌ଯୋଗ ପୃ. ୩
(୮୦) ସାହୁ, ସାରଳା ମହାଭାରତ ସମ୍ପାଦନା ଓ ଆଲୋଚନା—ପୃ. ୫୯
(୮୧) ସା: ମ: ଭା: (ରା) ମଧ୍ୟ—ପୃ. ୯୨୦

ଏହି ଅନିତ୍ୟ ସଂସାରରେ ସଦ୍‌ଗତି ଲାଭ କରିବା ପାଇଁ ଆବଶ୍ୟକୀୟ କେତୋଟି ଶ୍ରେଷ୍ଠ ଉପାୟ ମଧ୍ୟରେ 'ସୁସ୍ତିରି' ଅନ୍ୟତମ । (୮୨)

କେବଳ ଏତିକି ନୁହେଁ, ସ୍ତ୍ରୀକୁ ଗୃହଲକ୍ଷ୍ମୀ ରୂପେ ସମ୍ମାନ ଦେବା ଉଚିତ ଏବଂ ସତୀସ୍ତ୍ରୀର ନିନ୍ଦା କଲେ ବ୍ୟକ୍ତି ଆଜୀବନ ଦାରିଦ୍ର୍ୟ କଷ୍ଟ ଭୋଗ କରେ ବୋଲି ମଧ୍ୟ ସାରଳା ସର୍ବସାଧାରଣଙ୍କୁ ସଚେତନ କରାଇ ଦେଇଛନ୍ତି । (୮୩) ସାରଳାଙ୍କ ସୃଷ୍ଟିରେ ନାରୀଜାତି ପାଇଁ ଏହି ସମ୍ମାନବୋଧ ତାଙ୍କ ଦୂରଦୃଷ୍ଟିର ପରିଚାୟକ । ସାରଳାଙ୍କ ସମୟକୁ ନାରୀମାନେ ସେମାନଙ୍କ ସମସ୍ତ ଗୌରବ ହରାଇ 'ନରକସ୍ୟ ଦ୍ୱାର', 'ଶ୍ମଶାନ ଘଟତୁଲ୍ୟ ତ୍ୟାଜ୍ୟ' ଓ 'ରତ୍‌ମେଁ ବାଘନୀ, ଧନ୍‌ମେଁ ମୋହିନୀ' ରୂପେ ବିବେଚିତ ହେଉଥିଲେ । କିନ୍ତୁ ସାରଳା ଦାସ ଆଜିର ବୁଦ୍ଧିଜୀବୀମାନଙ୍କ ପରି ହୃଦୟଙ୍ଗମ କରିଥିଲେ ଯେ ନାରୀ ରାଷ୍ଟ୍ରର ଏକ ଅମୋଘ ଶକ୍ତି; ଏକ ମଙ୍ଗଳକାମୀ ରାଷ୍ଟ୍ର ପାଇଁ ନାରୀର ସାମାଜିକ ସ୍ଥିତି ଦୃଢୀଭୂତ ହେବା ଏକାନ୍ତ ବାଂଛନୀୟ ।

## ସାରଳା ମହାଭାରତରେ ଲୋକସଂସ୍କୃତିର ସ୍ୱରୂପ ଓ ଆଦର୍ଶ

ଶୂଦ୍ରମୁନି ସାରଳା ଦାସ ବ୍ରାହ୍ମଣର ଶୁଚିପୂତ ପ୍ରଜ୍ଞା, କ୍ଷତ୍ରିୟର ମନୋବଳ ଓ ବୈଶ୍ୟର ଦୂରଦୃଷ୍ଟି ନେଇ ଆବିର୍ଭୂତ ହୋଇଥିଲେ । ତେଣୁ ତାଙ୍କ ମହାଭାରତ ଉତ୍କଳୀୟ ସଂସ୍କୃତି ଓ ଜନଜୀବନର ଯେ କେବଳ ଏକ ବାସ୍ତବ ଆଲେଖ୍ୟ ବହନ କରିଛି (୮୪), ତା ନୁହେଁ; ବରଂ ସେ ଏହାର ଏକ ମାର୍ଜିତ ରୂପର ସନ୍ଧାନ ଦେବାପାଇଁ ସର୍ବଦା ସଚେଷ୍ଟ ଥିବା ଲକ୍ଷ୍ୟ କରାଯାଏ । ସାରଳାକାଳୀନ ଉତ୍କଳୀୟ ଲୋକ-ସଂସ୍କୃତିରେ ଦେବାରାଧନା, ଜ୍ୟୋତିଷ ଗଣନା, ଅତିଥି ସତ୍କାର ତଥା

---

(୮୨) କହନ୍ତି ମାର୍କଣ୍ଡେୟ ଶାସ୍ତ୍ରକଥା ଶୁଣ
ସଂସାର ତରିବାକୁଟି ଶ୍ରୀକୃଷ୍ଣ ପୁରାଣ ।
ସୁସ୍ତିରି, ସୁବୁଦ୍ଧି ଆଉ ସୁଗତି
ଅନିତ୍ୟ ସଂସାରେ ପାଆନ୍ତି ସେ ନିଜଗତି ।

(ସା: ମ: ଭା: (ର) ବନ-ପୃ. ୨୮୬)

(୮୩) ସା: ମ: ଭା: (ର) ଆଦ୍ୟ-ପୃ. ୨୯୭

(୮୪) ମହାନ୍ତି, ସୁରେନ୍ଦ୍ର : ଓଡ଼ିଆ ସାହିତ୍ୟର କ୍ରମବିକାଶ (ଅଗ୍ରଦୂତ, କଟକ ୧୯୭୮) ପୃ. ୨୭

ଗୋ-ବ୍ରାହ୍ମଣ ସେବା ଉପରେ ବିଶେଷ ଗୁରୁତ୍ୱ ଆରୋପିତ ହେଉଥିଲା । (୮୫) ରାଜ୍ୟାଭିଷେକ, ବିବାହ, ନବବଧୂଯାତ୍ରା, ସ୍ୱନକ୍ଷତ୍ରୋତ୍ସବାଦିରେ ପ୍ରଥମେ ଦେବଦର୍ଶନ ବିଧି ରହିଥିଲା । ଯେ କୌଣସି ଶୁଭକର୍ମରେ ଶିବାଳୟରେ ଦୁଗ୍ଧାଭିଷେକ, ବିଷ୍ଣୁ ମନ୍ଦିରରେ ନାରାୟଣ ମନ୍ତ୍ର ପାରାୟଣ ଓ ଦେବୀ ପୀଠରେ ଛାଗ ମହିଷାଦି ବଳିଦାନର ପ୍ରଥା ପ୍ରଚଳିତ ଥିଲା । (୮୬) ବିଦ୍ୟାରମ୍ଭ କାଳରେ ଗଣେଶଙ୍କୁ ପୂଜା କରୁଥିଲେ ଏବଂ ଅସ୍ତ୍ରବିଦ୍ୟା ଶିକ୍ଷାବେଳେ ଆଖଡ଼ା ଚଣ୍ଡୀଙ୍କୁ ଆରାଧନା କରାଯାଉଥିଲା । ସମସ୍ତ ଶୁଭ କାର୍ଯ୍ୟରେ ଏବଂ ମୃତ୍ୟୁର ଏକାଦଶାହରେ ବ୍ରାହ୍ମଣଙ୍କୁ ଭୂରିଭୋଜନ ଦ୍ୱାରା ଆପ୍ୟାୟିତ କରିବା ଓ ଯଥାଶକ୍ତି ଦକ୍ଷିଣା ଦେଇ ସନ୍ତୁଷ୍ଟ କରିବା ପରମ୍ପରା ମଧ୍ୟ ରହିଥିଲା । (୮୭)

ଅତିଥି ସତ୍କାର ଓ ବ୍ରାହ୍ମଣ ଭୋଜନ ଏ ସମୟରେ ଏକ ପୁଣ୍ୟ କର୍ମ ରୂପେ ବିବେଚିତ ହେଉଥିଲା ଏବଂ ବ୍ରାହ୍ମଣ ବା ଅତିଥି ଫେରିଗଲେ, ଗୃହସ୍ଥ ଘୋର ପାପରେ ଭାଗୀ ହେବାର ଭୟ ରହିଥିଲା । ଏପରିକି ବିଭିନ୍ନ ପାପରୁ ମୁକ୍ତି ଲାଭ ଉଦ୍ଦେଶ୍ୟରେ ମଧ୍ୟ ବ୍ରାହ୍ମଣଙ୍କୁ ଅନ୍ନଦାନ ଦିଆଯାଉଥିଲା । ଯାଗ, ଯଜ୍ଞ ଓ ସୁବର୍ଣ୍ଣ ଦାନ ଅପେକ୍ଷା ଅନ୍ନଦାନ ସେତେବେଳେ ଶ୍ରେଷ୍ଠ ବିବେଚିତ ହେଉଥିଲା । (୮୮) ସାଧାରଣ ବ୍ରାହ୍ମଣ ସମାଜ କ୍ଷଣକୋପୀ ଥିଲେ ମଧ୍ୟ ଅକ୍ରୋଧୀ ବ୍ରାହ୍ମଣମାନେ ହିଁ ସମ୍ମାନର ପାତ୍ର- ଥିଲେ । (୮୯) ପ୍ରତ୍ୟୁଷରୁ ନିତ୍ୟକର୍ମ ସମାପନପୂର୍ବକ ସ୍ତୁତି ପାଠ ଓ ପୁରାଣ ପାରାୟଣ ଥିଲା । ସେମାନଙ୍କ ଦୈନନ୍ଦିନ ଆଚରଣର ଏକବିଶିଷ୍ଟ ଦିଗ । (୯୦) ନିକିଚ୍ଛ ବସନ, ପ୍ରଲମ୍ବିତ ଜୁଡ଼ା, ଶ୍ରୀବତ୍ସ ଚିହ୍ନ, କପାଳରେ ତିଳକ, କଣ୍ଠରେ ରୁଦ୍ରାକ୍ଷମାଳ, ସ୍କନ୍ଧରେ ପଇତା ଓ ଉତ୍ତରୀୟ, ମସ୍ତକରେ ତାଳପତ୍ର ଛତା, କାଖରେ କର୍ମକାଣ୍ଡ, ହସ୍ତରେ ପାଞ୍ଜି, ପ୍ରୋକ୍ଷଣୀ ଓ କମଣ୍ଡଳୁ ଶ୍ରେଷ୍ଠ ବ୍ରାହ୍ମଣର ସଙ୍କେତ ଭାବରେ ଗୃହୀତ ହେଉଥିଲା । (୯୧) କେବଳ ବ୍ରାହ୍ମଣ କାହିଁକି, ଅତିଥି ମାନେ ଥିଲେ ସେବା ଓ

(୮୫) ମହାନ୍ତି, ଡ଼: ବଂଶୀଧର ସାରଳା ମହାଭାରତରେ ଲୋକବିଶ୍ୱାସ ଓ ସଂସ୍କୃତି (ପ୍ରବନ୍ଧ) ନବରବି (ଅକ୍ଟୋବର, ୧୯୭୦) ପୃ. ୮୨-୯୮

(୮୬) ସା: ମ: ଭା ଆଦି—ପୃ. ୧୮

(୮୭) —ଏଜନ—ଆଦ୍ୟ—ପୃ. ୧୫, ୧୦୦ ଓ ୧୭୫ ଏବଂ ସଭା ପୃ· ୭

(୮୮) ସା: ମ: ଭା: (ର) ଖଣ୍ଡ—ପୃ. ୯୫-୯୭

(୮୯) - ଏଜନ - ଆଦ୍ୟ – ପୃ. ୧୦୯

(୯୦) - ଏଜନ - ଆଦ୍ୟ—ପୃ. ୨୨୧

(୯୧) - ଏଜନ - ଆଦ୍ୟ—ପୃ. ୨୧୮ ଓ ୨୪୯

ସମ୍ମାନର ଅଧିକାରୀ । ପଦ ପ୍ରକ୍ଷାଳନ, ଆସନ ପ୍ରଦାନ, ଷଡ଼ରସ ଭୋଜନ ଓ ତାମ୍ବୁଳ ସେବନ କରାଇ ଅତିଥିମାନଙ୍କୁ ସନ୍ତୁଷ୍ଟ କରିବା ବିଧାନ ରହିଥିଲା । ସ୍ୱୟମ୍ବର ସଭା ପାଇଁ ଆମନ୍ତ୍ରିତ ରାଜାମାନଙ୍କୁ ପ୍ରଣିପାତ, ପାଦପୂଜା, ଷଡ଼ରସ ବ୍ୟଞ୍ଜନର ମଣୋହି ବ୍ୟତୀତ ମୁକୁଟ, କୁଣ୍ଡଳ, ରତ୍ନମାଳ ଓ ପଟ୍ଟବସ୍ତ୍ରାଦି ଉପଢୌକନ ପ୍ରଦାନ କରାଯାଉଥିବାର ଦୃଷ୍ଟାନ୍ତ ଭାନୁମତୀ ଓ ଦ୍ରୌପଦୀଙ୍କ ସ୍ୱୟମ୍ବର ବର୍ଣ୍ଣନାରୁ ପରିଦୃଷ୍ଟ ହୁଏ । (୯୨) ପୁଣି, ପ୍ରଥମ ନିମନ୍ତ୍ରଣ ରକ୍ଷା କରିବା ଥିଲା ଧର୍ମସମ୍ମତ । (୯୩) ବାସ୍ତବିକ୍, ତତ୍କାଳୀନ ଲୋକାଚାରରେ ମଧୁର ବାକ୍ୟାଳାପ ଓ ସୁମିଷ୍ଟ ବ୍ୟବହାର ଉପରେ ପ୍ରାଧାନ୍ୟ ଦିଆଯାଉଥିଲା । କଟୁ ବଚନକୁ ବ୍ରହ୍ମହତ୍ୟା ଦୋଷ ସଙ୍ଗେ ସମାନ ବିବେଚନା କରି ଶତ୍ରୁ ମଧ୍ୟ ଗୃହକୁ ଆସିଲେ କ୍ଷମାଦେବା ଉଚିତ ବୋଲି ସାରଳା ଉଲ୍ଲେଖ କରିଛନ୍ତି । (୯୪)

ଏହା ବ୍ୟତୀତ, ଗୋସେବାକୁ ଏକ ପବିତ୍ର ସେବା ରୂପେ ଗ୍ରହଣ କରିବା ପାଇଁ ସାରଳା ସ୍ପଷ୍ଟ ସୂଚନା ଦେଇଛନ୍ତି । ସେ ସମୟରେ ପ୍ରତ୍ୟେକ ଶୁଭକର୍ମରେ ଗୋମୟ, ଗୋମୂତ୍ର, ଗବ୍ୟଘୃତ ପ୍ରଭୃତି ପଞ୍ଚଗବ୍ୟର ଆବଶ୍ୟକତା ଉପଲବ୍ଧି କରାଯାଉଥିଲା । ଏଥିଯୋଗୁଁ ସେତେବେଳେ ଗୋଜାତିର ଉନ୍ନତି ଓ ଗୋ-ସମ୍ପଦ ବୃଦ୍ଧି ଘଟିଥିବା ପରିଲକ୍ଷିତ ହୁଏ । ସାରଳା ମହାଭାରତରେ ଗୋମାତା ଏକ ଧର୍ମ ସଙ୍କେତ । ବଶିଷ୍ଠଙ୍କ କାମଧେନୁର କୋପରୁ ବିଶ୍ୱାମିତ୍ରଙ୍କ ସାତ କ୍ଷୌଣୀ ବଳ ଅଚିରେ ଧ୍ୱଂସ ପାଇଛି । (୯୫) ସେହି ସମୟରେ କନ୍ୟାଦାନ ଓ ଯଜ୍ଞାନୁଷ୍ଠାନର ଦକ୍ଷିଣା ସ୍ୱରୂପ ସବତ୍ସାଧେନୁ ପ୍ରଦାନ କରାଯାଉଥିଲା ଏବଂ ମୃତ୍ୟୁ କାଳରେ ମଧ୍ୟ ଗୋଦାନ ବ୍ୟବସ୍ଥା ରହିଥିଲା । (୯୬) ଗୋଜାତି ପ୍ରତି ଅବହେଳା କଲେ ଧର୍ମ କ୍ଷୟ ହୁଏ ଓ ବ୍ୟକ୍ତି ଗୋଶାଳାରେ ରହିବା ଦ୍ୱାରା ତାର ପାତକ ଖଣ୍ଡନ ହୁଏ ବୋଲି ସାରଳା ଯେଉଁ ସୂଚନା ଦେଇଛନ୍ତି (୯୭), ସେଥିରୁ ତାଙ୍କର ମନୋବୃତ୍ତି ସୁସ୍ପଷ୍ଟ ।

---

(୯୨) ସା: ମ: ଭା: (ବା) ଆଦ୍ୟ—ପୃ. ୧୧୭ ଓ ୨୫୮

(୯୩) - ଏଜନ - ଉଦ୍‌ଯୋଗ ପୃ. ୭୧

(୯୪) - ଏଜନ - ଆଦ୍ୟ—ପୃ. ୧୩୦, ଉଦ୍‌ଯୋଗ ପୃ. ୭୧ ଏବଂ
ସା: ମ: ଭା: (ସା) ମଧ୍ୟ—ପୃ. ୨୬୦

(୯୫) ସା: ମ: ଭା: (ବା) ଆଦ୍ୟ—ପୃ. ୧୬୫

(୯୬) - ଏଜନ - ଆଦ୍ୟ—ପୃ. ୮୫

(୯୭) - ଏଜନ - ଆଦ୍ୟ—ପୃ. ୨୪୮

ସମାଜ-ଜୀବନରେ କଠୋର ସାଧନା, ଆଚରଣଗତ ଶୁଦ୍ଧତା ଓ ଶୃଙ୍ଖଳିତ ସଂଯମ ଉପରେ ସାରଳା ଅଧିକ ଗୁରୁତ୍ୱ ଦେଇଛନ୍ତି । ଏଥିପାଇଁ ପୁରାଣ ପଠନ, ପାରଂପରିକ ଓଷାବ୍ରତ ଓ ପର୍ବପର୍ବାଣି ପାଳନ, ତୀର୍ଥାଟନ ଓ ପୁଣ୍ୟତୋୟା ନଦୀମାନଙ୍କରେ ଅବଗାହନ, ଜ୍ୟୋତିଷ ଏବଂ ଶକୁନ ଶାସ୍ତ୍ରର ଆବଶ୍ୟକତା ସେ ଉପଲବ୍ଧି କରିଛନ୍ତି । ସାରଳା ମହାଭାରତର ଛତେ ଛତେ ଯେଉଁଭଳି ଜ୍ୟୋତିଷ ଗଣନା, ଗ୍ରହପ୍ରକରଣ, ତିଥି ବାର ନକ୍ଷତ୍ର ଯୋଗ କରଣାଦିର ଫଳାଫଳ ସମ୍ପର୍କୀୟ ବିସ୍ତୃତ ବର୍ଣ୍ଣନା ପରିଲକ୍ଷିତ ହୁଏ, ଯେଥିରୁ ପ୍ରତିପାଦିତ ହୁଏ ଯେ କେବଳ ରାଜ୍ୟାଭିଷେକ, ବିଦ୍ୟାରମ୍ଭ, ଯୁଦ୍ଧଯାତ୍ରା, ବାଣିଜ୍ୟାନୁଷ୍ଠାନ, କନ୍ୟାର ଆଦ୍ୟ ରଜୋଦର୍ଶନ, ବିବାହ, ନବବଧୂ ଯାତ୍ରା, ଜାତସଂସ୍କାର, ସ୍ନାନକ୍ଷତ୍ର, ବନ୍ଦାପନାଦି ବିଶେଷ ଶୁଭକର୍ମ ବ୍ୟତୀତ ଅନେକ ସାଧାରଣ ଓ ଗୌଣ ଦୈନନ୍ଦିନ କାର୍ଯ୍ୟ ଏପରିକି ବନ୍ଧୁ ଗୃହ ଯାତ୍ରା, ତୀର୍ଥ ଯାତ୍ରା, ପାରିଧି ଗମନ, ନୌକା ନିର୍ମାଣ, ପାତ୍ରୀ ସନ୍ଧାନ ପ୍ରଭୃତି ମଧ୍ୟ ଜ୍ୟୋତିଷିକ ପରାମର୍ଶ ଅନୁଯାୟୀ ଶୁଭ ମୁହୂର୍ତ୍ତରେ ହିଁ ଅନୁଷ୍ଠିତ ହେବା ବିଧେୟ । ଏହା ବ୍ୟତୀତ, ପରଗୃହ ଦହନ, ଅନ୍ୟ ଗୃହରେ ପ୍ରବେଶ ପାଇଁ ବିବର ଖନନ ଏବଂ ଚୌର୍ଯ୍ୟ ବୃତ୍ତି ସାଧନ ନିମିତ୍ତ ଲକ୍ଷଣୀ ନିର୍ମାଣାଦି ହୀନ କର୍ମ-ସମ୍ପାଦନ ସକାଶେ ମଧ୍ୟ ଶୁଭବେଳା ଉପରେ ଗୁରୁତ୍ୱ ଦିଆଯାଉଥିବା ବର୍ଣ୍ଣନା ନିତାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । (୯୮)

ସାରଳାଙ୍କ ରଚନାରେ ଦୁଃସ୍ୱପ୍ନ, ସର୍ପଦର୍ଶନ, ଧୂମକେତୁର ଆବିର୍ଭାବ, ଉଲ୍ଲୁକ ରାବ, ଜମ୍ବୁକ ଧ୍ୱନି, ଶ୍ୱାନ ଚିତ୍କାର, ଉଲ୍କାପାତ, ଭୂମିକମ୍ପ, ମନ୍ଦିର ଚୂଡ଼ାଭଗ୍ନ, ବାମଚକ୍ଷୁ ସ୍ଫୁରଣାଦି ଅଶୁଭ ଶକୁନ ରୂପେ ବର୍ଣ୍ଣିତ ଏବଂ ପୂର୍ଣ୍ଣକୁମ୍ଭ, ଦଧି, ମାଛ, ଭଦଭଦଳିଆ ପକ୍ଷୀ ଓ ଶଙ୍ଖଚିଲ ଦର୍ଶନ, ଶଙ୍ଖଧ୍ୱନି, ଦକ୍ଷିଣଚକ୍ଷୁ ସ୍ଫୁରଣ ପ୍ରଭୃତି ଶୁଭ ସଙ୍କେତର ପ୍ରତୀକ ରୂପେ ଗୃହୀତ । (୯୯) ତାଙ୍କ ବିଚାରରେ ତୈଳମର୍ଦ୍ଦନ, ସ୍ନାନ ଭୋଜନ ଓ ସ୍ତ୍ରୀ ସଙ୍ଗମାଦି ଜୀବନର ଚରମ ଜୈବତାତ୍ତ୍ୱିକ ଓ ମନସ୍ତାତ୍ତ୍ୱିକ ଆବଶ୍ୟକତା ଗୁଡ଼ିକ ମଧ୍ୟ ତିଥିବାର ଶୁଭାଶୁଭ ଅନୁଯାୟୀ ନିୟନ୍ତ୍ରିତ

(୯୮) ସା: ମ: ଭା: (ସ) ଆଦ୍ୟ—ପୃ. ୮, ୧୧, ୧୩, ୧୫, ୩୦-୩୪, ୭୨, ୭୮, ୯୫, ୧୦୦, ୧୦୧, ୧୧୫, ୧୧୭, ୧୩୩, ୧୪୦, ୧୪୮, ୧୪୯, ୧୫୧, ୧୫୭, ୧୯୧, ୨୦୦, ୨୩୯; ସଭା—ପୃ. ୩୧୦ ଓ ଶ୍ରାନ୍ତି ପୃ. ୧୫

(୯୯) —ଏଜନ— ଆଦ୍ୟ-ପୃ. ୨୬୭, ବିରାଟ-ପୃ. ୭୯-୮୦, ୮୭, ଦ୍ରୋଣ—ପୃ. ୪୪-୪୫, କର୍ଣ୍ଣ ପୃ. ୮ ଓ ମୁଷଳୀ ପୃ. ୫-୬ .

ହେବା ଉଚିତ । ଏଥିପାଇଁ ରବିବାର, ଅମାବାସ୍ୟା, ସଂକ୍ରାନ୍ତି ପ୍ରଭୃତିରେ ସ୍ତ୍ରୀ, ତୈଳ ଆମିଷ ବର୍ଜନ ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । (୧୦୦)

## ଓଷାବ୍ରତ ଓ ପର୍ବପର୍ବାଣି

ସ୍ୱୟମ୍ବର, ବିବାହ, ନବବଧୂଯାତ୍ରା, ଜନ୍ମୋତ୍ସବ ଓ ବିଜୟୋତ୍ସବକାଳୀନ ନୃତ୍ୟ ସଙ୍ଗୀତ, ଆଟୋପ ପଟୁଆର, ବାଦନ ଗାୟନ, କାଦମ୍ବରୀ ସେବନାଦ ଉଚ୍ଛୃଙ୍ଖଳା ଓ ଉନ୍ମାଦନା ତତ୍କାଳୀନ ସାମାଜିକ ପର୍ବପର୍ବାଣି ପାଳନରେ ପରିଲକ୍ଷିତ ହେଉନଥିଲା । ବାରମାସରେ ଯେଉଁ ତେର ପର୍ବ ପାଳିତ ହେଉଥିଲା, ତାହା ପୂତ ପବିତ୍ର ପରିବେଶ ମଧ୍ୟରେ ସଂଯମ ଓ ଗାମ୍ଭୀର୍ଯ୍ୟର ସହ ସମ୍ପନ୍ନ କରାଯାଉଥିବା ସାରଳାଙ୍କ ବର୍ଣ୍ଣନାରୁ ସୂଚିତ ହୁଏ । ସାରଳା ମହାଭାରତରେ ବର୍ଣ୍ଣିତ ବିଭିନ୍ନ ଓଷାବ୍ରତ ଓ ପର୍ବପର୍ବାଣି ମଧ୍ୟରେ ଗୃହମୀଷ୍ୟ ବ୍ରତ, ସିଂହ ବୃହସ୍ପତି ଯୋଗ, ଏକାଦଶୀ ବ୍ରତ, କାର୍ତ୍ତିକ ସ୍ନାନ, ମାଘସ୍ନାନ ଓ ବ୍ରହ୍ମଚର୍ଯ୍ୟ ପାଳନ ଉପରେ ଗୁରୁତ୍ୱ ଦିଆଯାଇଛି । ଏହା ବ୍ୟତୀତ, ଚୈତ୍ର ମାସରେ ମଙ୍ଗଳବାର ପୂଜା, କାମାକ୍ଷୀ ବ୍ରତ ଓ ଗୌରୀ ଉପାସନା, ବୈଶାଖରେ ଅକ୍ଷୟ ତୃତୀୟା ଓ ଚନ୍ଦନ ଯାତ୍ରା, ଜ୍ୟେଷ୍ଠରେ ଷଷ୍ଠୀବ୍ରତ, ଆଷାଢ଼ରେ ରଥଯାତ୍ରା, ଶ୍ରାବଣରେ ଗହ୍ମାପୂର୍ଣ୍ଣମୀ, ଭାଦ୍ରବରେ ବିନାୟକ ବ୍ରତ ଓ ଷଷ୍ଠୀଓଷା, ଆଶ୍ୱିନରେ ବନଦୁର୍ଗା ପୂଜା ଓ କୁମାରୋତ୍ସବ, କାର୍ତ୍ତିକରେ ଭୀଷ୍ମ ପଞ୍ଚକ ବ୍ରତ ଓ ଆ କା ମା ଭୈ ବନ୍ଦାଣ, ମାର୍ଗଶୀର ମାସରେ ଲକ୍ଷ୍ମୀପୂଜା, ପୌଷରେ ପୁଷ୍ୟାଭିଷେକ, ମାଘରେ ବୈତରଣୀ ଓ ଚନ୍ଦ୍ରଭାଗା ସ୍ନାନ, ଫାଲ୍‌ଗୁନରେ ଶିବରାତ୍ରି ବ୍ରତର ପାଳନବିଧି ଓ ଫଳାଫଳ ବିଷୟରେ ସାରଳା ସୂଚନା ଦେବାକୁ ଯାଇ ଏ ସବୁରେ ଆହାର ନିୟନ୍ତ୍ରଣ, ଉପବାସ ଓ ସଂଯମରକ୍ଷା ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । (୧୦୧) ପୁନଶ୍ଚ, ତ୍ରିବେଣୀ, ବୈତରଣୀ, ଗଙ୍ଗା, ଗୋଦାବରୀ, ନର୍ମଦା, କୃଷ୍ଣା, କାବେରୀ, ଋଷିକୂଲ୍ୟା, ଚନ୍ଦ୍ରଭାଗା, ଦଶାଶ୍ୱମେଧ ଘାଟ, ମଣିକର୍ଣ୍ଣିକା ଘାଟ ପ୍ରଭୃତି ପବିତ୍ର ନଦୀ, ଘାଟରେ ସ୍ନାନ କରିବା ଥିଲା ସାରଳାଙ୍କ ବିଚାରରେ ପବିତ୍ରତାର ଆଧାର ।

---

(୧୦୦) ସା: ମ: ଭା: (ସା) ଦ୍ରୋଣ-ପୃ. ୪୮, ୫୫-୫୭

(୧୦୧) —ଏଜନ— ଆଦ୍ୟ-ପୃ. ୧୦ ଓ ୪୩, ମଧ୍ୟ-ପୃ. ୨, ୧୫୫ ଓ ୩୩୩, ବିରାଟ-ପୃ. ୫୪, ବନ-ପୃ. ୩୧, ଉଦ୍‌ଯୋଗ-ପୃ. ୧୫, ମୁଷଳୀ-ପୃ. ୨, ଭୀଷ୍ମ-ପୃ. ୧୪୧, ଦ୍ରୋଣ-ପୃ. ୫୭, ଶାନ୍ତି-ପୃ. ୨୨

ସଂକ୍ଷେପରେ ପ୍ରକାଶ କଲେ, ସାରଳାଙ୍କ ଦୃଷ୍ଟିରେ ଏସବୁ ଉପୋବ୍ରତ, ପର୍ବ-ପର୍ବାଣି ପାଳନ ଓ ତୀର୍ଥ ସ୍ନାନ ଥିଲା ଧର୍ମପ୍ରାଣତା ଓ ଆତ୍ମସଂଯମର ଗୋଟିଏ ଗୋଟିଏ ସୋପାନ । ଏହାଦ୍ୱାରା ନିଷ୍ଠା ଓ ପବିତ୍ରତା ଅକ୍ଷୁର୍ଣ୍ଣ ରହେ, ଶୃଙ୍ଖଳିକ ଶୃଙ୍ଖଳା ଦୃଢ଼ୀଭୂତ ହୁଏ ଏବଂ ମାନସିକ ଦୃଢ଼ତା ଉଜ୍ଜୀବିତ ହୋଇଥାଏ । ଏଥିପାଇଁ ହିଁ ପର୍ବ-ପାଳନ ବିଧିର ବ୍ୟତିକ୍ରମକୁ ସର୍ବଦା ଅଧର୍ମ ଓ ପାପ ରୂପେ ଗ୍ରହଣ କରାଯାଇଅଛି । କେବଳ ଏତିକି ନୁହେଁ, ତୁଳସୀ, ବରକୋଳି, ଦୂର୍ବାଦଳ, ସାହାଡ଼ା ବୃକ୍ଷାଦିର ପୁଣ୍ୟ ମାହାତ୍ମ୍ୟ ପ୍ରଖ୍ୟାପନରେ ମଧ୍ୟ ସାରଳା ଶତମୁଖ । (୧୦୨) ଆଧୁନିକ ବିଗ୍ୟାନରେ ଏସବୁ ସାମାଜିକ ବ୍ୟବସ୍ଥା ସ୍ୱାସ୍ଥ୍ୟ ପ୍ରତି ଯେପରି ଅନୁକୂଳ, ମନୋବଳର ସନ୍ତୁଳନରେ ସେହିପରି ସହାୟକ ।

ପିତୃପୁରୁଷଙ୍କ ଆଶୀର୍ବାଦରେ ମାନବର ଜୀବନ ଯାତ୍ରା ସଫଳ ଓ କୃତାର୍ଥ ହୁଏ ବୋଲି ଭାରତୀୟ ପରମ୍ପରାର ଦୃଢ଼ ବିଶ୍ୱାସ । ଏହାର ବଶବର୍ତ୍ତୀ ହୋଇ ସାରଳା ମଧ୍ୟ ପିତୃଶ୍ରାଦ୍ଧ ଓ ପ୍ରେତକ୍ରିୟା ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ତାଙ୍କ ରଚନାରେ ଏ ସଂପର୍କରେ ଉଲ୍ଲେଖ ଅଛି ଯେ ଚନ୍ଦନ, ଅଗୁରୁ, ଦେବଦାରୁ ଓ ତୁଳସୀ କାଷ୍ଠରେ ଚିତାଗ୍ନି ପ୍ରଜ୍ୱଳନପୂର୍ବକ ତାର ଚତୁଃପାର୍ଶ୍ୱରେ ଶବକୁ ତିନିଥର ପରିକ୍ରମା କରି ଦାହ କରିବା ବିଧି । ଦଶାହରେ ସବାନ୍ଧବ ସ୍ନାନ ଓ ନବବସ୍ତ୍ର ପରିଧାନ କରି ଏକାଦଶାହରେ ମାର୍ଜନା ଓ ବ୍ରାହ୍ମଣ ଭୋଜନ ସାଙ୍ଗକୁ ଗୋଦାନ, ସୁବର୍ଣ୍ଣଦାନ ଓ ଭୂମିଦାନ କରିବା ଉଚିତ । ସାମ୍ବତ୍ସରିକ ପିତୃ ଶ୍ରାଦ୍ଧରେ ଗଣ୍ଡାମାଂସ ରନ୍ଧନ ଓ ପିଣ୍ଡପ୍ରଦାନ କରି ପିତୃ-ଲୋକଙ୍କୁ ସନ୍ତୁଷ୍ଟ କରିବା ଏକ ଅଲଙ୍ଘ୍ୟ ସାମାଜିକ କର୍ତ୍ତବ୍ୟ ରୂପେ ସ୍ୱୀକୃତ । (୧୦୩)

**ଚିକିତ୍ସା ପଦ୍ଧତି**

ସ୍ୱାସ୍ଥ୍ୟର ସୁରକ୍ଷା ଓ ରୋଗବ୍ୟାଧି ନିବାରଣ ଦିଗରେ ସାରଳା କମ୍ ସଚେତନ ନଥିଲେ । ବେଶ୍ୟା ରମଣ, ପରଦାର ଗ୍ରହଣ, ପରପୁରୁଷ ପ୍ରୀତି

---

(୧୦୨) ସା: ମ: ଭା: (ସ୍ୱ) ଆଦ୍ୟ-ପୃ. ୩୭, ୩୮, ୪୩, ୭୯, ୧୪୭, ୧୭୦, ୨୨୩-୨୨୪; ମଧ୍ୟ-ପୃ. ୧୨୭-୧୨୮, ୧୯୧, ୩.୩୩-୩୩୪; ବନ-ପୃ. ୨୧୭, ଉଦ୍‌ଯୋଗ-ପୃ. ୭୦-୭୩ ଓ ମୂଷଳୀ-ପୃ. ୨

(୧୦୩) —ଏଜନ— ଆଦ୍ୟ-ପୃ. ୨୭, ୩୦, ୮୫-୮୭; ବନ-ପୃ. ୧୫୫-୧୫୭, ବିରାଟ-ପୃ. ୮୫ ଓ ସ୍ୱର୍ଗାରୋହଣ-ପୃ. ୧୯

ଅତ୍ୟଧିକ ସ୍ତ୍ରୀ ସମ୍ଭୋଗ ଏବଂ ଅକାଳ ଓ ଅବୈଧ ଯୌନ ସମ୍ପର୍କକୁ ସାମାଜିକ ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ସେ ସତତ ନିରୁତ୍ସାହିତ କରିଛନ୍ତି । ସାରଳାଙ୍କ ସମୟରେ ବିଭିନ୍ନ ଚେରମୂଳ ଓ ତନ୍ତ୍ରମନ୍ତ୍ର ସାଙ୍ଗକୁ ଶ୍ରେଷ୍ଠ ଆୟୁର୍ବେଦୀୟ ଔଷଧର ବ୍ୟବହାର ପ୍ରଚଳିତ ଥିଲା । ଖାଣ୍ଡବ ବନ ଦହନ କାଳରେ ବିଶଲ୍ୟକରଣୀ, ମୃତ୍ୟୁ ସଞ୍ଜୀବନୀ, ପ୍ରାଣଧାରଣ, ବୃଦ୍ଧନାଶନୀ, ରୋଗନାଶନୀ, ଯୋଗନାଶନୀ, କ୍ଳେଶନାଶନୀ, ବାଳତରୁଣ, ଅନଳ ଅମୃତ, ସନ୍ତାନ ଉଦ୍ୟାନ, ହିଙ୍ଗୁ ଧାଇଟି, କଣ୍ଟକ ବିନ୍ଦୁ, କାମିନୀ ବସନ୍ତ, ଉଦାଳକ, ପିଙ୍ଗଳକଣ୍ଟ, ଗର୍ଭଧାରଣା, କସ୍ତୁରୀ, ମୂଆଁଳି, ଅଗୁରୁ, ଚନ୍ଦନ ପ୍ରଭୃତି ବୃକ୍ଷଲତା ଓ ସେମାନଙ୍କ ଭେଷଜ ଗୁଣ ସମ୍ପର୍କରେ ଯେଉଁ ବିସ୍ତୃତ ବର୍ଣ୍ଣନା ଦିଆଯାଇଛି, ସେଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସାରଳା ଦାସ ଔଷଧି ବୃକ୍ଷଲତାର ସୁରକ୍ଷା ପାଇଁ ପରୋକ୍ଷ ସୂଚନା ଦେଇଛନ୍ତି । କାରଣ, ଏସବୁ ଔଷଧି ଦ୍ୱାରା ବାତ, ପିତ୍ତ, ଶ୍ଳେଷ୍ମା ଭଳି ସାଧାରଣ ରୋଗଠାରୁ ଆରମ୍ଭ କରି କୁଷ୍ଠ, ଅଗ୍ନିମାନ୍ଦ୍ୟ (ଲୁଦୁ ଲୁଦୁ ବ୍ୟାଧି), ଜଳୋଦର ଭଳି ଗୁରୁତର ବ୍ୟାଧି ମଧ୍ୟ ଉପଶମ ହୋଇପାରେ । କେବଳ ଏତିକି ନୁହେଁ, ଏହି ଔଷଧି ପ୍ରୟୋଗ ଫଳରେ ଅପୂର୍ବ ଶିକର ସନ୍ତାନପ୍ରାପ୍ତି, ଶୁକ୍ଳ କେଶର କୃଷ୍ଣାୟନ ଓ ଅକାଳ ବାର୍ଦ୍ଧକ୍ୟ ହରଣ ମଧ୍ୟ ସମ୍ଭବପର । (୧୦୪)

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସାରଳା ଜନ୍ତବୁଟି, ତନ୍ତ୍ରମନ୍ତ୍ର, ଚେରମୂଳ, ଝୁଣ୍ଟଝୁଣ୍ଟିଆ ଆଦି ଔଷଧରେ ବିଶ୍ୱାସ ନକରି ଅଶ୍ୱିନୀକୁମାର ସମର୍ଥିତ ଆୟୁର୍ବେଦିକ ଔଷଧ ସେବନ ସପକ୍ଷରେହିଁ ମତ ଦେଇଛନ୍ତି । ଅନ୍ୟଥା, ଶାଲ୍ମଳୀ କରଞ୍ଜୀଠାରୁ ଚେରମୂଳ ପ୍ରୟୋଗ କରିବା ଦ୍ୱାରା ବଳ୍ମିକ ଜଳୋଦର ରୋଗ ହେଲେ ଭଳି ପରିଣାମ ଭୟାବହ ହେବାର ଆଶଙ୍କା ଅଧିକ ବୋଲି ଚେତାବନୀ ଶୁଣାଇଛନ୍ତି । (୧୦୫) ତାଙ୍କ ବିଚାରରେ ଔଷଧ ପ୍ରୟୋଗ ଦ୍ୱାରା ଗର୍ଭପାତ ଓ ଭ୍ରୂଣହତ୍ୟା ମହାପାତକ ରୂପେ ବିବେଚିତ । (୧୦୬) ଅଖାଦ୍ୟ ଭକ୍ଷଣ, ଖାଦ୍ୟରେ ବିଷପ୍ରଦାନ, ମଦ୍ୟପାନ, ଗ୍ରହଣ କାଳରେ ଅନ୍ନଭୋଜନ ଓ ବନପକ୍ଷୀକରେ ଆମିଷ ଆହାରକୁ ମଧ୍ୟ ସେ କୁକର୍ମ ବା ଅକାର୍ତ୍ତିକର୍ମ ରୂପେ ଗ୍ରହଣ କରିଛନ୍ତି । (୧୦୭)

---

(୧୦୪) ସା: ମ: ଭା: (ଗ) ମଧ୍ୟ—ପୃ. ୬୧-୬୨ ଏବଂ
ସା: ମ: ଭା: (ସା) ମଧ୍ୟ— ପୃ. ୭୭-୮୧

(୧୦୫) ସା: ମ: ଭା: (ଗ) ବନ—ପୃ. ୨୪୦-୨୪୧

(୧୦୬) (କ) —ଏଜନ—ଦ୍ରୋଣ-ପୃ. ୫୪ ଏବଂ
(ଖ) Lal, Jagdish, Ed. Laws and Flaws (Law Publishers. Allahabad) Vol. xxvii No. 3 (15-3-88) P. 3

(୧୦୭) ସା: ମ: ଭା: (ଗ) ଦ୍ରୋଣ—ପୃ' ୫୫-୫୭

ଉପର୍ଯ୍ୟୁକ୍ତ ଆଲୋଚନାରୁ ମନେହୁଏ ଯେ ସାରଳା ଦାସ ରାଷ୍ଟ୍ରୀୟ ଆବଶ୍ୟକତା ଦୃଷ୍ଟିରୁ ଏକ ରୋଗମୁକ୍ତ ସମାଜର ରୂପରେଖ ପରିକଳ୍ପନା କରିଛନ୍ତି । ନାଗରିକମାନଙ୍କର ଉନ୍ନତ ସ୍ୱାସ୍ଥ୍ୟହିଁ ରାଷ୍ଟ୍ରର ଶକ୍ତି । ସେଥିପାଇଁ ଔଷଧି ବୃକ୍ଷଲତାର ସୁରକ୍ଷା, ଅନଭିଜ୍ଞ ଚିକିତ୍ସକମାନଙ୍କର ମୂଳୋତ୍ପାଟନ ଓ ଉନ୍ନତ ଚିକିତ୍ସା ବ୍ୟବସ୍ଥାର ପ୍ରଚଳନ ସପକ୍ଷରେ ସେ ସ୍ୱର ଉତ୍ତୋଳନ କରିଛନ୍ତି ।

## ରନ୍ଧନ ପ୍ରଣାଳୀ ଓ ଖାଦ୍ୟ ସାମଗ୍ରୀ

ବିଶୁଦ୍ଧ ଆହାର ସ୍ୱାସ୍ଥ୍ୟରକ୍ଷା ପାଇଁ ଏକାନ୍ତ ଆବଶ୍ୟକ । ଏଣୁ ସାରଳା ତାଙ୍କ ମହାଭାରତରେ ଏହା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ସେ ପରଂପରାଗତ ତ୍ରିବିଧ ପାକ ପ୍ରଣାଳୀର ସୂଚନା ଦେଇଛନ୍ତି—ଗୌଡ଼ି ପାକ, ଶୌଣ୍ଡି ପାକ ଓ ନଳ ପାକ । ଗୌଡ଼ିବିଧିରେ କାଷ୍ଠ ପ୍ରଜ୍ୱଳନପୂର୍ବକ ଖାଦ୍ୟ ସାମଗ୍ରୀଗୁଡ଼ିକୁ ସ୍ୱତନ୍ତ୍ରଭାବେ ସିଦ୍ଧ କରାଯାଏ । ଶୌଣ୍ଡିବିଧିରେ ଖାଦ୍ୟ ସାମଗ୍ରୀକୁ ପତ୍ର ଠୋଲରେ ରଖି ବା ଶିଆଳି ଲତା ଗୁଡ଼ାଇ ଅଗ୍ନି ଦଗ୍ଧ କରାଯାଏ । କିନ୍ତୁ ନଳପାକ ଅନୁଯାୟୀ ବିଭିନ୍ନ ପ୍ରକାର ଖାଦ୍ୟ ପଦାର୍ଥକୁ ଅଳଗା ଅଲଗା ଏକତ୍ର ସୌର ତାପରେ ସିଦ୍ଧ କରାଯାଏ । (୧୦୮) ଏହି ତ୍ରିବିଧ ପ୍ରଣାଳୀରେ ପ୍ରସ୍ତୁତ ଖାଦ୍ୟ ବାତ, ପିତ୍ତ ଓ ଶ୍ଳେଷ୍ମାଜନିତ ରୋଗ ନିରାକରଣ ପାଇଁ ଉପଯୋଗୀ ଥିଲା । (୧୦୯) (ବର୍ତ୍ତମାନର ଜାଳେଣି ଗ୍ୟାସ, ଓଭନ୍ ଓ ସୌର ଚୂଲ୍ହା ଦ୍ୱାରା ରନ୍ଧନ ପ୍ରଣାଳୀ ଉଲ୍ଲିଖିତ ତ୍ରିବିଧ ପ୍ରଣାଳୀର ରୂପାନ୍ତର ନୁହେଁ କି ! ) ସାରଳାଙ୍କ ବର୍ଣ୍ଣିତ ରନ୍ଧନବିଧି ଉନ୍ନତ ଉତ୍କଳୀୟ ପାକ ପ୍ରଣାଳୀର ନିଦର୍ଶନ ମାତ୍ର । (୧୧୦) ସୁତରାଂ, ସାରଳା ମହାଭାରତରେ ଗଣ୍ଡାମାଂସ, ହରିଣମାଂସ

---

(୧୦୮) ସା: ମ: ଭା: (ରା) ଆଦ୍ୟ-ପୃ. ୭୧, ବିରାଟ-ପୃ. ୫୧, ମୂଷଳୀ-ପୃ. ୨୮ ସଭା-ପୃ. ୨୪୦ ଓ ଉଦ୍‌ଯୋଗ—ପୃ. ୧୦୮

(୧୦୯) ଗଉଡ଼ି ଶଉଣ୍ଡି ନଳ ତ୍ରିବିଧ ରନ୍ଧଣା
ବାରଣ ନୁହଇ ସେହୁ ଏକୁ ଏକ ଜଣା ।
× × ×
ବାତ ପିତ୍ତ ଶ୍ଳେଷ୍ମା ଆଦି ଚହିଁ ନାହିଁ ବ୍ୟାଧି
ସମସ୍ତ ପ୍ରସିଦ୍ଧ ହେଲା ରନ୍ଧଣା ପ୍ରସିଦ୍ଧି ।
(ସା: ମ: ଭା: (ରା) ବନ—ପୃ. ୫୧)

(୧୧୦) ଦାସ, ଡ଼: ହେମନ୍ତକୁମାର—ସାରଳାଦାସ : ଏକ ଅନ୍ତରଙ୍ଗ ଅଧ୍ୟୟନ (ପ୍ରବନ୍ଧ) ସାରଳା ସୃଷ୍ଟିର ଦିଗ ଦିଗନ୍ତ—ପୃ. ୫୪

ରୋହି ମାଛ, ଦଦବ୍ୟ ଅରୁଆ ପରିବାସ ଅନ୍ନ, ଏକବର୍ତ୍ତୀ ବା ପଞ୍ଚବର୍ତ୍ତୀ ମିଠା, ଚଡାଉ,, କ୍ଷୀର ବା କ୍ଷୀରସା, ଡାହି, ମାଛ, ଆମ୍ବିଳ, ହେଙ୍ଗୁ ମରିଚ କାନ୍ଦ ଓ ଦୁଗ୍ଧ ଦେଇ ବିଭିନ୍ନ ପରିବାର ଘାଣ୍ଟ ବା ମନ୍ଦୁଲା, ଛେନା, ମହ, କୋଷିଳା, ଶର୍କରା ଏବଂ ବିଭିନ୍ନ ସୁମିଷ୍ଟ ପକ୍ୱ ଫଳାଦି (୧୧୧) ଯେଉଁସବୁ ଖାଦ୍ୟ ସାମଗ୍ରୀର ଉଲ୍ଲେଖ ଦେଖିବାକୁ ମିଳେ, ସେ ସବୁକୁ ସାରଳା ସମର୍ଥିତ ଉନ୍ନତ ଆହାର ରୂପେ ଗ୍ରହଣ କରାଯାଇପାରେ ।

## ସାମାଜିକ ଆଚରଣ

ସତ୍ ଆହାର ପରି ସତ୍ ଆଚରଣ ମଧ୍ୟ ଉନ୍ନତ ସମାଜ ଗଠନର ଏକ ମୌଳିକ ଉପାଦାନ । ସାରଳାଙ୍କ ଦୃଷ୍ଟିରେ ସାମାଜିକତା କ୍ଷେତ୍ରରେ ସହନଶୀଳତା, ସହୃଦୟତା ଓ ଗୁରୁଜନ ମାନ୍ୟତା ଉପରେ ବିଶେଷ ଗୁରୁତ୍ୱ ଆରୋପିତ ହୋଇଛି । ତାଙ୍କ ଦୃଷ୍ଟିରେ ଆଶା ଦେଇ ନିରାଶ କରିବା, ପରୋପକାର ଭୁଲିଯିବା, ଆତ୍ମ ପ୍ରଶଂସାରେ ଭାସିଯିବା ଏବଂ ପରଛିଦ୍ର ବା ପରନିନ୍ଦାରେ ପ୍ରବୃତ୍ତ ହେବା ଏକାନ୍ତ ଘୃଣ୍ୟ ଓ ନିନ୍ଦନୀୟ । (୧୧୨) ସାରଳାଙ୍କ ବିଗ୍ରହରେ ଯେଉଁସବୁ କାର୍ଯ୍ୟକଳାପ ସୁସ୍ଥ ସାମାଜିକତା ଦୃଷ୍ଟିରୁ ଘୃଣ୍ୟ ବିବେଚିତ ଓ ଅନାଚାର ରୂପେ ଗୃହୀତ, ସେସବୁ ‘ଅକୀର୍ତ୍ତିକର୍ମ’ (୧୧୩) ହେଉଛି—କୁସଙ୍ଗ, ବିଶ୍ୱାସଘାତକତା, ଅତିଥି ବିମୁଖତା, ଗୋ ହତ୍ୟା, ଜୀବ ହତ୍ୟା, ସ୍ତ୍ରୀ ହତ୍ୟା, ବିବାହିତା ସ୍ତ୍ରୀ ପରିତ୍ୟାଗପୂର୍ବକ ନୀଚ ସ୍ତ୍ରୀ ଗ୍ରହଣ, ପରସ୍ତ୍ରୀ ହରଣ, ବିଧବା ବ୍ରାହ୍ମଣୀ ହରଣ, ପରଦ୍ରବ୍ୟ ହରଣ, ଦେବସ୍ୱ ଅପହରଣ, ଦେବତା ବ୍ରାହ୍ମଣଙ୍କ ଅସମ୍ମାନ, ଆତ୍ମବଡ଼ିମା ପ୍ରଦର୍ଶନ, ପରଛିଦ୍ର ଶ୍ରବଣ, ପଥ ପାର୍ଶ୍ୱସ୍ଥିତ ବୃକ୍ଷ ଛେଦନ, ସ୍ନାନାନ୍ତେ ପାଳିଆ ବସ୍ତ୍ର ପରିଧାନ, ଏକାଦଶୀ, ଶିବରାତ୍ରି ଓ ଗ୍ରହଣ କାଳରେ ଅନ୍ନ ଭୋଜନ, ଚତୁର୍ଥୀ, ପଞ୍ଚମୀ, ସପ୍ତମୀ, ଦଶମୀ ଓ ଏକାଦଶୀ ତିଥିରେ ଆମିଷ ଭୋଜନ, ଶୂକର ମାଂସ ଭକ୍ଷଣ, ମଦ୍ୟପାନ, ପାକାସ୍ପର୍ଶ୍ୟା

---

(୧୧୧) ସା: ମ: ଭା: (ସ) ଆଦ୍ୟ-ପୃ. ୧୧, ୩୮, ମଧ୍ୟ-ପୃ. ୩୨୦ ଓ ବିରାଟ-ପୃ. ୫୧-୫୨

(୧୧୨) (କ) —ଏଜନ— ଆଦ୍ୟ-ପୃ. ୧୩୧, ୧୩୨, ୧୮୬, ବନ-ପୃ. ୭୧, ୧୦୨ ଓ କର୍ଣ୍ଣ-ପୃ. ୨୫

(ଖ) ମହାନ୍ତ : ସାରଳା ମହାଭାରତରେ ଲୋକବିଶ୍ୱାସ ଓ ରୀତିନୀତି (ପ୍ରବନ୍ଧ) ନବରବି (ଅକ୍ଟୋବର ୧୯୭୦) ପୃ. ୮୨-୯୮

(୧୧୩) ସା: ମ: ଭା: (ସ)—ଦ୍ରୋଣ-ପୃ. ୫୫-୫୬

ସ୍ତ୍ରୀ ରମଣ, ଦ୍ୱିବାର ଦିବା ଭୋଜନ, ବକ୍ର ଶଯ୍ୟାରେ ଶୟନ, ପିତା, ମାତା, ଗୁରୁ ଓ ପଣ୍ଡିତ ଜନଙ୍କ ପ୍ରତି ଅନାଦର, ପରସ୍ତ୍ରୀକାତର, ଧନ ଲୋଭରେ ନାସ୍ତି ବ୍ୟବସ୍ଥା, ଗୃହବ୍ୟବସ୍ଥା, ମାଘ ମାସରେ ଜଳବ୍ୟବସ୍ଥା, ବ୍ରତୋପବାସରେ ସହବାସ, ଖାଦ୍ୟରେ ବିଷ ଦେବା, ଭଲ ଦ୍ରବ୍ୟ ଲୁଚାଇ ଖାଇବା, ଯୋପ ପକାଇ ମାଛ ମାରିବା, ଗୋଚର ଜମି ଗ୍ରାସ କରିବା, ବେଲ କାଷ୍ଠରେ ହଳ କରିବା, ଷଣ୍ଢଙ୍କୁ ହଳ ବାନ୍ଧିବା, ମିଥ୍ୟା କହିବା, ଆଶା ଦେଖାଇ ନିରାଶ କରିବା, ସ୍ତ୍ରୀ ହୋଇ ଅନଳକୁ ଡ଼ରିବା, ବ୍ରାହ୍ମଣ ହୋଇ ଜଳକୁ ଭୟ କରିବା, ଦେବତା ଦର୍ଶନ ନ କରିବା, ଶକ୍ତି ଅନୁଯାୟୀ ଦାନ ନ ଦେବା, ଦାତାକୁ ଦାନରୁ ନିବର୍ତ୍ତାଇବା, ଗ୍ରହପୀଡ଼ା କାଳରେ ପୂଜା ନ କରିବା, ଶରଣାଗତଙ୍କୁ ରକ୍ଷା ନ କରିବା, ରାସ୍ତାରେ କଣ୍ଟା ପକାଇବା, ଗତ କଥା ନେଇ ଅନୁଶୋଚନା କରିବା ଇତ୍ୟାଦି । ଦେବତା, ତପସ୍ୱୀ, ବ୍ରାହ୍ମଣ, ପିତାମାତା, ଗୁରୁଜନ, ଶାସ୍ତ୍ରଜ୍ଞ ପଣ୍ଡିତ, ସ୍ତ୍ରୀ, ବୈଦ୍ୟ, ମିତ୍ର, ସତୀ, ପତି ଓ ଗୋଜାତିଙ୍କୁ ନିନ୍ଦା କଲେ ସମ୍ପୃକ୍ତ ବ୍ୟକ୍ତିକୁ ଅପ୍ରମିତ ପାପରେ ଭାଗୀ ହୋଇ ବିବିଧ ବ୍ୟାଧି ଭୋଗ କରିବାକୁ ହୁଏ ବୋଲି ସାରଳା ସ୍ୱତ ଉଲ୍ଲେଖ କରିଛନ୍ତି ।

ଦେବଙ୍କୁ ନିନ୍ଦିଲେ ନର୍କେ ପଡ଼େ ହୋଇ ଜାତ
ବ୍ରାହ୍ମଣ ନିନ୍ଦିଲେ ବଂଶ ହୁଅଇ ନିପାତ ।
ତପୀ ନିନ୍ଦିଲେ ଶରୀର ହୋଇଯାଇ କ୍ଷୀଣ
ପୁଚ୍ଛା କଲେ ସମସ୍ତଙ୍କୁ ବୋଲେ ବିଦ୍ୟମାନ ।
ଗୁରୁ ନିନ୍ଦା କଲେ ପ୍ରାପ୍ତ ନ ହୁଅଇ ବିଦ୍ୟା
ବାତୁଳ ହୋଇ ବୁଲନ୍ତି ନୋହି ଯୋଗ ସିଦ୍ଧା ।
ପିତାଙ୍କୁ ନିନ୍ଦା କଲେ ଯେ ହୁଏ ଶିରଚ୍ଛେଦ
ମାତାଙ୍କୁ ନିନ୍ଦା କଲେ ଯେ ଅନେକ ପ୍ରମାଦ ।
ନ ଜାଣି ନିନ୍ଦା କରନ୍ତି ଯେହୁ ବୈଦ୍ୟ ଯୋଗୀ
ଜନ୍ମେ ଜନ୍ମେ ମହାଦୋଷେ ହୁଅନ୍ତି ସେ ରୋଗୀ ।
ପତିଙ୍କି ଯେ ଜନ ନିନ୍ଦା କରନ୍ତି ନ ଜାଣି
ରାଜଦଣ୍ଡେ ପରାଜିତ ହୁଅନ୍ତି ସେ ପ୍ରାଣୀ ।
ଶାସ୍ତ୍ର ନିନ୍ଦା କଲେ ନୁହେ ଶାସ୍ତ୍ରେ ଜ୍ଞାନ ବୁଦ୍ଧି
ସାଗରକୁ ନିନ୍ଦା କଲେ ହୁଏ କୁଷ୍ଠ ବ୍ୟାଧି ।
ଲକ୍ଷ୍ମୀ ନିନ୍ଦିଲେ ଦରିଦ୍ର ହୋନ୍ତି ଜନ୍ମେ ଜନ୍ମେ ।
ଭାରତୀ ନିନ୍ଦିଲେ ଗଜମୂର୍ଖ ହୋନ୍ତି ଜନେ ।

ମଇଷକୁ ନନ୍ଦା କଲେ ହୁଅନ୍ତି ପାମର
ଔଷଧ ନନ୍ଦଲେ ରୋଗ ହୁଅଇ ଅପାର ।
ଗୋରୁ ନନ୍ଦା କଲେ ହାନ ହୁଅଇ ଯେ କୃଷି ।
ପୁତ୍ର ନନ୍ଦା କଲେ ଜନ ହୁଅଇ ନଅଂଶୀ ।
ସତୀ ନନ୍ଦା କଲେ ତାର ନୋହେ ଗୃହେ ବାସ
ମହନ୍ତ ନନ୍ଦଲେ ହୁଏ ଅପ୍ରମିତ ଦୋଷ । (୧୧୪)

(ଆଦ୍ୟ (ଗ)-ପୃ ୨୯୭)

ମୂଳତଃ ପ୍ରକାଶ କଲେ, ସାରଳା ଜୀବନର ସାର୍ଥକତା ଓ କର୍ମର ସିଦ୍ଧି (୧୧୫) ଉପରେ ହିଁ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଯେପରି କ୍ଷୁଧାର ପ୍ରଖରତାରେ ଖାଦ୍ୟର ମିଷ୍ଟତା ଅନୁଭୂତ, ଦ୍ରବ୍ୟର ବିକ୍ରି ଉପରେ ହିଁ ବାଣିଜ୍ୟର ସଫଳତା ନ୍ୟସ୍ତ ଏବଂ ଶ୍ରୋତାର ବୁଝିବା ଶକ୍ତି ଉପରେ ବକ୍ତାର ସାର୍ଥକତା ନିର୍ଭର-ଶୀଳ, (୧୧୬) ସେହିପରି ପ୍ରତ୍ୟେକ କ୍ଷେତ୍ରରେ କର୍ମର ସିଦ୍ଧିରେ ହିଁ ଜୀବନର ସାର୍ଥକତା ନିହିତ, ଏହା ସାରଳା ସମ୍ପୂର୍ଣ୍ଣ ରୂପେ ଅବହିତ ଥିଲେ । ତେଣୁ ଶାସକ, କୃଷକ, ଲୌହକାର, କୁମ୍ଭକାର, ସ୍ୱର୍ଣ୍ଣକାର, ଗୋପାଳ, ଧୀବର, ବୟନ ଶିଳ୍ପୀ, ଭେଷଜ କୋବିଦ, ସଙ୍ଗୀତ ସାଧକ, ଗାୟକ ଗାୟିକା, ନର୍ତ୍ତକନର୍ତ୍ତକୀ ଆଦି ବୃତ୍ତିଜୀବୀ ନିଜ ନିଜ କର୍ମକ୍ଷେତ୍ରରେ ନୈପୁଣ୍ୟ ଅର୍ଜନ କରିବା ହିଁ ସାରଳାଙ୍କ ମତରେ ଶ୍ରେଷ୍ଠ ସାମାଜିକ ଆଦର୍ଶ । ଏହି ସରଳ ଓ ନିରଳସ ସ୍ୱକର୍ମସାଧନ ଯୋଗୁଁ ହିଁ ସାରଳାଙ୍କ ସମକାଳୀନ ସମାଜରେ ରାଜନୈତିକ ବିପ୍ଳବ ବା ଶାସନ କ୍ଷମତା ଅଧିକାର ପାଇଁ ଗଣଜାଗରଣର ସୂତ୍ରପାତ ଘଟି ନଥିଲା କିମ୍ବା ସାଧାରଣ ଜନମାନସରେ ରାଜନୈତିକ ଚେତନାର ଉଗ୍ରତା ପ୍ରକାଶ ପାଇନଥିଲା । ଏଥିପାଇଁ ତତ୍କାଳୀନ ସାମାଜିକ ପୃଷ୍ଠଭୂମିରେ ଜନଜୀବନର ଶୈଥିଲ୍ୟ ପ୍ରତି ତର୍ଜନୀ ନିର୍ଦ୍ଦେଶପୂର୍ବକ ସାରଳା ଦାସ ନୈତିକତାପୂର୍ଣ୍ଣ ଶୃଙ୍ଖଳାବଦ୍ଧ ପରିବେଶ ମଧ୍ୟରେ ସାମ୍ୟ, ମୈତ୍ରୀ ଓ ମାନବବାଦୀ

---

(୧୧୪) ସା: ମ: ଭା: ବିରାଟ (ଗ) ପୃ. ୭-୮ ରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ ।

(୧୧୫) ସାହୁ, ଡ଼କ୍ଟର କୃଷ୍ଣଚରଣ—ସାରଳା ମହାଭାରତ ଚରିତ୍ର ଚିତ୍ରଶାଳା (ଦ୍ରୌପଦୀ) ପୃ. ୩୫୭

(୧୧୬) ସା: ମ: ଭା: (ସା) ମଧ୍ୟ-ପୃ. ୧୬୦

ଶାନ୍ତାଧାରର ଆଦର୍ଶ ପ୍ରଯୁ୍ବଣ ଛୁଞାଇଥିଲେ ଏବଂ ସମସାମୟିକ ଉତ୍କଳକୁ ବଳିଷ୍ଠ ନେତୃତ୍ୱ ଦେଇଥିଲେ । (୧୧୭)

ପୂର୍ବବର୍ତ୍ତୀ ଉନୋଟି ପରିଚ୍ଛେଦରେ ସାରଳା ଦାସଙ୍କ ରାଜନୈତିକ ଆଦର୍ଶର ବିଭିନ୍ନ ଦିଗ ସମ୍ପର୍କରେ ଯେଉଁ ବିଶ୍ଳେଷଣ କରାଗଲା, ତାର ପୃଷ୍ଠଭୂମିରେ ଏତିକି କୁହାଯାଇପାରେ ଯେ ରାଜତାନ୍ତ୍ରିକ ଶାସନ ବ୍ୟବସ୍ଥା ସହିତ ସେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲେ ଏବଂ ତାଙ୍କର ମାନସିକ ପରିବ୍ୟାପ୍ତି ରାଜତନ୍ତ୍ରର ପରିବେଶ ମଧ୍ୟରେ ସୀମାବଦ୍ଧ ଥିଲା । ତେଣୁ ସାରଳା ସାମ୍ୟବାଦୀ ବା ସମାଜବାଦୀ ଆଦର୍ଶକୁ ପସନ୍ଦ କରୁଥିଲେ ହେଁ ରାଜତାନ୍ତ୍ରିକ ଆଦର୍ଶର ନିଗଡ଼ ବନ୍ଧନ ମଧ୍ୟରୁ ନିଜକୁ ମୁକ୍ତ କରିପାରି ନଥିଲେ । ଏଥିପାଇଁ ସେ ଯେଉଁ ରାଜନୈତିକ ସଂସ୍କୃତିର ଉପାସକ ତଥା ବାର୍ତ୍ତାବହ ଥିଲେ, ତାହା ଜଣେ ଅତ୍ୟାଗ୍ରହୀ ଶାସକର ନିରଙ୍କୁଶ ରାଜତ୍ୱ ନଥିଲା, ଥିଲା ପ୍ରଜା-ହିତୈଷୀ ରାଜାର ସେବାବ୍ରତ । ତାଙ୍କର ଦୃଢ଼ ଆଦର୍ଶ ଏହି ଯେ ରାଜା ରାଜ୍ୟର ପ୍ରଭୁ ନୁହନ୍ତି, ପ୍ରଜାଙ୍କର ସେବକ ମାତ୍ର । ରାଜ୍ୟ ଏକ ପବିତ୍ର ନ୍ୟାସ; ରାଜା ନ୍ୟାସୀ କିନ୍ତୁ ଅଧିକାରୀ ନୁହନ୍ତି । ଜଣେ ସନ୍ନ୍ୟାସୀର ତ୍ୟାଗ ଓ ସାଧନାହିଁ ରାଜାରେ ପ୍ରକୃତ ଧର୍ମ । ଧର୍ମାଚରଣ, ଯଜ୍ଞାନୁଷ୍ଠାନ ଓ ଗଭୀର ଶାସ୍ତ୍ରଜ୍ଞାନ ରାଜାଙ୍କର ଉତ୍ସର୍ଗୀକୃତ ଜୀବନର ପରମ ପାଥେୟ । (୧୧୮)

ପୁନଶ୍ଚ, ସାରଳାଙ୍କ ରାଜନୈତିକ ଆଦର୍ଶ କେବଳ ରାଜକେନ୍ଦ୍ରିକ ଯେ ଥିଲା ତାହା ନୁହେ, ଏହା ଥିଲା ବ୍ୟକ୍ତି ଓ ସମାଜକେନ୍ଦ୍ରିକ ମଧ୍ୟ । ସମଗ୍ର ମହାଭାରତରେ ରାଜଧର୍ମର କେତେକ ସୂଚନା ଭୀଷ୍ମ, ବିଦୁର କିମ୍ବା ଶ୍ରୀକୃଷ୍ଣଙ୍କ ବାଣୀ ମଧ୍ୟରେ ପରିବେଷିତ ହୋଇଥିଲେ ହେଁ, ବିଭିନ୍ନ ଚରିତ୍ର ମାଧ୍ୟମରେ ହିଁ ସାରଳା ଦାସ ନିଜର ବଳିଷ୍ଠ ଆଦର୍ଶକୁ ରୂପଦାନ କରିବା ପାଇଁ ପ୍ରୟାସ କରିଛନ୍ତି । ସେ ଜଗନ୍ନାଥଙ୍କ ଠାରେ ଯେପରି ସର୍ବଧର୍ମର ସମନ୍ୱିତ ରୂପ ପରିକଳ୍ପନା କରିଛନ୍ତି କିମ୍ବା ପିଣ୍ଡ ମଧ୍ୟରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସନ୍ଧାନ କରିଛନ୍ତି, ସେହିପରି ବ୍ୟକ୍ତି ମଧ୍ୟରେ ରାଷ୍ଟ୍ରର ସାମଗ୍ରିକ ରୂପ ଦେଖି ପାରିଛନ୍ତି । ନାଗରିକ ହିଁ ରାଷ୍ଟ୍ରର ଭିତ୍ତିଭୂମି—ଏ ପ୍ରକାର ଏକ ପରିକଳ୍ପନା ସମଗ୍ର ମହାଭାରତ ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ରହିଥିବା ନିର୍ଦ୍ଦ୍ୱନ୍ଦରେ ସ୍ୱୀକାର କରାଯାଇ-ପାରେ । ପ୍ରଜାକୁଳର ସମୃଦ୍ଧ ହିତସାଧନ ଓ ତତ୍ସନିତ କର୍ତ୍ତବ୍ୟ ସଂପାଦନ ଯେପରି ରାଜାର ଶାସନ ସର୍ବକାଳୀୟ ଅଧିକାରର ମୂଳ ଆଧାର, ସେପରି ଶାସକଙ୍କର ନ୍ୟାୟ ଓ

---

(୧୧୭) ଦାଶ, ଅଧ୍ୟାପକ ସର୍ବେଶ୍ୱର : ମହାକବି ସାରଳା ଦାସ—ପୃ. ୧୧୭

(୧୧୮) —ଏଜନ— ପୃ. ୧୫୪-୧୫୫

ଆଇନଭିତ୍ତିକ ଅଧିକାର ପ୍ରତି ଆନୁଗତ୍ୟ ପ୍ରଦର୍ଶନ ନାଗରିକମାନଙ୍କର ରାଷ୍ଟ୍ରୀୟ କର୍ତ୍ତବ୍ୟ । ପ୍ରତ୍ୟେକ ନାଗରିକ ନିଜ ନିଜର ଦାୟିତ୍ୱ ଓ ଅଧିକାରକୁ ସୁଷ୍ଠୁ ରୂପେ ସମ୍ପନ୍ନ କରିପାରିଲେ ରାଷ୍ଟ୍ରୀୟ ଦୃଢ଼ତା ନିଶ୍ଚିତ ଭାବେ ପ୍ରତିଷ୍ଠିତ ହୋଇପାରିବ । ଏଣୁ ବ୍ୟକ୍ତିର ଚିନ୍ତା ଚେତନା, ଆଚାର ବ୍ୟବହାର, ଖାଦ୍ୟପେୟ, ଶିକ୍ଷାଦୀକ୍ଷା ପ୍ରଭୃତିର ସୁନିୟନ୍ତ୍ରଣ ସର୍ବପ୍ରଥମ ରାଜନୈତିକ ଆବଶ୍ୟକତା ବୋଲି ସାରଳା ଦାସ ଉପଲବ୍ଧି କରିଛନ୍ତି । ତାଙ୍କର ପ୍ରତ୍ୟେକଟି ଚରିତ୍ର ମାଧ୍ୟମରେ ଏହି ଲକ୍ଷ୍ୟସିଦ୍ଧି ପାଇଁ ଧ୍ୱ ଚେଷ୍ଟା କରାଯାଇଛି ।

ଏକ ଗଣତାନ୍ତ୍ରିକ ରାଷ୍ଟ୍ର ମଧ୍ୟରେ ଜଣେ ସାଧାରଣ ପ୍ରଜାର ଜୀବନଯାପନ କରି ସାରଳା ଦାସ ସାମ୍ୟ, ମୈତ୍ରୀ ଓ ମୁକ୍ତିର ବାର୍ତ୍ତା ପ୍ରଚାର କରିବା ପାଇଁ ଯେଉଁ ଚେଷ୍ଟା କରିଛନ୍ତି, ତାହା ନିଶ୍ଚିତ ଭାବେ ବିସ୍ମୟକର । ରାଜା ଓ ପ୍ରଜା ଉଭୟଙ୍କ ମନସ୍ତତ୍ତ୍ୱ ବିଶ୍ଳେଷଣ କରି ଯେଉଁ ରାଜନୈତିକ ଆଦର୍ଶ ସେ ପରିକଳ୍ପନା କରିଛନ୍ତି, ତାହା କେବଳ ଗୋଟିଏ ଶାସକଗୋଷ୍ଠୀ କିମ୍ବା ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ଉଦ୍ଦିଷ୍ଟ ନୁହେଁ; ଏହାର ଦିଗନ୍ତ ସୁଦୂରପ୍ରସାରୀ । ପରବର୍ତ୍ତୀ ସମୟରେ ବିଶ୍ୱ ରାଜନୀତି କ୍ଷେତ୍ରରେ ଯେଉଁସବୁ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି, ସାରଳାଙ୍କ ଚିନ୍ତାଧାରା ଯେ ତାର କେତେ ନିକଟବର୍ତ୍ତୀ, ତାହା ସପ୍ତମ ପରିଚ୍ଛେଦରେ ଆଲୋଚିତ ହୋଇଛି । ତତ୍ପୂର୍ବରୁ ପରବର୍ତ୍ତୀ ପରିଚ୍ଛେଦରେ ସାରଳା ମହାଭାରତରେ ରାଜନୈତିକ ଆଦର୍ଶର ବିଶେଷତ୍ୱ ସମ୍ବନ୍ଧରେ ବିସ୍ତୃତ ବିଶ୍ଳେଷଣ କରାଯାଉଛି ।



## ଷଷ୍ଠ ପରିଚ୍ଛେଦ

# ସାରଳା ମହାଭାରତର ବୈଶିଷ୍ଟ୍ୟ : ଏକ ରାଜନୈତିକ ବିଶ୍ଳେଷଣ

ସ୍ରୋତର ପ୍ରବହମାନତା ଯେପରି ଉପସ୍ରୋତ ଏବଂ ନଦୀର ଗତିଧାରା ଉପନଦୀମାନଙ୍କ ଉପରେ ନିର୍ଭର କରେ, ସେହିପରି କୌଣସି ଦେଶ ବା ଜାତିର ନିରବଚ୍ଛିନ୍ନ ସାଂସ୍କୃତିକ ପ୍ରବାହ ଯୁଗୋପଯୋଗୀ ପରିବର୍ତ୍ତନର ସ୍ରୋତଧାରାକୁ ନିଜ ମଧ୍ୟରେ ଗର୍ଭିତ ନକଲେ ଭବିଷ୍ୟତ ବଂଶଧରମାନଙ୍କୁ ଏକ ଅଖଣ୍ଡ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବା ପାଇଁ ସମର୍ଥ ହୋଇପାରେ ନାହିଁ । କେଉଁ ଅନାଦି କାଳରୁ ଭାରତୀୟ ମନୀଷୀମାନେ ଏ ପ୍ରକାର ଏକ ଶାଶ୍ୱତ ସତ୍ୟକୁ ଉପଲବ୍‌ଧି କରିପାରିଥିଲେ ବୋଲି ଭାରତୀୟ ସଂସ୍କୃତି ଆଜି ତାର ମୂଳଉତ୍ସଠାରୁ ବିଚ୍ଛିନ୍ନ ନହୋଇ ଏକ ସାର୍ବଜନୀନ ରୂପ ଆହରଣପୂର୍ବକ ମହାକାଳ ବକ୍ଷରେ ତାର ପଦଚିହ୍ନ ଅଙ୍କନ କରି ଚାଲିଛି । ଏଥିପାଇଁ ରାମାୟଣ ଓ ମହାଭାରତ ପରି ଅମ୍ଳାନ ଗ୍ରନ୍ଥମାନଙ୍କର କାଳଜୟୀ ପ୍ରଭାବ ବର୍ତ୍ତମାନ ସୁଦ୍ଧା କେବଳ ଭାରତୀୟ ଜନତାକୁ ନୁହେ, ବିଶ୍ୱବାସୀଙ୍କୁ ମଧ୍ୟ ସମ୍ମୋହିତ କରିପାରୁଛି । କାଳର କେଉଁ ମୂହୂର୍ତ୍ତରେ ଏ ଦୁଇଟି ଅନବଦ୍ୟ ଗ୍ରନ୍ଥ ପ୍ରଥମେ ରୂପ ଲାଭ କରିଥିଲା, ତାହା ସଠିକ୍‌ ରୂପେ ନିରୂପିତ ହୋଇପାରୁ ନଥିଲେ ସୁଦ୍ଧା ପରିମାର୍ଜନ, ପରିବର୍ତ୍ତନ ଓ ପରିବର୍ଦ୍ଧନ ମାଧ୍ୟମରେ ସ୍ଥାନ କାଳ ପାତ୍ରର ବ୍ୟବଧାନକୁ ଅତିକ୍ରମ କରି ଏହି ଉଭୟ ଗ୍ରନ୍ଥ ଭାରତୀୟ ଐକ୍ୟ ଓ ସଂହତି ଅକ୍ଷୁଣ୍ଣ ରଖିବାରେ ସହାୟକ ହୋଇଛି ।

ଭାରତର ବିଭିନ୍ନ ଅଞ୍ଚଳରେ ଏହାର ଯେଉଁ ସ୍ୱତନ୍ତ୍ର ସଂସ୍କରଣମାନ ଆଜି ଉପଲବ୍‌ଧ ହୁଏ, ସେସବୁକୁ ଅନୁଧ୍ୟାନ କଲେ ଏ ଉଭୟ ଗ୍ରନ୍ଥର ବୈଶିଷ୍ଟ୍ୟ ଉପଲବ୍‌ଧି କରିହେବ । ପ୍ରକ୍ଷେପଣ ନିକ୍ଷେପଣ ମଧ୍ୟରେ ଏହା ଯେପରି ନିଜର ମୌଳିକ ସ୍ୱରୂପକୁ ଅବ୍ୟାହତ ରଖିପାରିଛି, ତାହା ଅତୀବ ବିସ୍ମୟକର । କେବଳ ସଂସ୍କୃତ ପଣ୍ଡିତମଣ୍ଡଳୀ ଯେ ଏହାର ପ୍ରକୃତ ସ୍ୱରୂପରେ ପରିବର୍ତ୍ତନ ସଂଘଟନ କରିଛନ୍ତି, ତାହା ନୁହେଁ, ବିଭିନ୍ନ ଆଞ୍ଚଳିକ ଭାଷାର ବରିଷ୍ଠ ସାହିତ୍ୟିକମାନେ ଏସବୁକୁ ନିଜ ନିଜ ଭାଷାରେ ରୂପାନ୍ତରିତ କଲାବେଳେ ମଧ୍ୟ ବହୁ ନୂତନତାର ପ୍ରଲେପ ଦ୍ୱାରା ଏଗୁଡ଼ିକ ଅନୁରଞ୍ଜିତ କରି ଅଛନ୍ତି । କିନ୍ତୁ ଏ ପ୍ରକାର

ବିପୁଳ ପରିବର୍ତ୍ତନ ସତ୍ତ୍ୱେ ରାମାୟଣ ଓ ମହାଭାରତର ମୌଳିକ ଆବେଦନ କ୍ଷିପ୍ରକ୍ କାଳେ ଶିଥିଳ ହୋଇନାହିଁ । ବ୍ୟାସକୃତ ମହାଭାରତର ଅସ୍ଥି କଙ୍କାଳ ଉପରେ ନୂତନ ରକ୍ତମାଂସ ସଂଯୋଜନା କରି ସାରଳା ଦାସ ଯେଉଁ ଅଭିନବ ମହାଭାରତ ଗ୍ରନ୍ଥ ପ୍ରଣୟନ କରିଛନ୍ତି, ଉତ୍କଳୀୟ ଜନତା ନିକଟରେ ତାର ଆବେଦନ ମଧ୍ୟ ମୂଳ ମହାଭାରତଠାରୁ କୌଣସି ଗୁଣରେ କମ୍ ନୁହେଁ ।

ମୂଳ ସଂସ୍କୃତ ମହାଭାରତଠାରୁ ସାରଳାଙ୍କ ମହାଭାରତର ଏହି ଭିନ୍ନତା ତଥା ସ୍ଥଳ ବିଶେଷରେ ବିଷୟ ବସ୍ତୁର ସଂକ୍ଷିପ୍ତୀକରଣ, ବିସ୍ତୃତୀକରଣ, ଉକ୍ତ ନିକ୍ଷେପ ବା ସଂପୂର୍ଣ୍ଣ ବର୍ଜନ ଏବଂ ଅନୁକ୍ତ ପ୍ରକ୍ଷେପ ବା ନିଜସ୍ୱ ସଂଯୋଜନାହିଁ ତାଙ୍କର ମୌଳିକତା ଓ ସ୍ୱାତନ୍ତ୍ର୍ୟର ପରିଚାୟକ । (୧) ଏହା ବ୍ୟତୀତ, ସଂସ୍କୃତ 'ଦଣ୍ଡକ' ବା ପ୍ରାକୃତ 'ଦଣ୍ଡି' ବୃତ୍ତର ଅବଲମ୍ବନ ତଥା ଗାଁଗାଣ୍ଡରେ ପ୍ରଚଳିତ ଓଡ଼ିଆ ଢଗଢମାଳର ପ୍ରଭାବରେ ସାରଳା ଦାଣ୍ଡିବୃତ୍ତରେ ଏହି ବିଶାଳ ଗ୍ରନ୍ଥ ପ୍ରଣୟନ କରି ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ମେଷ ଦିଗରେ ନିଜର ଅନନ୍ୟତନ୍ତ୍ରିତାର ପରିଚୟ ଦେଇଛନ୍ତି । ଓଡ଼ିଆ ଭାଷାରେ ଆଉ କେତୋଟି ମହାଭାରତ ପ୍ରଣୀତ ହୋଇଥିଲେ ହେଁ ସାରଳା ମହାଭାରତ ବ୍ୟତୀତ ଅନ୍ୟଗୁଡ଼ିକ ମୂଳ ସଂସ୍କୃତ ମହାଭାରତର ଭାଷାନ୍ତର ମାତ୍ର । ତେଣୁ ସାଧାରଣ ପାଠକ ମହଲରେ ସାରଳା ମହାଭାରତ ତୁଳନାରେ କମ୍ ଆଦୃତ । ସାରଳାଙ୍କ ମହାଭାରତରେ କାଳ୍ପନିକ, ଶିକ୍ଷଣୀୟ ଓ ପ୍ରଭାବଶାଳୀ କାହାଣୀ, ଉପାଖ୍ୟାନ ଓ ପ୍ରବଚନଗୁଡ଼ିକ ଏହାର ଅସାମାନ୍ୟ ଲୋକପ୍ରିୟତାର ଅନ୍ୟତମ କାରଣ; ଏଥିପାଇଁ ହିଁ ସାରଳା ମହାଭାରତ ଉପନ୍ୟାସ ସୁଲଭ ଗାରିମାରେ ବିମଣ୍ଡିତ । (୨) ବସ୍ତୁବିନ୍ୟାସର କ୍ରମରେ ପରିବର୍ତ୍ତନ ଓ ବହୁ ନୂତନ ଚରିତ୍ର ସଂଯୋଜନା, ଏହାର ଅନ୍ୟ ଏକ ବିଶେଷ ବ୍ୟତିକ୍ରମ । ପୁଣି, ନିଖୁଣ ଓ ବଳିଷ୍ଠ ଚରିତ୍ର ଚିତ୍ରଣରେ ଉତ୍କଳୀୟ ଗ୍ରାମୀଣ ସଂସ୍କୃତିର ଜୀବନ୍ତ ଆଲେଖ୍ୟ ଏଥିରେ ଯେପରି ପ୍ରକଟିତ, ତାହା ସାରଳାଙ୍କ ଅସାଧାରଣ ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ । (୩) ସର୍ବୋପରି, ମୂଳ ମହାଭାରତର ମୋଟ ଶ୍ଳୋକ ସଂଖ୍ୟା ଏକ ଲକ୍ଷ ହେଉଥିବାବେଳେ ସାରଳା ମହାଭାରତର ପଦ ସଂଖ୍ୟା ଏକ ଲକ୍ଷ ଷୋଳଶ

(୧) ନନ୍ଦ, ପଣ୍ଡିତ ଗୋପୀନାଥ—ଶ୍ରୀ ଭାରତ ଦର୍ପଣ (ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୮) ପୃ. ୧୧

(୨) ପଟ୍ଟନାୟକ, ପଠାଣୀ—ଓଡ଼ିଆ ସାହିତ୍ୟର ଇତିହାସ (ନାଳନ୍ଦା, କଟକ, ୧ମ ସଂ, ୧୯୭୮) ପୃ. ୨୨୦

(୩) ମହାନ୍ତି, ଡ଼: ବଂଶୀଧର—ଓଡ଼ିଆ ସାହିତ୍ୟର ଇତିହାସ (୨ୟ ଭାଗ) ପୃ. ୧୪୨-୧୭୯.

ହିକାର ହୋଇଥିବା ହେତୁ ଏହାର ପ୍ରାଧାନ୍ୟ, ସ୍ୱକୀୟତା ତଥା ବୈଶିଷ୍ଟ୍ୟ ଏକାନ୍ତ ସ୍ୱୀକାର୍ଯ୍ୟ । (୪)

ସାରଳା ଦାସ 'ରଘୁବଂଶ'ର ରଘୁଙ୍କ ଦିଗ୍‌ବିଜୟ ଓ ଇନ୍ଦୁମତୀ ସ୍ୱୟମ୍ବର ବର୍ଣ୍ଣନା ଅନୁସରଣରେ ପାଣ୍ଡବମାନଙ୍କ ଦିଗ୍‌ବିଜୟ ଓ ଦ୍ରୌପଦୀ ସ୍ୱୟମ୍ବରର ଚିତ୍ର ପ୍ରଦାନ କରିଛନ୍ତି; ବାଣଭଟ୍ଟଙ୍କ ଶମ୍ଭୁଙ୍କ ଚରିତ୍ର ଗ୍ରନ୍ଥରେ ଜରତ୍କାରୁ ନିମିତ୍ତ ପୁରଞ୍ଜନର ସ୍ୱରୂପ ଦର୍ଶାଇଛନ୍ତି; 'କପିଳ ସଂହିତା'ରୁ ଶାମ୍ବଙ୍କ କୁଷ୍ଠବ୍ୟାଧି ମୋଚନ ପ୍ରସଙ୍ଗ ଆଣିଛନ୍ତି; କୁନ୍ତୀ-ଗାନ୍ଧାରୀ ବିବାଦ, କୀର୍ତ୍ତିବାସ ବଧ ଓ ଲୋକନାଥେଶ୍ୱର ଶିବଙ୍କ ଉପାସନା ପ୍ରସଙ୍ଗ 'ଏକାମ୍ର ପୁରାଣ'ରୁ ଗ୍ରହଣ କରିଛନ୍ତି; ଝୁନକାର ବୃତ୍ତାନ୍ତ ଓ ରାଧାକୃଷ୍ଣଙ୍କ କେଳି ବର୍ଣ୍ଣନାରେ 'ଗୀତ ଗୋବିନ୍ଦ'ର ସ୍ୱର ପ୍ରତିଧ୍ୱନିତ ହୋଇଛି ଏବଂ ଶ୍ରୀମଦ୍ ଭଗବତ୍ ଗୀତାରୁ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ପ୍ରଦର୍ଶନ ବିଷୟ ଅବତାରଣା କରିଛନ୍ତି । ଏହା ସତ୍ତ୍ୱେ, ସାରଳା ମୂଳ ମହାଭାରତର ଅନୁବାଦ ବା ପୂର୍ଣ୍ଣାଙ୍ଗ ଅନୁସରଣ ନକରି ସ୍ୱକୀୟତା ଓ ନବୀନତାକୁ ନିଜ ଗ୍ରନ୍ଥର ଭିତ୍ତି ରୂପେ ଗ୍ରହଣ କରି ନିଜର ଅନ୍ତର୍ଦୃଷ୍ଟି ଓ ଅଭିଜ୍ଞତା ବଳରେ ପ୍ରାଚୀନତାରେ ବୋଳିଛନ୍ତି ନୂତନତାର ଚିତ୍ତାକର୍ଷକ ପ୍ରଲେପ । ପ୍ରାଚୀନ ସଂସ୍କୃତ ଗ୍ରନ୍ଥର ଅତିମାନବୀୟ ଚରିତ୍ରଗୁଡ଼ିକୁ ସେ କେବଳ ସାଧାରଣ ନରନାରୀରେ ପରିଣତ କରିଦେଇ ନାହାନ୍ତି, ତା ସଙ୍ଗେ ସଙ୍ଗେ ସେମାନଙ୍କ ଚଳଚଳନ, ଆଚାର ବ୍ୟବହାର ଓ ବେଶ ଭୂଷଣରେ ଉତ୍କଳୀୟ ସଂସ୍କୃତିର ପ୍ରତିଛବି ଆଙ୍କିଛନ୍ତି । ସୁତରାଂ, ସାରଳାଙ୍କ ସଂସ୍କୃତ ଜ୍ଞାନ ଅଭାବରୁ ଯେ ସେ ମୂଳ ମହାଭାରତର ଅନୁବାଦ ପରିବର୍ତ୍ତେ ମାତୃଭାଷାରେ ଅନୁରୂପ ଏକ ନୂତନ ଗ୍ରନ୍ଥ ପରିବେଷଣ କରିଛନ୍ତି, ତାହା ନୁହେଁ; ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିବା ନିମିତ୍ତ ହିଁ ସେ ଏ ଦିଗରେ ପ୍ରୟାସୀ ହୋଇଛନ୍ତି । (୫)

ପୁନଶ୍ଚ, ସାରଳା ଦାସ ତାଙ୍କର ମହାଭାରତ ରଚନା କଲାବେଳକୁ ମାଲୟାଲମ୍, ମହାରାଷ୍ଟ୍ରୀ, କନ୍ନଡ଼, ହିନ୍ଦୀ, ଆସାମୀ, ଏପରିକି ବଙ୍ଗଳା ଭାଷାରେ ମଧ୍ୟ ସମ୍ପୂର୍ଣ୍ଣ ମହାଭାରତ ରଚିତ ହୋଇ ନଥିଲା । ତାଙ୍କର ଏହି ମୌଳିକ ଅବଦାନ ଫଳରେ ସାରଳା ମହାଭାରତ ପୁରାଣ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ସୁଦୀର୍ଘ ସାହିତ୍ୟିକ ଯାତ୍ରାପଥରେ ହୋଇଛି ଓଡ଼ିଆ ଜାତିର ଜାଗ୍ରତ ପ୍ରହରୀ । (୬) ସଂକ୍ଷେପରେ ପ୍ରକାଶ କଲେ, ସାରଳାଙ୍କ ବଦ୍‌ବତ୍ତା, ବ୍ୟୁତ୍ପନ୍ନ ଶକ୍ତି, ପ୍ରତ୍ୟୁତ୍ପନ୍ନମତିତା,

(୪) ମହାନ୍ତି, ସୁରେନ୍ଦ୍ର : ଓଡ଼ିଆ ସାହିତ୍ୟର ଆଦିପର୍ବ ପୃ. ୧୨୪

(୫) ପାଣିଗ୍ରାହୀ : ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ଚିତ୍ର-ପୃ. ୨୩୨-୨୪୧

(୬) ପଟ୍ଟନାୟକ : ଓଡ଼ିଆ ସାହିତ୍ୟର ଇତିହାସ-ପୃ. ୧୯୫-୧୯୮

ଅକୃତ୍ରିମ ପ୍ରକାଶଭଙ୍ଗୀ, ନାଟକୀୟ ବସ୍ତୁବିନ୍ୟାସ, ଅନୁପମ ବର୍ଣ୍ଣନା ଚାତୁରୀ ଓ ବିଭିନ୍ନ ଚରିତ୍ର ଚିତ୍ରଣ ପଟୁତା ତାଙ୍କ ମହାଭାରତ ଗ୍ରନ୍ଥର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଏ ସମ୍ପର୍କୀୟ ପୂର୍ଣ୍ଣାଙ୍ଗ ଆଲୋଚନା ସୀମିତ ପରିସର ମଧ୍ୟରେ ସମ୍ଭବ ନୁହେଁ । ତେବେ, ସାରଳା ମହାଭାରତର ସାହିତ୍ୟିକ ମୂଲ୍ୟାୟନ ଆମ ପାଇଁ ଏଠାରେ ନିତାନ୍ତ ପ୍ରସଙ୍ଗ ବହିର୍ଭୂତ ବ୍ୟାପାର । ଏଣୁ କେତେକ ସମାଲୋଚକ 'ସାରଳା ତାଙ୍କ ଗ୍ରନ୍ଥରେ କୌଣସି ଦାର୍ଶନିକ ବା ତାତ୍ତ୍ୱିକ ଆଲୋଚନାକୁ ସ୍ଥାନ ଦେଇନାହାନ୍ତି' ଓ ଏହା ଅନେକସ୍ଥଳେ ଅଶୃଙ୍ଖଳତାପୂର୍ଣ୍ଣ (୭) ବୋଲି ଉଲ୍ଲେଖ କରିଥିଲେ ହେଁ, ସେଥିରେ କିପରି ବିଭିନ୍ନ ରାଜନୈତିକ ଦର୍ଶନ ତଥା ଆଦର୍ଶ ସନ୍ନିବିଷ୍ଟ ଏବଂ ତାହା କିଭଳି ଆଧ୍ୟାତ୍ମିକ ଚେତନା ପ୍ରବାହ ଓ ସାମାଜିକନ୍ଧ ନିଦର୍ଶନ ପାଇଁ ଅନୁକୂଳ, ସେ ସମ୍ପର୍କରେ ଆଲୋକପାତ କରିବାହିଁ ଆମ ଆଲୋଚନାର ମୂଳ ଲକ୍ଷ୍ୟ ।

ଏହି ଗ୍ରନ୍ଥର ପ୍ରାରମ୍ଭରେ ସୂଚିତ ହୋଇ ସାରିଛି ଯେ ଆଜିକାଲି ରାଜନୀତିର ଗୁରୁତ୍ୱ ମାନବଜୀବନ ଓ ସମାଜର ପ୍ରତ୍ୟେକ କ୍ଷେତ୍ରରେ ସ୍ୱୀକୃତ ଏବଂ ସର୍ବତ୍ର ଏହାର ପ୍ରଭାବ ଅନୁଭୂତ । ଏଣୁ ଇତିହାସ, ଭୂଗୋଳ, ଅର୍ଥନୀତି, ସମାଜବିଜ୍ଞାନ, ଧର୍ମଶାସ୍ତ୍ର ଓ ମନସ୍ତତ୍ତ୍ୱାଦି ବିଭିନ୍ନ ଶାସ୍ତ୍ରୀୟ ସତ୍ତ୍ୱାକୁ ବାଦଦେଇ ରାଜନୈତିକ ତତ୍ତ୍ୱର ମୂଲ୍ୟାୟନ ଅସମ୍ଭବ । ଇତିହାସ ବ୍ୟତୀତ ରାଜନୀତି ତୁଚ୍ଛ ଓ ଭିତ୍ତିହୀନ ଏବଂ ରାଜନୀତି ବିନା ଇତିହାସ ତାର ସତ୍ତ୍ୱା ହରାଇ ସାହିତ୍ୟରେହିଁ ପର୍ଯ୍ୟବସିତ ହୋଇଥାଏ । ଇତିହାସ ରାଷ୍ଟ୍ରର ଅବସ୍ଥା ଉପରେ ଆଲୋକସମ୍ପାତ କଲାବେଳେ ରାଜନୀତି ରାଷ୍ଟ୍ରର ସ୍ୱରୂପ ନିର୍ଣ୍ଣୟ କରିଥାଏ । ଅନ୍ୟ ଦିଗରେ, ଆର୍ଥନୀତିକ ପରିସ୍ଥିତି ଦ୍ୱାରାହିଁ ରାଜନୀତିର ପ୍ରବାହ ନିୟନ୍ତ୍ରିତ ଏବଂ ରାଜନୈତିକ ଅନୁଷ୍ଠାନ ମାଧ୍ୟମରେହିଁ ରାଷ୍ଟ୍ରର ଅର୍ଥନୈତିକ ମାନଚିତ୍ର ଅଙ୍କିତ । ସୁଶୃଙ୍ଖଳିତ ସମାଜ ପ୍ରତିଷ୍ଠା ମୂଳରେ ରାଜନୀତିର ଅର୍ଥନୈତିକ ଲକ୍ଷ୍ୟ ନିହିତ । ରାଜନୀତି ସମାଜରେ ଶାସନ, ଆଇନ ଓ ବିଚାର ପଦ୍ଧତିର ନିୟାମକ ହେଲେ ମଧ୍ୟ ସମାଜ-ବିଜ୍ଞାନ ପ୍ରଚଳିତ ପ୍ରଥା, ପରଂପରା ଓ ସଂସ୍କୃତି ଉପରେ ପ୍ରତିଷ୍ଠିତ ହୋଇଥିବା ଯୋଗୁଁ ଉଭୟ ପରସ୍ପରର ପରିପୂରକ । ସାମାଜିକ ପରିବେଶକୁ ବାଦଦେଇ ରାଜନୈତିକ ଚେତନାର ରୂପାୟନ ଅଳୀକ ମାତ୍ର ।

ଏହା ବ୍ୟତୀତ, ରାଜନୀତି ବ୍ୟକ୍ତିର କର୍ତ୍ତବ୍ୟ ଓ ଅଧିକାର ସହିତ ସଂଶ୍ଳିଷ୍ଟ ହେଲେ ସୁଦ୍ଧା ଧର୍ମଭିତ୍ତିକ ବିଚାରଧାରା ତଥା ବଳିଷ୍ଠ ନୈତିକ ସନ୍ଦେଶକୁ ଉପେକ୍ଷା

---

(୭) (କ) ମାନସିଂହ, ଡ଼: ମାୟାଧର—ଓଡ଼ିଆ ସାହିତ୍ୟର ଇତିହାସ (ଗ୍ରନ୍ଥ ମନ୍ଦିର, କଟକ, ୪ର୍ଥ ସଂସ୍କରଣ, ୧୯୮୫) ପୃ. ୯୩

(ଖ) ଉତ୍କଳ ଦୀପିକା (୩୬ଶ ଭାଗ, ୭ମ ସ. ୧୫-୨-୧୮୭୮)ରେ ବିଜ୍ଞାପିତ ।

ନଶ ତଷ୍ଟି ନପାରେ; ବରଂ ସୁଦୃଢ଼ ନୈତିକ ପ୍ରଥା ବା ଚଳଣିଗୁଡ଼ିକୁ ହିଁ ରାଜନୀତି ସାମାଜିକ ଆଇନରେ ପରିଣତ କରିଥାଏ । ସରକାର ଗଠନ, ରାଜ୍ୟ ବା ଜିଲ୍ଲାର ସୀମା ନିର୍ଦ୍ଧାରଣ, ଲୋକଚରିତ୍ର ନିରୂପଣ ଭଳି ରାଜନୈତିକ କାର୍ଯ୍ୟକଳାପ ମୂଳରେ ଭୌଗୋଳିକ ତତ୍ତ୍ୱର ଯେ ଗୁରୁତ୍ୱ ନିହିତ, ଏହା ଅବିସମ୍ବାଦିତ । ସର୍ବୋପରି, ବ୍ୟକ୍ତି ତଥା ନାଗରିକମାନଙ୍କର ମନସ୍ତତ୍ତ୍ୱକୁ ଭିତ୍ତିକରି ଯେ ବିଭିନ୍ନ ନୀତି ଓ ଆଇନର ପ୍ରଚଳନ ସୁଗମ ହୋଇଥାଏ, ଏହା କହିବା ବାହୁଲ୍ୟ ମାତ୍ର । (୮) ଏସବୁ ପ୍ରତି ଦୃଷ୍ଟିଦେଇ ଏକ ବ୍ୟାପକ ଦିଗରୁ ସାରଳା ମହାଭାରତରେ ରାଜନୀତିର ବିଶେଷତ୍ୱ ସମ୍ବନ୍ଧରେ ଆଲୋଚନା କରାଯିବା ସମୁଚିତ ମନେହୁଏ ।

ଏହି ପରିପ୍ରେକ୍ଷୀରେ, ସାରଳାଙ୍କ ସମକାଳୀନ ସାମାଜିକ ପରିସ୍ଥିତି ଓ ପରିବେଶର ପୃଷ୍ଠଭୂମିରେ ରାଜନୈତିକ ସ୍ଥିତି ଓ ପ୍ରଶାସନିକ ବ୍ୟବସ୍ଥାର ବିଶେଷତ୍ୱ ବିଚାର କଲବେଳେ ବ୍ୟକ୍ତିଚେତନା ତଥା ସାଧାରଣ ନାଗରିକ ବା ପ୍ରଜାବର୍ଗଙ୍କର ଧାର୍ମିକ ଦୃଷ୍ଟିକୋଣ, ଅର୍ଥନୈତିକ ଅବସ୍ଥା ଓ ସାମୂହିକ ଜନକଲ୍ୟାଣକର କାର୍ଯ୍ୟକ୍ରମ ସମ୍ପର୍କିତ ବିଭିନ୍ନ ଦିଗରୁ ଆଲୋଚନା ଅପରିହାର୍ଯ୍ୟ ହୋଇପଡ଼ୁଛି, କାରଣ, ସାରଳା ମହାଭାରତ ବାସ୍ତବରେ ଇତିହାସ, ଭୂଗୋଳ, ରାଜନୀତି, ଅର୍ଥନୀତି, ଧର୍ମ, ଜ୍ୟୋତିଷ, ସମାଜ-ବିଜ୍ଞାନ, ରୀତିନୀତି, ଚଳଣି କରଣି, ପରଂପରା ଓ ଲୋକବିଶ୍ୱାସ ସମ୍ପର୍କୀୟ ଏକ ସ୍ୱୟଂସମ୍ପୂର୍ଣ୍ଣ ବିଶ୍ୱକୋଷ । ପ୍ରକୃତରେ, ଏହା ଓଡ଼ିଆ ଜାତିର ଜାତୀୟ ବେଦ ଏବଂ ସାଧାରଣ ଗୃହସ୍ଥଠାରୁ ଆରମ୍ଭ କରି ଯୋଦ୍ଧା, ଯୋଗୀ, ରୋଗୀ, ଭୋଗୀ, ଶାସକ, କୃଷକ, ବଣିକ, ବ୍ୟବସ୍ଥାପକ, ସମାଜ ସେବକ, ସାହିତ୍ୟ ସାଧକ, କଳା ଉପାସକ, ଧର୍ମ ପ୍ରଚାରକ ପ୍ରତ୍ୟେକେ ଏଥିରୁ ବହୁ ମୂଲ୍ୟବାନ ଶିକ୍ଷଣୀୟ ଉପାଦାନ ଆହରଣ କରିପାରିବେ ।

## ସାରଳା ମହାଭାରତରେ ଐତିହାସିକ ରାଜବଂଶର ପରିଚୟ

ବହୁ ରାଜନୀତି-ବିଜ୍ଞାନୀଙ୍କ ମତ ଅନୁଯାୟୀ ଇତିହାସ ହେଉଛି ଅତୀତର ରାଜନୀତି ଏବଂ ରାଜନୀତି ବର୍ତ୍ତମାନର ଇତିହାସ । ଏହି ଦୃଷ୍ଟିରୁ ବିଚାର କଲେ ସାରଳା ସ୍ୱୀୟ ଗ୍ରନ୍ଥରେ ଯେଉଁ ସବୁ ରାଜବଂଶ ତଥା ରାଜା ଓ ରାଜ୍ୟର ନାମୋଲ୍ଲେଖ କରିଛନ୍ତି, ସେଥିରେ କେତେକ ସ୍ଥଳରେ କବି-କଳ୍ପନାସୁଲଭ ଅତିରଞ୍ଜନ ରହିଥିଲେ

(୮) Majumdar, B. B.—Principles of Political Science and Government (Mondal Bros. & Co, Calcutta, 8th Ed. 1956) pp. 12-14

ନେଁ, ତାହା ନିତାନ୍ତ ଐତିହାସିକତା ଶୂନ୍ୟ ନୁହେଁ । ସାରଳା କୁରୁବଂଶର ଯେଉଁ ପରିଚୟ ପ୍ରଦାନ କରିଅଛନ୍ତି ( ପୂର୍ବବର୍ତ୍ତୀ ଅଧ୍ୟ ପରିଚ୍ଛେଦ ଦ୍ରଷ୍ଟବ୍ୟ ) ସେଥିରୁ ଅଧିକାଂଶ ନାମ ପ୍ରତ୍ନତତ୍ତ୍ୱ ଓ ଇତିହାସବିତ୍ ଙ୍କ ଗବେଷଣା ବଳରେ ବାସ୍ତବ ଚରିତ୍ର ରୂପେ ନିର୍ଦ୍ଧାରିତ ହୋଇଅଛୁ । ଗୁଲୁକ୍ୟ ବଂଶୀୟ ପିଠାପୁରମ୍ ଶିଳାଲେଖ (ଖ୍ରୀ. ୧୨୦୨)ରୁ ଯେଉଁ ରାଜବଂଶର ପରିଚୟ ମିଳୁଅଛୁ, ସେଥିରୁ ଅନେକ ନାମ ସାରଳାଙ୍କ ବିବରଣୀରେ ଉଲ୍ଲେଖ ଥିବା ଦେଖାଯାଏ । ଏହି ତାଲିକା ନିମ୍ନରେ ପ୍ରଦତ୍ତ ହୋଇଛୁ ଏବଂ ସାରଳା ମହାଭାରତରେ ପରିଦୃଷ୍ଟ ନାମଗୁଡ଼ିକୁ ପାର୍ଶ୍ୱରେ ତାରକା ଚିହ୍ନ ଦ୍ୱାରା ସୂଚିତ କରାଯାଇଛୁ । (୯)

| | | |
|---|---|---|
| ୧ । ବିଷ୍ଣୁ * | ୧୭ । ମହାଭୌମ | ୩୩ । ସମ୍ବରଣ |
| ୨ । ବ୍ରହ୍ମା * | ୧୮ । ଅୟୁତାୟୁଣ | ୩୪ । ସୁଦ୍ୟୁମ୍ନ |
| ୩ । ଅତ୍ରି | ୧୯ । କ୍ରୋଧାନନ | ୩୫ । ପରୀକ୍ଷିତ |
| ୪ । ଚନ୍ଦ୍ରମା * | ୨୦ । ଦେବକୀ | ୩୬ । ଭୀମସେନ |
| ୫ । ବୁଧ * | ୨୧ । ଋଭୁକ | ୩୭ । ପ୍ରତୀପ (ପ୍ରଦୀପ) * |
| ୬ । ପୁରୁରବା * | ୨୨ । ଋକ୍ଷକ | ୩୮ । ଶାନ୍ତନୁ * |
| ୭ । ଆୟୁ * | ୨୩ । ମତିବର | ୩୯ । ବିଚିତ୍ରବୀର୍ଯ୍ୟ * |
| ୮ । ନହୁଷ * | ୨୪ । କାତ୍ୟାୟନ | ୪୦ । ପାଣ୍ଡୁ * |
| ୯ । ଯଯାତି * | ୨୫ । ନୀଳ | ୪୧ । ଅର୍ଜ୍ଜୁନ * |
| ୧୦ । ପୁରୁ * | ୨୬ । ଦୁଷ୍ୟନ୍ତ * | ୪୨ । ଅଭିମନ୍ୟୁ * |
| ୧୧ । ଜନ୍ମେଜୟ | ୨୭ । ଭରତ * | ୪୩ । ପରୀକ୍ଷିତ |
| ୧୨ । ପ୍ରାଚୀଶ | ୨୮ । ଭୂମନ୍ୟୁ * | ୪୪ । ଜନ୍ମେଜୟ |
| ୧୩ । ସୈନ୍ୟଯାତି | ୨୯ । ସୁହୋତ୍ର * | ୪୫ । କ୍ଷେମକ |
| ୧୪ । ହୟପତି | ୩୦ । ହସ୍ତୀନ୍ * | ୪୬ । ନରବାହନ |
| ୧୫ । ସାର୍ବଭୌମ | ୩୧ । ବିରୋଚନ | ୪୭ । ଶତାନିକ |
| ୧୬ । ଜୟସେନ | ୩୨ । ଅଜାମୀଢ଼ * | ୪୮ । ଉଦୟନ |

ଏହା ବ୍ୟତୀତ, ସୋମବଂଶ ବା ପାଣ୍ଡୁବଂଶର ବଂଶବୃକ୍ଷ ପ୍ରଦାନରେ ମଧ୍ୟ ଐତିହାସିକମାନଙ୍କ ମଧ୍ୟରେ ମତୈକ୍ୟ ପରିଲକ୍ଷିତ ହୁଏ । (୧୦) ଏହି ବଂଶର ପ୍ରଥମ

(୯) Rajguru, S. N.—History of the Gangas (Part-1) (State Museum, Bhubaneswar, 1968) pp. 17-81.

(୧୦) Panigrahy, Dr. K. C. History of Orissa pp. 96. 98 & Sahu, Dr. N & others — History of Orissa (Nalanda, Cuttack—1979) P. 191

ସାତଜଣ ରାଜା ହେଉଛନ୍ତି—(୧) ଉଦୟନ, (୨) ଇନ୍ଦ୍ରବଳ, (୩) ନାନଦେବ, (୪) ଭବରଦେବ, (୫) ଚନ୍ଦ୍ରଗୁପ୍ତ, (୬) ହର୍ଷଗୁପ୍ତ ଓ (୭) ବାଳାର୍ଜୁନ (ବା ଶିବଗୁପ୍ତ-ପ୍ରଥମ) । ଅଷ୍ଟମ ରାଜା ମହାଭବଗୁପ୍ତ (ବା ଜନ୍ମେଜୟ ପ୍ରଥମ) ଙ୍କ ଠାରୁ ବଂଶବୃକ୍ଷର ସୂଚନା ନିମ୍ନରେ ପ୍ରଦତ୍ତ ହୋଇଛି ।




ପ୍ରଦତ୍ତ ରାଜବଂଶର ବିବରଣୀରେ ଜନ୍ମେଜୟ (ପ୍ରଥମ)ଙ୍କ ପୁତ୍ର ତଥା ଯଯାତି (ପ୍ରଥମ)ଙ୍କ ଭ୍ରାତା ବିଚିତ୍ରବୀର, ତାଙ୍କ ପୁତ୍ର ଅଭିମନ୍ୟୁ, ଅଭିମନ୍ୟୁଙ୍କ ପୌତ୍ର ଅଭିମନ୍ୟୁ (ଦ୍ୱିତୀୟ) ଏବଂ ଜନ୍ମେଜୟ (ଦ୍ୱିତୀୟ)ଙ୍କ ଭ୍ରାତା ସୋମେଶ୍ୱରଙ୍କୁ ବଂଶାନୁକ୍ରମଣିକାରେ ଅନ୍ତର୍ଭୁକ୍ତ କରାଯାଇ ନଥିଲେ ହେଁ, ସେମାନେ ଏହି ରାଜବଂଶର ଦାୟାଦ ଓ ଐତିହାସିକ ଚରିତ୍ରର ବ୍ୟତିକ୍ରମ ନୁହଁନ୍ତି ।

ମୂଳ ମହାଭାରତର ମୁଖ୍ୟ ଚରିତ୍ରଗୁଡ଼ିକୁ ସାରଳା ଗ୍ରହଣ କରି ନେଇଥିଲେହେଁ, ସେମାନଙ୍କର ଐତିହାସିକତା ବିଷୟରେ ସେ ଅଧିକ ସଚେତନ ଏବଂ ତାଙ୍କର କାଳ୍ପନିକ ଚରିତ୍ରଗୁଡ଼ିକ ମଧ୍ୟରୁ ଅଧିକାଂଶର ପଶ୍ଚାତ୍ ଦେଶରେ କୌଣସି ନା କୌଣସି ଐତିହାସିକ ବ୍ୟକ୍ତି ଦଣ୍ଡାୟମାନ । (ଏ ସମ୍ପର୍କରେ ଗ୍ରନ୍ଥର ତୃତୀୟ

ପରିଚ୍ଛେଦରେ ସବିଶେଷ ଆଲୋଚନା କରାଯାଇଥିବାରୁ ଏଠାରେ ପୁନରାବୃତ୍ତି ଅନାବଶ୍ୟକ । ) (୯୧) ପୁନଶ୍ଚ, ସାରଳା ଦାସ ଇତିହାସର ପୁନରାବୃତ୍ତି ଭଳି ଏକ ଶାଶ୍ୱତ ସତ୍ୟକୁ ଗ୍ରହଣ କରି ମହାଭାରତର କାହାଣୀ ଯେ ବାରମ୍ବାର ସଂଘଟିତ ହେଉଅଛି, ତାର ସୂଚନା ସଭାପର୍ବରେ ପ୍ରଦାନ କରିଛନ୍ତି (୯୨)

## ସାରଳା ମହାଭାରତର ଭୌଗୋଳିକ ଉପାଦାନ

ଇତିହାସ ପରି ଭୂଗୋଳ ମଧ୍ୟ ରାଜନୀତିର ଏକ ଅଙ୍ଗ । ରାଜନୀତିରେ ଭୌଗୋଳିକ ଉପାଦାନର ଉପାଦେୟତା ଆରିଷ୍ଟୋଟଲଙ୍କ ସମୟରୁ ପରିଗୃହୀତ ହୋଇ ଆସିଅଛି । ସାରଳା ମହାଭାରତର ବିଭିନ୍ନ ପ୍ରସଙ୍ଗରେ ରାଜ୍ୟର ସୀମା, ଆୟତନ, ସେନାବଳ, ଅର୍ଥବଳାଦିର ଯେଉଁ ବିସ୍ତୃତ ବିବରଣୀମାନ ପରିଦୃଷ୍ଟ ହୁଏ, ତାହା ଐତିହାସିକତା ଓ ଅତିରଞ୍ଜନ ସମ୍ମିଶ୍ରିତ ହେଲେହେଁ, କବିଙ୍କର ଭୌଗୋଳିକ ଜ୍ଞାନର ସୂଚକ ତଥା ରାଜନୀତିରେ ଭୌଗୋଳିକ ଆବଶ୍ୟକତାର ପ୍ରାଧାନ୍ୟ ରୂପେ ସ୍ୱୀକୃତ । ଗୋଟିଏ ବସ୍ତ୍ର ବା ବସ୍ତୁର ଆବଶ୍ୟକତା ତୁଳନାରେ ସେଥିରେ ଅନୁରଞ୍ଜିତ ରଙ୍ଗର ପ୍ରଲେପ ଯେପରି ନିତାନ୍ତ ଗୌଣ, କୌଣସି ଅନୁଷ୍ଠାନ କିମ୍ବା ଯାନବାହନ ତୁଳନାରେ ସେଥିର ନାମାଙ୍କନ ଯେପରି ଗୁରୁତ୍ୱହୀନ, ସେହିପରି ସାରଳାଙ୍କ ବସ୍ତୁ ବର୍ଣ୍ଣନାରେ ଅତିରଞ୍ଜିତ କଳ୍ପନାବିଳାସ ନିଶ୍ଚିତ ଭାବେ ଅପାଂକ୍ତେୟ । କିନ୍ତୁ ଏହା ମଧ୍ୟରେ ସାରଳା ଦାସଙ୍କ ଭୌଗୋଳିକ ବର୍ଣ୍ଣନାବିନ୍ୟାସର ଐତିହାସିକ ଓ ରାଜନୈତିକ ତଥ୍ୟ ସମୂହ ଯେ ଅତ୍ୟନ୍ତ ମୂଲ୍ୟବାନ, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ, ଆଦ୍ୟପର୍ବରେ ମହେନ୍ଦ୍ରଗିରି ଶିଖରରେ ଯୁଧିଷ୍ଠିର ପ୍ରମୁଖଙ୍କ ଗୋକର୍ଣ୍ଣେଶ୍ୱର ଲିଙ୍ଗପୂଜା ଓ ବାଉରିଶାସନ ପ୍ରତିଷ୍ଠା ଠାରୁ ଆରମ୍ଭ କରି ସ୍ୱର୍ଗାରୋହଣ ପର୍ବରେ କପିଳାସ ଶିଖରରେ ଶିବପୂଜା, ପ୍ରାଚୀକୂଳରେ ମାଧବ ପୂଜା, ଚନ୍ଦ୍ରଭାଗା ତୀରରେ ବିଶ୍ୱେଶ୍ୱର ପୂଜା, ଏକାମ୍ର କ୍ଷେତ୍ରରେ ଭୁବନେଶ୍ୱର ପୂଜା ଓ ବିନ୍ଦୁ ସରୋବର ତଟରେ ଶୟନ ପର୍ଯ୍ୟନ୍ତ ବିବିଧ ଭୌଗୋଳିକ ଚିତ୍ରର ରାଜନୈତିକ ବିଶେଷତ୍ୱ ରହିଛି । ସାରଳାଙ୍କ ବର୍ଣ୍ଣିତ ବିଭିନ୍ନ ନଦନଦୀର ସୀମା ସରହଦ, ଗ୍ରାମ ଜନପଦର ଆୟତନ ଓ ଜନସଂଖ୍ୟା, ହସ୍ତିନା, ଇନ୍ଦ୍ରପ୍ରସ୍ଥ,

---

(୯୧) ଏ ସମ୍ପର୍କରେ ଅଧିକ ପ୍ରମାଣ ପାଇଁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହିଙ୍କ 'ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ଚିତ୍ର' ପୁସ୍ତକ ଦ୍ରଷ୍ଟବ୍ୟ ।

(୯୨) ସା: ମ: ଭା:(ରା) ସଭା-ପୃ. ୨୨୦ ଓ ସା: ମ: ଭା: (ସା) ପୃ. ୯୩ (୨ୟଖଣ୍ଡ)

ଯମପ୍ରସ୍ଥ ଓ ବାରୁଣାବନ୍ତ ନଗରୀର ପ୍ରତିଷ୍ଠା କାହାଣୀ, ଚନ୍ଦ୍ରକାର ଉତ୍ପତ୍ତି, ବାରଣସୀ ତୀର୍ଥର ଦୂରତ୍ୱ ଓ ମାହାତ୍ମ୍ୟ, ରାମଚଣ୍ଡୀ, କୋଣାର୍କ, ବାରିଷ୍ଠ ନିକଟସ୍ଥ ସ୍ୱର୍ଗଦ୍ୱୀବନ, ଚନ୍ଦ୍ରଭାଗ୍ଲା, ଭୈରବୀ, କୋଠାଙ୍ଗ, ମଣିକର୍ଣ୍ଣିକା, ଗଙ୍ଗାକୂଳ, ତ୍ରିବେଣୀ, ହେମବନ୍ତ, ବୈତରଣୀ, ମୁକ୍ତେଶ୍ୱର, ଚନ୍ଦ୍ରକୂଟ, ଶ୍ରୀକ୍ଷେତ୍ର, ମହୋଦଧି ପ୍ରଭୃତିର (୧୩) ଭୌଗୋଳିକ ତଥା ରାଜନୈତିକ ପ୍ରାଧାନ୍ୟ ନଗଣ୍ୟ ନୁହେଁ; କାରଣ ରାଜ୍ୟର ଗିରିବନ, ନଦନଦୀ, ତୀର୍ଥଭୂମି ଓ ଦର୍ଶନୀୟ ସ୍ଥାନର ମହତ୍ତ୍ୱ ସର୍ବଦା ରାଜ୍ୟନୀତି ବା ରାଜନୀତିକୁ ପ୍ରଭାବିତ କରିଥାଏ । ସ୍ୱର୍ଗାରୋହଣ ପର୍ବରେ ପରିକଳ୍ପିତ କୋଠାଙ୍ଗ ଦକ୍ଷିଣବର୍ତ୍ତୀ 'ଅମୋକ୍ଷ ଭୂମି'ର ଭୌଗୋଳିକ ନିର୍ଦ୍ଦେଶ ମଧ୍ୟ ରାଜନୈତିକ ଦୃଷ୍ଟିରୁ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଅନ୍ୟ ଦିଗରୁ ବିଚାର କଲେ, ସାରଳା ଯେଉଁ ରାଜ୍ୟସମୂହର ବିବରଣୀ ପ୍ରଦାନ କରିଛନ୍ତି, ସେଥିରୁ କେତେକ କପୋଳକଳ୍ପିତ ହେଲେ ମଧ୍ୟ ଅନେକ ରାଜ୍ୟର ଭୌଗୋଳିକ ସ୍ଥିତି ଓ ପ୍ରାଧାନ୍ୟ ଉପଲବ୍ଧ ହୁଏ । (ତୃତୀୟ ପରିଚ୍ଛେଦ ଦ୍ରଷ୍ଟବ୍ୟ) । ପୁନଶ୍ଚ, ଏଥିରୁ ରାଜ୍ୟ ସଂଖ୍ୟାର ବହୁଳତା ତଥା ରାଜ୍ୟସୀମାର ସଙ୍କୀର୍ଣ୍ଣତା ସ୍ପଷ୍ଟ ପ୍ରତୀୟମାନ । ସୁତରାଂ, ସାରଳା ବହୁ କ୍ଷୁଦ୍ରରାଜ୍ୟଗଠନ ମାଧ୍ୟମରେ ସଙ୍ଘୀୟ ରାଷ୍ଟ୍ର (Federal State) ପରିକଳ୍ପନାର ପକ୍ଷପାତୀ ଥିବା ଅନୁମାନ କରାଯାଇପାରେ ।

## ସାରଳା ମହାଭାରତରେ ଅର୍ଥନୀତି

ଆର୍ଥିନୀତିକ ଦିଗରୁ ବିଚାର କଲେ, ସାରଳାଙ୍କ ମତାଦର୍ଶରେ ସାମ୍ୟବାଦ ତଥା ସମାଜବାଦର ସୂଚନା ପରିଦୃଷ୍ଟ ହୁଏ । ସେ ପ୍ରଜା ସାଧାରଣ ତଥା ଦୀନ ଜନତା ପ୍ରତି ଏକାନ୍ତ ଉଦାର ଓ ସମ୍ବେଦନଶୀଳ; ପ୍ରଜାପୀଡ଼ନ ଓ ପ୍ରଜାଶୋଷଣର ଚରମ ବିରୋଧୀ । ସେଥିପାଇଁ ସେ ପ୍ରଜାଙ୍କ ମନରେ କଷ୍ଟ ନ ଦେବା, ପ୍ରଜାଙ୍କ ଧନ ଶୋଷଣ ନ କରିବା ଏବଂ ପ୍ରଜାଙ୍କୁ ସର୍ବଦା ସନ୍ତୁଷ୍ଟ କରିରଖିବା ପାଇଁ ରାଜାମାନଙ୍କୁ ଦୃଢ଼ ଚେତାବନୀ ଶୁଣାଇଛନ୍ତି । ବାଟିଏ ଜମି ଚାଷ କରୁଥିବା କୃଷକ ଠାରୁ ଉଚିତ ସତ୍ତ୍ୱାଙ୍କର ପଇଟିଏ ପର୍ଯ୍ୟନ୍ତ ରାହା ରାଜଭାଗ ରୂପେ ନେବା ଏବଂ ସେ ଜମିରୁ ଅନ୍ୟାନ୍ୟ ଯେଉଁସବୁ ଫଳ, ପନିପରିବା ଆଦି ଅର୍ଥକରୀ ଫସଲ ଆମଦାନୀ ହେବ, ତାକୁ କରମୁକ୍ତ ରଖାଯିବା ସପକ୍ଷରେ ସାରଳା ମତପ୍ରକାଶ କରିଛନ୍ତି । (୧୪) ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞପାଇଁ

---

(୧୩) ସା: ମ: ଭା: (ରା) ଆଦ୍ୟ- ପୃ. ୧୪୪, ୧୪୮, ୧୬୫, ୧୯୨-୧୯୪, ୨୧୯, ୨୧୯, ମଧ୍ୟ-ପୃ. ୭୬, ୭୭, ୧୧୮, ବନ-ପୃ. ୧୩୬, ୧୪୯, ୨୦୮, ୨୧୯, ୨୨୫, ବିରାଟ-ପୃ. ୧୦୪, ୧୧୪, ଶଲ୍ୟ-ପୃ. ୪ ଓ ସ୍ୱର୍ଗାରୋହଣ-ପୃ. ୧୨-୧୯

(୧୪) —ଏଜନ—ଆଦ୍ୟ-ପୃ. ୪୫ ଓ ଶାନ୍ତି-ପୃ. ୧୨

ମନ୍ଦାର ରାଜାଙ୍କ ଚଉରାଶୀ ଯୋଜନବ୍ୟାପୀ ମଧୁବନ ତୋଟାରୁ ନଡ଼ିଆ, କଦଳୀ, ଆମ୍ବ, ପଣସ, ଲେମ୍ବୁ, ଟଭା, ଅଙ୍କୁ, ସାରୁ ଆଦି ସଜବ୍ଦର ବିବରଣୀ (୧୫) ଏବଂ ଦ୍ଵାଦଶ ଶତ ଯୋଜନ ବ୍ୟାପୀ ଖାଣ୍ଡବ ବନ ଦହନ କାଳରେ କ୍ଷତଗ୍ରସ୍ତ ଔଷଧି ବୃକ୍ଷସମୂହର ଚିତ୍ର (୧୬) ଯେଉଁଭଳି ବର୍ଣ୍ଣିତ ହୋଇଛି, ସେଥିରୁ ସାରଳାଙ୍କ ସମକାଳୀନ ପରିବେଶରେ ବୃକ୍ଷରୋପଣ, ବିବିଧ ଫଳପୁଷ୍ପ ଉତ୍ପାଦନ, ଔଷଧି ବୃକ୍ଷଲତା ନିରୂପଣ ଓ ତାର ବ୍ୟବହାର ବ୍ୟାପକ ଭାବେ ପ୍ରଚଳିତ ଥିବା କେବଳ ଜଣାଯାଏ ନାହିଁ, ଅଧିକନ୍ତୁ ବୃକ୍ଷରୋପଣ ଓ ସାମାଜିକ ବନୀକରଣ ସହିତ ରାଷ୍ଟ୍ରୀୟ ଅର୍ଥନୀତିର ଯେ ନିବିଡ଼ ସମ୍ପର୍କ ନିହିତ, ଏହା ସାରଳା ସ୍ପଷ୍ଟ ଅନୁଭବ କରିଥିବା ନିଃସନ୍ଦେହ ମନେ ହୁଏ ।

କୃଷିକ୍ଷେତ୍ର ଓ ବୃକ୍ଷ ମହୋତ୍ସବ ଉଦ୍ୟାନର ଉନ୍ନତି ସାଙ୍ଗକୁ ସାରଳାଙ୍କ ଅର୍ଥନୈତିକ ବ୍ୟବସ୍ଥାରେ ଗୋପାଳନ ଗୁରୁତ୍ଵପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି । ଗୋ-ଜାତିର ଉନ୍ନତିରେ କୃଷି ସମ୍ପଦ ତଥା ସମଗ୍ର ରାଜ୍ୟର ବିକାଶ ଅନ୍ତର୍ନିହିତ, ଏହା ସାରଳା ଦାସ ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ଏଥିପାଇଁ ସେ ନିଷ୍କର ଗୋଚର ଜମି ନିରୂପଣ କରାଯିବା ଏବଂ ତାକୁ କୌଣସିମତେ ଶସ୍ୟ ଉତ୍ପାଦନ ପାଇଁ ବିନିଯୋଗ କରାନଯିବା ସପକ୍ଷରେ ଦୃଢ଼ ମତପ୍ରଦାନ କରିଛନ୍ତି । କେବଳ ସେତିକି ନୁହେଁ, ଗୋ-ସମ୍ପଦର ଅଭିବୃଦ୍ଧି ପାଇଁ ସାରଳା ଦାସ ସ୍ୱତନ୍ତ୍ର ଭାବରେ ଗୋଶାଳାର ପବିତ୍ରତା (ଯଦି ଗୋଶାଳାରେ ବାସକଲେ ଛ'ମାସର ପାପକ୍ଷୟ ହୁଏ) (୧୬), ଉନ୍ନତ ଗୋଖାଦ୍ୟ ବ୍ୟବସ୍ଥା (ବିରି, ଚଣା ଇତ୍ୟାଦି) (୧୮) ଏବଂ ଗୋପାଳମାନଙ୍କୁ ଅଧିକ ରାଷ୍ଟ୍ରୀୟ ସୁବିଧା ସୁଯୋଗ ପ୍ରଦାନ (୧୯) ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଛନ୍ତି । ଏହା ଆଜିର ସଘନ ଗୋପାଳନ ବ୍ୟବସ୍ଥାଠାରୁ କମ୍ ଉନ୍ନତ ବୋଲି ମନେହୁଏ ନାହିଁ ।

ରାଷ୍ଟ୍ରୀୟ ଅର୍ଥନୀତିର ଉନ୍ନତିକଳ୍ପେ ସେ ଶିଳ୍ପ କୋଶ ଓ ବାଣିଜ୍ୟର ପ୍ରସାର ପ୍ରତି ମଧ୍ୟ ସଚେତନ ଥିବା ଜଣାଯାଏ । ସ୍ୱର୍ଗାରୋହଣ ପର୍ବରେ ହରି ଯାଦବଙ୍କୁ ଯମଙ୍କର ଉପଦେଶ ଛଳରେ ଯେଉଁ ବାଣିଜ୍ୟନୀତି ବ୍ୟାଖ୍ୟାନ କରିଛନ୍ତି, ସେଥିରୁ ତାଙ୍କର

---

(୧୫) ସା: ମ: ଭା: (ବ) ସଭା-ପୃ. ୩୭, ୨୪୦ ଓ ସା: ମ: ଭା (ସା) ସଭା ପୃ. ୧୧୦
(୧୬) —ଏଜନ— ମଧ୍ୟ-ପୃ. ୨୭-୩୦ ଓ -ଏଜନ- ମଧ୍ୟ- ପୃ. ୭୮-୮୧
(୧୭) - ଏଜନ - ଆଦ୍ୟ-ପୃ. ୨୦୧, ୨୪୮
(୧୮) - ଏଜନ - ସଭା-ପୃ. ୨୪୧
(୧୯) - ଏଜନ - ଶାନ୍ତି-ପୃ. ୧୨

ବ୍ୟାବସାୟିକ ଆଦର୍ଶ ଓ ବାଣିଜ୍ୟିକ ବ୍ୟବସ୍ଥା ସମ୍ପର୍କରେ ସ୍ପଷ୍ଟ ସୂଚନା ମିଳିଥାଏ । (୨୦) ବାଣିଜ୍ୟର ପ୍ରସାର ଓ ଲାଭଖୋର ପ୍ରବୃତ୍ତିର ନିୟନ୍ତ୍ରଣ ବିନା ସମାଜର ଆର୍ଥିକ ସ୍ଥିତି ଯେ ଦୁର୍ବଳ ହୋଇ ପଡ଼ିବ, ଏହା ସାରଳାଙ୍କର ହୃଦ୍‌ବୋଧ ହୋଇଥିଲି । ଏଥିପାଇଁ ବ୍ୟବସାୟୀସମାଜ ତଥା ବୈଶ୍ୟଗୋଷ୍ଠୀର ସମ୍ମୁଖରେ ସକାଶେ ଯେ ବିଭିନ୍ନ ଆଚରଣ ବିଧିର ସୂଚନା ଦେଇଛନ୍ତି । ଏମାନେ ଦେବତା ବ୍ରାହ୍ମଣଙ୍କୁ ଭକ୍ତି ପ୍ରଦର୍ଶନପୂର୍ବକ ଶୁଦ୍ଧଶୁଚିବନ୍ତ ଜୀବନ ଯାପନ କରିବା ଉଚିତ ବୋଲି ଯେ ପରାମର୍ଶ ଦେବା ସଙ୍ଗେସଙ୍ଗେ ତ୍ରିସନ୍ଧ୍ୟା କରିବା, ପୁରାଣ ପଢ଼ିବା, ପ୍ରତ୍ୟହ ଦେବାଳୟକୁ ଯିବା, ହତ୍ୟା ବିବାଦରେ ଲିପ୍ତ ନହେବା, ଫୌଜଦାରୀ ମକଦ୍ଦମାରେ ସାକ୍ଷୀ ନଦେବା, ପରସ୍ତ୍ରୀ ସ୍ପର୍ଶ ନକରିବା, କପଟ ଭାବ ନରଖିବା ଓ ଅତିରିକ୍ତ ଲାଭ ଆଶାରେ ଦେଶତ୍ୟାଗ ନକରିବା ଭଳି କେତେକ ବ୍ୟବସ୍ଥାର ସୁପାରିଶ କରିଛନ୍ତି । (୨୧) ବାଣିଜ୍ୟିକ ବିକାଶ ନିମିତ୍ତ ରାଜାମାନେ ମଧ୍ୟ ଏକଚାଟିଆ କାରବାରରେ ସଂପୃକ୍ତ ରହିବା ଅବାଂଛିତ ନୁହେଁ ବୋଲି ସାରଳାଙ୍କ ଅଭିମତ ବିରାଟ ରାଜାଙ୍କ ଅଶ୍ୱ ଓ ମଲ୍ଲାର ରାଜାଙ୍କ ତଣ୍ଡୁଲ ବ୍ୟବସାୟର ଦୃଷ୍ଟାନ୍ତରୁ (୨୨) ସ୍ପଷ୍ଟ ପ୍ରତିପାଦିତ ହୁଏ ।

ଏହା ବ୍ୟତୀତ, ଶିଳ୍ପଶାସ୍ତ୍ରସମ୍ମତ ସୁଦୃଶ୍ୟ ଓ ସୁସଜ୍ଜିତ ଗୃହନିର୍ମାଣ, ନୌକା ଗଠନ, ବିଭିନ୍ନ କାରୁକାର୍ଯ୍ୟଖଚିତ ଓ ରତ୍ନ ଅଳଙ୍କାର ମଣ୍ଡିତ ରଥ, ସ୍ୟନ୍ଦନ ପାଲଙ୍କି ଓ ପଲଙ୍କ ପ୍ରଭୃତି ଗୃହୋପକରଣ, ବିବିଧ ଯୁଦ୍ଧାସ୍ତ୍ର ଓ ସାମରିକ ସରଞ୍ଜାମ (ଧନୁ, ଶର, ଗଦା, ମୁଷଳାଦି), ବିଭିନ୍ନ ବାଦ୍ୟଯନ୍ତ୍ର (ଢୋଲ, ମର୍ଦ୍ଦଳ, ଶଙ୍ଖ, ମହୁରୀ, ଭେରୀ, ତୂରୀ ଇତ୍ୟାଦି), ହଳ, ଲଙ୍ଗଳ, ଶଗଡ଼ାଦି କୃଷି ଉପକରଣ ଏବଂ ଅଳଙ୍କାର, ବସନ, ଭୂଷଣର ନିଖୁଣ ଚିତ୍ର ସାରଳା ଯେଉଁଭଳି ଚିତ୍ରଣ କରିଛନ୍ତି, ସେଥିରୁ ତାଙ୍କର ଶିଳ୍ପ ବିକାଶ ଯୋଜନା ସମ୍ପର୍କରେ ଆଭାସ ମିଳିଥାଏ ।

---

(୨୦) ବାଣିଜ୍ୟର ସ୍ୱରୂପ ମୁଁ କହୁଅଛି ଯଥା ।
ଲାଭ ପାଇଁକି କଦାଚ ନ କହିବ ମିଥ୍ୟା ॥
ଗଣ୍ଡାକେ କଡ଼ା, କୋଡ଼ିକେ ଯେନବ ଗଣ୍ଡାଏ ।
ପଣକେ କୋଡ଼ି କାହାଣେ ଲାଭ ପଡ଼ିକାଏ ॥
ଯେତେ ଲାଭ ହେଲେ ମିଥ୍ୟା ନ କହିବ ହାଦେ ।
ଗୁରୁପାଦେ କଣିକେଇ ବିକ ପାଞ୍ଚପାଦେ ॥
(୨୧) ସା: ମ: ଭା: (ରା) ସ୍ୱର୍ଗାରୋହଣ ପୃ. ୯
(୨୨) —ଏଜନ— ବିରାଟ ପୃ ୨୯ ଓ ସଭା ପୃ. ୩୭

## ସାରଳାଙ୍କ ସାମାଜିକ ସାମ୍ୟଭାବନା

ବର୍ଣମର୍ଯ୍ୟାଦା ପରଂପରାସମୃଦ୍ଧ ସାମନ୍ତବାଦୀ ସାମାଜିକ ବ୍ୟବସ୍ଥାର ପୃଷ୍ଠ-ଭୂମିରେ ସାଧାରଣ କୃଷିଜୀବୀ ପରିବାରର ପ୍ରଜ୍ଞାଦୀପ୍ତ ସନ୍ତାନ ମହାକବି ସାରଳା ସ୍ପଷ୍ଟ ଅନୁଭବ କରିଥିଲେ ଯେ ମନୁଷ୍ୟ ମାତ୍ରେ ସମସ୍ତେ ସମାନ; ନର ହିଁ ନାରାୟଣ; ମଣିଷର ଶରୀର ହିଁ ତେତିଶ କୋଟି ଦେବତାଙ୍କ ଅଧିଷ୍ଠାନ । ଏଣୁ ଉଚ୍ଚନୀଚ, ଧନୀ ଦରିଦ୍ର, ବ୍ରାହ୍ମଣ ଚଣ୍ଡାଳାଦି ଭେଦଭାବ ସମାଜ ତଥା ସାମନ୍ତବାଦୀ ବ୍ୟବସ୍ଥାର କୁସଂସ୍କାର ମାତ୍ର । ଏହି ମହାମାନବିକତାର ମାପକାଠିରେ ମନୁଷ୍ୟ ଜୀବନର ସାର୍ଥକତାକୁ ନିରୂପଣ କରିବାକୁ ଯାଇ ସାରଳା ସାମ୍ୟ ଓ ମୈତ୍ରୀ ଉପରେ ପ୍ରତିଷ୍ଠିତ ଏକ ଶୋଷଣବିହୀନ ନୂତନ ମୁକ୍ତସମାଜ ତଥା ସମାଜବାଦୀ ଆର୍ଥିକ ବ୍ୟବସ୍ଥାର ସ୍ୱପ୍ନ ଦେଖିଥିଲେ । ଏପରିକି ସମସ୍ତ ପ୍ରାଣୀ ଓ ଜୀବଜଗତ ପ୍ରତି ମଧ୍ୟ ତାଙ୍କର ମମତା ଓ ସହୃଦୟତା ଥିଲା ଅସୀମ । ସେଥିପାଇଁ ଖାଣ୍ଡବ ବନଦହନ କାଳରେ ଦାବାଗ୍ନି କବଳରେ ପଡି ମୃତ୍ୟୁବରଣ କରିଥିବା ଅସଂଖ୍ୟ ଜାତିର ପଶୁପକ୍ଷୀଙ୍କ ପ୍ରତି ତାଙ୍କର ସମବେଦନା ସ୍ପଷ୍ଟ • ପ୍ରକଟିତ ହୋଇଅଛି । (୨୩) ଆଦିପର୍ବରେ ଯୁଧିଷ୍ଠିରଙ୍କ ଗୋକର୍ଣ୍ଣେଶ୍ୱର ପୂଜା ସକାଶେ ସହଦେବ କୌଣସି ବ୍ରାହ୍ମଣଙ୍କୁ ନପାଇ ଚର୍ମଲା ଜାତିର ଜଣେ ଶବରକୁ ଆଣି ପହଞ୍ଚାଇବା ପରେ ଶ୍ରୀକୃଷ୍ଣ ବୁଝାଇଛନ୍ତି ଯେ ନର ରୂପରେ ନାରାୟଣ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରିଥାନ୍ତି ଏବଂ ଛପନ କୋଟି ଜୀବଜନ୍ତୁ ସମସ୍ତେ ସମାନ ଅଟନ୍ତି । (୨୪) ସାରଳାଙ୍କ ଏତାଦୃଶ ସାମ୍ୟଦର୍ଶନ ବାସ୍ତବିକ ତାଙ୍କ ସମୟରେ ନିତାନ୍ତ ଅକଳ୍ପନୀୟ । ଏ ପରିପ୍ରେକ୍ଷୀରେ, ବ୍ରାହ୍ମଣମାନଙ୍କ ପ୍ରତି ସାରଳାଙ୍କ ସମ୍ବେଦନଶୀଳତା ଓ ସମ୍ମାନବୋଧକୁ ଶ୍ରେଣୀ ବୈଷମ୍ୟ ବା ଜାତିଭେଦ ଦୃଷ୍ଟିରୁ ବିଚାର ନକରି ଏହାକୁ ତାଙ୍କର ବୈଦିକ କର୍ମବିଧି ଓ ଆଚରଣଗତ ଶୁଦ୍ଧତା ପ୍ରତି ସମର୍ଥନ ବୋଲି ଗ୍ରହଣ କରାଯାଇପାରେ ।

ବିରାଟ ପର୍ବରେ ଭୀମ ସୂପକାର ବେଶରେ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଉଚ୍ଚନୀଚ ସମସ୍ତଙ୍କୁ ଏକତ୍ର ଏକା ଭୋଜନରେ ଆପ୍ୟାୟିତ କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ ଚଣ୍ଡାଳ ସମସ୍ତଙ୍କ ପାଇଁ ସମାନ ଆସନ ବ୍ୟବସ୍ଥା କରିଛନ୍ତି । (୨୫) ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଅନନ୍ତ ପଡ଼ିଆରୀ ରୂପେ ରାଜସୂୟ ଯଜ୍ଞସଭାରେ ଯୁଧିଷ୍ଠିରଙ୍କ

---

(୨୩) ସା: ମ: ଭା: (ଗା) ମଧ୍ୟ-୨୮-୨୯
(୨୪) ସା: ମ: ଭା: (ସା) ଆଦି-ପୃ. ୬୩୪
(୨୫) —ଏଜନ— ବିରାଟ-ପୃ. ୧୨୦

ପରିଚର୍ଯ୍ୟା କରିବା ଏହି ସାମ୍ୟ ଭାବନାର ଅନ୍ୟତମ ନିଦର୍ଶନ । (୨୬) ସୁତରାଂ, ସାରଳାଙ୍କ କଳ୍ପିତ ସମରାଜ୍ୟରେ ମନୁଷ୍ୟତାହିଁ ମନୁଷ୍ୟର ମାନଦଣ୍ଡ; ଧନ, କ୍ଷମତା କିମ୍ବା ଐଶ୍ୱର୍ଯ୍ୟ ନୁହେଁ । ଏ ଦୃଷ୍ଟିରୁ ସାରଳା ମହାଭାରତରେ ଐଶ୍ୱର୍ଯ୍ୟର ଦାରିଦ୍ର୍ୟ ଭିତରେ ଦାରିଦ୍ର୍ୟର ଐଶ୍ୱର୍ଯ୍ୟ ପରିସ୍ଫୁଟିତ ବୋଲି କୁହାଯାଇପାରେ । (୨୭) ବାସ୍ତବତଃ, ସମାଜର ସର୍ବାଙ୍ଗୀନ ଉନ୍ନତି ଓ ବ୍ୟାପକ ଜନକଲ୍ୟାଣ ସାଧନ ଥିଲି ସାରଳାଙ୍କ ରାଷ୍ଟ୍ରୀୟ ବ୍ୟବସ୍ଥାର ମୁଖ୍ୟ ଆଦର୍ଶ । ନିଃସ୍ୱ ଦରିଦ୍ରଙ୍କ ପାଇଁ ବାସଗୃହ ନିର୍ମାଣ, ଭୁଭୁକ୍ଷୁ ତୀର୍ଥଯାତ୍ରୀଙ୍କ ପାଇଁ ଅନ୍ନଦାନ, ଗ୍ରୀଷ୍ମ କାଳରେ ଜଳଛତ୍ର ସ୍ଥାପନ, କୃଷି ବିକାଶ ନିମିତ୍ତ ଜଳସେଚନ ବ୍ୟବସ୍ଥା ଓ ସାଧାରଣ ଜୀବନଯାତ୍ରାକୁ ସୁଷ୍ଠୁ କରିବା ପାଇଁ ଗମନାଗମନ ପଥ ପ୍ରଭୃତି ବହୁବିଧ ଅର୍ଥନୈତିକ ଓ ସାମାଜିକ କାର୍ଯ୍ୟକ୍ରମର ଆଭାସ ତାଙ୍କ ମହାଭାରତ ଗ୍ରନ୍ଥରୁ ମିଳିଥାଏ ।

ଅନ୍ୟ ଦିଗରୁ ବିଚାର କଲେ, ଭାରତୀୟ ଜୀବନଧାରା ବହୁ ପ୍ରାଚୀନ କାଳରୁ ଜାତିଭେଦ ପ୍ରଥାଦ୍ୱାରା ପ୍ରଭାବିତ ହୋଇଛି । ବୈଦିକ ଯୁଗରୁ ଚାତୁର୍ବର୍ଣ୍ଣ୍ୟ ସମାଜର ବିକାଶ ଘଟିଥିଲି ଏବଂ ବୃତ୍ତିକ୍ରମରେ ସମଗ୍ର ଜନତା ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଚାରି ଭାଗରେ ବିଭକ୍ତ ହୋଇଥିଲେ । ମେଗାସ୍ଥିନିସ୍ ଭାରତ ଆସିବା ବେଳକୁ (ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ) ଏଠାରେ ଦାର୍ଶନିକ, କୃଷକ, ଗୋପାଳକ, ଶିଳ୍ପୀ, ବଣିକ, ସୈନିକ ଓ ରାଜ କର୍ମଚାରୀ ଏପରି ସପ୍ତବିଧ ଗୋଷ୍ଠୀର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲି । (୨୮) ଖ୍ରୀଷ୍ଟୀୟ ପ୍ରଥମ ସହସ୍ରାବ୍ଦୀ ଶେଷବେଳକୁ ମୂଳ ଚାରି ଜାତିରୁ ବହୁ ଉପଜାତିର ସୃଷ୍ଟି ଘଟି ସମାଜରେ ଶ୍ରମିକ, ବଣିକ, କୃଷକ, ଲୌହକାର, କୁମ୍ଭକାର, ଗୋପାଳ, ବସ୍ତ୍ରଶିଳ୍ପୀ (ତନ୍ତୀ), କ୍ଷୌରକାର (ଭଣ୍ଡାରି, ବାରିକ), ବସ୍ତ୍ର ଧୌତକାରୀ ( ଧୋବା ), ମତ୍ସ୍ୟଜୀବୀ (ଧୀବର), ଚର୍ମକାର (ମୋଚି, ଚମାର), ସଙ୍ଗୀତଶିଳ୍ପୀ ପ୍ରଭୃତି ବିଭିନ୍ନ ଜାତିର ଅଭ୍ୟୁଦୟ ଘଟିଥିଲି । (୨୯) ଏହି ଜାତିଭେଦ ପ୍ରଥା ଅଦ୍ୟାପି ଭାରତୀୟ ରାଜନୀତିକୁ ଆଚ୍ଛନ୍ନ କରି ରଖିଛି ଏବଂ ବିଭିନ୍ନ ଜାତିର ଗୋଷ୍ଠୀ

---

(୨୬) ସା: ମ: ଭ: (ସା) ସଭା-ପୃ. ୨୪୦

(୨୭) ପଣ୍ଡା, ଡକ୍ଟର ବସନ୍ତକୁମାର—ଉତ୍କଳ ରେନାସାଁର ଆଦି ପ୍ରବକ୍ତା ସାରଳା ଦାସ (ପ୍ରବନ୍ଧ) ବିପ୍ଳବୀ କବି ସାରଳା ଦାସ (ଦୟାନନ୍ଦ ଆଙ୍ଗ୍ଲୋ ମହାବିଦ୍ୟାଳୟ, ଟିଟିଲାଗଡ଼) ପୃ. ୧୬୧

(୨୮) Prasad, Dr Beni—The State in Ancient India-pp.135-137

(୨୯) Bhasam, A.L—Wonder that was India-pp.149-151

ମୃତ ଦାବ ରାଜନୈତିକ ସହମତ ରକ୍ଷା କ୍ଷେତ୍ରରେ ଭୟାବହ ସମସ୍ୟାର କାରଣ ହୋଇଛି । (୩୦)

ଏହି ପୃଷ୍ଠଭୂମିରେ ସାରଳାଙ୍କ ମନୋଭାବ ଲକ୍ଷ୍ୟ କଲେ ଜଣାଯାଏ ଯେ ସେ ଚତୁର୍ବିଧ ବୃତ୍ତିଗତ ଜାତିଭେଦ ଓ ପ୍ରଜାତିର ଧର୍ମ (୩୧) ପ୍ରତି ସମର୍ଥନ କରୁଥିଲେ । ଶବର, ଗୋପାଳ, କୁମ୍ଭକାର, ଲୌହକାର, ସୂପକାର, ମାପକାର, ସ୍ୱର୍ଣ୍ଣକାର, ସୂଚୀ କର୍ମକାର, ଖନକାର, ମହାରଣା, ବସ୍ତ୍ରଶିଳ୍ପୀ, ନାଟକ, କୃଷକ, ବଣିକ, ଶ୍ରମିକ, ସୈନିକ, ନଟ ନଟୀ, ଗଣକ (ଜ୍ୟୋତିଷୀ), ଗଣିକା ପ୍ରଭୃତି ଯେ ଯାହାର କର୍ମ ସମ୍ପାଦନା କରିବା ସପକ୍ଷରେ ସାରଳା ମତ ବ୍ୟକ୍ତ କରିଛନ୍ତି । (୩୨) ତେବେ, କୃଷକସମାଜ ପ୍ରତି ସମର୍ଥନ ଓ ସମବେଦନାଜ୍ଞାପନ ତଥା ସବଳର ଅତ୍ୟାଚାର ବିରୁଦ୍ଧରେ ଦୁର୍ବଳ ଶ୍ରେଣୀ ପ୍ରତି ସହାନୁଭୂତି ପ୍ରଦର୍ଶନ ଭବିଷ୍ୟତର ସଂସ୍କାରକ ତଥା ସାମ୍ୟବାଦୀଙ୍କ ପ୍ରତି ସାରଳାଙ୍କ ଦୂରଦର୍ଶନର ନିଦର୍ଶନ ।

ଧର୍ମ ମଧ୍ୟ ସାମାଜିକ ଓ ରାଜନୈତିକ ବିବର୍ତ୍ତନଧାରାର ଅପରିହାର୍ଯ୍ୟ ଅଙ୍ଗ ରୂପେ ସର୍ବତ୍ର ଓ ସର୍ବଦା ପରିଗଣିତ ହୋଇ ଆସିଛି । ଧର୍ମାନୁରକ୍ତି ତଥା ଅନ୍ଧବିଶ୍ୱାସ ସମାଜରେ କେବଳ ଚରମ ଗୋଷ୍ଠୀଭେଦର ଅଭେଦ୍ୟ ପ୍ରାଚୀର ସୃଷ୍ଟି କରେ ନାହିଁ, ତଦୁପରି ପ୍ରବଳ ଈର୍ଷ୍ୟା ଓ ପ୍ରତିହିଂସାଭାବକୁ ବି ଜନ୍ମ ଦେଇଥାଏ । କେବଳ ଉଚ୍ଚକୋଟୀର ମାନବବାଦୀ ଉଦାରତା ଓ ଜ୍ଞାନଗରିଷ୍ଠ ସମନ୍ୱୟବାଦୀ ଆଦର୍ଶ ବଳରେ ଏହାକୁ ସୁସଂହତ ଓ ସୁନିୟନ୍ତ୍ରିତ କରାଯାଇପାରେ । ଏହି ଦୃଷ୍ଟିରୁ ସାରଳା ଧର୍ମର ସାମାଜିକ ଭିତ୍ତି ତଥା ରାଜନୈତିକ ଭୂମିକା ବିଷୟରେ ସଚେତନ ହୋଇ ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବାଦି ଭେଦଭାବର ଊର୍ଦ୍ଧ୍ୱରେ ସମସ୍ତ ଧର୍ମ ଓ ସମସ୍ତ ଦେବତାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି, କେବଳ ଧର୍ମ ସମନ୍ୱୟର ମହାନ୍ ଭାବଧାରାକୁ ବଳିଷ୍ଠ କରି ନାହାନ୍ତି, ଅଧିକନ୍ତୁ ଜଗନ୍ନାଥ ଧର୍ମର ସର୍ବବ୍ୟାପକତା ଉପରେ ଗୁରୁତ୍ୱ ଆରୋପ କରି ଏକ ସର୍ବବାଦୀସମ୍ମତ ନବୀନ ଧର୍ମ-ଧାରଣା ସୃଷ୍ଟି କରିଛନ୍ତି । ଏହା ଫଳରେ ଗଣଧର୍ମାଦର୍ଶର ଏକ ନୂତନ ଦିଗ୍‌ବଳୟ ଉନ୍ମୋଚିତ ହୋଇଯାଇଛି ଏବଂ ସାରଳାଙ୍କ ପରବର୍ତ୍ତୀ କାଳରେ ଉତ୍କଳୀୟ ସମାଜ ତଥା ରାଜନୀତି ଅଧିକ ଶୃଙ୍ଖଳିତ ଓ ମର୍ଯ୍ୟାଦାବନ୍ତ ହୋଇପାରିଛି ।

---

(୩୦) Johari, J.C—Indian Politics. pp 159-171

(୩୧) ସା: ମ: ଭା: (ସ) ସ୍ୱର୍ଗାରୋହଣ-ପୃ. ୯୦

(୩୨) —ଏଜନ— ଆଦ୍ୟ-ପୃ. ୪୫, ସଭା-ପୃ. ୪୮-୫୦ ଓ ବିରାଟ-ପୃ. ୯୮୧

ସାରଳା ଦାସ ଉଲ୍ଲିଖିତ ଯେଉଁ ସାମାଜିକ ଆଦର୍ଶଗୁଡ଼ିକ ସଂପର୍କରେ ସ୍ୱୀୟ ମହାଭାରତର ଛନ୍ଦେ ଛନ୍ଦେ ଉଲ୍ଲେଖ କରି ଯାଇଛନ୍ତି, ସେଗୁଡିକ ଜଣେ ପୁରାଣ ପ୍ରଣେତାର କଳ୍ପିତ ଆଦର୍ଶ ନୁହେଁ; ସମାଜର ଉନ୍ନତି ଓ ବିକାଶ ଦିଗରେ ଯେଉଁ ଆଦର୍ଶ ସବୁ ଏକାନ୍ତ ସହାୟକ ହେବ ବୋଲି ସେ ଆନ୍ତରିକତାର ସହିତ ଉପଲବ୍ଧି କରିଥିଲେ, ସେ ସବୁର ସ୍ୱତଃସ୍ଫୂର୍ତ୍ତ ପରିପ୍ରକାଶ ହିଁ ତାଙ୍କ ମହାଭାରତ ପୃଷ୍ଠାରେ ଉଜ୍ଜୀବିତ ରହିଅଛି । ତା ନହୋଇଥିଲେ ଏହି ସାମାଜିକ ଆଦର୍ଶଗୁଡ଼ିକୁ ବ୍ୟଞ୍ଜିତ କରୁଥିବା ସାରଳା ମହାଭାରତର ପଦାବଳୀ ଆଜି ଓଡ଼ିଶାର ଗାଁଦାଣ୍ଡରେ ପ୍ରବାଦ ଓ ପ୍ରବଚନ ରୂପେ ଶୁଣାଯାଇ ନଥାନ୍ତା । ନିମ୍ନଲିଖିତ କେତେକ ପ୍ରବାଦ ପ୍ରବଚନହିଁ ସାରଳାଙ୍କ ଏହି ବିଶେଷତ୍ୱ ପ୍ରଖ୍ୟାପନ ପାଇଁ ଯଥେଷ୍ଟ ବୋଲି ମନେହୁଏ । ଯଥା — ଝିମିଟି ଖେଳରୁ ମହାଭାରତ; ଗଙ୍ଗା କହିଲେ ଥିବ, ଗାଙ୍ଗୀ ବୋଇଲେ ଯିବ; ଉଆଁସୀ କନ୍ୟାକୁ ସାହାଡ଼ା ଗଛ ବର; ଭାଇଯାଁ ଡ଼ରରେ ଶଳାକୁ ନମସ୍କାର; ନର ମାୟା ନାରାୟଣଙ୍କୁ ଅଗୋଚର; ଯେତେ ଧନକୁ ନିୟତି ସାର; ମନ ଜାଣେ ପାପ, ମାଁ ଜାଣେ ବାପ; ପ୍ରଥମ ବାଜି ଭୀମ ହାରେ; ଭୀମ ବଳ କୋଇନ୍ତାକୁ ଜଣା; କର୍ଣ୍ଣମଲେ ପାଞ୍ଚ, ଅର୍ଜୁନ ମଲେ ପାଞ୍ଚ; ଯେଉଁ ଗାଣ୍ଡିବ ହାତେ, ସେହି ଗାଣ୍ଡିବ ମାଥେ; ନରେ ବା କୁଞ୍ଜରେ ଅଶ୍ୱତ୍ଥାମା ହତ; ପାଗ ବାନ୍ଧି ବାନ୍ଧି କଟୋରି ବରିଖାଏ; ଦରକାର ବେଳେ ଭଗବାନ ଗଧ ପାଦ ଧରନ୍ତି; ମାଡ଼କୁ ମହାଦେବ ଡ଼ରନ୍ତି; କୀଚକ ବାହୁବଳେ ବିରାଟ ରଜା; ଧର୍ମର ଜୟ, ପାପର କ୍ଷୟ ଇତ୍ୟାଦି । ଏସବୁ ତାଙ୍କ ରାଜନୀତିଦର୍ଶନର ପରିପୂରକ ମାତ୍ର ।

## ସାରଳା ମହାଭାରତରେ ବିପରୀତଧର୍ମୀ ଆଦର୍ଶର ବ୍ୟଞ୍ଜନା

ସାମାଜିକ ଆଦର୍ଶର ବିପୁଳ ବିସ୍ତୃତିରେ ମହାକବି ସାରଳା ଦାସ ସ୍ୱକୀୟ ସୃଷ୍ଟିକୁ ଏକ ଜାତୀୟ ବେଦରେ ପରିଣତ କରିଥିଲେ ହେଁ ସେଥିରେ କେତେକ ବିପରୀତଧର୍ମୀ ତଥାକଥିତ କଳଙ୍କିତ ଆଦର୍ଶର ଚିତ୍ର ସମାଲୋଚକଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ପୂର୍ବବର୍ତ୍ତୀ ପରିଚ୍ଛେଦମାନଙ୍କରେ ସାରଳା ମହାଭାରତର ଯେଉଁ ରାଜନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ଉପାଦାନ ଉପରେ ଆଲୋଚନା କରାଯାଇଛି, ଆପାତ ଦୃଷ୍ଟିରେ ତାର ସମୀକ୍ଷା କରାଗଲେ ପ୍ରଥମ ବିଚାରରେ ବୋଧ ହେବ ଯେ ସାରଳା କୌଣସି ନିର୍ଦ୍ଦିଷ୍ଟ ଆଦର୍ଶର ନମୁନା ଦେଇ ନାହାନ୍ତି, କାରଣ ତାଙ୍କ ମହାଭାରତରେ ଅଧିକାଂଶ ବିଷୟରେ ଦ୍ୱିବିଧ ମତ ଏବଂ ବିପରୀତଧର୍ମୀ ଘଟନା ଓ ଚରିତ୍ରର ସମାବେଶ ପରିଦୃଷ୍ଟ ହୁଏ । ଦୃଷ୍ଟାନ୍ତ ସ୍ୱରୂପ, ସାରଳା, ଏକ ପକ୍ଷରେ, ନାରୀର ସତୀତ୍ୱ, ପାତିବ୍ରତ୍ୟ ଓ ସ୍ୱକୀୟତା ପ୍ରତିରେ ଜୟଗାନ କରିଛନ୍ତି ଓ ଭାନୁମତୀର

: ସ୍ପଷ୍ଟ ପରଂପରା ବର୍ଣ୍ଣନାରେ ଅତିରଞ୍ଜନର ସୀମା ଅତିକ୍ରମ କରିଯାଇଛନ୍ତି (୩୩); ଅଥଚ, ଅପର ପକ୍ଷରେ ସତୀ ଦ୍ରୌପଦୀଙ୍କ ଭଳି ଚରିତ୍ର ମୁଣ୍ଡରେ ସେ କୁହାଇଛନ୍ତି—

ଦ୍ରୌପଦୀ ବୋଲେ ସ୍ତ୍ରୀରଙ୍କ ଏମନ୍ତ ପ୍ରକୃତି
ସୁନ୍ଦର ପୁରୁଷ ଦେଖି ବଳାବନ୍ତ ମତି ।
ଯୁକତିରେ ଛନ୍ତି ମୋର ଏହି ପାଞ୍ଚ ପତି
ଅର୍ଜ୍ଜୁନଙ୍କ ଠାରେ ମୋହର ବେଶି ଥାଏ ମତି
ଯଦ୍ୟପି ମୋହର ପତି ଛନ୍ତି ପାଞ୍ଚ ଜଣ
କର୍ଣ୍ଣ ସୌନ୍ଦର୍ଯ୍ୟରେ ମୋର ଭୁଲିଯାଏ ମନ ।

( ସା: ମ: ଭା: (ଗ) ବନ—ପୃ. ୧୭୨ )

ଏହା ବ୍ୟତୀତ, ସାରଳା କୁନ୍ତୀ, ସୁଭଦ୍ରା, ସତ୍ୟଭାମା ପ୍ରଭୃତିଙ୍କୁ ଅତି ସାମାନ୍ୟ ନାରୀରୂପରେ ଚିତ୍ରଣ କରିଛନ୍ତି । (୩୪) ବିବାହ ପୂର୍ବରୁ ସୁଭଦ୍ରାଙ୍କ ସହିତ ଅର୍ଜ୍ଜୁନଙ୍କ ସହବାସ ନିମନ୍ତେ କୁତ୍ସିତ ଯୋଜନାର ନିର୍ଦ୍ଦେଶ ଦେଇଛନ୍ତି । ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଭଗବାନ ବିଷ୍ଣୁ ତଥା ଜଗନ୍ନାଥ ରୂପେ ଚିତ୍ରଣ କରି ମଧ୍ୟ ଚନ୍ଦ୍ରସେଣାର ପତ୍ନୀ ରାଧା ସହିତ ନୀଚ ଲାମ୍ପଟ୍ୟରେ ଜଡ଼ିତ କରାଇ ତାଙ୍କୁ ଜଣେ କପଟୀ, କୁଚକ୍ରୀ, କାମୁକ ଓ ବହୁ ଯୁବତୀ ଅପହରଣକାରୀ ଭାବେ ଉପସ୍ଥାପନ କରିଛନ୍ତି । କ୍ଷତ୍ରିୟ ଶ୍ରେଷ୍ଠ ଧର୍ମରାଜ ଯୁଧିଷ୍ଠିରଙ୍କୁ ପରିଣତ ବୟସରେ ବୈଶ୍ୟ ଘର ସାହୁର କନ୍ୟା ସୁହାଣୀ ସହିତ ବିବାହ କରାଇଛନ୍ତି । କାମୋନ୍ମତ୍ତ ଶ୍ରୀକୃଷ୍ଣଙ୍କ ବୃନ୍ଦାଦୂତୀ ସ୍ୱର୍ଗ ସୁନ୍ଦରୀ ସହିତ ରମଣ (୩୫) ଏବଂ ଉଲାକର୍ଣ୍ଣ ଗନ୍ଧର୍ବର ଅପସ୍ମୃତ ମାତା ପଦ୍ମାବତୀ ସହିତ ବଳାତ୍କାର ପୂର୍ବକ ସମ୍ଭୋଗ ଭଳି ଅଶ୍ଳୀଳ ଓ ବୀଭତ୍ସ ଚିତ୍ର ଦେଇଛନ୍ତି । ତାଙ୍କର ଏତାଦୃଶ ଉତ୍କଟ, ଅଶ୍ଳୀଳ ଓ ଅସମାଜିକ ବର୍ଣ୍ଣନା ବିଳାସକୁ କେତେକ ସମାଲୋଚକ 'ନିତାନ୍ତ ବିଦୃରଣୀୟ ଓ ଅସଙ୍ଗତ' (୩୬) ତଥା 'ଆବାଲ୍ୟ ଦୁଃସମାଜ ସଙ୍ଗ ପ୍ରାପ୍ତ ଦୁର୍ବ୍ବିଜର ଫଳ' (୩୭) ରୂପେ ଗ୍ରହଣ କରି ନେଇଛନ୍ତି ।

---

(୩୩) ସା: ମ: ଭା: (ଗ) ଆଦ୍ୟ-ପୃ. ୧୧୪
(୩୪) ରଥ, ମୃତ୍ୟୁଞ୍ଜୟ—ଶାରଳା ଚରିତ ପୃ. ୯୩
(୩୫) ସା: ମା: ଭା: (ଗ) ଆଦ୍ୟ-ପୃ. ୧୫୨ ଓ ୨୧୬
(୩୬) ରଥ, ମୃତ୍ୟୁଞ୍ଜୟ—ଶାରଳା ଚରିତ ପୃ. ୮୩
(୩୭) ନନ୍ଦ ଶର୍ମା, ଗୋପୀନାଥ—ଶ୍ରୀ ଭାରତଦର୍ପଣ ପୃ. ୨୫

କେବଳ ଏତିକି ନୁହେଁ, ସେ କୃଷକ କୁଳର ଉନ୍ନତି ସକାଶେ ଉତ୍କଣ୍ଠା ପ୍ରକାଶ କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଣମାନଙ୍କର ହିତସାଧନ ନିମିତ୍ତ ତତ୍ପର ହୋଇ ଉଠିଛନ୍ତି; ଯୁଦ୍ଧ ତଥା ରଣଯଜ୍ଞର ଉତ୍କର୍ଷ ବ୍ୟାଖ୍ୟାନ ସହିତ ଶାନ୍ତି ଓ ସନ୍ଧିସ୍ଥାପନାର ଆବଶ୍ୟକତା ଉପଲବ୍ଧି କରିଛନ୍ତି; ଯାଗ, ଯଜ୍ଞ, ଦାନାଦି ଧର୍ମାଚରଣକୁ ରାଜଧର୍ମର ଶ୍ରେଷ୍ଠ ଉପାଦାନ ରୂପେ ସ୍ୱୀକାର କରିବା ସତ୍ତ୍ୱେ ପଶାଖେଳ, ପାରିଧି, ଖେମଟାନାଚ, କାଦମ୍ବିନୀ ପାନାଦି ଭୋଗବିଳାସପୂର୍ଣ୍ଣ ରାଜକୀୟ ଜୀବନଧାରାର ନିଖୁଣ ଚିତ୍ର ଅଙ୍କନ କରିଛନ୍ତି ।

ତେବେ, ଏସବୁ ଦ୍ୱିବିଧ ତଥା ବିପରୀତାଦର୍ଶବ୍ୟଞ୍ଜକ ବର୍ଣ୍ଣନାର ପ୍ରକୃତ ଉଦ୍ଦେଶ୍ୟ ପ୍ରତି ସୂକ୍ଷ୍ମ ଦୃଷ୍ଟିପାତ କଲେ ସ୍ପଷ୍ଟ ପ୍ରତୀତ ହେବ ଯେ ଅନ୍ଧକାର ବିନା ଆଲୋକର ମହତ୍ତ୍ୱ ପ୍ରକଟିତ ନହୋଇ ପାରିବା ପରି କୁତ୍ସିତ, କୁସଂସ୍କାରଚ୍ଛନ୍ନ ଓ କୁଶାସନଗ୍ରସ୍ତ ସାମାଜିକ ( ବା ଅସାମାଜିକ ) ଦୃଷ୍ଟାନ୍ତ ବ୍ୟତୀତ ଉନ୍ନତ, ସଂସ୍କାରଶୀଳ ଓ ସୁଶାସନାଦର୍ଶର ସଫଳ ରୂପାୟନ ଅସମ୍ଭବ ହେତୁ ହିଁ ସାରଳା ବିଭିନ୍ନ ନଗ୍ନ ଓ ବୀଭତ୍ସ ଘଟନା ଓ ଚରିତ୍ରର ଅବତାରଣା କରିଛନ୍ତି; ବାସ୍ତବରେ ସୁସ୍ଥ, ଶୁଦ୍ଧ, ଶୃଙ୍ଖଳାପୂର୍ଣ୍ଣ ଓ ସମୃଦ୍ଧିସମ୍ପନ୍ନ ସାମାଜିକ ଓ ଶାସନତାନ୍ତ୍ରିକ ଆଦର୍ଶର ପ୍ରତିଷ୍ଠା ହିଁ ତାଙ୍କର ଚରମ ଲକ୍ଷ୍ୟ । ଏଥିପାଇଁ ସାରଳା କେତେକ ସ୍ଥଳରେ ପାରଂପରିକ ଆଦର୍ଶକୁ ଗ୍ରହଣ କଲାବେଳେ (ବୈଦିକ ବିଧି ସମୂହର ପାଳନ), ଅନ୍ୟ କେତେକ କ୍ଷେତ୍ରରେ ପରଂପରାଠାରୁ ଦୂରେଇ ଯାଇ ନୂତନ ପରଂପରା ସୃଷ୍ଟି କରିଛନ୍ତି ( ସର୍ବଧର୍ମ ସମନ୍ୱୟରେ ଜଗନ୍ନାଥ ଧର୍ମାଦର୍ଶ ) । ସେହିପରି କେତେକ ପାରଂପରିକ ସାମାଜିକ ଚଳଣିକୁ ସ୍ୱାଗତ କରିବା (ଯୌନ ସଂଯମ, ଜ୍ୟୋତିଷର ମହତ୍ତ୍ୱ, ସର୍ବପର୍ବାଣି ପାଳନ ଇତ୍ୟାଦି) ସତ୍ତ୍ୱେ, ସେ ବାଲ୍ୟବିବାହ, ସତୀଦାହ, ତାନ୍ତ୍ରିକ ଉପଗ୍ରହ ପ୍ରଭୃତି କୁସଂସ୍କାର ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ପୁନଶ୍ଚ, ଭାରତୀୟ ରାଜନୈତିକ ସଂସ୍କୃତି ଦୃଷ୍ଟିରୁ ମଧ୍ୟ ଏତାଦୃଶ ଦ୍ୱିବିଧ ବର୍ଣ୍ଣନା ଅସଙ୍ଗତ ନୁହେଁ, କାରଣ ରାଜନୈତିକ ସଂସ୍କୃତି ବିଗ୍ରହରେ ପାରଂପରିକତା ଓ ଆଧୁନିକତା ମଧ୍ୟରେ ବ୍ୟବଧାନକୁ ଗ୍ରହଣ କରାଯାଏ ନାହିଁ । (୩୮) କଠୋର ରାଜତନ୍ତ୍ରଠାରୁ ଆରମ୍ଭ କରି ଜଗତ୍ମୋଲା ସାମ୍ୟବାଦ ପର୍ଯ୍ୟନ୍ତ ପ୍ରତ୍ୟେକ ଅବସ୍ଥା ଏକମାତ୍ର ରାଜନୈତିକ ବିବର୍ତ୍ତନ ଧାରାର ବିଭିନ୍ନ ଉତ୍ସ ତଥା ରାଜନୈତିକ ସଂସ୍କୃତି ପ୍ରବାହର ଅବିଚ୍ଛିନ୍ନ ଅଙ୍ଗ ।

---

(୩୮) Johari, J. C. Indian Politics-pp- 473-474

### • ସାରଳାଙ୍କ ରାଜନୈତିକ ଆଦର୍ଶର ବିଶେଷତ୍ୱ

ସାରଳା ଦାସ ସମକାଳୀନ ରାଜନୀତି ସମ୍ବନ୍ଧ ଯେପରି ଓତଃପ୍ରୋତ ଭାବେ ଜଡ଼ିତ ଥିଲେ, ସେହିପରି ଉତ୍କଳୀୟ ଓ ଭାରତୀୟ ରାଜନୈତିକ ପରଂପରା ସମ୍ବନ୍ଧରେ ମଧ୍ୟ ଅବହିତ ଥିଲେ । ତଥାପି, ସେ ସ୍ୱୀୟ ମହାଭାରତ ଗ୍ରନ୍ଥରେ ମୂଳ ମହାଭାରତ ବର୍ଣ୍ଣିତ ରାଜଧର୍ମ ସମ୍ବନ୍ଧୀୟ ବିଦୁରଙ୍କ ଉପଦେଶାବଳୀ (ଉଦ୍‌ଯୋଗ ପର୍ବ-ଅଧ୍ୟାୟ ୩୩ରୁ ୪୦) ଏବଂ ଭୀଷ୍ମଙ୍କ ପରାମର୍ଶଗୁଡ଼ିକୁ (ଶାନ୍ତିପର୍ବ ଅଧ୍ୟାୟ ୫୮ ଓ ୫୯) ବିଶେଷ ଗୁରୁତ୍ୱ ଦେଇ ନାହାନ୍ତି । ବିଦୁରଙ୍କ ଉପଦେଶ ସମ୍ବଳିତ ଅଧ୍ୟାୟଗୁଡ଼ିକୁ ସମ୍ପୂର୍ଣ୍ଣ ବର୍ଜନ କରାଯାଇଥିବା ସ୍ଥଳେ ଭୀଷ୍ମଙ୍କ ପରାମର୍ଶକୁ ମାତ୍ର ଗୋଟିଏ ପୃଷ୍ଠାରେ (୩୯) ସୀମିତ ରଖାଯାଇଛି । ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ସାରଳା ପ୍ରାଚୀନ ରାଜନୀତିକ ପରଂପରା ଓ ଆଦର୍ଶ ସମ୍ପର୍କରେ ତାଙ୍କ ଗ୍ରନ୍ଥରେ ସୂଚନା ଦେବା ଅପେକ୍ଷା ନିଜର ସ୍ୱକୀୟ ଚିନ୍ତାଧାରା ମାଧ୍ୟମରେ ରାଜନୈତିକ ସଂସ୍କାର ପ୍ରବର୍ତ୍ତନ ତଥା ଗଣତାନ୍ତ୍ରିକ ଚେତନାର ବିକାଶ ସାଧନ ପାଇଁ ଅଧିକ ପ୍ରୟାସୀ ହୋଇଛନ୍ତି । ପ୍ଲୁଟୋ, ଆରିଷ୍ଟୋଟଲ, କୌଟିଲ୍ୟ ଓ ମେକ୍ୟାଭେଲିଙ୍କ ଠାରୁ ଆରମ୍ଭ କରି ମାର୍କସ୍, ଗାନ୍ଧୀ ଓ ବିନୋବାଙ୍କ ପର୍ଯ୍ୟନ୍ତ ସମସ୍ତ ବିଶିଷ୍ଟ ରାଜନୀତି-ଦାର୍ଶନିକ ଯେପରି ନିଜର ପରିବେଶ ଓ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ, ସାରଳାଙ୍କ ଆଦର୍ଶ ମଧ୍ୟ ସେହିଭଳି ସମକାଳୀନ ପରିସ୍ଥିତି ଓ ପ୍ରତ୍ୟକ୍ଷ ଅନୁଭୂତି ଆଧାରିତ । ଏଥିପାଇଁ ଯୁଗରୁଚି ତଥା ସମାଜର ଆବଶ୍ୟକତା ଅନୁଯାୟୀ ଶାସକମାନେ ସର୍ବନିମ୍ନ ଯେତିକି କର୍ତ୍ତବ୍ୟ ପାଳନ କରିବାର କଥା, ସେ ନିଜ ମହାଭାରତରେ ତାହା କେବଳ ଉଲ୍ଲେଖ କରିଛନ୍ତି; ମୂଳ ମହାଭାରତ ସମ୍ବଳିତ ରାଜକର୍ତ୍ତବ୍ୟ ସମ୍ବନ୍ଧର ବିସ୍ତୃତ ବିବରଣୀ ଦ୍ୱାରା ଶାସକମାନଙ୍କୁ ଅଯଥା ଭାରାକ୍ରାନ୍ତ କରିବାକୁ ଚାହିଁ ନାହାନ୍ତି । (୪୦) ଏହା ଫଳରେ ସାରଳାଙ୍କ ରାଜନୈତିକ ଆଦର୍ଶ କେବଳ ଯୁଗୋପଯୋଗୀ ହୋଇନାହିଁ, ଅଧିକନ୍ତୁ ଶାଶ୍ୱତ ଓ ଚିରନ୍ତନ ମୂଲ୍ୟବୋଧ ଆହରଣ କରିପାରିଛି । ତାଙ୍କର ଏହି ବିଶେଷତ୍ୱ ନିମ୍ନ ଆଲୋଚିତ କେତୋଟି ବିଷୟରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

ରାଜା ତଥା ଶାସକମାନଙ୍କର ଭୋଗବିଳାସ ବାସନା, ବହୁନାରୀ ଉପଭୋଗ ପ୍ରବୃତ୍ତି, ପ୍ରଜାଶୋଷଣ ମନୋଭାବ ତଥା ଅତ୍ୟାଚାରର ମନୋବୃତ୍ତିର ତୀବ୍ର ନିନ୍ଦା କରିବା

---

(୩୯) ମହାପାତ୍ର, ପଣ୍ଡିତ ଗୋବିନ୍ଦଚନ୍ଦ୍ର (ଅନୁବାଦକ) ସଂସ୍କୃତ ମହାଭାରତ (ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୫) ଉଦ୍‌ଯୋଗ ଓ ଶାନ୍ତିପର୍ବ ଏବଂ ସା: ମ: ଭା: (ବ) ଶାନ୍ତି—ପୃ. ୧୬

(୪୦) ବିଦୁର ନୀତିର କେତେକ ବିଷୟ (୨୧୦୯, ୨୧୧୦ ୨୧୧୭-୧୮, ୨୧୨୫, ୨୧୨୭, ୨୧୨୯, ୨୧୩୧ ଓ ୨୧୩୪) ସାରଳା ମହାଭାରତରେ ପରିଦୃଷ୍ଟ ହୁଏ । ବିଦୁରନୀତି (ଗୀତା ପ୍ରେସ, ଗୋରଖପୁର, ୧୯୭୪) ଦ୍ରଷ୍ଟବ୍ୟ ।

ସହିତ ପ୍ରଜା ଅସନ୍ତୋଷ ଫଳରେ ରାଜ୍ୟର ବିନାଶ ସୁନିଶ୍ଚିତ ବୋଲି ସାରଳା ସ୍ପଷ୍ଟ ଚେତାବନୀ ଶୁଣାଇଛନ୍ତି । (୪୧) ପାଶ୍ୱର୍ ଯାତ୍ରା ବା ମୃଗୟାକୁ ରାଜାମାନେ ବିଳାସ କ୍ରୀଡ଼ାରୂପେ ଗ୍ରହଣ ନକରି ପ୍ରଜାବୃନ୍ଦଙ୍କୁ ବନ୍ୟଜନ୍ତୁଙ୍କ ଉପଦ୍ରବରୁ ରକ୍ଷା କରିବା ସକାଶେ ଏହା ଏକ ଆବଶ୍ୟକୀୟ ରାଜକର୍ତ୍ତବ୍ୟ ରୂପେ ଗ୍ରହଣ କରିବା ଉଚିତ ବୋଲି ସାରଳା ମତ ପ୍ରକାଶ କରିଛନ୍ତି । (୪୨) ସେହିପରି, ଶିବପୁରରେ ଉତ୍ତରଦେଶୀୟ ଚଣ୍ଡାଳମାନଙ୍କର ଅତ୍ୟାଚାର ଦମନ କରି ଗ୍ରାମ ବିଷ୍ଟୁକର ପଣ୍ଡାଙ୍କୁ ଅମାତ୍ୟ ପଦେ ଶାଢ଼ୀ ବାନ୍ଧିବାର ଯେଉଁ ବର୍ଣ୍ଣନା ଆଦ୍ୟପର୍ବରେ ପ୍ରଦତ୍ତ ହୋଇଛି, ତାହାକୁ (୪୩) କାର୍ଲ ମାର୍କସଙ୍କର ଶ୍ରେଣୀ ସଂଘର୍ଷ ଓ ମଧ୍ୟବର୍ତ୍ତୀ ସରକାର ଗଠନ ନୀତି ( Interim Government ) ତଥା ନିଃସ୍ୱ ଶ୍ରେଣୀୟ ବ୍ୟକ୍ତିର ଆଧିପତ୍ୟ ( Dictatorship of the Proletariate ) ଆଦର୍ଶ ସହିତ ତୁଳନା କରାଯାଇପାରେ । ଅନୁରୂପ ଭାବେ, ସଭାପର୍ବରେ ବର୍ଣ୍ଣିତ ସିନ୍ଧୁଦେଶ ରାଜାଙ୍କ ଦ୍ୱାରା ଅହିଂସ ଉପନିବେଶ ସ୍ଥାପନ କରାଇ ସାରଳା ଶାନ୍ତି ଓ ମୈତ୍ରୀର କେବଳ ଜୈବବାଣୀ ଶୁଣାଇ ନାହାନ୍ତି, ଅଧିକନ୍ତୁ ମହାତ୍ମା ଗାନ୍ଧୀ, ବିନୋବା ବା ଜର୍ଜ ଓଏନ୍‌ଙ୍କ ଭଳି ଏକ ସର୍ବୋଦୟ ଶାସନ ତଥା ସାମବାୟିକ ବା ସହଯୋଗାତ୍ମକ ରାଜ୍ୟଗୋଷ୍ଠୀ ( Cooperative Common Wealth ) ପରିକଳ୍ପନାର ପ୍ରାରମ୍ଭିକ ସୂଚନା ଦେଇଛନ୍ତି । (୪୪)

ଧର୍ମଭାବନା ଦୃଷ୍ଟିରୁ ଜଗନ୍ନାଥ ତତ୍ତ୍ୱର ଆଦ୍ୟ ପ୍ରବକ୍ତା ସାରଳା ଦାସ ସ୍ପୃଶ୍ୟାସ୍ପୃଶ୍ୟ ତଥା ସବର୍ଣ୍ଣ ଅସବର୍ଣ୍ଣ ଭେଦଭାବଶୂନ୍ୟ ମାନବଧର୍ମ ଉପରେ ଗୁରୁତ୍ୱ ଆରୋପପୂର୍ବକ ଏକ ମହାନ୍ 'ବସୁଧୈବ କୁଟୁମ୍ବକମ୍' ଆଦର୍ଶର ସନ୍ଧାନ ଦେଇଛନ୍ତି । ବ୍ରାହ୍ମଣ୍ୟ (ବାସୁଦେବ ଦାସ) ଓ ଶାବର (ଜାରା ଶବର) ଉଭୟ ସଂସ୍କୃତିର ସମ୍ମିଶ୍ରଣରେ ଜଗନ୍ନାଥ ଉପାସନାର କଳ୍ପନା କରି (୪୫) ସେ ଜାତୀୟ ସଂହତିର ମୂଳଭିତ୍ତିକୁ ସୁଦୃଢ଼ କରିଛନ୍ତି । ଏହି ଜଗନ୍ନାଥ ଉପାସନାକୁ ଏକ ସାର୍ବଜନୀନ ରୂପ ପ୍ରଦାନ ଦ୍ୱାରା ସାରଳା

---

(୪୧) ସା: ମ: ଭା: (ରା) ଶାନ୍ତି-ପୃ. ୧୧-୧୨
(୪୨) —ଏଜନ— ଆଦ୍ୟ-ପୃ. ୧୭୪, ବନ-ପୃ. ୧୩୬, ଶାନ୍ତି-ପୃ. ୧୨ ଓ ଆଶ୍ରମିକ ପୃ-୪୭
(୪୩) —ଏଜନ— ଆଦ୍ୟ-ପୃ. ୨୨୪-୨୨୫
(୪୪) —ଏଜନ— ସଭା-ପୃ. ୧୬୫
(୪୫) —ଏଜନ— ମୁଷଳୀ-ପୃ. ୨୪-୪୧

ଏକ ଅସାମାନ୍ୟ ଉତ୍କଳୀୟ ମମତା ଓ ଜାତୀୟତାବୋଧ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଜଣେ ଜାତୀୟବାଦୀ ଭାବେ ନିଜର ପ୍ରାଧାନ୍ୟ ପ୍ରତିଷ୍ଠା କରିପାରିଛନ୍ତି ।

ଖ୍ରୀ ୧୪୫୩ରେ ଇତିହାସ ପ୍ରସିଦ୍ଧ ଶତବର୍ଷୀୟ ସମରର ଅବସାନ ପରେ ରୋମ ସାମ୍ରାଜ୍ୟର ଅଧଃପତନ ଫଳରେ କନ୍‌ଷ୍ଟାଣ୍ଟିନୋପଲରେ ତୁର୍କମାନଙ୍କ ଆଧିପତ୍ୟର ବିସ୍ତାର ଘଟିଥିଲା । ସେତେବେଳେ ଗ୍ରୀକ୍ ବିଦ୍ୱାନ ଗୋଷ୍ଠୀ ଇଟାଲି ପ୍ରଭୃତି ପଶ୍ଚିମ ୟୁରୋପୀୟ ଦେଶକୁ ଯାଇ ଜ୍ଞାନର ପ୍ରସାର, ବୈଜ୍ଞାନିକ ଆବିଷ୍କାର ଓ ଧର୍ମସଂସ୍କାରଭିତ୍ତିକ ବହିର୍ମୁଖୀ ଜାଗରଣ ସଂଘଟନ କରି ଯେଉଁ ପୁନର୍ନବୀକରଣ ବା ରେନେସାଁ । ୟୁରୋପୀୟ ଜାତୀୟତାବାଦ ଆଦର୍ଶକୁ ଜନ୍ମ ଦେଇଥିଲେ ଏବଂ ପରିଣାମତଃ ଫ୍ରାନ୍‌ସ, ଇଂଲଣ୍ଡ ପ୍ରଭୃତି ଦେଶରେ ଜାତିଭିତ୍ତିକ ରାଜ୍ୟ ଗଠନର ଶୁଭାରମ୍ଭ ଘଟିଥିଲା, ତାର ଅନୁରୂପ ଚିନ୍ତାଧାରା ସାରଳା ମହାଭାରତରେ ଦେଖିବାକୁ ମିଳେ । (୪୬) ଏ ପ୍ରସଙ୍ଗରେ ଆହୁରି ସ୍ମରଣଯୋଗ୍ୟ ଯେ ଗୋପବନ୍ଧୁଙ୍କ ପରି ସାରଳାଙ୍କ ଉଦାର ଜାତୀୟତାବାଦ ମଧ୍ୟ ଆନ୍ତର୍ଜାତୀୟତାବାଦୀ ଭାବନାର ବାହକ ଏବଂ ପ୍ରାଦେଶିକତା ବା ଆଞ୍ଚଳିକତାର ସଂକୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ ନୁହେଁ । (୪୭)

ସାରଳା ମହାଭାରତର ଚରିତ୍ରଗୁଡ଼ିକରୁ ମଧ୍ୟ କବିଙ୍କର ଜାତୀୟ ମନୋବୃତ୍ତିର ପରିଚୟ ମିଳେ । ମୂଳ ମହାଭାରତରୁ ଆହୃତ ଶ୍ରୀକୃଷ୍ଣ, ଭୀମ, ଶକୁନି, ଦ୍ରୌପଦୀ, ଗଙ୍ଗା, ଗାନ୍ଧାରୀ ସମସ୍ତେ ଯେପରି ଉତ୍କଳୀୟ ଜଳବାୟୁରେ ପରିବର୍ଦ୍ଧିତ, ଖାଣ୍ଟି ଉତ୍କଳୀୟ— ଶ୍ରୀକୃଷ୍ଣ ଜଗନ୍ନାଥ; ଭୀମ ଗାଁ ଗହଳର ପେଟୁ, ହୁଣ୍ଡା, ଗୁଣ୍ଡା; ଶକୁନି କପଟ ମଫସଲର ଦୁର୍ଦ୍ଦାନ୍ତ ଟାଉଟର; ଦ୍ରୌପଦୀ ଓଡ଼ିଆଣୀ କୁଳବଧୂ, ଗଙ୍ଗା ପୁରପଲ୍ଲୀର କଳହପ୍ରିୟା ସ୍ତ୍ରୀ ଏବଂ ଗାନ୍ଧାରୀ ଆଦର୍ଶ ମାତୃତ୍ୱର ଅବତାର । କେବଳ ଏତିକି ନୁହେଁ, ସାରଳା ମୂଳ ମହାଭାରତର ଚରିତ୍ରଗୁଡ଼ିକରେ ଆରୋପିତ ଅଲୌକିକତା ବା ଅଧିଦୈବିକତାକୁ ଗ୍ରହଣ ନକରି ସମସ୍ତଙ୍କଠାରେ ମାନବତ୍ୱ ଆରୋପ କରିଛନ୍ତି ଏବଂ ଆମ ସମାଜର ସାଧାରଣ ନରନାରୀଙ୍କ ଗୁଣ୍ଡ଼ିଚଳଣି, ଆଚାର ବ୍ୟବହାରକୁ ସେସବୁ ଚରିତ୍ର ମାଧ୍ୟମରେ ପରିସ୍ଫୁଟନ କରିଛନ୍ତି । ଏହା ତାଙ୍କର ଉଦାର ମାନବତାବାଦର କମ୍ ପରିଚାୟକ ନୁହେଁ । ପତିତଜନ ପ୍ରତି ଗଭୀର ସମବେଦନା ପ୍ରକାଶ ଦୃଷ୍ଟିରୁ

(୪୬) ସା: ମ: ଭା: (ବା) ଅଦ୍ୟ ପୃ. ୩ ଓ ୫ ଏବଂ ଦାସ, ସୂର୍ଯ୍ୟନାରାୟଣ—ଜୀବନୀ ଓ ଜାଗରଣ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୦) ପୃ. ୨-୩

(୪୭) ପୂର୍ବବର୍ତ୍ତୀ-ପୃ. ୧୫୧ ଏବଂ ଦାସ ସୂର୍ଯ୍ୟନାରାୟଣ—ବିଶ୍ୱମାନବର ବନ୍ଧୁ ଗୋପବନ୍ଧୁ (ପ୍ରବନ୍ଧ) (ସମାଜ-ଗୋପବନ୍ଧୁ ସ୍ମୃତି ସଂଖ୍ୟା—୧୯୬୮)

ସାରଳାଙ୍କ ସମାଜବାଦୀ ମନୋଭାବର ସମକାଳୀନ କୌଣସି ତୁଳନା ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଦୃଷ୍ଟିରୁ ସେ ନାଃସନ୍ଦେହରେ କାର୍ଲ ମାର୍କସ୍, ରବର୍ଟ ଓ୍ୱେନ, ଜନ ଷ୍ଟୁଆର୍ଟ ମିଲ୍, ମହାତ୍ମା ଗାନ୍ଧୀ ଓ ବିନୋବା ଭାବେଙ୍କ ସମଧର୍ମୀ ଅଟନ୍ତି । (୪୮)

ସାରଳା ମହାଭାରତ ମୁଖ୍ୟତଃ ଏକ ସମର କାବ୍ୟ ଏବଂ ବହୁ ଯୁଦ୍ଧ ଓ ମହାଯୁଦ୍ଧର ଲୋମହର୍ଷକୋଣ ବର୍ଣ୍ଣନାରେ ଅନୁରଞ୍ଜିତ । ତଥାପି, ସର୍ବବ୍ୟାପୀ ସାମରିକ ଆୟୋଜନ ଓ ବିପୁଳ ରଣଡଙ୍କା ମଧ୍ୟରେ ସାରଳା ବରାବର ଶାନ୍ତି, ଅହିଂସା, ସଂଯମ ଓ ଶୃଙ୍ଖଳାର ପ୍ରାଧାନ୍ୟ ପ୍ରଦର୍ଶନ କରିଛନ୍ତି ଏବଂ କ୍ରୋଧ, ଈର୍ଷ୍ୟା, ଦ୍ୱେଷ ଅଭିମାନାଦି ମାତ୍ସର୍ଯ୍ୟ ଗୁଣର ନିନ୍ଦାଗାନପୂର୍ବକ ଦୟା, ବଦାନ୍ୟତା, ଯଜ୍ଞାନୁଷ୍ଠାନ ଓ ସେବା ମନୋଭାବର ଉତ୍କର୍ଷ ପ୍ରତିପାଦନ ନିମିତ୍ତ ପ୍ରୟାସୀ ହୋଇଛନ୍ତି । (୪୯) ଯୁଦ୍ଧ ପରିହାରପୂର୍ବକ ରାଜ୍ୟାଧିକାର ନୀତି ସମର୍ଥନ ଜ୍ଞାପନ କରିବାକୁ ଯାଇ ସେ କହିଛନ୍ତି—

ପ୍ରାଣପାଦ ଗୁଣ ଥିବ ହୋଇବ ଅକ୍ରୋଧୀ
ପର ଭୂମିକୁ ନେବ ସଂଗ୍ରାମ ନିରୋଧି ।
(ସା: ମ: ଭା: (ଗ) ଆଦ୍ୟ-ପୃ. ୮୯)

ଏହି ପ୍ରସଙ୍ଗରେ କାବ୍ୟିକ ଅତିରଞ୍ଜନ ଦ୍ୱାରା ସାରଳା ଲକ୍ଷସଂଖ୍ୟକ ରାଜା; ଅକ୍ଷୌହିଣୀ, ଅର୍ବୁଦସଂଖ୍ୟକ ଗଜାରୋହୀ, ଅଶ୍ୱାରୋହୀ ସେନା; ସାଗର ପଦ୍ମସଂଖ୍ୟକ ରଥୀ, ମହାରଥୀ, ସହସ୍ରସଂଖ୍ୟକ ଯୁବତୀ, ପରିଚାରୀ; ଲକ୍ଷ ସଂଖ୍ୟକ ନୌକା, ପଉଡି ପରିମାଣର ଆହାର; ଯୋଜନବ୍ୟାପୀ ରଣକ୍ଷେତ୍ର; ସାତ ତାଳ ଗଭୀର ରକ୍ତନଦୀ ପ୍ରଭୃତିର ଯେଉଁ କପୋଳକଳ୍ପିତ ଚିତ୍ର ପ୍ରଦାନ କରିଛନ୍ତି, ତାହା ତାଙ୍କ

---

(୪୮) (କ) ମାନସିଂହ—ଓଡ଼ିଆ ସାହିତ୍ୟର ଇତିହାସ—ପୃ-୮୯-୯୦

(ଖ) ସାହୁ, ସହଦେବ—ଗଣତାନ୍ତ୍ରିକ ସାହିତ୍ୟର ସ୍ରଷ୍ଟା ସାରଳା ଦାସ (ପ୍ରବନ୍ଧ) ମହାନ୍ତି, ଡ଼: ଉପେନ୍ଦ୍ରନାଥ ସଂପାଦିତ ବିପ୍ଳବୀ କବି ସାରଳା ଦାସ—ପୃ. ୪-୯

(୪୯) (କ) ସା: ମ: ଭା: (ଗ) ଆଦ୍ୟ—ପୃ. ୧୦, ୮୮ ଓ ୮୯

(ଖ) ମାନସିଂହ—ଓଡ଼ିଆ ସାହିତ୍ୟର ଇତିହାସ—ପୃ. ୯୦-୯୧

ବାସ୍ତବ ଇତିହାସ ଓ ରାଜନୀତି କ୍ଷେତ୍ରରୁ ଦୂରେଇ ଦେଇଛନ୍ତି ବୋଲି ଆପାତତଃ ମନେହୁଏ । କିନ୍ତୁ ଏତଦ୍ଦ୍ୱାରା ସେ ନିଜର ରଚନାକୁ ଅଧିକ ଚମତ୍କାରିତା ଓ ଆକର୍ଷଣୀୟ ଭାବେ ପରିବେଷଣ କରି ନିଜର ବକ୍ତବ୍ୟକୁ ଅଧିକ ପ୍ରଭାବଶାଳୀ କରିପାରିଛନ୍ତି । ଏହି ବର୍ଣ୍ଣନା କୌଶଳ ଦ୍ୱାରା ସେ ନିଜ ଦୃଷ୍ଟିକୁ ଅଧିକ ରୁଚିବନ୍ତ କରିବା ସଙ୍ଗେ ସଙ୍ଗେ ସମସାମୟିକ ଓ ଆଗାମୀକାଳୀନ ଜନମତକୁ ଅଭୀଷ୍ଟ ମାର୍ଗରେ ପରିଚାଳିତ କରିବା ଦିଗରେ ବିଶେଷ ଭାବରେ ସମର୍ଥ ହୋଇଛନ୍ତି । (୫୦) ରାଜନୀତିରେ ଜନମତର ନିୟନ୍ତ୍ରଣକୁ ଯଦି ମହତ୍ତ୍ୱପୂର୍ଣ୍ଣ ବୋଲି ସ୍ୱୀକାର କରାଯାଏ, ତେବେ ସାରଳା ଦାସଙ୍କୁ ଏ ଦୃଷ୍ଟିରୁ ଜଣେ ଶ୍ରେଷ୍ଠ ରାଜନୈତିକ ନେତା ରୂପେ ନିଶ୍ଚିତ ଭାବେ ସ୍ୱୀକୃତି ଦିଆଯାଇପାରିବ ।

ସାରଳାଙ୍କ ରାଜନୈତିକ ଆଦର୍ଶର ବିବେଚନାବେଳେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟର ଅବତାରଣା ଏକାନ୍ତ ଅପରିହାର୍ଯ୍ୟ । ଭାରତୀୟ ରାଜତନ୍ତ୍ରର ବ୍ୟାଖ୍ୟାକାର ଓ ପଥପ୍ରଦର୍ଶକ କୌଟିଲ୍ୟଙ୍କ ରାଜନୈତିକ ଦର୍ଶନ ଯୁଗ ଯୁଗ ଧରି ଏ ଦେଶର ଶାସନ ପ୍ରଣାଳୀକୁ ପ୍ରଭାବିତ ଓ ନିୟନ୍ତ୍ରିତ କରି ଆସିଅଛି । ଏଣୁ ଅନ୍ୟ ଯେ କୌଣସି ଭାରତୀୟ ରାଜନୀତି-ଦାର୍ଶନିକଙ୍କ ମତାମତ ବିଚାର କଲାବେଳେ କୌଟିଲ୍ୟଙ୍କ ସହିତ ସେ ସବୁର ଏକ ତୁଳନାତ୍ମକ ଅଧ୍ୟୟନ ଆବଶ୍ୟକ । ଏଣୁ ପ୍ରାଚୀନ ଭାରତୀୟ ରାଜତନ୍ତ୍ରର ପୃଷ୍ଠଭୂମିକାରେ କୌଟିଲ୍ୟଙ୍କ ଚିନ୍ତାଧାରା ସହ ପଞ୍ଚଦଶ ଶତାବ୍ଦୀର ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବଙ୍କ ସମକାଳୀନ ସାରଳା ଦାସଙ୍କ ଚିନ୍ତାଧାରାର ସାମ୍ୟ-ବୈଷମ୍ୟ ପ୍ରଦର୍ଶନ କରିବା ପାଇଁ ଏଠାରେ ପ୍ରୟାସ କରାଯାଉଛି ।

## ସାରଳା ମହାଭାରତରେ କୌଟିଲ୍ୟଙ୍କ ଆଦର୍ଶର ପ୍ରତିଫଳନ

'କୌଟିଲ୍ୟ ଅର୍ଥଶାସ୍ତ୍ରମ୍' ଗ୍ରନ୍ଥରେ ରାଜାମାନଙ୍କର ଗୁଣାବଳୀ ପ୍ରସଙ୍ଗରେ ଉଲ୍ଲେଖ ଅଛି ଯେ ରାଜା ୧୬ ଗୋଟି 'ଆଭିଗାମିକ ଗୁଣ', ୮ ଗୋଟି 'ପ୍ରଜ୍ଞା ଗୁଣ', ୪ ଗୋଟି 'ଉତ୍ସାହ ଗୁଣ' ଏବଂ ୩୨ ଗୋଟି 'ଆତ୍ମସମ୍ପତ୍ ଗୁଣ'ର ଅଧିକାରୀ ହେବା ବାଞ୍ଛନୀୟ । ଏଗୁଡିକ ହେଉଛି (୫୧)—

(୫୦) ସାହୁ, ଡ଼କ୍ଟର କୃଷ୍ଣଚରଣ—ସାରଳା ମହାଭାରତ ସଂପାଦନା ଓ ଆଲୋଚନା ମୁଖବନ୍ଧ—ପୃ. ୬୩

୫୧ । କର, ଅନନ୍ତରାମ—କୌଟିଲ୍ୟ ଅର୍ଥଶାସ୍ତ୍ରମ (ଉତ୍ତରାର୍ଦ୍ଧ) ପୃ. ୧୪୪-୧୪୮ ।

(କ) ଆଭିଗାମିକ (ରାଜଦର୍ଶନରେ ପ୍ରଭାବିତ) ଗୁଣ—୧ । ମହାକୁଳୀନ (ଶ୍ରେଷ୍ଠ ବଂଶୋଦ୍‌ଭବ), ୨ । ଦୈବସମ୍ପନ୍ନ (ପୂର୍ବାର୍ଜିତ ସୁକର୍ମସଂପନ୍ନ), ୩ । ବୁଦ୍ଧିସଂପନ୍ନ, ୪ । ସତ୍ତ୍ୱସଂପନ୍ନ (ଧୈର୍ଯ୍ୟଯୁକ୍ତ), ୫ । ବୃଦ୍ଧଦର୍ଶୀ (ଅଭିଜ୍ଞମାନଙ୍କ ମତ ଗ୍ରହଣକାରୀ), ୬ । ଧାର୍ମିକ, ୭ । ସତ୍ୟବାଦୀ, ୮ । ଅବିସଂବାଦକ (ବଚନ ଓ କର୍ମରେ ଐକ୍ୟଭାବ), ୯ । କୃତଜ୍ଞ, ୧୦ । ସ୍ଥୂଳଲକ୍ଷ୍ୟ, ୧୧ । ମହୋତ୍ସାହ, ୧୨ । ଦୃଢ଼ ନିଷ୍ଠାସ୍ତ, ୧୩ । ଦୀର୍ଘସୂତ୍ରୀ, ୧୪ । ଶକ୍ୟ ସାମନ୍ତ (ପରରାଜାଙ୍କ ଆୟତ୍ତକାରୀ), ୧୫ । ଗୁଣବାନ ପାରିଷଦବର୍ଗଯୁକ୍ତ ଓ ୧୬ । ବିନୟକାମ;

(ଖ) ପ୍ରଜ୍ଞାଗୁଣ—୧ । ଶାସ୍ତ୍ର ଶ୍ରବଣେଚ୍ଛା, ୨ । ଶବ୍ଦବୋଧ, ୩ । ଅର୍ଥବୋଧ, ୪ । ଧାରଣ (ସ୍ମରଣ) ଶକ୍ତି, ୫ । ବିସ୍ତୃତ ଜ୍ଞାନ, ୬ । ଉହ ବା ତର୍କଜ୍ଞାନ, ୭ । ଅପୋହ ବା ଦୋଷ ତ୍ୟାଗ ଓ ୮ । ତତ୍ତ୍ୱାଭିନିବେଶ;

(ଗ) ଉତ୍ସାହଗୁଣ—୧ । ଶୌର୍ଯ୍ୟ, ୨ । ଅମର୍ଷ (କ୍ଷମାରହିତ), ୩ । ଶୀଘ୍ରତା, (ତତ୍ପରତା) ଓ ୪ । ଦକ୍ଷତା (ନିପୁଣତା);

(ଘ) ଆତ୍ମସମ୍ପତ୍‌ଗୁଣ—୧ । ବାଗ୍ମୀତା, ୨ । ପ୍ରଗଲ୍‌ଭତା, ୩ । ସ୍ମୃତିମାନ୍, ୪ । ମତିମାନ୍, ୫ । ବଳବାନ, ୬ । ଉଦଗ୍ର (ଉନ୍ନତଚିତ୍ତ), ୭ । ସ୍ୱବଗ୍ରହ (ସଂଯମୀ), ୮ । କୃତଶିଳ୍ପ (ହସ୍ତୀ ଅଶ୍ୱବିଦ୍ୟା ନିପୁଣ), ୯ । ଦାଣ୍ଡନାୟୀ (ଶତ୍ରୁରାଜାବିଜୟୀ), ୧୦ । ପ୍ରତିକାରୀ (ଦୁଃସ୍ଥିତିର ପ୍ରତିକାର), ୧୧ । ହ୍ରୀମାନ୍, ୧୨ । ପ୍ରାକୃତିକ ବିପଦରେ ସାହାଯ୍ୟକାରୀ, ୧୩ । ଦୂରଦର୍ଶୀ, ୧୪ । ଦେଶକାଳପାତ୍ର ବିବେଚନାକାରୀ, ୧୫ । ସନ୍ଧିବିଗ୍ରହୀ (ଯୋଦ୍ଧା), ୧୬ । ତ୍ୟାଗବିକ୍ରମୀ (ଦାତା), ୧୮ । ସଂଯମପଣ (ପ୍ରଜାଙ୍କୁ କଷ୍ଟ ନଦେଇ ରାଜକୋଷ ରକ୍ଷା), ୧୯ । ପରଛିଦ୍ର ବିଭାଗୀ (ଶତ୍ରୁଛିଦ୍ର ସନ୍ଧାନୀ), ୨୦ । ସଂବୃତ (ଆତ୍ମଗୋପନକାରୀ), ୨୧ । ଅଦୀନାଭିହାସୀ (ଦୀନଜନପ୍ରତି ଉପହାସବର୍ଜନଶୀଳତା), ୨୨ । ଜିହ୍ମଭ୍ରୂକୁଟୀକ୍ଷୀଣ (ସୌମ୍ୟବକ୍ତ୍ର), ୨୩ । କାମଶୂନ୍ୟ, ୨୪ । କ୍ରୋଧଶୂନ୍ୟ, ୨୫ । ଲୋଭଶୂନ୍ୟ, ୨୬ । ସ୍ତମ୍ଭ (ଗର୍ବ) ଶୂନ୍ୟ, ୨୭ । ଚପଳତାଶୂନ୍ୟ, ୨୮ । ଉପତାପ (ପ୍ରଜାଦ୍ରୋହ-ଶୂନ୍ୟ), ୨୯ । ପୈଶୁନ୍ୟ ଶୂନ୍ୟ (ସଦସ୍ତ), ୩୦ । ଶୁକ୍ଲ (ପ୍ରିୟଭାଷୀ), ୩୧ । ସ୍ମିତଭାଷୀ ଓ ୩୨ । ବୃଦ୍ଧୋପଦେଶାଚାରୀ (ବୃଦ୍ଧ ଓ ଅଭିଜ୍ଞଜନଙ୍କ ଉପଦେଶାନୁଯାୟୀ କର୍ମକାରୀ) ।

କିନ୍ତୁ ସାରଳା ଦାସ କୌଣସି ରାଜନୈତିକ ଶାସ୍ତ୍ର ପ୍ରଣୟନ କରୁନଥିବା ଯୋଗୁଁ ବିଭିନ୍ନ ଦୃଷ୍ଟିକୋଣରୁ ରାଜଗୁଣଗୁଡ଼ିକର ବିଭାଗୀକରଣ କରିନାହାନ୍ତି,

ଭଳି ପ୍ରତ୍ୟେକର ବ୍ୟାଖ୍ୟା ବା ଉଦାହରଣ ପ୍ରସ୍ତୁତ ପାଇଁ ଚେଷ୍ଟିତ ହୋଇନାହାନ୍ତି । 'ବତିଶ ଗୁଣରେ ରାଜା, ତେତିଶ ଗୁଣେ ମନ୍ତ୍ରୀ'—ଏହି ମର୍ମରେ ସାରଳା ମହାଭାରତରେ ଗୋଟିଏ ସ୍ଥାନରେ (୫୨) ଯାହା ଉଲ୍ଲେଖ ଅଛି, ସେଥିରୁ ମନେହୁଏ ରାଜା ଅପେକ୍ଷା ମନ୍ତ୍ରୀ ଅଧିକ ଗୁଣବାନ୍ ହେବା ଉଚିତ ବୋଲି ପ୍ରତିପାଦନ କରିବା ଲକ୍ଷ୍ୟରେ ହିଁ ସାରଳା ଏ ପ୍ରକାର ଏକ ଉକ୍ତି ପ୍ରଦାନ କରିଛନ୍ତି । ତେବେ, ସାରଳାଙ୍କ ମହାଭାରତରୁ ରାଜାମାନଙ୍କ ବତିଶ ଅପେକ୍ଷା ଅଧିକ ଗୁଣର ସନ୍ଧାନ କରାଯାଇପାରେ । (୫୩) ଯଥା—ନ୍ୟାୟରେ ପ୍ରଜାପାଳନ; ପ୍ରଜାଙ୍କ କଷ୍ଟ ନିବାରଣ; ଦୋଷୀ ପ୍ରତି ଉଚିତ ଦଣ୍ଡବିଧାନ, ନିର୍ଦ୍ଦୋଷିକୁ କ୍ଷମାଦାନ, ଦେବତା, ବ୍ରାହ୍ମଣ ଓ ଗୁଣିଜନଙ୍କୁ ଦାନ; ତୀର୍ଥସ୍ଥାନରେ ଦାନ; ହରିଦ୍ୱାରେ ଦାନ; ଯଜ୍ଞାନୁଷ୍ଠାନ; ଦେବତା, ବ୍ରାହ୍ମଣଙ୍କ ପୂଜା; ବ୍ରାହ୍ମଣ, କୃଷକ, ଗୁଣୀଜନ ଓ ଗୋ-ଜାତି ପ୍ରତି ଦୟା ପ୍ରଦର୍ଶନ; ଗୋପାଳ ଓ ସୈନିକଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ପ୍ରଦାନ; ଗୋଧନ ଓ ଅଶ୍ୱ,ଗଜାଦିର ସୁରକ୍ଷା; ଗୋଚର ବ୍ୟବସ୍ଥା; ଚର ଓ ଗୁପ୍ତଚର ଦ୍ୱାରା ସଂବାଦ ସଂଗ୍ରହ; ବିଦେଶୀ ଦୂତ ପ୍ରତି ଅବିଶ୍ୱାସ; ସ୍ତ୍ରୀ ଜାତିପ୍ରତି ଅବିଶ୍ୱାସ; ପରଦାର ଓ ପରଦ୍ରବ୍ୟ ପ୍ରତି ଅନାସକ୍ତି; ଲୋଭ ଓ ସଂଚୟ ମନୋଭାବ ବର୍ଜନ; କୁସଙ୍ଗ, କୁଶଯ୍ୟା (ବେଶ୍ୟା ସଙ୍ଗ) ଓ କୁତୀର୍ଥ ବର୍ଜନ; ସନ୍ଧିସ୍ଥାପନ; ଶରଣରକ୍ଷଣ, ସଜ୍ଜନପାଳନ ଓ ତପୋଧନ ଉଦ୍ଧାରଣ; ଜିତେନ୍ଦ୍ରିୟ, ବିଜିତ ଆହାର୍ଯ୍ୟ, ଶାସ୍ତ୍ରଜ୍ଞ ଓ ଶାସ୍ତ୍ରବିଦ୍ୟା ନିପୁଣ; କ୍ରୋଧ ଓ ଓ ଅଭିମାନଶୂନ୍ୟ; ପ୍ରତାପୀ (ବଳବାନ୍); ମୃଗୟାକାର୍ଯ୍ୟ, ମନ୍ତ୍ରୀଙ୍କ ପରାମର୍ଶ ଗ୍ରହଣ; ଶତ୍ରୁନିଧନ; ଦୁଷ୍ଟ ନିବାରଣ; ସଂଗ୍ରାମ ନିରୋଧ, ଅନ୍ଧାର୍ଯ୍ୟ ବିଜେକାର୍ଯ୍ୟ ଓ ସନ୍ତୋଷପୂର୍ବକ ରାଜସ୍ୱ ଆଦାୟକାର୍ଯ୍ୟ; ପ୍ରଜାଙ୍କ ଗୁହାରି ଶ୍ରବଣକାର୍ଯ୍ୟ; ଭବିଷ୍ୟ ଜ୍ଞାନସଂପନ୍ନ; ମନ୍ତ୍ରୀଙ୍କୁ ସୀମିତ କ୍ଷମତା ପ୍ରଦାନ; ଧାର୍ମିକଜନଙ୍କ ପାଇଁ ପୁରାଣ ପଠନ ବ୍ୟବସ୍ଥା ଓ ଏକାଦଶୀ ବ୍ରତ ବିଧାନ ଇତ୍ୟାଦି ।

ଉପର୍ଯ୍ୟୁକ୍ତ ତୁଳନାତ୍ମକ ବିଚାରରୁ ଜଣାଯାଏ ଯେ ସାରଳା ପାରମ୍ପରିକ ରାଜାମାନଙ୍କର ଅମର୍ଷ (କ୍ଷମାରହିତ), ସବୃତ (ଆତ୍ମଗୋପନକାର୍ଯ୍ୟ), ସ୍ଥୂଳଲକ୍ଷ୍ୟ, ଶତ୍ରୁଚ୍ଛିଦ୍ର ସନ୍ଧାନ, ଜିହ୍ମବୃତ୍ତି, କୂଟୀକ୍ଷୀଣାଦି ଗୁଣାବଳୀ ଗ୍ରହଣ କରିନାହାନ୍ତି । ଅପରନ୍ତୁ, ଦାନ, ଧର୍ମ, ଦେବାର୍ଚ୍ଚନ, ଯଜ୍ଞାନୁଷ୍ଠାନ, ସଂଚୟ ମନୋଭାବ ବର୍ଜନ, ଗୋ-ପାଳନ, ଗୁଣୀଜନ ଆଦର ପ୍ରଭୃତି କେତେକ ଯୁଗୋପଯୋଗୀ ସ୍ୱତନ୍ତ୍ର ଗୁଣର ସୂଚନା ଦେଇଛନ୍ତି । ଏହା ବ୍ୟତୀତ, ସାରଳା ଦାସ କୌଟିଲ୍ୟଙ୍କ ଦ୍ୱାରା ବିଚୃତ ବିସ୍ତୃତ

(୫୨) ପୂର୍ବବର୍ତ୍ତୀ ପୃ. ୧୯୧ ଦ୍ରଷ୍ଟବ୍ୟ ।

(୫୩) ସା: ମ: ଭା: (ରା) ଆଦ୍ୟ-ପୃ. ୧୦, ୮୮-୮୯, ୧୩୧, ୨୦୭ ଓ ଶାନ୍ତି—ପୃ. ୧୨

ଦଣ୍ଡବିଧାନ ପଦ୍ଧତି, ଦୁର୍ଗନିର୍ମାଣ ପଦ୍ଧତି, ଶତ୍ରୁଭେଦ, ଆସନ, ଆଶ୍ରୟ ଓ ମନ୍ତ୍ରୌଷଧି ପ୍ରୟୋଗ ପ୍ରଭୃତି ଉପରେ ଅଧିକ ଗୁରୁତ୍ୱ ଦେଇନାହାନ୍ତି । କୌଟିଲ୍ୟ ଓ ତାଙ୍କ ପୂର୍ବବର୍ତ୍ତୀ ମନୁ, ପରାଶର, ବୃହସ୍ପତି, ଶୁକ୍ର ପ୍ରମୁଖଙ୍କ ମୁଖ୍ୟ ରାଜନୈତିକ ଆଦର୍ଶ ଥିଲା ପ୍ରାଚୀନ ସାର୍ବଭୌମ ରାଜତନ୍ତ୍ରର ସୁଦୃଢ଼ୀକରଣ, ଦେଶୋଦ୍ଧାର ଓ ଦେଶରକ୍ଷା ତଥା ରାଜା ଓ ରାଜ୍ୟର ସୁରକ୍ଷା ବିଧାନ (୫୪); କିନ୍ତୁ ସାରଳା ଦାସଙ୍କ ମୁଖ୍ୟ ଲକ୍ଷ୍ୟ ହେଲା ପ୍ରଜାକଲ୍ୟାଣ, କୃଷି ଓ କୃଷକର ଉନ୍ନତି ବିଧାନ, କବି ଓ ଜ୍ଞାନୀଜନଙ୍କ ହିତସାଧନ ତଥା ସୁସ୍ଥ ଓ ଆଦର୍ଶ ସମାଜଗଠନ । ତେବେ, ଅର୍ଥଶାସ୍ତ୍ରର ପ୍ରଥମ-ଅଧିକରଣ, ଷଷ୍ଠ ଅଧ୍ୟାୟ, ତୃତୀୟ ପ୍ରକରଣରେ ଅରିଷଡ଼ବର୍ଗ ତ୍ୟାଗ ପ୍ରସଙ୍ଗରେ ରାଜା ଦଣ୍ଡକ, ଜନ୍ମେଜୟ, ପୁରୁରବା, ରାବଣ, ଦୁର୍ଯ୍ୟୋଧନ, ଡମ୍ଭୋଦ୍‌ଭବ ଓ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଯଥାକ୍ରମେ ବ୍ରାହ୍ମଣ କନ୍ୟାହରଣ, ବ୍ରାହ୍ମଣଙ୍କ ପ୍ରତି ଅନ୍ୟାୟାଚରଣ, ପ୍ରଜାଙ୍କ ଧନ ଶୋଷଣ ଓ ବ୍ରାହ୍ମଣଙ୍କ ଯଜ୍ଞନଷ୍ଟ, ପରଦାର ଅପହରଣ, ରାଜ୍ୟାଂଶ ପ୍ରତ୍ୟାଖ୍ୟାନ ଏବଂ ରାଜମଦମତ୍ତତା ଯୋଗୁଁ ବିନାଶପ୍ରାପ୍ତ ହେବାର ଯେଉଁ ବିବରଣୀ ପ୍ରଦତ୍ତ ହୋଇଛି (୫୫) ସାରଳା ମହାଭାରତରେ ସେହି ଆଦର୍ଶସମୂହର ପ୍ରତିଫଳନ ଘଟିଥିବା ସୁସ୍ପଷ୍ଟ ।

କୌଟିଲ୍ୟ ମନ୍ତ୍ରୀ ବା ଅମାତ୍ୟ ନିଯୁକ୍ତି କ୍ଷେତ୍ରରେ ଦେଶାତ୍ମବୋଧ ବା ଜାତୀୟତା, ବଂଶଗୌରବ, ବାଗ୍ମିତା, ପ୍ରତ୍ୟୁତ୍ପନ୍ନମତିତା, ଧୈର୍ଯ୍ୟ, ସହିଷ୍ଣୁତା, ଶିଳ୍ପକୁଶଳ, ଅର୍ଥଶାସ୍ତ୍ରାଭିଜ୍ଞତା ଓ ନବନବୋନ୍ମେଷଶାଳିନୀ ପ୍ରଜ୍ଞା ପ୍ରଭୃତି ତେତିଶ କୋଟି ଗୁଣ ବା ଯୋଗ୍ୟତା ଉପରେ ଯେଉଁଳି ଗୁରୁତ୍ୱ ଆରୋପ କରିଥିଲେ, ସାରଳା ତାର ସୂଚନା ଦେଇଥିଲେ ହେଁ ମନ୍ତ୍ରିଙ୍କ ବିଶ୍ୱସ୍ତତା ବା ଆନୁଗତ୍ୟ ପରୀକ୍ଷା ନିମନ୍ତେ ଧର୍ମୋପଧା, କାମୋପଧା ଓ ଭୟୋପଧା ଆଦି କଠୋର ପରୀକ୍ଷା ପଦ୍ଧତିର କୌଣସି ଉଲ୍ଲେଖ କରିନାହାନ୍ତି । (୫୬) ଯେ ରାଜତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ମନ୍ତ୍ରୀ ତଥା ପାରିଷଦବର୍ଗଙ୍କର ଗୁରୁତ୍ୱ ଉପଲବ୍‌ଧି କରି କେବଳ ସୂଚନା ଦେଇଛନ୍ତି ଯେ ରାଜା ସୁଚତୁର ବ୍ୟକ୍ତିଙ୍କୁ ମନ୍ତ୍ରୀରୂପେ ନିଯୁକ୍ତ କରି ତାଙ୍କ ଉପରେ କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟ (ସମସ୍ତ ରାଜ୍ୟ ଭାର ନା ଅଧିକାର ନୁହେଁ)

---

(୫୪) କୌଟିଲ୍ୟ ଅର୍ଥଶାସ୍ତ୍ରମ୍—(ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୬୩) ପ୍ରସ୍ତାବନା ପୃ. ୪ ରୁ ୨୪ ।

(୫୫) କୌଟିଲ୍ୟ ଅର୍ଥଶାସ୍ତ୍ରମ୍—(ପୂର୍ବୋକ୍ତ) ପୃ. ୩୭-୩୮ ।

(୫୬) କୌଟିଲ୍ୟ ଅର୍ଥଶାସ୍ତ୍ରମ୍—୧ମ ଅଧିକରଣ, ୯ମ ଓ ୧୦ମ ଅଧ୍ୟାୟ ।

ନ୍ୟସ୍ତ କରିବା ଉଚିତ । (୫୭) ଏହା ବ୍ୟତୀତ, କର ଆଦାୟ, ମାପ ଓ ଓଜନ ନିର୍ଦ୍ଧାରଣ, ମୁନାଫାଖୋର ପ୍ରବୃତ୍ତି ନିବାରଣ ତଥା ଦରଦାମ ନିୟନ୍ତ୍ରଣ ପ୍ରଭୃତି ବିଷୟରେ ସାରଳା ଦାସ କୌଟିଲ୍ୟଙ୍କ ବିସ୍ତୃତ ଆଲୋଚନା ପଦ୍ଧତିର ଅନୁସରଣ କରି ନଥିଲେ ମଧ୍ୟ ଅନୁରୂପ ମତ ପୋଷଣ କରିଛନ୍ତି । ଏଠାରେ ସ୍ମରଣଯୋଗ୍ୟ ଯେ ସାରଳା କୌଟିଲ୍ୟ ବା ମେକ୍ୟାଭେଲିଙ୍କ ଭଳି ଚରମ କୂଟନୈତିକ ଆଦର୍ଶର ଦୃଢ଼ ସମର୍ଥକ ନଥିଲେ ମଧ୍ୟ ଶାସନ ପରିଚାଳନା କ୍ଷେତ୍ରରେ ଏହାର ଆବଶ୍ୟକତାକୁ ସଂପୂର୍ଣ୍ଣ ଭାବେ ପ୍ରତ୍ୟାଖ୍ୟାନ କରିନାହାନ୍ତି । (ତୃତୀୟ ପରିଚ୍ଛେଦ) । ସଂକ୍ଷେପରେ ପ୍ରକାଶ କଲେ, ସାରଳା ଦାସ ସୀମିତ କୂଟନୀତିର ପକ୍ଷପାତୀ ଥିଲେ ବୋଲି କୁହାଯାଇପାରେ ।

## ସାରଳା ମହାଭାରତରେ ବୈଦିକ ଆଦର୍ଶର ରୂପାୟନ

ସର୍ବୋପରି, ସାରଳାଙ୍କ ସମକାଳୀନ ସମାଜରେ ବିବାହ ପ୍ରଥା, ଜାତିଭେଦ ବିଚାର ଓ ଧର୍ମଧାରଣା ଯେଉଁଭଳି ମୂଳ ବୈଦିକ ଆଦର୍ଶ ଠାରୁ ଦୂରେଇ ଯାଇ ଏକ ନୂତନ ଓ ବିକୃତ ରୂପ ପରିଗ୍ରହ କରିଥିଲା, ସାରଳା ଦାସ ସେ ସବୁକୁ ପରିଶୋଧିତ ଓ ପରିମାର୍ଜିତ କରି ମୂଳ ବୈଦିକ ଆଦର୍ଶର ଦୃଢ଼ୀକରଣ ଓ ପୁଷ୍ଟିସାଧନ ଦିଗରେ ପ୍ରୟାସୀ ହୋଇଅଛନ୍ତି । ଆଦର୍ଶ ଶିକ୍ଷା ପ୍ରସାର (୫୮), ଏକପତ୍ନୀ ବିବାହ (୫୯), ବାସଗୃହ ନିର୍ମାଣ (୬୦), ଅନ୍ନଦାନ ଓ ଅତିଥି ସତ୍କାର (୬୧), ଯଜ୍ଞାନୁଷ୍ଠାନ (୬୨), ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦନ (୬୩), କର୍ମଭିତ୍ତିକ ଶ୍ରେଣୀ ବିଭାଜନ (୬୪), ପତିତ

---

(୫୭) ମନ୍ତ୍ରୀ ପଣେ ସୁଚତୁର ଲୋକଙ୍କୁ ରଖିବୁ
ତାଙ୍କ ପରାମର୍ଶେ ଯେତେ କାର୍ଯ୍ୟ କରୁଥିବୁ ।
ରାଜ୍ୟ ଭାର ସମର୍ପିବୁ ମନ୍ତ୍ରୀର ହସ୍ତରେ
ସମୁଦାୟ ଅଧିକାର ନ ଦେବୁ ତାହାରେ । (ସା: ମ. ଭା: (ସା) ଶାନ୍ତି-୧୨)

(୫୮) ଋକ୍‌ବେଦ-୧ମ ମଣ୍ଡଳ, ୧୮୮ ସୂକ୍ତ; ୩ୟ ମଣ୍ଡଳ, ୭୨ ସୂକ୍ତ; ୫ମ ମଣ୍ଡଳ, ୮୨ ସୂକ୍ତ; ୧୦ମ ମଣ୍ଡଳ ୭୧ ସୂକ୍ତ; ଯଜୁର୍ବେଦ-୧ମ ଅଧ୍ୟାୟ ୧୮ଶ ମନ୍ତ୍ର, ୭ମ ଅଧ୍ୟାୟ ୧୪ଶ ଓ ୨୫ତମ ମନ୍ତ୍ର, ୪୦ଶ ଅଧ୍ୟାୟ ୧୪ଶ ମନ୍ତ୍ର ।

(୫୯) ଋକ୍‌ବେଦ-୧୦।୮୫।୪୭, ଅର୍ଥବ-୭।୭୦, ୧୪।୧ ଓ ୧୪।୨

(୬୦) ଅଥର୍ବ ବେଦ ୩ୟ ଅଧ୍ୟାୟ ୧୨ ସୂକ୍ତ ।

(୬୧) ଅଥର୍ବ-୯।୬, ୧୫।୧୧, ଋକ୍‌ବେଦ-୧୦।୧୧୭

(୬୨) ଋକ୍‌ବେଦ-୧୦।୧୩ ଓ ୧୮, ଯଜୁ-୩।୧, ୩।୫, ୩।୨।୭ ।

(୬୩) ଋକ୍‌ବେଦ-୧୦।୧୩, ୧୪ ଓ ୧୮ ସୂକ୍ତ ।

(୬୪) ଋକ୍‌ବେଦ-୪।୫୭, ୯।୧୧୨, ଅଥର୍ବ-୩।୧୫

ଉଦ୍ଧାରଣ (୬୫), କୃଷି ଉନ୍ନୟନ (୬୬), ଗୋପାଳନ ଓ ପଶୁ ପ୍ରତି ଦୟା (୬୭), ବାଣିଜ୍ୟ ବିକାଶ (୬୮), ଶୁଳ୍କ ନିର୍ଦ୍ଧାରଣ (୬୯), ଦ୍ୟୂତକ୍ରୀଡ଼ା ବର୍ଜନ (୭୦), ହିଂସ୍ରଜନ୍ତୁ ଓ ଶତ୍ରୁ ଉପଦ୍ରବରୁ ରକ୍ଷା (୭୧), ସୀମିତ ଯୁଦ୍ଧ ପ୍ରସ୍ତୁତି (୭୨), ଶାନ୍ତିପୂର୍ଣ୍ଣ ସମାଜ ପ୍ରତିଷ୍ଠା (୭୩) ତଥା ପ୍ରଜାନୁରଞ୍ଜନ ବ୍ରତପାଳନ (୭୪) ପ୍ରଭୃତି ପ୍ରାଚୀନ ବୈଦିକ ଆଦର୍ଶ ସମୂହ (୭୫) ସାରଳା ମହାଭାରତରେ ଛନ୍ଦେ ଛନ୍ଦେ ରୂପାୟିତ ହୋଇଛି, ଏଥିରେ ଦ୍ୱିଧାର ଅବକାଶ ନାହିଁ । କେବଳ ଏତିକି ନୁହେଁ, ସାରଳାଙ୍କ ରଚନାରେ ବିଭିନ୍ନ ପ୍ରାଚୀନ ବୈଦିକ ଆଦର୍ଶ ଅଧିକ ଯୁଗୋପଯୋଗୀ ଓ ବାସ୍ତବଧର୍ମୀ ହୋଇପାରିଥିବା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ସାରଳା କେବଳ କେତେକ ପାରଂପରିକ ଆଦର୍ଶକୁ ଅନ୍ଧଭାବେ ଗ୍ରହଣ କରି ନେଇ ନାହାନ୍ତି, ଅନେକ କ୍ଷେତ୍ରରେ ପରଂପରାକୁ ପ୍ରତ୍ୟାଖ୍ୟାନ କରି ବହୁ ନୂଆ ମୂଲ୍ୟବୋଧ ତଥା ଗଭୀର ପୂର୍ବଦୃଷ୍ଟିର ପରିଚୟ ମଧ୍ୟ ଦେଇଛନ୍ତି । ଏଠାରେ ତାଙ୍କ ଆଦର୍ଶସମୂହର ସ୍ୱରୂପ ଏକ ସଂକ୍ଷିପ୍ତ ସାରଣୀରେ ପ୍ରଦାନ କରାଗଲା ।

---

(୬୫) ଯଜୁର୍ବେଦ-୮।୪୮ (୬୬) ଋକ୍‌ବେଦ-୪।୫୭, ଅଥର୍ବ-୩।୧୭ ଓ ୨୫

(୬୭) ଋକ୍-୪।୫୭, ଯଜୁଃ-୬।୧୨, ୨୩।୪୮, ୩୦।୧୧ ଅଥର୍ବ-୯।୭, ୧୦।୧୦, ୧୧।୧, ୧୨।୪ ଓ ୧୭।୧

(୬୮) ଋକ୍-୩।୧୮।୩, ୬।୫୩।୫, ୮।୬୪।୨, ୧୦।୮୧।୨, ଅଥର୍ବ-୩।୧୫, ୫।୧୧

(୬୯) ଅଥର୍ବ-୩।୨୪, ୧୮।୨ (୭୦) ଋକ୍-୧୦।୩୪।୧୩

(୭୧) ଅଥର୍ବ-୪।୨୨, ୮।୩, ୧୨।୧ ଓ ୧୩।୧

(୭୨) ଋକ୍-୬।୪୬।୩, ଯଜୁଃ-୧୧।୨୧, ଅଥର୍ବ ୫।୨୧ ଓ ୬।୧୩।୩

(୭୩) ଋକ-୫।୫୧।୧୫, ଯଜୁଃ-୩୬।୧୧, ୧୭, ୨୨ ଅଥର୍ବ-୧।୩୧ ୧।୪୪

(୭୪) ଋକ୍-୧।୭।୬, ୫।୨୯।୧୦, ୭।୩୪।୧୭ ଯଜୁଃ-୪।୧୩, ୧୨।୨୨, ୧୩।୫୪-୫୫, ୪୦।୧୭ ଅଥର୍ବ-୩।୧।୨, ୫।୧୮।୧, ୫।୧୯।୬-୮, ୫।୨୯।୧୦

(୭୫) ମିଶ୍ର, ଡ଼: ଗଣେଶ୍ୱର—ବୈଦିକ ଧର୍ମଚେତନା ଏକ ଦାର୍ଶନିକ ବିଚାର (ସନ୍ତୋଷ ପବ୍ଲିକେଶନ୍ସ, କଟକ, ୧୯୮୫) ପୃ. ୨୩-୨୪, ୩୦-୩୫, ୬୨-୬୭, ୭୧-୭୫ ଓ ୮୪-୮୫

# ସାରଳାଙ୍କ ସାମଗ୍ରିକ ରାଜନୈତିକ ଆଦର୍ଶର ସ୍ୱରୂପ

| ପାରମ୍ପରିକ ପରଂପରା | ଆଦ୍ଭୁତ ପରଂପରା | ପୁରୋଦୃଷ୍ଟି |
|---|---|---|
| ବଂଶରକ୍ଷା | ବଂଶର ସୁନାମ ରକ୍ଷା | ସାମୂହିକ ଗଣକଲ୍ୟାଣ |
| ବଂଶାନୁକ୍ରମ ରାଜତ୍ୱ | ଗଣମତ ପ୍ରତି ମାନ୍ୟତା | ନିଃସ୍ୱଶ୍ରେଣୀର ଅଭ୍ୟୁତ୍ଥାନ |
| ନିରଙ୍କୁଶ ଏକଛତ୍ର ଶାସନ | ହିତୈଷୀ ଏକଛତ୍ରବାଦ | ଅତ୍ୟାଚାରୀ ଶାସନର ବିଲୋପ |
| ପ୍ରଜାପୀଡ଼ନ ଓ ଶୋଷଣ | ରାଜାମନ୍ତ୍ରୀଙ୍କ ଯୋଗ୍ୟତା | ପ୍ରତିରୋଧ ଓ ସନ୍ତୁଳନ ନୀତି |
| ଧର୍ମାନ୍ଧ ଶାସନ | ଗୁଣୀଜନ ପ୍ରତି ସମ୍ମାନ | ଶାସିତଙ୍କ ସନ୍ତୋଷବିଧାନ |
| ବିବିଧ କଠୋର ଦଣ୍ଡବ୍ୟବସ୍ଥା | ସୀମିତ ଯୁଦ୍ଧାନୁଷ୍ଠାନ | ମଧ୍ୟବର୍ତ୍ତୀ ସରକାର ଗଠନ |
| ରାଜ୍ୟବିସ୍ତାରଜନିତ ଯୁଦ୍ଧ | ମାର୍ଜିତ କୂଟନୀତି | ସଂଘୀୟ ରାଜ୍ୟ କଳ୍ପନା |
| ବହୁବିଧ ଦୁର୍ଗ ନିର୍ମାଣ | ନୈତିକତା ରକ୍ଷା | ମିଳିତ ରାଜ୍ୟଗୋଷ୍ଠୀ ଭାବନା |
| ଚରମ କୂଟନୀତି | କୃଷି ଓ କୃଷକର ଉନ୍ନତି | ଜାତୀୟତାବାଦ |
| କ୍ଷମାରହିତ ଗୁଣ | ଗୋଜାତି ଓ ଗୋଚର ଉନ୍ନତି | ଆନ୍ତର୍ଜାତୀୟ ସହାବସ୍ଥାନ |
| ଶତ୍ରୁ ଛିଦ୍ର ସନ୍ଧାନ | ଉଚିତ ରାଜସ୍ୱ ଧାର୍ଯ୍ୟ | ଶାନ୍ତି, ମୈତ୍ରୀ ଓ ସଂହତି |
| ଅହଙ୍କାର ମନୋଭାବ | ହିଂସ୍ରଜନ୍ତୁ ଉପଦ୍ରବ ନିବାରଣ | ମାନବବାଦ |
| ଆତ୍ମଗୋପନ ନୀତି | ଶତ୍ରୁ ଆକ୍ରମଣରୁ ରକ୍ଷା | ନାଗରିକ ଅଧିକାର |
| ବିଳାସ ନିମିତ୍ତ ମୃଗୟା | ଗୁପ୍ତଚର ବ୍ୟବସ୍ଥା | ସାମାଜିକ ସାମ୍ୟଭାବନା |
| ବାଲ୍ୟ ବିବାହ | ବୃତ୍ତିଭିତ୍ତିକ କର୍ମ ବିଭାଜନ | ବର୍ଣ୍ଣଭେଦ ବିରୋଧ |

**ପରିତ୍ୟକ୍ତ ପରଂପରା**

ବହୁପତ୍ନୀ ବିବାହ
ବହୁନାରୀ ଉପଭୋଗ
ବାରାଙ୍ଗନା ନୃତ୍ୟ
ଖେମଟା ନାଚ
ପଶାଖେଳ
କାଦମ୍ବରୀ ପାନ
ସତୀଦାହ ପ୍ରଥା
ତାନ୍ତ୍ରିକ ପ୍ରଥା
ଚେରମୂଳ ଔଷଧ
ଅଲୌକିକତା ଓ ଆଧିଦୈବିକତା
ସାମୁଦ୍ରିକ ବ୍ୟବସାୟ
ବୈଦେଶିକ ବାଣିଜ୍ୟ
ବନ୍ୟଜନ୍ତୁ ଶିକାର

**ଆଦୃତ ପରଂପରା**

ବ୍ୟକ୍ତିଗତ ସମ୍ପତ୍ତିର ସୁରକ୍ଷା
ବିଶ୍ୱଭ୍ରାତୃତ୍ୱ
ଅହିଂସା, ସଂଯମ ଓ ଶୃଙ୍ଖଳା
ତୀର୍ଥାଟନ ଓ ଯଜ୍ଞାନୁଷ୍ଠାନ
ଦାନ, ଧର୍ମ ଓ ଦେବାର୍ଚ୍ଚନା
ସାକାର ଓ ନିରାକାର ଉପାସନା
ପୁରାଣ ପାଠ ଓ ଓଷାବ୍ରତ ପାଳନ
ଜ୍ୟୋତିଷ ଓ ଶକୁନଶାସ୍ତ୍ରବିଶ୍ୱାସ
ପିତୃଶ୍ରାଦ୍ଧ ଓ ଅତିଥି ସତ୍କାର
ଗୁରୁ ଦକ୍ଷିଣା ପ୍ରଦାନ
ବୃକ୍ଷରୋପଣ
କୂପ, ପୁଷ୍କରିଣୀ ଖନନ
ଜଳଛତ୍ର ଓ ଅନ୍ନଦାନ
ନାରୀଜାତି ପ୍ରତି ସମ୍ମାନ

**ପୁରୋଦୃଷ୍ଟି**

ସର୍ବଧର୍ମ ସମନ୍ୱୟ ଚେତନା
ଆଇନ ଓ ନ୍ୟାୟ ପ୍ରତି ସମ୍ମାନ
ସଘନ ଗୋପାଳନ
ସାମାଜିକ ବନୀକରଣ
ଜଳସେଚନ ବ୍ୟବସ୍ଥା
ଯୁବତୀ ବିବାହ
ପରିବାର ନିୟନ୍ତ୍ରଣ
ବାସଗୃହ ଯୋଗାଣ
ଅନୌପଚାରିକ ଶିକ୍ଷା
ଉନ୍ନତ ଚିକିତ୍ସା ବ୍ୟବସ୍ଥା
ବାଣିଜ୍ୟ ବ୍ୟବସାୟ ନିୟନ୍ତ୍ରଣ
ମାପ ଓଜନ ନିର୍ଦ୍ଧାରଣ
ଶିଳ୍ପ ବିକାଶ
ଉନ୍ନତ ଗମନାଗମନ ବ୍ୟବସ୍ଥା
ନିଶା ନିବାରଣ
ଜୀବଜନ୍ତୁଙ୍କ ପ୍ରତି ଦୟା

•   ଏସବୁ ଦୃଷ୍ଟିରୁ, ସାରଳା ମହାଭାରତକୁ କେବଳ ଚକ୍ରବର୍ତ୍ତୀଙ୍କ କାହାଣୀ ପରିପୂର୍ଣ୍ଣ ଉପନ୍ୟାସ, ଆଧ୍ୟାତ୍ମିକତତ୍ତ୍ୱ ସମ୍ବଳିତ ଧର୍ମଶାସ୍ତ୍ର, ବିଭିନ୍ନ ଲୋକାଚାର ଓ ଲୋକ ସଂସ୍କୃତିସମ୍ପନ୍ନ ସମାଜବିଜ୍ଞାନ କିମ୍ବା ଐତିହାସିକ, ଭୌଗୋଳିକ ଓ ଆର୍ଥନୀତିକ ଆଲୋଚନା ଗ୍ରନ୍ଥ ରୂପେ ଗ୍ରହଣ କରାଗଲେ ଯଥେଷ୍ଟ ହେବ ନାହିଁ; ଏହା ବିଭିନ୍ନ ରାଜନୈତିକ ତତ୍ତ୍ୱ ପରିପୂର୍ଣ୍ଣ ଏକ ପୂର୍ଣ୍ଣାଙ୍ଗ ଓ ପ୍ରଭାବଶାଳୀ ରାଜନୀତି-ଦର୍ଶନଶାସ୍ତ୍ର ମଧ୍ୟ । ପୁଣି, ଏହା ସ୍ପଷ୍ଟ ଉଲ୍ଲେଖଯୋଗ୍ୟ ଯେ ସାରଳାଙ୍କ ରାଜନୈତିକ ଆଦର୍ଶାବଳୀ ସ୍ଥାନ ଓ କାଳର ପରିସୀମା ମଧ୍ୟରେ ଆବଦ୍ଧ ନୁହେଁ; ଏହା ସୁଦୂରପ୍ରସାରୀ ଓ ସର୍ବକାଳ-ବ୍ୟାପୀ । ସାରଳା ମହାଭାରତ କେବଳ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦାର୍ଶନିକମାନଙ୍କର ରାଜନୈତିକ ଆଦର୍ଶ ସମୂହର ଏକ ସମନ୍ୱିତ ଆଲେଖ୍ୟ ନୁହେଁ, ଅଧିକନ୍ତୁ ଅତୀତ ଓ ଭବିଷ୍ୟତର ରାଜନୈତିକ ଚେତନା ସ୍ରୋତର ଏକ ସଂଯୋଗ ସେତୁ ମଧ୍ୟ । (ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ତଥା ପ୍ରାଚୀନ ଓ ଅଧୁନାତନ ଚିନ୍ତାନାୟକମାନଙ୍କର ବିଭିନ୍ନ ରାଜନୈତିକ ମତବାଦ କିଭଳି ସାରଳା ମହାଭାରତରେ ସମନ୍ୱିତ ରୂପ ଲାଭ କରିଛି, ତାର ବିଶେଷ ସୂଚନା ପରିଶିଷ୍ଟରେ ପ୍ରଦତ୍ତ ହୋଇଛି ।)

ସାରଳାଙ୍କ ରାଜନୈତିକ ଦୃଷ୍ଟିଭଙ୍ଗୀର ବିଶ୍ଳେଷଣରୁ ସ୍ପଷ୍ଟ ଅବଧାରିତ ହୁଏ ଯେ ତାଙ୍କ ନୈତିକତାପୂର୍ଣ୍ଣ ଗଣକଲ୍ୟାଣଧର୍ମୀ ବୈପ୍ଳବିକ ଶାସନାଦର୍ଶ କେବଳ ବୈଦିକ ବା ସ୍ମୃତିଶାସ୍ତ୍ରୀୟ ଆଦର୍ଶର ପରିମାର୍ଜିତ ରୂପ ନୁହେଁ କିମ୍ବା ବୃହସ୍ପତି, ଶୁକ୍ରାଚାର୍ଯ୍ୟ ବା କୌଟିଲ୍ୟଙ୍କ ନୀତିର ସମୁନ୍ନତ ବିଚାରଧାରା ନୁହେଁ, ତଦୁପରି ତାହା ବିଶ୍ୱର ଅଧିକାଂଶ ରାଜନୈତିକ ତତ୍ତ୍ୱର ଅନୁରୂପ ଭଳି ମନେ ହୁଏ । ତାଙ୍କ ରାଜ-ନୈତିକ ଆଦର୍ଶ ସହିତ ଯେ କେବଳ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ଏ ସଂପର୍କୀୟ ଚିନ୍ତାଧାରାର ସାମ୍ୟ ପରିଲକ୍ଷିତ ହୁଏ, ତାହା ନୁହେଁ; ଅଧିକନ୍ତୁ, ଜନ୍‌ବୋଦାଁଙ୍କ ସାର୍ବଭୌମ ରାଜା, ଫିଲିପ ମାଲିଙ୍କଥାନ୍‌ଙ୍କ ମିଳିତ ରାଜ୍ୟଗୋଷ୍ଠୀ ପରିକଳ୍ପନା, ଉଲ୍‌ରିଚ ଜ୍ୱିଙ୍ଗ୍‌ଲିଙ୍କର ଗଣତାନ୍ତ୍ରିକ ରାଷ୍ଟ୍ରଚେତନା ଏବଂ ମିଲ୍, ହେଗେଲ୍, ଗ୍ରୀନ୍, ମେରିଆନା ପ୍ରମୁଖଙ୍କ ବ୍ୟକ୍ତିଚେତନା, ମାନବତାବାଦ, ଆଧ୍ୟାତ୍ମିକତା ଓ ଗଣମଙ୍ଗଳ ଧାରଣା ସହ ସାରଳାଙ୍କ ଆଦର୍ଶ ତୁଳନୀୟ ।

ଏତଦ୍‌ବ୍ୟତୀତ, ଚଳିତ ଶତାବ୍ଦୀର ଜାତୀୟ ଚିନ୍ତାନାୟକ ତିଳକ, ଗୋଖଲେ, ଲାଲଜୀ, ଗାନ୍ଧିଜୀ, ନେହରୁ, ବିନୋବା, ବିବେକାନନ୍ଦ, ଅରବିନ୍ଦ, ଗୋପବନ୍ଧୁ ପ୍ରମୁଖ ଯେଉଁ ସବୁ ଆଦର୍ଶ ପ୍ରଚାର କରି ସମଗ୍ର ବିଶ୍ୱରେ ସ୍ୱନାମଧନ୍ୟ ହୋଇପାରିଛନ୍ତି, ସେ ସବୁର ପ୍ରାକ୍‌ସୂଚନା ସାରଳା ମହାଭାରତରେ ପରିଦୃଷ୍ଟ । ପାଶ୍ଚାତ୍ୟ ଜଗତର ରବର୍ଟ ଓ୍ୱେନ୍, ମାର୍କସ୍, ଏଙ୍ଗେଲସ୍, ଲେନିନ୍, ସୋରେଲ୍,

ଟଲଷ୍ଟୟ ପ୍ରମୁଖଙ୍କ ବୈପ୍ଳବିକ ଚିନ୍ତାଦର୍ଶର ଆଦ୍ୟ ଆଭାସ ମଧ୍ୟ ସାରଳାଙ୍କ ରଚନାରେ ସୁପରିସ୍ଫୁଟ । ସଂକ୍ଷେପରେ ପ୍ରକାଶ କଲେ, ରେନେସାଁ ଯୁଗୀୟ ଇଂରେଜ ଦାର୍ଶନିକ ଥମାସ୍ ମୁର୍‌ଙ୍କ 'ୟୁଟୋପିଆ' ଓ କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର' ଭଳି ସାରଳାଙ୍କ ମହାଭାରତର ଆଦର୍ଶ ପରବର୍ତ୍ତୀ କାଳର ଉଭୟ ପାଶ୍ଚାତ୍ୟ ଓ ଭାରତୀୟ ରାଜନୈତିକ ତତ୍ତ୍ୱାବଳୀ ମଧ୍ୟରେ ଉପଲବ୍ଧ କରାଯାଇପାରେ । ସୁତରାଂ, ସାରଳାଙ୍କ ରାଜନୈତିକ ଆଦର୍ଶ ସମୂହ ନିଃସନ୍ଦେହରେ କାଳାତୀତ ଓ ଶାଶ୍ୱତ ମୂଲ୍ୟବୋଧର ସମୁଜ୍ଜ୍ୱଳ ଆଲୋକବର୍ତ୍ତିକା । ପରବର୍ତ୍ତୀକାଳୀନ ରାଜନୀତି ବିଶାରଦଗଣଙ୍କ ଦ୍ୱାରା ପ୍ରବର୍ତ୍ତିତ ବୈପ୍ଳବିକ ରାଜନୈତିକ ତତ୍ତ୍ୱସମୂହରେ ସାରଳାଙ୍କ ଆଦର୍ଶ ଓ ଚିନ୍ତାଧାରା କିଭଳି ପ୍ରତିଧ୍ୱନିତ, ତାହା ଶେଷ ପରିଚ୍ଛେଦରେ ଆଲୋଚନା କରାଯାଉଛି ।

□ □ □

"ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟଲ୍‌ଙ୍କ ଠାରୁ ଆରମ୍ଭ କରି ଅଧୁନାତନ କାଳ ପର୍ଯ୍ୟନ୍ତ ବିଶ୍ୱର ବିଭିନ୍ନ ପ୍ରାନ୍ତରେ ସବୁ ସମୟରେ କୌଣସି ଏକ ନିର୍ଦ୍ଦିଷ୍ଟ ଶାସନ ବ୍ୟବସ୍ଥା ପ୍ରତି ଗଣମତ ସ୍ଥିର ହୋଇ ରହିନାହିଁ । ଗଣଚେତନା ସର୍ବଦା ଜାଗ୍ରତ ଓ ଗଣ-ଆକାଂକ୍ଷା ସତତ ପରିବର୍ତ୍ତନଶୀଳ । କିନ୍ତୁ ଭାରତୀୟ ପୃଷ୍ଠଭୂମିରେ ରାଜନୈତିକ ସଂସ୍କୃତିର ଧାରା ତର ଅବ୍ୟାହତ ରହିଅଛି ।"

## ସପ୍ତମ ପରିଚ୍ଛେଦ

# ପରବର୍ତ୍ତୀକାଳୀନ ରାଜନୀତିଦର୍ଶନରେ ସାରଳାଙ୍କ ଆଦର୍ଶର ପ୍ରତିଫଳନ

ମଧ୍ୟଯୁଗର ପରବର୍ତ୍ତୀ କାଳରେ ତଥା ଷୋଡ଼ଶ ଶତାବ୍ଦୀ ଠାରୁ ବିଂଶଶତାବ୍ଦୀ ପର୍ଯ୍ୟନ୍ତ ବିଶ୍ୱ ତଥା ଭାରତୀୟ ରାଜନୀତି କ୍ଷେତ୍ରରେ ବହୁବିଧ ଦାର୍ଶନିକ ଚିନ୍ତାଧାରା ତଥା ସାଂସ୍କୃତିକ ଚେତନାର ବିକାଶ ଘଟିଅଛି । ସମୟର ବିବର୍ତ୍ତନରେ ରାଜନୀତିର ସ୍ୱରୂପ ମଧ୍ୟ ବହୁ ପରିମାଣରେ ପରିବର୍ତ୍ତିତ ହୋଇଯାଇଛି । ଯୁଗାବର୍ତ୍ତନର ସନ୍ଧିକ୍ଷଣ ତଥା ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ ଧର୍ମ, ରାଜା ଓ ରାଜସତ୍ତାର ପରିସୀମା ମଧ୍ୟରେ ଆବଦ୍ଧ ରାଜନୀତି କ୍ରମଶଃ ପାରମ୍ପରିକତାର ନିଗଡ଼ ଭିତରୁ ମୁକ୍ତିଲାଭ କରି ବହୁ ନୂତନ ଦାର୍ଶନିକ ମୂଲ୍ୟବୋଧ ଆହରଣ କରିଅଛି । (୧) ତେବେ, ଆଗାମୀ ଯୁଗର ରାଜନୀତିଜ୍ଞମାନଙ୍କ ଉପରେ ସାରଳା ଗଭୀର ପ୍ରଭାବ ବିସ୍ତାର କରିଛନ୍ତି ଅବା ଭବିଷ୍ୟତର ରାଜନୀତିବିଶାରଦଗଣ ସାରଳା ମହାଭାରତରୁ ପ୍ରତ୍ୟକ୍ଷ ପ୍ରେରଣା ଲାଭ କରିଛନ୍ତି ବୋଲି କହିଲେ ସମାଲୋଚକମାନଙ୍କ ଭ୍ରୂକୁଞ୍ଚନ ସୃଷ୍ଟି ହେବା ସ୍ୱାଭାବିକ ।

---

(୧) ଏହି ନୂତନ ମତବାଦଗୁଡ଼ିକ ହେଉଛି—ବ୍ୟକ୍ତିବାଦ (Individualism), ଆଦର୍ଶବାଦ (Idealism), ଉଦାରବାଦ (Liberalism), ହିତବାଦ (Utilitarianism), ସାମ୍ରାଜ୍ୟବାଦ (Imperialism), ଅରାଜକତାବାଦ (Anarchism), ଅଖଣ୍ଡତାବାଦ (Totalitarianism), ଫାସିବାଦ (Fascism), ନାଜିବାଦ (Nazism), ସମାଜବାଦ (Socialism), ସାମ୍ୟବାଦ (Communism), ପୁଞ୍ଜିବାଦ (Capitalism), ଶ୍ରେଣୀସଂଘବାଦ (Syndicalism), ସଂଘୀୟ ସମାଜବାଦ (Guild Socialism), ଗଣତାନ୍ତ୍ରିକ ସମାଜବାଦ (Democratic Socialism), ଶ୍ରମିକ ସଂଘବାଦ (Trade Unionism); ଗଣତନ୍ତ୍ର, ଜାତୀୟତାବାଦ, ଆନ୍ତର୍ଜାତୀୟତାବାଦ ପ୍ରଭୃତି ।

କାରଣ, ଆପାତ ଦୃଷ୍ଟିରେ ଓଡ଼ିଆ ଭାଷାର ଉନ୍ମେଷକାଳୀନ ରଚନା ଦ୍ୱାରା ବୈଦେଶିକ ଚିନ୍ତାନାୟକମାନେ ପ୍ରଭାବିତ ହେବା ସମ୍ଭବ ନୁହେଁ; ସେମାନଙ୍କ ପକ୍ଷରେ ଏହାର ପଠନ ବା ଶ୍ରବଣ ଏକ ଦୁରୂହ ବ୍ୟାପାର । କିନ୍ତୁ, ଏଠାରେ ସ୍ମରଣ ଯୋଗ୍ୟ ଯେ ପ୍ରଜ୍ଞାତ୍ମକ ସୃଷ୍ଟିର ପ୍ରଭାବ ସର୍ବଦା ଦ୍ୱିବିଧ; ପରୋକ୍ଷ ଓ ପ୍ରତ୍ୟକ୍ଷ ଉଭୟ ଭାବରେ ଏହା ଭାବନା ରାଜ୍ୟକୁ ଆଲୋଡ଼ିତ କରିଥାଏ । ସର୍ବାତିକ୍ରମୀ ଅତିମାନସ ଚେତନା କୌଣସି ପ୍ରାକୃତିକ ପ୍ରତିବନ୍ଧକ ନ ମାନି ସର୍ବତ୍ର ପ୍ରତିବିମ୍ବିତ ହୋଇଥାଏ । ପୃଥିବୀର ସବୁ ପ୍ରାନ୍ତର ମହାମନୀଷୀମାନଙ୍କର ଚିନ୍ତାଧାରାରେ ଏକ ନିର୍ଦ୍ଦିଷ୍ଟ ସମୟରେ ସମଧର୍ମୀ ଭାବ ପ୍ରକାଶ ପାଇବା ଏକ ଶାଶ୍ୱତ ସତ୍ୟ ରୂପେ ଗୃହୀତ । ହୋମର୍, ସେକ୍ସପିୟର, ରୁଷୋ, ଭୋଲ୍ଟାୟାର, ମାର୍କସ୍, ଲେନିନ୍, ଗାନ୍ଧୀ, ରବୀନ୍ଦ୍ରନାଥ ପ୍ରମୁଖଙ୍କ ଚିନ୍ତାଧାରାର ବ୍ୟାପ୍ତି ଓ ପ୍ରସାର ମୂଳରେ ସେମାନଙ୍କ ରଚନାର କେବଳ ପଠନ ବା ଶ୍ରବଣ ନିହିତ ନଥିଲା । ଏହି ମନୀଷୀମାନଙ୍କ ଆଦର୍ଶର ପ୍ରଭାବ ଭୌଗୋଳିକ ପରିସୀମା ବା ଭାଷାଜ୍ଞାନର ସଙ୍କୀର୍ଣ୍ଣତା ଦ୍ୱାରା ପ୍ରତିହତ ହୋଇପାରି ନାହିଁ ।

ଏତାଦୃଶ ମାନସିକ ସ୍ତରର ଚିନ୍ତାସାମ୍ୟ ତଥା ଉନ୍ନତ ଭାବନାରାଜିର ପରୋକ୍ଷ ପ୍ରଭାବ ହେତୁ ପ୍ରାଚୀନ ଗ୍ରୀକ୍ କାହାଣୀ ଓ ସଂସ୍କୃତ ମହାଭାରତ ମଧ୍ୟରେ ଅନେକ ବର୍ଣ୍ଣନାଗତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ହୋମରଙ୍କ 'ଓଡ଼େଶୀ'ରେ ବର୍ଣ୍ଣିତ ପେନଲୋପଙ୍କ ସ୍ୱୟମ୍ବରରେ ଭିକ୍ଷୁକ ବେଶଧାରୀ ଓଡିସିଅସ୍ ବାର ଗୋଟି କୁଠାର ଛିଦ୍ର ଭେଦ କରିବା ଚିତ୍ର ସହିତ ଦ୍ରୌପଦୀ ସ୍ୱୟମ୍ବରରେ ଦରିଦ୍ର ବ୍ରାହ୍ମଣ ବେଶୀ ଅର୍ଜ୍ଜୁନଙ୍କ ଲକ୍ଷ୍ୟଭେଦ ପ୍ରସଙ୍ଗ ସମ୍ପୂର୍ଣ୍ଣ ମିଳିଯାଉଛି । (୨) ଶାନ୍ତନୁ, ପରାଶର ପ୍ରଭୃତିଙ୍କ ଯୌନ ଉଚ୍ଛୃଙ୍ଖଳତାର ପଶ୍ଚାତଦେଶରେ ମଧ୍ୟ ପୌରାଣିକ ଗ୍ରୀକ୍ ଦେବ ଦେବୀଙ୍କ ସ୍ୱୈରାଚାରୀ ପ୍ରଭାବ ପ୍ରଚ୍ଛନ୍ନ ଭାବେ ନିହିତ ବୋଲି କୁହାଯାଇପାରେ । କାରଣ, ଆଫ୍ରେସେସ୍, ଏରସ୍, ଜିଅସ୍, ଡ଼ାଇଓନିସସ୍, ଆପୋଲୋ ପ୍ରଭୃତି ଗ୍ରୀକ୍ ଦେବତା-ମାନଙ୍କୁ ଘୃଣ୍ୟ ପରଦାରାସକ୍ତ ଚରିତ୍ର ଭାବେ ଏବଂ ଇଅସ, ସେଲେନ୍, ଗିଆ ପ୍ରଭୃତି ଦେବୀମାନଙ୍କୁ ଗ୍ରୀକ୍ ପୁରାଣରେ କାମୋନ୍ମତ୍ତା, ବହୁବଲ୍ଲଭା ଓ ସ୍ୱେଚ୍ଛାଚାରିଣୀ ଭାବରେ ଚିତ୍ରଣ କରାଯାଇଛି । (୩) ସାରଳା ମହାଭାରତରେ ବର୍ଣ୍ଣିତ ମାତୃହରଣକାରୀ ଭୁଲାକର୍ଣ୍ଣ ବିଦ୍ୟାଧର ସହିତ ମଧ୍ୟ ଗ୍ରୀକ୍ ସାହିତ୍ୟର ଓଡିପସ୍ ଚରିତ୍ରର ସାମ୍ୟ

---

(୨) ମହାନ୍ତି, ଓଡ଼ିଆ ସାହିତ୍ୟର ଆଦିପର୍ବ-ପୃ. ୧୩୪-୧୩୫

(୩) ତତ୍ରୈବ-ପୃ. ୨୨୭

ପରିଲକ୍ଷିତ ହୁଏ । (୪) ଏହି ଭିତ୍ତିରେ ହିଁ ପରବର୍ତ୍ତୀକାଳୀନ ରାଜନୀତି-ଦାର୍ଶନିକମାନଙ୍କ ଚିନ୍ତାଧାରାରେ ପ୍ରତିଫଳିତ ସାରଳାଙ୍କ ଆଦର୍ଶର ଗୁରୁତ୍ୱ ବିଶେଷ ।

ସାରଳା ମହାଭାରତର ପ୍ରତ୍ୟକ୍ଷ ପ୍ରଭାବ ଯେ ଖୁବ୍ ବ୍ୟାପକ, ଏହା ସର୍ବବାଦୀସମ୍ମତ । ସାରଳା ଦାସଙ୍କ ପରବର୍ତ୍ତୀ ବଳରାମ ଦାସଙ୍କ ଜଗମୋହନ ରାମାୟଣରେ ବର୍ଣ୍ଣିତ ପରଶୁରାମଙ୍କ ମାତୃ ଶିରଚ୍ଛେଦନ, ଋଷ୍ୟଶୃଙ୍ଗ ଉପାଖ୍ୟାନ, ଗୟାରେ ସୀତାଙ୍କ ପିଣ୍ଡଦାନ ପ୍ରଭୃତି ପ୍ରସଙ୍ଗ ସାରଳା ମହାଭାରତର ଅନୁରୂପ । ଜଗନ୍ନାଥ ଦାସଙ୍କ ଭାଗବତର ଅନେକ ସ୍ଥଳରେ (ଅଶ୍ୱତ୍ଥାମାଙ୍କ ସେନାପତି ପଦରେ ବରଣ, ଜତୁଗୃହର ପରାଜୟ, ଅର୍ଜ୍ଜୁନଙ୍କ ଅକ୍ଷୟ ତୂଣିର ପ୍ରାପ୍ତି, ଉଷାହରଣ ପ୍ରଭୃତି ଆଖ୍ୟାନରେ) ମୂଳ ସଂସ୍କୃତ ଭାଗବତ ଅପେକ୍ଷା ସାରଳା ମହାଭାରତର ଅଧିକ ପ୍ରଭାବ ପଡ଼ିଅଛି । ଜଗନ୍ନାଥ ଦାସଙ୍କ 'ତୁଳା ଭିଣା,' ଭୀମ ଭୋଇଙ୍କ 'ସ୍ତୁତି ଚିନ୍ତାମଣି' ଓ 'ବ୍ରହ୍ମ ନିରୂପଣ ଗୀତା,' ବଳରାମ ଦାସଙ୍କ 'ବ୍ରହ୍ମାଣ୍ଡ ଭୂଗୋଳ' ଓ ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା'ର ଛନ୍ଦେ ଛନ୍ଦେ ସାରଳାଙ୍କ ଶୂନ୍ୟବାଦ ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବିଶ୍ଳେଷଣ ସ୍ପଷ୍ଟ ପରିଦୃଷ୍ଟ ହୁଏ । ଶିଶୁ ଶଙ୍କରଙ୍କ 'ଉଷାଭିଳାଷ', ଭକ୍ତଚରଣ ଦାସଙ୍କ 'ମଥୁରା ମଙ୍ଗଳ' ଓ ଭୀମା ଧୀବରଙ୍କ 'କପଟ ପାଶା'ର ବର୍ଣ୍ଣନା ବିନ୍ୟାସରେ ଅନେକତ୍ର ସାରଳାଙ୍କ ପ୍ରଭାବ ଦେଖାଯାଏ । ଉପେନ୍ଦ୍ର ଭଞ୍ଜଙ୍କ 'ସୁଭଦ୍ରା ପରିଣୟ', 'ଲାବଣ୍ୟବତୀ,' 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ରସିକ ହାରାବଳୀ,' 'ବୈଦେହୀଶ ବିଳାସ' ପ୍ରଭୃତି ରଚନା ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି' ଓ 'ସୁଲକ୍ଷଣା' କାବ୍ୟରେ ମଧ୍ୟ ସାରଳାଙ୍କ ପ୍ରଭାବ ନିହିତ ।

ସାରଳା ଦାସଙ୍କ ପରବର୍ତ୍ତୀକାଳରେ ତାଙ୍କ ପଦାଙ୍କ ଅନୁସରଣ କରି ବିଭିନ୍ନ ପୁରାଣ ଓ ଆଖ୍ୟାୟିକା ରଚନା ଦିଗରେ ପ୍ରବୃତ୍ତ ହୋଇଥିବା ସ୍ରଷ୍ଟାମାନଙ୍କ ମଧ୍ୟରେ ବତ୍ସ ଗୋପୀଦାସ (ମହାଭାରତ ଟୀକା), ପୁରୁଷୋତ୍ତମ ଦାସ (ଟୀକା ମହାଭାରତ), ବିଶ୍ୱମ୍ଭର ଦାସ (ବିଚିତ୍ର ଭାରତ), ମଧୁସୂଦନ ହରିଚନ୍ଦନ (ବିଚିତ୍ର ମହାଭାରତ) କେଶବ ପଟ୍ଟନାୟକ (ଶୁଦ୍ଧ ମହାଭାରତ), ପୀତାମ୍ବର ଦାସ (ନୃସିଂହ ପୁରାଣ),

---

(୪) ରଥ, ଡକ୍ଟର ବନମାଳୀ—ସାରଳା ମହାଭାରତରେ ସାମାଜିକ ଜୀବନାଦର୍ଶରେ ନୈତିକ ପରଂପରା (ପ୍ରବନ୍ଧ) ମହାତ୍ମା, ଡକ୍ଟର ଉପେନ୍ଦ୍ରନାଥ (ସ) ବିପ୍ଳବୀ କବି ସାରଳା ଦାସ (ଓଡ଼ିଆ ସାହିତ୍ୟ ସଂସଦ, ଦୟାନନ୍ଦ ଆଙ୍ଗ୍ଲୋ ବୈଦିକ ମହାବିଦ୍ୟାଳୟ, ଟିଟିଲାଗଡ଼, ୧୯୮୪) ପୃ. ୧୦୯

ଅଚ୍ୟୁତାନନ୍ଦ ଦାସ (ହରିବଂଶ), ଚୈତନ୍ୟ ଦାସ (ବିଷ୍ଣୁଗର୍ଭ ପୁରାଣ) ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ, ସୁଭଦ୍ରାହରଣ, ଚନ୍ଦ୍ରାବତୀ ହରଣ, କାଳିନ୍ଦୀ ହରଣ, ଉଷାହରଣ, ଶୋଭାବତୀ ହରଣ, ଦ୍ରୌପଦୀ ସ୍ୱୟମ୍ବର ପ୍ରଭୃତି ପ୍ରସଙ୍ଗ ଦାସକାଠିଆ ଓ ପାଲା ଗାୟକମାନଙ୍କ ମାଧ୍ୟମରେ ଜନମାନସରେ ଗଭୀର ରେଖାପାତ କରିଛି । ବ୍ରଜନାଥ ବଡ଼ଜେନାଙ୍କ 'ସମର ତରଙ୍ଗ' ସାରଳାଙ୍କ ବର୍ଣ୍ଣାଢ୍ୟ ସମର ବିଳାସର ଉଦ୍ଧରଣ ମାତ୍ର । ମଧୁସୂଦନଙ୍କ 'କର୍ଣ୍ଣବଧ', ଗଙ୍ଗାଧରଙ୍କ 'କୀଚକବଧ' ଓ ନନ୍ଦକିଶୋରଙ୍କ 'ଶର୍ମିଷ୍ଠା' କାବ୍ୟର ବିଷୟବସ୍ତୁ ସାରଳା ମହାଭାରତରୁ ହିଁ ଗୃହୀତ । କବିବର ରାଧାନାଥଙ୍କ 'ବାଣହରଣ', 'ବେଣୀ ସଂହାର', 'ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ' ଓ 'ମହାଯାତ୍ରା'ର କେତେକ ସ୍ଥଳରେ ସାରଳାଙ୍କ ବର୍ଣ୍ଣନା ବୈଚିତ୍ର୍ୟର ପ୍ରଭାବ ସୁସ୍ପଷ୍ଟ । ଆଧୁନିକ କବି ବୈଷ୍ଣବ ପାଣି ବିଭିନ୍ନ ଲୋକପ୍ରିୟ ଗୀତିନାଟ୍ୟ ସୃଷ୍ଟି କ୍ଷେତ୍ରରେ ସାରଳାଙ୍କୁ ଅନୁସରଣ କରିଥିବା ଦେଖାଯାଏ । (୫) ଏହା ବ୍ୟତୀତ, ବହୁ ଜ୍ୟୋତିଷ ଶାସ୍ତ୍ରାନୁରାଗୀ, ତନ୍ତ୍ରସାଧକ, ଯୋଗସାଧକ, ଭାଷାବିଜ୍ଞାନୀ ଓ ବୈୟାକରଣମାନଙ୍କୁ ମଧ୍ୟ ସାରଳା ଦାସ ଶାସ୍ତ୍ରୀୟ ଆଲୋଚନା ପାଇଁ ଅନୁପ୍ରେରିତ କରିଅଛନ୍ତି । (୬)

କେବଳ ଓଡ଼ିଆ ଭାଷା ଓ ସାହିତ୍ୟରେ ନୁହେଁ, ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ମଧ୍ୟ ସାରଳାଙ୍କ ପ୍ରଭାବ ସମ୍ପର୍କରେ କେତେକ ତଥ୍ୟ ଉପଲବ୍ଧ ହୁଏ । ବଙ୍ଗଳାର କାଶୀରାମ ଦାସଙ୍କ ମହାଭାରତରେ ସାରଳା ମହାଭାରତର ପ୍ରଭାବ ପରିଦୃଷ୍ଟ ହେଉଥିବା କଥା ବଙ୍ଗୀୟ ସାହିତ୍ୟ ସମାଲୋଚକମାନେ ସ୍ୱୀକାର କରିଛନ୍ତି । (୭) ତେଲୁଗୁ ଭାଷାରେ ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ ଅନୂଦିତ ହୋଇଥିବା ଦୃଷ୍ଟିରୁ ମହାଭାରତ ମଧ୍ୟ ସେହି ସାହିତ୍ୟିକମାନଙ୍କୁ କିଛି ପରିମାଣରେ ଅନୁପ୍ରାଣିତ କରିଥିବା ସମ୍ଭାବନା ଏଡ଼ାଇ ଦିଆଯାଇ ନପାରେ । ଓଡ଼ିଆ ଭାଷାରେ ସାରଳା ମହାଭାରତ ପ୍ରଣୀତ ହେବା ପରେ ହିଁ ଷୋଡ଼ଶ ଶତାବ୍ଦୀରେ

---

(୫) ମହାନ୍ତି, ଡକ୍ଟର ବଂଶୀଧର—ଓଡ଼ିଆ ସାହିତ୍ୟର ଇତିହାସ (ଦ୍ୱିତୀୟ ଭାଗ) ପୃ. ୨୧୦-୨୧୨

(୬) ଦାସ, ଯଜ୍ଞେଶ୍ୱର — ମହାକବି ସାରଳା ଦାସ—ପୃ. ୨୯-୩୦ ଓ ୧୫୨-୧୬୮

(୭) Majumdar, Bijay Chandra—Typical Selections from Oriya Literature—Vol. I (Calcutta University, 1921) Introduction—P. 2.

ମରାଠୀ କବି ମୁକ୍ତେଶ୍ୱର ଏବଂ ମାଲୟାଲମ ଲେଖକ ଟି. ରାମାନୁଜ ଓ ଏଲୁତାଚାନ୍ ମହାଭାରତ ରଚନାରେ ପ୍ରବୃତ୍ତ ହୋଇଥିଲେ । ସପ୍ତଦଶ ଶତାବ୍ଦୀରେ ଗୁଜରାଟୀ ଲେଖକ ବିଷ୍ଣୁଦାସ ଏବଂ ଅଷ୍ଟାଦଶ ଶତାବ୍ଦୀରେ ପଞ୍ଜାବୀ ଲେଖକ କୃଷ୍ଣଲାଲ ଓ ହିନ୍ଦୀ ସାହିତ୍ୟିକ ଗୋକୁଲନାଥଙ୍କ ମହାଭାରତ ଲୋକଲୋଚନକୁ ଆସିଅଛି । (୮) ଏଣୁ ଏହି ମହାଭାରତସମୂହ ସହିତ ସାରଳା ମହାଭାରତର କି ସାମ୍ୟ ବୈଷମ୍ୟ ଅଛି ଚିନ୍ତା କରିବାର କଥା । କିନ୍ତୁ, ସାରଳା ମହାଭାରତର ସାହିତ୍ୟିକ ପ୍ରଭାବ ବିଶ୍ଳେଷଣ ଆମର କାମ୍ୟ ନୁହେଁ । ତଥାପି, ବିଭିନ୍ନ ରାଜନୈତିକ ଆଦର୍ଶର ସଫଳ ରୂପାୟନରେ ସାହିତ୍ୟିକମାନଙ୍କ ଭୂମିକା ନଗଣ୍ୟ ନୁହେଁ । ଏଥିପାଇଁ ଯୁଗେ ଯୁଗେ ସାହିତ୍ୟସାଧକଗଣ ଅନନୁମୋଦିତ ବୈଧାନିକରୂପେ ସ୍ୱୀକୃତ । ଏହି ଦୃଷ୍ଟିରୁ ସାରଳାଙ୍କ ପରବର୍ତ୍ତୀ ସମଧର୍ମୀ ଆଦର୍ଶ ପୋଷଣକାରୀ ବିଭିନ୍ନ ଦାର୍ଶନିକଙ୍କ ରାଜନୈତିକ ଅବଦାନ ସଂପର୍କରେ ଆଲୋଚନା କରିବା ଆବଶ୍ୟକ ମନେହୁଏ ।

## ପାଶ୍ଚାତ୍ୟ ରାଜନୀତିକ ଆଦର୍ଶ ଓ ସାରଳା ଦାସ

ଷୋଡ଼ଶ-ସପ୍ତଦଶ ଶତାବ୍ଦୀ ଠାରୁ ପାଶ୍ଚାତ୍ୟ ଜଗତରେ ରାଜନୈତିକ ବାତାବରଣରେ ବହୁ ପରିବର୍ତ୍ତନ ସଂଘଟିତ ହେବାକୁ ଲାଗିଲା । ପାରମ୍ପରିକ ଶାସନ ପ୍ରଣାଳୀରେ ଜନତା ତଥା ବୁଦ୍ଧିଜୀବୀମାନେ ବିଶ୍ୱାସ ସ୍ଥାପନ କରି ନପାରି ଏକ ସୁସ୍ଥ ଜନହିତୈଷୀ ଶାସନ ବ୍ୟବସ୍ଥାର ପରିକଳ୍ପନା କଲେ । ଫଳରେ ବହୁ ଚିନ୍ତାଶୀଳ ଦାର୍ଶନିକ ରାଜନୀତିତତ୍ତ୍ୱ ସଂପର୍କରେ ଯେପରି ଅଭିନବ ତଥ୍ୟମାନ ପରିବେଷଣ କରିବାକୁ ଲାଗିଲେ, ସେହିପରି ବିଭିନ୍ନ ରାଜନୈତିକ ମତବାଦର ଖଣ୍ଡନମଣ୍ଡନ ଦ୍ୱାରା ଏକ ସୁସ୍ଥିର ଶାସନ ପ୍ରଣାଳୀର ଅନୁସନ୍ଧାନ ଆରମ୍ଭ କଲେ । ସାରଳାଙ୍କ ପରବର୍ତ୍ତୀ କାଳରେ ରାଜନୀତି-ଦର୍ଶନ କ୍ଷେତ୍ରରେ ସାମାଜିକ ଚୁକ୍ତିବାଦୀ ଗୋଷ୍ଠୀର ଆବିର୍ଭାବ ଏକାନ୍ତ ଉଲ୍ଲେଖନୀୟ ।

ସାମାଜିକ ଚୁକ୍ତିବାଦୀ ଗୋଷ୍ଠୀର ପ୍ରଥମ ଦାର୍ଶନିକ **ହବସ୍** (୧୫୮୮-୧୬୭୯) ଶାସକ ଓ ଶାସିତଙ୍କ ମଧ୍ୟରେ ଏକ ସାମାଜିକ ଚୁକ୍ତି ବନ୍ଧନର ପରିକଳ୍ପନା କରି

---

(୮) ପଟ୍ଟନାୟକ, ପଠାଣି—ଓଡ଼ିଆ ସାହିତ୍ୟର ଇତିହାସ (ନାଳନ୍ଦା, କଟକ, ପ୍ରଥମ ସଂସ୍କରଣ, ୧୯୭୮) ପୃ. ୧୧୫-୧୧୮

ରାଷ୍ଟ୍ରକୁ ସାର୍ବଭୌମ କ୍ଷମତାସଂପନ୍ନ ଓ ଅପରିହାର୍ଯ୍ୟ ଦୁର୍ଗତ (Necessary Evil) ଭାବେ ବିବେଚନା କରିବା ସଙ୍ଗେ ସଙ୍ଗେ ସେ ଥିଲେ ହିତବାଦ ଓ ବ୍ୟକ୍ତିବାଦର ପ୍ରବକ୍ତା (୯) ଅନ୍ୟତମ ଦାର୍ଶନିକ **ଜନ୍ ଲକ୍** (୧୬୩୨-୧୭୦୪) ଥିଲେ ଗୋଷ୍ଠୀ ବା ସଂଖ୍ୟାଗରିଷ୍ଠ ଶାସନର ପକ୍ଷପାତୀ । କିନ୍ତୁ ଏହି ଗୋଷ୍ଠୀର **ରୁଷୋ** (୧୭୧୨-୧୭୭୮) ସାଧାରଣ ଅଭିଳାଷ ବା ସମୂହ ଇଚ୍ଛା (General Will) ଉପରେ ଗୁରୁତ୍ୱ ଦେଇ ବଂଶାନୁକ୍ରମିକ ସଂଭ୍ରାନ୍ତବାଦୀ ଶାସନ ପରିବର୍ତ୍ତେ ନିର୍ବାଚିତ ସଂଭ୍ରାନ୍ତତନ୍ତ୍ରର ଜୟଗାନ କରିଥିଲେ । ରାଜ୍ୟ ଶାସନରେ ସମାଜର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସ୍ୱୀକୃତ ଦେବା କ୍ଷେତ୍ରରେ ଏ ଗୋଷ୍ଠୀର ଦାର୍ଶନିକମାନେ ସାରଳାଙ୍କ ଏ ସଂପର୍କୀୟ ଚିନ୍ତାଧାରାର ନିକଟବର୍ତ୍ତୀ ମନେ ହୁଅନ୍ତି । ରୁଷୋ ଓ ଲକ୍ଙ୍କ ଅନୁଗାମୀ **ଭୋଲ୍ଟାୟାର** (୧୬୯୪-୧୭୭୮) ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ନ୍ୟାୟ ଓ ବ୍ୟୁତ୍ପନ୍ନ ଶାସନ ସପକ୍ଷରେ ଜନ ଚେତନା ଜାଗ୍ରତ କରି ବିଖ୍ୟାତ ଫରାସୀ ବିପ୍ଳବକୁ ତ୍ୱରାନ୍ୱିତ କରିଥିଲେ । (୧୦)

ଏ ସମୟର ଅନ୍ୟତମ ବିଶିଷ୍ଟ ଚିନ୍ତାନାୟକ **ମଣ୍ଟେସ୍କ୍ୟୁ** (୧୬୮୯-୧୭୫୫) ଆଇନ ଓ ଶାସନର ବିଭାଗୀକରଣ ତଥା କ୍ଷମତାର ବିଭାଜନ ଓ ସ୍ୱାଧିକାର ନିୟନ୍ତ୍ରଣ ସଂପର୍କରେ ସୁଚିନ୍ତିତ ମତ ବ୍ୟକ୍ତ କରି ରାଜନୈତିକ ଦର୍ଶନକୁ ନୂତନ ଦିଗ୍ଦର୍ଶନ ଦେଇଥିଲେ । ସେ ଶାସନକୁ ସାଧାରଣତନ୍ତ୍ର, ରାଜତନ୍ତ୍ର ଓ ସ୍ୱୈରାଚାର ରୂପେ ତିନି ଭାଗରେ ବିଭକ୍ତ କରି ଗଣତନ୍ତ୍ର ଓ ସୁଜନତନ୍ତ୍ର ଦ୍ୱିବିଧ ରୂପରେ ସାଧାରଣତନ୍ତ୍ରର ଉପବିଭାଜନ କରିଥିଲେ । ଏହା ବ୍ୟତୀତ, ସେ ଶାସନ କ୍ଷମତାକୁ ବୈଧାନିକ, ନିର୍ବାହକ ଓ ନ୍ୟାୟିକ (Legislative, Executive and Judiciary) ଭାବେ ତ୍ରିଧା ବିଭକ୍ତ କରିବା ଫଳରେ ଆଇନସମ୍ମତ ପ୍ରତିରୋଧ ଓ ସନ୍ତୁଳନ (Check and Balance) ଆଦର୍ଶର ସୂତ୍ରପାତ ଘଟିଲା । (୧୧)

---

(୯) Sabine—A History of Political Theory, pp. 388-403

(୧୦) Pant –History of Western Political Thought—(Part-II) P, 90 and Ketelbey, C. D. M.—A History of Modern Times (George G. Harrap & Co. Ltd. London, 1961) pp. 37-38

(୧୧) Sabine—A History of Political Theory—P. 472

ଆଲୋଚ୍ୟ ସମୟରେ ଅନ୍ୟାନ୍ୟ ଦାର୍ଶନିକମାନଙ୍କ ମଧ୍ୟରେ **ଜେମସ୍ ହେରିଙ୍ଗ୍‌ଟନ୍** (୧୬୧୧-୧୬୭୭), **ଜନ୍ ମିଲଟନ୍** (୧୬୦୮-୧୬୭୪) ଓ **ଆଲ୍‌ଜେରନନ୍ ସିଡ଼ନି** (୧୭ଶ ଶତାବ୍ଦୀ) ସାଧାରଣତନ୍ତ୍ରବାଦ ଆଦର୍ଶ ପ୍ରଖ୍ୟାପନ ସହିତ ରାଜତନ୍ତ୍ର ବ୍ୟବସ୍ଥାର ଉଚ୍ଛେଦ ସାଧନ ପାଇଁ ନିଜ ନିଜର ଯୁକ୍ତିମାନ ଉପସ୍ଥାପନ କରିଥିଲେ । ହେରିଙ୍ଗ୍‌ଟନ୍ ଆରିଷ୍ଟୋଟଲଙ୍କ ଆଦର୍ଶରେ ଆର୍ଥିକ ସମବଣ୍ଟନ ଦ୍ୱାରା ପ୍ରାଚୀନ ଏଥେନ୍‌ସ ଓ ସ୍ପାର୍ଟାର ଛାଞ୍ଚରେ ଏକ ମିଳିତ ରାଜ୍ୟଗୋଷ୍ଠୀ ସ୍ଥାପନାର ସ୍ୱପ୍ନ ଦେଖିଥିଲେ ଏବଂ କ୍ଷମତାର ବିକେନ୍ଦ୍ରୀକରଣ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ମିଲ୍‌ଟନ୍‌ଙ୍କ ସାଧାରଣତନ୍ତ୍ରବାଦ ମୂଳରେ ପ୍ଲାଟୋଙ୍କ ଆଦର୍ଶ ବଳବତ୍ତର ଥିଲା । ସେ ନୈତିକ ଓ ବୌଦ୍ଧିକ ଉପାଦାନ ଉପରେ ଆସ୍ଥା ସ୍ଥାପନ କରି ବଂଶାନୁକ୍ରମିକ ଶାସନ ସୃଷ୍ଟି ନଥିଲେ । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସିଡ଼ନି ପାର୍ଲିମେଣ୍ଟ ଓ ଜନତା ହିଁ ରାଜା ମନୋନୟନର ଉପଯୁକ୍ତ ଅଧିକାରୀ ବୋଲି ମତ ଦେଇଥିଲେ । (୧୨)

କିନ୍ତୁ, ଅନ୍ୟ ପକ୍ଷରେ, **ସାର୍ ରବର୍ଟ ଫିଲମର୍** (ତାରିଖହୀନ-୧୬୫୩) ହବସ୍ ଓ ବୋଦାଁଙ୍କ ପଦାଙ୍କ ଅନୁସରଣ କରି ସାର୍ବଭୌମ ଶାସନର ଅପରିହାର୍ଯ୍ୟତାକୁ ଗ୍ରହଣ କରି ନେଇଥିଲେ ହେଁ ଜନମତ ଅନୁଯାୟୀ ରାଜା ନିରୂପଣ ନୀତିକୁ ଅସ୍ୱୀକାର କରିଥିଲେ । ତଥାପି, ପିତୃତୁଲ୍ୟ ପ୍ରଜାପାଳନ ଓ ଶାସ୍ତ୍ରଜ୍ଞାନ ଦ୍ୱାରା ନୀତି ନିର୍ଦ୍ଧାରଣ ଉପରେ ତାଙ୍କର ଗଭୀର ବିଶ୍ୱାସ ରହିଥିଲା । (୧୩)

ଉପରୋକ୍ତ ଦାର୍ଶନିକଗଣ ମିଳିତ ରାଜ୍ୟଗୋଷ୍ଠୀ ଗଠନ, ଶାସନ କ୍ଷେତ୍ରରେ ନୈତିକତା ଓ ବୌଦ୍ଧିକତାର ପ୍ରାଧାନ୍ୟ, ପିତୃତୁଲ୍ୟ ପ୍ରଜାପାଳନ ଏବଂ ଶାସ୍ତ୍ରସମ୍ମତ ନୀତି ନିର୍ଦ୍ଧାରଣ ପ୍ରଭୃତି ସମ୍ପର୍କରେ ଯେଉଁ ମତ ବ୍ୟକ୍ତ କରିଛନ୍ତି, ତାହା ସାରଳାଙ୍କ ଶାସନାଦର୍ଶର ଅନୁରୂପ ଭଳି ମନେ ହୁଏ । ପରବର୍ତ୍ତୀକାଳୀନ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ଦାର୍ଶନିକମାନଙ୍କ ମଧ୍ୟରେ ହ୍ୟୁମ, ବାର୍କ, ବେନ୍ଥାମ, ମିଲ୍, କାଣ୍ଟ, ହେଗଲ, ଗ୍ରୀନ୍, ବୋସାଙ୍କେଟ୍ ଓ ସ୍ପେନ୍‌ସର୍‌ଙ୍କ ଚିନ୍ତାଧାରାରେ ମଧ୍ୟ ସାରଳାଙ୍କ ରାଜନୈତିକ ଆଦର୍ଶର ପ୍ରତିବିମ୍ବନ ସୁସ୍ପଷ୍ଟ । ଏହି ଦାର୍ଶନିକମାନେ ଏକଛତ୍ର ରାଜତାନ୍ତ୍ରିକ ଶାସନର ଅନୁଭୂତ ଓ ଗ୍ରୀକ୍ ଗଣତାନ୍ତ୍ରିକ ଆଦର୍ଶର ସ୍ୱପ୍ନିଳ ଅତୀତ ମଧ୍ୟରେ ଏକ ଉନ୍ନତ,

---

(୧୨) Ibid pp. 421-435

(୧୩) Pant—History of Western Political Thought (Part-II) pp. 95-96

ହିତକାମୀ, ଆଦର୍ଶବାଦୀ, ସଦ୍ଭାବଶୀଳ ଓ ବ୍ୟକ୍ତି ସନ୍ତୋଷସାଧନକ୍ଷମ ରାଷ୍ଟ୍ରୀୟ ବ୍ୟବହାର ଅନୁସନ୍ଧାନ କରି ଚାଲିଛନ୍ତି । ଫରାସୀ ବିପ୍ଳବର ସାମ୍ୟ-ମୈତ୍ରୀ-ମୁକ୍ତି ଆଦର୍ଶର ବାସ୍ତବ କ୍ଷେତ୍ରରେ ବିଫଳତା ଉପଲବ୍ଧି କରି ଏମାନେ ନିଜ ନିଜର ପରିବେଶ ଓ ଅନୁଚିନ୍ତା ଅନୁଯାୟୀ ରାଜନୈତିକ ଆଦର୍ଶର ରୂପରେଖ ପ୍ରସ୍ତୁତ କରିଛନ୍ତି । ଏପରିକି, କାର୍ ଲାଇଲଙ୍କ ଭଳି ରୁଷୋଙ୍କ ସମାଲୋଚକମାନଙ୍କୁ ତୀବ୍ର ଆକ୍ଷେପ କରାଯାଇଛି । (୧୪)

**ଡେଭିଡ୍ ହ୍ୟୁମ (୧୭୧୧-୧୭୭୬)** ପ୍ରାକୃତିକ ଆଇନ, ପ୍ରାକୃତିକ ଧର୍ମ ଓ ସାମାଜିକ ଚୁକ୍ତି ସମ୍ବନ୍ଧୀୟ ରାଜନୀତିର ଦୃଢ଼ ସମାଲୋଚନାପୂର୍ବକ ଯୌକ୍ତିକତା ପରିବର୍ତ୍ତେ ଭାବାବେଶ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ଏବଂ ପ୍ରାଚୀନ ଚଳଣି, ପରଂପରା ଓ ଐତିହାସିକ ତଥା ସାମାଜିକ ମୂଲ୍ୟବୋଧ ଉପରେ ଆସ୍ଥାବାନ୍ ହୋଇ ଉଠିଛନ୍ତି । (୧୫) **ଏଡ୍‌ମଣ୍ଡ ବାର୍କ (୧୭୨୯-୧୭୯୭)** ରାଷ୍ଟ୍ର ଓ ସମାଜ ମଧ୍ୟରେ କୌଣସି ପାର୍ଥକ୍ୟ ସ୍ୱୀକାର ନକରି ସମାଜକୁ ଏକ ଚୁକ୍ତି ନିଷ୍ପନ୍ନ ଅନୁଷ୍ଠାନ ରୂପେ ଗ୍ରହଣ କରି ନେଇଛନ୍ତି । ସେ ପାରଂପରିକ ଓ ଆଧୁନିକ ଆଦର୍ଶର ସମନ୍ୱୟରେ ଏକ ବାସ୍ତବଧର୍ମୀ ଚିନ୍ତାଧାରା ପୋଷଣ କରିଥିବାରୁ ସେଥିରେ ହବସ୍‌ଙ୍କ ଯୁକ୍ତିସିଦ୍ଧତା, ହ୍ୟୁମଙ୍କ ମନସ୍ତାତ୍ତ୍ୱିକତା ଓ ଗ୍ରୀକଙ୍କ ନୈତିକତାର ସମନ୍ୱୟ ଘଟିଅଛି । ବାର୍କ ଧର୍ମ ଓ ରାଜନୀତିର ସଂଯୋଗ ସ୍ଥାପନ କରି ସୁବିଧାବାଦ ବା ହିତବାଦ ପରିବର୍ତ୍ତେ ଜନମତ ଓ ରାଜନୈତିକ ଦଳ ମାଧ୍ୟମରେ ସରକାର ଗଠନ ସପକ୍ଷରେ ମତ ଦେଇଛନ୍ତି । (୧୬)

ଜନ୍ ଲକ୍ ଓ ଡେଭିଡ୍ ହ୍ୟୁମ୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ **ଜେରେମି ବେନ୍ଥାମ୍ (୧୭୪୮-୧୮୩୨)** ବିପୁଳସଂଖ୍ୟକ ଜନତାର ବହୁବିଧ ସନ୍ତୋଷ ବିଧାନରେ ହିଁ ରାଜନୀତିର ସାର୍ଥକତା ନିହିତ ବୋଲି ଦୃଢ଼ ମତ ପ୍ରକାଶ କରିଛନ୍ତି । ସେ ତାଙ୍କର 'ଥିଓରି ଅଫ୍ ଲେଜିସ୍‌ଲେସନ୍' ଗ୍ରନ୍ଥରେ ସ୍ପଷ୍ଟ ସୂଚନା ଦେଇଛନ୍ତି ଯେ ସାଧାରଣ ହିତସାଧନ ହିଁ ବୈଧାନିକ ବ୍ୟବସ୍ଥାର ମୂଳ ଭିତ୍ତି । ତାଙ୍କ ମତରେ ବିଧାୟକମାନଙ୍କର ଚତୁର୍ବିଧ ଲକ୍ଷ୍ୟ ହେଉଛି—ନିରାପତ୍ତା, ଭରଣପୋଷଣ, ସାମ୍ୟ ଓ ପ୍ରାଚୁର୍ଯ୍ୟ । ଏହା ବ୍ୟତୀତ, ସନ୍ତୋଷ ଓ ଅସନ୍ତୋଷ ତଥା ଆନନ୍ଦ ଓ

---

(୧୪) Leacock, Stephen The Elements of Political Science (Constable, London. 1924) P. 26

(୧୫) Sabine, A History of Political Theory, pp. 504-510

(୧୬) Ibid-pp. 511 520

ନିରାନନ୍ଦର ବିଶ୍ଳେଷଣ କରି ଏକ ବିସ୍ତୃତ ତୁଳନାତ୍ମକ ଚିତ୍ର ସେ ଉପସ୍ଥାପନ କରିଅଛନ୍ତି । (୧୭)

ତାଙ୍କ ମତରେ ବିଭିନ୍ନ ପ୍ରକାର ଆନନ୍ଦ ହେଉଛି—ବୌଦ୍ଧିକ ଆନନ୍ଦ, ସମ୍ପତ୍ତିର ଆନନ୍ଦ, ଦକ୍ଷତାର ଆନନ୍ଦ, ବନ୍ଧୁତାର ଆନନ୍ଦ, ସୁଖ୍ୟାତିର ଆନନ୍ଦ, କ୍ଷମତାର ଆନନ୍ଦ, ଦୟାର ଆନନ୍ଦ, ବଦାନ୍ୟତାର ଆନନ୍ଦ, ନିଷ୍ଠୁରତାର ଆନନ୍ଦ, ସ୍ମୃତିଶକ୍ତିର ଆନନ୍ଦ, କଳ୍ପନାଶକ୍ତିର ଆନନ୍ଦ, ଆଶାର ଆନନ୍ଦ, ସମ୍ପର୍କବୋଧର ଆନନ୍ଦ ଓ ଅବ୍ୟାହତିର ଆନନ୍ଦ । ସେହିପରି ବିବିଧ ପ୍ରକାର ଦୁଃଖ ହେଉଛି—ବୌଦ୍ଧିକ ଦୁଃଖ, ଦୈନ୍ୟଭାବର ଦୁଃଖ, ଅସୁବିଧାଜନକ ଦୁଃଖ, ଶତ୍ରୁତାର ଦୁଃଖ, କୁଖ୍ୟାତିର ଦୁଃଖ, ଦୟାର ଦୁଃଖ, ବଦାନ୍ୟତାର ଦୁଃଖ, ଅନିଷ୍ଟ ସାଧନର ଦୁଃଖ, ସ୍ମୃତିର ଦୁଃଖ, କଳ୍ପନାର ଦୁଃଖ, ଆଶାର ଦୁଃଖ ଓ ସମ୍ପର୍କହୀନତାର ଦୁଃଖ । ଏହି ବିବିଧପ୍ରକାର ସୁଖଦୁଃଖର ଅନେକ କାରଣ ମଧ୍ୟ ବେନ୍ଥାମ୍ ନିରୂପଣ କରିଛନ୍ତି । ଏସବୁ ହେଉଛି-(୧) ସ୍ୱାସ୍ଥ୍ୟ, (୨) ଶକ୍ତି, (୩) ପରାକ୍ରମ, (୪) ଶାରୀରିକ ଅକ୍ଷମତା, (୫) ଜ୍ଞାନର ଗୁଣ ଓ ପରିମାଣ, (୬) ବୁଦ୍ଧିର ବୋଧଶକ୍ତି, (୭) ମାନସିକ ଦୃଢ଼ତାର ଶକ୍ତି, (୮) ମାନସିକ ସ୍ଥିରତା, (୯) ଅନୁରକ୍ତି, (୧୦) ନୈତିକତାବୋଧ, (୧୧) ନୈତିକ ଆକର୍ଷଣ, (୧୨) ଧର୍ମୀବବୋଧ, (୧୩) ଆଧ୍ୟାତ୍ମିକ ଆକର୍ଷଣ, (୧୪) ସହାନୁଭୂତିଶୀଳତା, (୧୫) ସହୃଦୟ ପ୍ରବଣତା, (୧୬) ନିଷ୍ଠୁରଣ ଭାବ, (୧୭) ନିଷ୍ଠୁରଣ ପ୍ରତି ଆସକ୍ତି, (୧୮) ସୀମାହୀନତା, (୧୯) ଅଭ୍ୟାସ, (୨୦) ଆର୍ଥିକ ଅବସ୍ଥା, (୨୧) ଘୃଣ୍ୟ ଓ ସହାନୁଭୂତିଶୀଳ ସମ୍ପର୍କ ଏବଂ (୨୨) ଶାରୀରିକ, ମାନସିକ, ଲୈଙ୍ଗିକ, ବଂଶ ପରମ୍ପରା, ବୟସ, ଧର୍ମ, ଶିକ୍ଷା, ପଦବୀ, ଜଳବାୟୁ ଓ ଶାସନଗତ ଅବସ୍ଥା । (୧୮)

ବେନ୍ଥାମ ମୁଖ୍ୟତଃ ଥିଲେ ସଂସ୍କାରଭିଳାଷୀ । ତାଙ୍କ ନିର୍ଦ୍ଦେଶିତ ରାଜନୈତିକ ଆଦର୍ଶଗୁଡିକ ହେଉଛି—(୧) ପୁରୁଷ ସମାଜର ମତଦାନ ଅଧିକାର, (୨) ବାର୍ଷିକ ବିଧାନସଭା ଗଠନ, (୩) ପ୍ରବଞ୍ଚନା ଓ ଦୁର୍ନୀତି ମୁକ୍ତ ଗୋପନୀୟ ମତଦାନ ପ୍ରଥା, (୪) ନିର୍ବାଚନ ମଣ୍ଡଳୀମାନଙ୍କର ସମତା ରକ୍ଷା, (୫) ବଂଶାନୁଗତ ବିଧାୟକ ମନୋନୟନ ବର୍ଜନ, (୬) ଜାତୀୟ ଶିକ୍ଷା ବ୍ୟବସ୍ଥା, (୭) ବ୍ୟାଙ୍କ ସୁଯୋଗ ଓ (୮) ସ୍ୱାସ୍ଥ୍ୟରକ୍ଷା ଯୋଜନା । ବେନ୍ଥାମଙ୍କ ଚିନ୍ତାଧାରା ଫ୍ରାନ୍ସ, ସ୍ପେନ, ପର୍ତ୍ତୁଗାଲ

---

(୧୭) Pant—History of Western Political Thought (Part-II) P. 147

(୧୮) Ibid P. 141

ପ୍ରଭୃତି ଦେଶରେ ଆଦୃତ ହୋଇଥିଲା ଏବଂ ଆମେରିକା ରାଷ୍ଟ୍ରପତି ମେଡ଼ିସନ୍‌ଙ୍କୁ ପ୍ରଭାବିତ କରିଥିଲା । (୧୯)

**ଜନ୍ ଷ୍ଟୁଆର୍ଟ ମିଲ୍** (୧୮୦୬-୧୮୭୩) ବେନ୍ଥାମଙ୍କ ହିତବାଦ ନୀତିର ପୁନର୍ବୀକରଣ କରିଥିଲେ ଏବଂ ହିତସାଧନ ସହିତ ନୈତିକତାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇଥିଲେ । ସେ ରାଷ୍ଟ୍ରକୁ ଏକ ନୈତିକ ଅନୁଷ୍ଠାନ ରୂପେ ଗ୍ରହଣ କରି ସାଧୁତା, ସ୍ୱାଧୀନତା, ଆତ୍ମମର୍ଯ୍ୟାଦା ଓ ସଦିଚ୍ଛାକୁ ସାମାଜିକ କଲ୍ୟାଣର ଆନୁସଙ୍ଗିକ ଉପାଦାନ ବୋଲି ମତ ପ୍ରକାଶ କରିଥିଲେ । ବ୍ୟକ୍ତିବାଦର ପ୍ରବକ୍ତା ହିସାବରେ ସେ ଥିଲେ ରୁଷୋ, ଜେଫେରସନ୍ ଓ ମିଲ୍‌ଟନ୍‌ଙ୍କ ଅଗ୍ରଣୀ । ମିଲ୍ ସମାଜ ଅପେକ୍ଷା ବ୍ୟକ୍ତି ଉପରେ ହିଁ ଅଧିକ ଗୁରୁତ୍ୱ ଆରୋପ କରିଥିବା ଦେଖାଯାଏ । ସେ ନାରୀମାନଙ୍କ ମତଦାନ ଅଧିକାରର ପକ୍ଷପାତୀ ଥିଲେ । ସ୍ତ୍ରୀ ଜାତିର ପରାଧୀନତା ଫଳରେ ପରିବାର ଏକ 'ମୁକ୍ତିର ବିଦ୍ୟାଳୟ' ନ ହୋଇ ଗୋଟାଏ 'ଅତ୍ୟାଚାର ଶିକ୍ଷାନୁଷ୍ଠାନ'ରେ ପରିଣତ ହୋଇଥାଏ ବୋଲି ଦୃଢ଼ ମତ ଦେଇଥିଲେ । ସେ ଗୋପନୀୟ ଭୋଟଦାନକୁ ବିରୋଧ କରି ଏକ ଉନ୍ମୁକ୍ତ ମତଦାନ ବ୍ୟବସ୍ଥା ପ୍ରବର୍ତ୍ତନ ଲାଗି ପରାମର୍ଶ ଦେବା ସଙ୍ଗେ ସଙ୍ଗେ ପରିମାଣାତ୍ମକ ଆନନ୍ଦ ଅପେକ୍ଷା ଗୁଣାତ୍ମକ ଆନନ୍ଦ ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି । (୨୦) ମଣିଷର ମାନସିକ ଅବସ୍ଥା ଘୁଷୁରିର ମାନସିକ ଅବସ୍ଥା ସହିତ କଦାପି ସମାନ ନୁହେଁ ବୋଲି ଧରିନେଇ ସେ ସଂଖ୍ୟାଧିକ ଜନତାର ଅତ୍ୟାଚାର ବିରୁଦ୍ଧରେ ବ୍ୟକ୍ତିର ଚାରିତ୍ରିକ ଓ ବୌଦ୍ଧିକ ଉତ୍କର୍ଷ ପ୍ରତିପାଦନ କରିଛନ୍ତି । ମାତ୍ର ଜଣେ ଚିନ୍ତାଶୀଳ ବ୍ୟକ୍ତିର ମତ ବି ସର୍ବଶ୍ରେଷ୍ଠ ମତ ହୋଇପାରେ ବୋଲି ସେ ଦୃଢ଼ ଯୁକ୍ତି ଉପସ୍ଥାପନ କରି ଯାଇଛନ୍ତି । (୨୧)

ବ୍ୟକ୍ତିବାଦ ଓ ହିତବାଦର ପ୍ରତିଦ୍ୱନ୍ଦ୍ୱୀରେ ଆଦର୍ଶବାଦର ବିକାଶ ଘଟିଥିଲା ଏବଂ ପାଞ୍ଚଜଣ ଜର୍ମାନ୍ ଓ ଇଂରେଜ ଶିକ୍ଷାବିତ୍ (ଇମାନୁଏଲ କାଣ୍ଟ, ଜର୍ଜ ଉଇଲହ୍ୟମ ଫେଡ୍ରେରିକ ହିଗଲ, ଥମାସ୍ ହିଲ୍ ଗ୍ରୀନ୍, ବେନାର୍ଡ଼ ବୋସାଙ୍କେଣ୍ଟ ଓ ଫ୍ରାନ୍‌ସିସ୍ ବ୍ରାଡ୍‌ଲେ) ଏ କ୍ଷେତ୍ରରେ ଅଗ୍ରଣୀ ଥିଲେ । ଏମାନେ ଆରିଷ୍ଟୋଟଲ, ପ୍ଲାଟୋ ଓ ରୁଷୋଙ୍କ ଚିନ୍ତାଧାରାକୁ ନୂତନ ରୂପ ଦେଇ ଏକ ଅଭିନବ ଆଦର୍ଶବାଦୀ

---

(୧୯) Ibid P. 148

(୨୦) Ibid pp. 155-174

(୨୧) Wayper—Political Thought pp 110—126

ଦର୍ଶନ ଉପସ୍ଥାପନ କରିଥିଲେ । ଏହି ଆଦର୍ଶବାଦର ମୁଖ୍ୟ ଉପାଦାନଗୁଡ଼ିକ ହେଉଛି (୨୨)—

୧ । ବିବେକସମ୍ମତ ଓ ଯୁକ୍ତିସିଦ୍ଧ ଚିନ୍ତାର ହିଁ ମଣିଷ ମନର ଶ୍ରେଷ୍ଠ ଉପାଦାନ, ପ୍ରବୃତ୍ତି ବା ଭାବପ୍ରବଣତା ନୁହେଁ ।

୨ । ବସ୍ତୁ ଅପେକ୍ଷା ଚିନ୍ତାଶକ୍ତିର ପ୍ରାଧାନ୍ୟ ଅଧିକ ।

୩ । ରାଷ୍ଟ୍ରୀୟ କ୍ଷମତାର ଗୁରୁତ୍ୱ ଏକାନ୍ତ ସ୍ୱୀକାର୍ଯ୍ୟ ।

୪ । ନାଗରିକ ବ୍ୟକ୍ତିର ସ୍ଥିତି ନିତାନ୍ତ ଗୌଣ; ଏଣୁ ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ ସଂଘର୍ଷ ପାଇଁ ଅବକାଶ ରହେ ନାହିଁ ।

୫ । ରାଷ୍ଟ୍ର ଜନସାଧାରଣଙ୍କ ଆକାଂକ୍ଷା ଓ ନୈତିକତାର ପ୍ରତୀକ ।

୬ । ସାମାଜିକ ପରିବେଶ ମଧ୍ୟରେ ହିଁ ବ୍ୟକ୍ତି-ସ୍ୱାଧୀନତା ସୀମିତ ।

୭ । ସାମାଜିକ ଓ ନୈତିକ ଜୀବନ ନିର୍ବାହ କ୍ଷେତ୍ରରେ ସମସ୍ତ ପ୍ରତିବନ୍ଧକର ନିରାକରଣ ରାଷ୍ଟ୍ରର କର୍ତ୍ତବ୍ୟ ।

୮ । ରାଷ୍ଟ୍ର ହିଁ ସମଗ୍ର ନୈତିକତାର ଅଭିଭାବକ ସ୍ୱରୂପ ।

୯ । ଆଇନ ସାର୍ବଭୌମ କ୍ଷମତାଶାଳୀ ବ୍ୟକ୍ତିର ଆଦେଶ ନୁହଁ, ଏହା ଯୁକ୍ତିସିଦ୍ଧତା ଓ ବିଚାରସମ୍ମତର ପରିପ୍ରକାଶ ମାତ୍ର । ଅର୍ଥାତ୍, ଏହା ଜନସାଧାରଣଙ୍କ ଅଭିଳାଷ ଅନୁଯାୟୀ ଏକ ସାଧାରଣ ଲକ୍ଷ୍ୟ ହାସଲର ପନ୍ଥା ।

୧୦ । କ୍ଷମତା ନୁହେଁ, ଶଣାକାଂକ୍ଷା ହିଁ ରାଷ୍ଟ୍ରର ମୂଳଭିତ୍ତି ।

କାଣ୍ଟ୍ (୧୭୨୪-୨୮୦୪) ଆଧ୍ୟାତ୍ମିକତା, ନୈତିକତା ଓ ବିବେକସମ୍ମତ ଇଚ୍ଛାଶକ୍ତିକୁ ରାଷ୍ଟ୍ରର ମୂଳଭିତ୍ତି ରୂପେ ଗ୍ରହଣ କରି ପରଂପରା, ଚଳଣି ଓ ନୈତିକତା-ସମ୍ମତ ଆଇନର ସର୍ବବ୍ୟାପକତା ଉପରେ ଗୁରୁତ୍ୱ ଦେଇଛନ୍ତି । ସେ ବ୍ୟକ୍ତି ସ୍ୱାର୍ଥକୁ ରାଷ୍ଟ୍ରୀୟ କ୍ଷମତା ପରିସରର ଊର୍ଦ୍ଧ୍ୱରେ ସ୍ଥାନ ଦେଇ ବ୍ୟକ୍ତିଗତ ସମ୍ପତ୍ତି ଅଧିକାର ପ୍ରତି ସମର୍ଥନ ଜ୍ଞାପନପୂର୍ବକ ଏକ ଯୁଦ୍ଧବିହୀନ ବିଶ୍ୱରାଷ୍ଟ୍ର (World State)ର ପରିକଳ୍ପନା କରିଛନ୍ତି । (୨୩) ହେଗଲ୍ (୧୭୭୦-୧୮୩୧) ଆରିଷ୍ଟୋଟଲଙ୍କ ପ୍ରାକୃତିକ ନୀତି

---

(୨୨) Pant—History of Western Political Thought (Part-II) pp. 177-188

(୨୩) Ibid—pp. 185-193

ଉପରେ ଆସ୍ଥା ସ୍ଥାପନପୂର୍ବକ ସାର୍ବଜନୀନ ଚିନ୍ତା, ଉତ୍ସାହ, ଯୁକ୍ତିଯୁକ୍ତତା ତଥା ମନୋଭାବର ସାର୍ବଭୌମତାକୁ ପ୍ରାଧାନ୍ୟ ଦେଇ ମତ ବ୍ୟକ୍ତ କରିଛନ୍ତି ଯେ ଅଜ୍ଞତାରୁ ଜ୍ଞାନର ପରିପୂର୍ଣ୍ଣତାରେ ପହଞ୍ଚିବା ପ୍ରକ୍ରିୟା ହେଉଛି ଇତିହାସ ଏବଂ ଏହି ବିଶ୍ୱ ଐତିହାସିକ ପ୍ରକ୍ରିୟା ହିଁ ଯୁକ୍ତିସିଦ୍ଧ କ୍ରମବିକାଶର ଧାରା। ତାଙ୍କ ମତରେ ଯାହା ଯୁକ୍ତିଯୁକ୍ତ, ତାହା ବାସ୍ତବ ଏବଂ ଯାହା ବାସ୍ତବ, ତାହା ଯୁକ୍ତିଯୁକ୍ତ। (୨୪) ହେଗଲ୍‌ଙ୍କ ରାଜନୈତିକ ଦର୍ଶନରେ ମୁଖ୍ୟତଃ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଅଧିକାର ପରିବର୍ତ୍ତେ ରାଷ୍ଟ୍ରୀୟ ଜାତୀୟତା ଉପରେ ପ୍ରାଧାନ୍ୟ ଆରୋପିତ ହୋଇଅଛି। ତାଙ୍କର ଦୃଢ଼ବୋଧ ହୋଇଥିଲା ଯେ ରାଷ୍ଟ୍ର ଏକ ସର୍ବଶକ୍ତିମାନ ଅନୁଷ୍ଠାନ; କିନ୍ତୁ ତାହା ସ୍ୱେଚ୍ଛାଚାରୀ ନୁହେଁ, କାରଣ ତାହା ସର୍ବଦା ଯୁକ୍ତିଯୁକ୍ତତା, ଐତିହାସିକତା ଓ ଆଧ୍ୟାତ୍ମିକତା ଉପରେ ପ୍ରତିଷ୍ଠିତ। ସେ ଚାହିଁଥିଲେ ସାମ୍ବିଧାନିକ ରାଜତନ୍ତ୍ର। ସଂକ୍ଷେପରେ ପ୍ରକାଶ କଲେ, ହେଗଲ୍‌ଙ୍କ ଦର୍ଶନରେ ରୁଷୋଙ୍କ ସାର୍ବଜନୀନ ଅଭିଳାଷ ଓ ବାର୍କଙ୍କ ଅଧ୍ୟାତ୍ମବାଦୀ ଐତିହାସିକ ଦୃଷ୍ଟିକୋଣର ସମନ୍ୱୟ ଘଟିଅଛି। (୨୫)

ଗ୍ରୀନ୍ (୧୮୩୬-୧୮୮୨) କାଣ୍ଟଙ୍କ ଭଳି ନିତାନ୍ତ ବ୍ୟକ୍ତିବାଦୀ ନଥିଲେ କିମ୍ବା ହେଗଲ୍‌ଙ୍କ ଭଳି ନିରୋଳା ଆଦର୍ଶବାଦୀ ମଧ୍ୟ ନଥିଲେ। ସେ ଉଭୟ ଆଦର୍ଶବାଦର ସମନ୍ୱୟ ସାଧକ। ବ୍ୟକ୍ତିଗତ ସମ୍ପତ୍ତିର ସୁରକ୍ଷା ସପକ୍ଷରେ ମତ ପୋଷଣ ଯୋଗୁଁ ସେ ପୁଞ୍ଜିବାଦର ପକ୍ଷପାତୀ ଭଳି ମନେ ହେଲେ ହେଁ ଜନମତ ହିଁ ରାଷ୍ଟ୍ରର ମୂଳଭିତ୍ତି, କ୍ଷମତା ନୁହେଁ ବୋଲି ସ୍ପଷ୍ଟ ଘୋଷଣା କରିଯାଇଛନ୍ତି। ଗ୍ରୀନ୍‌ଙ୍କ ଗଠନମୂଳକ ରାଷ୍ଟ୍ରୀୟ କାର୍ଯ୍ୟାବଳୀ ମଧ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ, ନିଶାନିବାରଣ ଓ ସମ୍ପତ୍ତିର ସୁରକ୍ଷା ଅଗ୍ରପ୍ରାଧାନ୍ୟ ଲାଭ କରିଅଛି। ତାଙ୍କ ମତରେ, ପ୍ରତିନିଧିମୂଳକ ନିର୍ବାଚିତ ସରକାର ହିଁ ଶ୍ରେଷ୍ଠ ସରକାର। (୨୬)

ବୋସାଙ୍କେଟ୍ (୧୮୪୮-୧୯୨୩) ମତ ପୋଷଣ କରିଥିଲେ ଯେ ରାଷ୍ଟ୍ରର ସଭ୍ୟ ଭାବରେ ହିଁ ବ୍ୟକ୍ତିର ପରିପୂର୍ଣ୍ଣ ବିକାଶ ସମ୍ଭବ ଏବଂ ରାଷ୍ଟ୍ର ମାଧ୍ୟମରେ ହିଁ ସାର୍ବଜନୀନ ଅଭିଳାଷ ପ୍ରକଟିତ ହୋଇପାରେ। ହେଗଲ୍‌ଙ୍କ ପରି ତାଙ୍କର ଦୃଢ଼ବୋଧ

---

(୨୪) Weyper—Political Thought—pp. 156-157

(୨୫) Sabine—A History of Political Theory—pp. 536-558

(୨୬) Pant—History of Western Political Thought—(Part-II) pp. 220-221

ହୋଇଥିଲା ଯେ ରାଷ୍ଟ୍ର ପ୍ରତି ଆନୁଗତ୍ୟ ପ୍ରକାଶରେ ହିଁ ବ୍ୟକ୍ତିଗତ ସ୍ୱାଧୀନତା ସୁରକ୍ଷିତ ରହିପାରେ । ସେ ଗ୍ରୀନ୍‌ଙ୍କ ମୁକ୍ତ ସ୍ୱାଧୀନତାକୁ ସମର୍ଥନ କରି ନଥିଲେ । ତାଙ୍କ ମତାନୁଯାୟୀ ରାଷ୍ଟ୍ର ହେଉଛି ପରିବାର ଓ ଗୀର୍ଜାର ଏକ ମିଳିତ ଯୌଥ ଅନୁଷ୍ଠାନ ଏବଂ ଏ ପ୍ରକାର ରାଷ୍ଟ୍ର ହିଁ ବ୍ୟକ୍ତିର ଚରମ କାମ୍ୟ । (୨୭) **ବ୍ରାଡ୍‌ଲେ** (୧୮୪୬-୧୯୨୪) ରାଷ୍ଟ୍ରକୁ ଏକ ନୈତିକ ଅନୁଷ୍ଠାନ ରୂପେ ଗ୍ରହଣ କରି ବ୍ୟକ୍ତି ରାଷ୍ଟ୍ର ତଥା ସମାଜର ନୈତିକ ଆଦର୍ଶ ଆହରଣ କରିବା ଉଚିତ ବୋଲି ମତ ପୋଷଣ କରିଛନ୍ତି ।

କିନ୍ତୁ **ହର୍ବର୍ଟ ସ୍ପେନ୍‌ସର୍** (୧୮୨୦-୧୯୦୩) ପ୍ରତିକ୍ରିୟାଶୀଳ ଓ ଉଗ୍ରବାଦୀ ମନୋଭାବ ପୋଷଣପୂର୍ବକ କ୍ରମବିକାଶ ନୀତି ତଥା ଯୋଗ୍ୟତମର ଉଦ୍‌ବର୍ତ୍ତନ ନିୟମ ପ୍ରତି ସମର୍ଥନ ଜଣାଇଥିଲେ ଏବଂ ରାଷ୍ଟ୍ରୀୟ ନିୟନ୍ତ୍ରଣ ବ୍ୟକ୍ତିତ୍ୱର ଜୀବତାତ୍ତ୍ୱିକ ବିକାଶ ଓ ଶ୍ରେଷ୍ଠତ୍ୱର ପରିପ୍ରକାଶ କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରେ ବୋଲି ମତ ଦେଇଥିଲେ । ସେ ରାଷ୍ଟ୍ର ପାଇଁ ଏକ ପ୍ରତିବନ୍ଧତାର୍ଥକ ଦାୟିତ୍ୱବୋଧର ତାଲିକା ପ୍ରସ୍ତୁତ କରି କ୍ଷମତାର ବିକେନ୍ଦ୍ରୀକରଣ ତଥା ରାଷ୍ଟ୍ର ବିପ୍ଳବବାଦ ବା ଅରାଜକତାବାଦର ପ୍ରବକ୍ତା ରୂପେ ପରିଚିତ । (୨୮) ତାଙ୍କ ମତରେ, ଧର୍ମ, ସ୍ୱାସ୍ଥ୍ୟ, ଶିକ୍ଷା, ଶିଳ୍ପ, ବାଣିଜ୍ୟ, ଶ୍ରମିକ ସମସ୍ୟା, ମୁଦ୍ରା ପ୍ରଚଳନ, ଡାକ ସରବରାହ ଇତ୍ୟାଦିରେ ରାଷ୍ଟ୍ର ହସ୍ତକ୍ଷେପ କରିବା ଅନୁଚିତ । ସ୍ପେନ୍‌ସର୍‌ଙ୍କ ବିଚାରରେ ବ୍ୟକ୍ତିକୁ ଅତ୍ୟାଚାର, ଦମନ ଓ ପ୍ରବଞ୍ଚନା କବଳରୁ ରକ୍ଷା କରିବା ହିଁ ରାଷ୍ଟ୍ରର କର୍ତ୍ତବ୍ୟ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଜଣାଯାଏ ଯେ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ସୁଦ୍ଧା ରାଜତନ୍ତ୍ରକୁ ସମ୍ପୂର୍ଣ୍ଣ ଭାବେ ପରିହାର କରାଯାଇପାରି ନଥିଲା କିମ୍ବା ଗଣତନ୍ତ୍ରକୁ ପୂର୍ଣ୍ଣ ସ୍ୱୀକୃତି ଦେବା ପାଇଁ ଏକ ଅନୁକୂଳ ପରିବେଶ ସୃଷ୍ଟି ହୋଇପାରି ନଥିଲା । କିନ୍ତୁ ଏକଛତ୍ର ନିରଙ୍କୁଶ ଶାସକମାନଙ୍କ ବିରୁଦ୍ଧରେ ଯେଉଁ ତୀବ୍ର ଗଣ-ଅସନ୍ତୋଷ ଲାଗି ରହିଥିଲା, ତାହା ଉପରେ ଭିତ୍ତିକରି ମାର୍କସ୍, ଏଙ୍ଗେଲସ୍ ଓ ଲେନିନ୍ ସମାଜବାଦୀ ରାଷ୍ଟ୍ରୀୟ ପରିକଳ୍ପନାକୁ ଏକ ନୂତନ ଆଭିମୁଖ୍ୟ ପ୍ରଦାନ କଲେ ।

---

(୨୭) Ibid—pp. 234-236

(୨୮) Sabine—A History of Political Theory-P 605

(୨୯) Pant—History of Western Thought (Part—II) pp. 242-245

## ସମାଜବାଦ

କାର୍ଲ ମାର୍କସ୍ (୧୮୧୮-୧୮୮୩) ପୁଞ୍ଜିବାଦ ବିରୁଦ୍ଧରେ ସର୍ବହରା ଶ୍ରେଣୀର ସଂଘର୍ଷ ପରିକଳ୍ପନାମୂଳକ ଐତିହାସିକ ବିବର୍ତ୍ତନ କ୍ରମେ ଶ୍ରେଣୀସଂଘର୍ଷ ଅନିବାର୍ଯ୍ୟ ବୋଲି ଗ୍ରହଣ କରି ନେଇଥିଲେ । ଏହି ପୃଷ୍ଠଭୂମିରେ ସେ ଶ୍ରେଣୀଶୂନ୍ୟ ସମାଜର ସ୍ୱପ୍ନ ଦେଖିବା ସଙ୍ଗେ ସଙ୍ଗେ ଶ୍ରମିକ ସମାଜକୁ ପୁଞ୍ଜିବାଦୀ ଶୃଙ୍ଖଳ ଛିନ୍ନ କରି ସଙ୍ଘବଦ୍ଧ ହେବା ପାଇଁ ଆହ୍ୱାନ ଦେଇଥିଲେ । ସାମାଜିକ ବଣ୍ଟନ ବ୍ୟବସ୍ଥା ସଂପର୍କରେ ସେ 'ଶକ୍ତି ଅନୁଯାୟୀ ପ୍ରତ୍ୟେକଙ୍କ ଠାରୁ ଆଣି ଆବଶ୍ୟକତା ଅନୁସାରେ ପ୍ରତ୍ୟେକଙ୍କୁ ଦେବା' ନୀତିରେ ବିଶ୍ୱାସୀ ଥିଲେ । (୩୦) ମାର୍କସ୍ ବିଶ୍ୱାସ କରୁଥିଲେ ଯେ ପୁଞ୍ଜିପତିମାନେ ଶ୍ରମିକମାନଙ୍କ ଠାରୁ ପାରିଶ୍ରମିକ ତୁଳନାରେ ଯେଉଁ ଅଧିକ ପୁଞ୍ଜି ସଂଗ୍ରହ କରନ୍ତି, ସେହି ଧନ ଯଥାର୍ଥରେ ସମାଜର ସଂପତ୍ତି । ଏଣୁ ଧନିକ ଗୋଷ୍ଠୀ ବିରୁଦ୍ଧରେ ଶ୍ରମିକ ଗୋଷ୍ଠୀର ସଂଗ୍ରାମ ଅନିବାର୍ଯ୍ୟ ଏବଂ ଦିନେ ନା ଦିନେ ଶ୍ରମିକ ଶ୍ରେଣୀ ଶୋଷକ ଶ୍ରେଣୀକୁ ଶୋଷଣ କରି ଏକଚ୍ଛତ୍ର ଆଧିପତ୍ୟ ପ୍ରତିଷ୍ଠା କରିବା ସୁନିଶ୍ଚିତ ବୋଲି ସେ ମତ ପ୍ରକାଶ କରିଥିଲେ । ଲେନିନଙ୍କ ନେତୃତ୍ୱରେ ୧୯୧୭ ମସିହାରେ ରୁଷିଆରେ ଯେଉଁ ଯୁଗାନ୍ତକାରୀ ବିପ୍ଳବ ସଂଘଟିତ ହୋଇଥିଲା, ତାର ପୃଷ୍ଠଭୂମିରେ ମାର୍କସଙ୍କର ଏହି ଆଦର୍ଶ ବଳବତ୍ତର ଥିଲା ।

ଅବଶ୍ୟ ମାର୍କସଙ୍କ ପୂର୍ବରୁ ରବର୍ଟ ଓଏନ୍ (୧୭୭୧-୧୮୫୮), ସାଇମନ୍, ଗୁଇଜଟ୍ (୧୭୮୭-୧୮୭୪), ପାଲ୍ ପ୍ରୌଧନ (୧୭୫୮-୧୮୧୩), ଚାର୍ଲସ୍ ଲିଓନାର୍ଡ ସିସମଣ୍ଡି (୧୭୭୩-୧୮୪୨), ଚାର୍ଲସ୍ ଫାଉରିଅର୍ (୧୭୭୨-୧୮୩୭) ପ୍ରମୁଖଙ୍କ ରଚନାରେ ସମାଜବାଦୀ ଆଦର୍ଶର ନମୁନା ପରିଲକ୍ଷିତ ହୁଏ । ଓଏନଙ୍କ ମତରେ, ଯନ୍ତ୍ରଯୁଗରେ ପ୍ରତିଦ୍ୱନ୍ଦ୍ୱିତା ଠାରୁ ସହଯୋଗିତାର ଆବଶ୍ୟକତା ବେଶୀ । ସାଇମନ୍ ଓ ଗୁଇଜଟ୍ ଶ୍ରେଣୀ ମୁକ୍ତିର ସୂଚନା ଦେଇଛନ୍ତି । ପ୍ରୌଧନଙ୍କ ଦୃଷ୍ଟିରେ ସମସ୍ତ ସମ୍ପତ୍ତି ତସ୍କରତାରହିଁ ପରିଣତି । ଫାଉରିଅରଙ୍କ ବିଚାରରେ ମଧ୍ୟବିତ୍ତମାନେ ବ୍ୟାବସାୟିକ ସ୍ୱେଚ୍ଛାଗ୍ରସ୍ତ । ଆକସ୍ମିକ ମୂଲ୍ୟବୃଦ୍ଧି ଓ ମୂଲ୍ୟହ୍ରାସ ଜନିତ ଅର୍ଥନୈତିକ ସମସ୍ୟା ସଂପର୍କରେ ସିସମଣ୍ଡି ସଚେତନ କରାଇଛନ୍ତି । କିନ୍ତୁ ଏ ସମସ୍ତ ସମାଜବାଦୀ ଦାର୍ଶନିକ ସୁନ୍ଦର ଗୋଲାପର ସ୍ୱପ୍ନ ଦେଖିଥିଲେ ସିନା, ତା ପାଇଁ ମୃତ୍ତିକା ସଂଗ୍ରହ କରିନଥିଲେ । ମାର୍କସ୍ ରାଜନୈତିକ, ଆର୍ଥନୀତିକ

(୩୦) Weyper—Political Thought—pp. 196-216

ଓ ଐତିହାସିକ ତଥ୍ୟକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରି ଏକ ପ୍ରଭାବଶାଳୀ ଦର୍ଶନର ଉଦ୍ଭାବକ ଭାବରେ 'ନୂତନ ଯୁଗର ଭଗବାନ' ରୂପେ ପରିଚିତ ହେଲେ ଏବଂ ତାଙ୍କର 'ବୈଜ୍ଞାନିକ ସାମ୍ୟବାଦ' ମାନବ ଜାତିର ସର୍ବଶ୍ରେଷ୍ଠ ପ୍ରଗତିଶୀଳ ଚିନ୍ତାଧାରା ରୂପେ ପରିଗଣିତ ହେଲା । (୩୧)

ମାର୍କସ୍‌ଙ୍କ ତିରୋଧାନ ପରେ ତାଙ୍କ ବନ୍ଧୁ **ଏଞ୍ଜେଲସ୍** (୧୮୨୦-୧୮୯୫) ମାର୍କସବାଦୀ ଆଦର୍ଶକୁ ପରିପୁଷ୍ଟ କରିଥିଲେ । ସେ ଇତିହାସର ଅର୍ଥନୈତିକ ଦିଗ ବିଶ୍ଳେଷଣ କରି କ୍ରମ ବିକାଶରୁ ଶ୍ରେଣୀ ବିଭାଜନ ଅପରିହାର୍ଯ୍ୟ ଓ ସର୍ବହରା ଶ୍ରେଣୀ ରାଜନୈତିକ କ୍ଷମତା ହାସଲ କରି ସମସ୍ତ ଉତ୍ପାଦନକୁ ରାଷ୍ଟ୍ରୀୟ ସଂପତ୍ତିରେ ପରିଣତ କରିଦେବେ ବୋଲି ସ୍ପଷ୍ଟ ଭାବେ ସୂଚାଇଥିଲେ । ମାର୍କସଙ୍କ ଦର୍ଶନର ପ୍ରଭାବ ନିକଟରେ ଏଞ୍ଜେଲସ୍‌ଙ୍କ ପ୍ରତିଭା ମଳିନ ପଡିଯାଇଥିଲେ ହେଁ ଲେନିନ୍‌ଙ୍କ ଉପରେ ସେ ଗଭୀର ପ୍ରଭାବ ବିସ୍ତାର କରିପାରିଥିଲେ । (୩୨)

**ଲେନିନ୍** (୧୮୭୦-୧୯୨୪) ସାମ୍ରାଜ୍ୟବାଦର ଭୟାବହ ଚିତ୍ର ଅଙ୍କନ ପୂର୍ବକ ଏକ ସାମ୍ୟବାଦୀ ସ୍ୱର୍ଗର ପରିକଳ୍ପନା କରି ଚିନ୍ତାଶକ୍ତି, ଶାରୀରିକ ଶକ୍ତି ଓ ଦ୍ୱଂସାତ୍ମକ ବିପ୍ଳବ ଉପରେ ଗୁରୁତ୍ୱ ଆରୋପ କରିଥିଲେ । 'ଶକ୍ତି ଅନୁଯାୟୀ ଆଣି ଆବଶ୍ୟକତା ଅନୁସାରେ ଦେବା' ନୀତି ଦ୍ୱାରା ରାଷ୍ଟ୍ରର ସଂପୂର୍ଣ୍ଣ ଉଚ୍ଛେଦ ଘଟି ସାମ୍ୟବାଦ ପ୍ରତିଷ୍ଠିତ ହୋଇପାରିବ ବୋଲି ସେ ଆଶାବାଦୀ ଥିଲେ । ଜାର୍ ଶାସନ ବିରୁଦ୍ଧରେ ନିଜେ ବିଦ୍ରୋହୀ ସାଜି ବ୍ୟକ୍ତିଗତ ସଂପତ୍ତିର ଜାତୀୟକରଣ କରି ରାଜନୈତିକ ଓ ଅର୍ଥନୈତିକ ବିବର୍ତ୍ତନ ଆଣିବା କ୍ଷେତ୍ରରେ ତାଙ୍କର ଅବଦାନ ଏକାନ୍ତ ସ୍ମରଣୀୟ । ଏଥିପାଇଁ ତାଙ୍କୁ ଯଥାର୍ଥରେ 'ବୋଲ୍‌ସେଭିକ୍ ବିପ୍ଳବର ପିତା' ଓ 'ନବୀନ ରୁଷର ନିର୍ମାତା' କୁହାଯାଇଅଛି । (୩୩)

---

(୩୧) (କ) Ibid—P. 196

(ଖ) Afanasyev. V, Marxist Philosophy (Foreign Language Publishing House, Mosco, 1964) P. 358

(୩୨) (କ) Sabine—A History of Political Theory—pp. 644-650

(ଖ) Columbia Encyclopaedia (Columbia University Press, 3rd Ed. 1968) P. 655

(୩୩) Weiper—Political Thought—pp. 218-229

ଷ୍ଟାଲିନ୍ (୧୮୭୯-୧୯୫୩) ପୁଞ୍ଜିବାଦର ଅପସାରଣ ଉପରେ ବେଶୀ ପ୍ରାଧାନ୍ୟ ନଦେଇ ଜାତୀୟ ଉନ୍ନତି ଓ ଅର୍ଥନୈତିକ ବିକାଶ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କ ଉଦ୍ୟମରେ ରୁଷିଆ ସମାଜବାଦର ଏକଚ୍ଛତ୍ର ରାଷ୍ଟ୍ରରେ ପରିଣତ ହୋଇଥିଲା । ସେଥିପାଇଁ ତାଙ୍କ ଦେହାନ୍ତ ପରେ ଷ୍ଟାଲିନବାଦର ନବୀକରଣକୁ ହିଁ ସମାଜବାଦ ବିକାଶର ସୋପାନ ରୂପେ ଗ୍ରହଣ କରାଯାଇଥିଲା । ଖ୍ରୀ ୧୮୮୦ ବେଳକୁ କୃଷି ଉନ୍ନୟନ ଓ ମାନବବାଦର ଦୃଷ୍ଟିକୋଣ ଲକ୍ଷ୍ୟରେ ଗଠିତ ସମାଜବାଦୀ ଦଳର ଆଦର୍ଶ ଖ୍ରୀ ୧୯୧୭ ବେଳକୁ ସାମ୍ୟବାଦ ରୂପେ ପରିଚିତ ହୋଇଥିଲା । ମାର୍କସଙ୍କ ପରିବର୍ତ୍ତିତବାଦ ଲେନିନ୍‌ଙ୍କ ବେଳକୁ ବିପ୍ଳବବାଦର ରୂପ ନେଇଥିଲା । (୩୪) ଆପାତ ଦୃଷ୍ଟିରେ ସମାଜବାଦ ଓ ସାମ୍ୟବାଦ ଅଭିନ୍ନ ଜଣାଗଲେ ମଧ୍ୟ ଉଭୟ ମତବାଦ ମଧ୍ୟରେ ଯଥେଷ୍ଟ ତାରତମ୍ୟ ରହିଛି । ସମସ୍ତ ସାମ୍ୟବାଦୀ ସମାଜବାଦୀ ଅଟନ୍ତି, କିନ୍ତୁ ସମସ୍ତ ସମାଜବାଦୀ ସାମ୍ୟବାଦୀ ନୁହଁନ୍ତି । ମାର୍କସ୍‌ଙ୍କ ପୂର୍ବବର୍ତ୍ତୀ ଓଏନ୍, ପ୍ରୌଧନ, ଫାଉରିଅର୍ ପ୍ରମୁଖଙ୍କ ସମାଜବାଦ ସାମ୍ୟବାଦ ଠାରୁ ଭିନ୍ନ ଥିଲା, କିନ୍ତୁ କାର୍ଲ ମାର୍କସଙ୍କ ବୈଜ୍ଞାନିକ ସମାଜବାଦ ସାମ୍ୟବାଦ ଆଦର୍ଶର ନିକଟତର ।

ସମାଜବାଦ ଓ ସାମ୍ୟବାଦର ତୁଳନାତ୍ମକ ବିଚାର କଲେ, ଉଭୟ ମତବାଦ ମଧ୍ୟରେ କେତେକ ପ୍ରଭେଦ ପରିଲକ୍ଷିତ ହୁଏ (୩୫) ପ୍ରଥମତଃ, ସମାଜବାଦ ସମସ୍ତ ଉତ୍ପାଦନର ମିଳିତ ମାଲିକାନା ସ୍ୱତ୍ୱ ଉପରେ ଗୁରୁତ୍ୱ ଦେଉଥିବାବେଳେ ସାମ୍ୟବାଦ ତା ସହିତ ମିଳିତ ଉପଭୋଗ ଉପରେ ମଧ୍ୟ ପ୍ରାଧାନ୍ୟ ଆରୋପ କରିଥାଏ । ଦ୍ୱିତୀୟତଃ, ସାମ୍ୟବାଦ ସାମ୍ବିଧାନିକ କ୍ରମବିକାଶର ଧାରାକୁ ଗ୍ରହଣ କରୁଥିବାବେଳେ ସାମ୍ୟବାଦ ହିଂସାତ୍ମକ ବିପ୍ଳବ ମାର୍ଗରେ ବିଶ୍ୱାସ କରେ । ତୃତୀୟତଃ, ସମାଜବାଦ ଦୃଢ଼ରେ ରାଷ୍ଟ୍ରର ସହାୟତାରେ ସମାଜର ଉନ୍ନତି; କିନ୍ତୁ ସାମ୍ୟବାଦ ରାଷ୍ଟ୍ରର ଆବଶ୍ୟକତା ଅନୁଭବ କରେ ନାହିଁ । ସ୍ଥୂଳତଃ, ସମାଜବାଦ ସାମ୍ୟବାଦର ପ୍ରଥମ ସ୍ତର ।

ତେବେ, ମାର୍କସ୍ ଓ ଲେନିନଙ୍କ ସମାଜବାଦ କାଳକ୍ରମେ ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ରୂପ ନେବା ଫଳରେ ଗଣତାନ୍ତ୍ରିକ ସମାଜବାଦ, ମନ୍ଥର (ବା ଫେବିୟାନ) ସମାଜବାଦ, ସଙ୍ଘୀୟ (ବା ଗିଲ୍‌ଡ୍) ସମାଜବାଦ ପ୍ରଭୃତି ଆଦର୍ଶର ଉଦ୍‌ଭବ ଘଟିଲା ।

---

(୩୪) Sabine—A History of Political Theory-pp. 667-672

(୩୫) Vijayraghavan, S. & Jayaram, R—Political Thought (Sterling Publishers (p) Ltd, 1985) pp. 254-255

## ଗଣତାନ୍ତ୍ରିକ ସମାଜବାଦ

ପଣ୍ଡିତ ଜବାହାରଲାଲ ନେହରୁ ଏହି ଆଦର୍ଶର ଶ୍ରେଷ୍ଠ ପ୍ରବକ୍ତା । ଏହି ଆଦର୍ଶ ସମସ୍ତ ପ୍ରକାର ସଗେଭ ଗମଷ୍ଟିକୁ ବିରୋଧ କରିବା ପରିବର୍ତ୍ତେ ଲୁଣ୍ଠନ ଓ ଶୋଷଣକୁ ବିରୋଧ କରେ । ଉତ୍ପାଦନ ଓ ବଣ୍ଟନ କ୍ଷେତ୍ରରେ ଗଣତାନ୍ତ୍ରିକ ପଦ୍ଧତି ଅନୁସରଣ କରାଯାଏ । ଏଥିରେ ସମୂହ ସାମାଜିକ ସ୍ୱାର୍ଥ ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେବା ଆବଶ୍ୟକ ହେଲେ ମଧ୍ୟ ସହଯୋଗ ନୀତି ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ । ଗଣତାନ୍ତ୍ରିକ ସମାଜବାଦ ପ୍ରଥମେ ଇଂଲଣ୍ଡରେ ସାଫଲ୍ୟ ଅର୍ଜନ କଲାପରେ ତାହା ଭାରତ ଓ ଅନ୍ୟାନ୍ୟ ଆଫ୍ରୋ-ଏସୀୟ ରାଷ୍ଟ୍ରରେ ଆଦୃତ ଲାଭ କରିଅଛି । (୩୬) ।

## ମନ୍ଥର ସମାଜବାଦ

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ମାର୍କସବାଦର ପ୍ରଚାର, ଅବାଧ ନୀତିର ସଙ୍କୋଚନ ଓ ଅର୍ଥନୈତିକ ଅପଚୟର ପ୍ରତିକ୍ରିୟାରେ ବହୁ ସମାଜବାଦୀ ସଙ୍ଗଠନ ଗଢ଼ି ଉଠିଥିଲା ଏବଂ ତନ୍ମଧ୍ୟରେ ୧୮୮୪ ରେ ପ୍ରତିଷ୍ଠିତ ଫେବିୟାନ ସୋସାଇଟି ଥିଲା ଅନ୍ୟତମ ପ୍ରଭାବଶାଳୀ ଅନୁଷ୍ଠାନ । ଇଂଲଣ୍ଡର କେତେକ ସ୍ୱନାମଧନ୍ୟ ଯୁବ-ସମ୍ପାଦକଙ୍କ ଉଦ୍ୟମରେ ଏହି ସଙ୍ଗଠନ ପ୍ରବର୍ତ୍ତନା ଓ ପ୍ରରୋଚନା ମାଧ୍ୟମରେ ସମାଜବାଦ ଆଦର୍ଶର ପ୍ରଚାର ଦିଗରେ ଚେଷ୍ଟା କରିଥିଲା । ହାନିବାଲ୍ ବିରୋଧରେ ଫେବିୟାସ୍ ଯେଉଁଭଳି ଧୀର ମନ୍ଥର ପଦକ୍ଷେପ ନେଇଥିଲା, ତାହା ହିଁ ଥିଲା ଏମାନଙ୍କର ଆଦର୍ଶ । ଏମାନେ ହିଂସାର ପରିପନ୍ଥୀ ଓ ସାମ୍ବିଧାନିକ ମନ୍ଥର ପ୍ରଗତିରେ ବିଶ୍ୱାସୀ । ପୁଞ୍ଜିବାଦର ଉନ୍ମୂଳନ ଏମାନଙ୍କର ଲକ୍ଷ୍ୟ ନଥିଲା, ତାକୁ ଦୁର୍ବଳ କରିବା ହିଁ ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଏ ଆଦର୍ଶର ଉପାସକମାନଙ୍କ ମଧ୍ୟରେ ବେର୍ନାର୍ଡ଼ଶ, ସିଡ୍‌ନି ୱେବ୍, ସିଡ଼ନି ଅଲିଭର, ଗ୍ରାହମ ୱାଲସ୍ ଓ ଶ୍ରୀମତୀ ଆନିବେଶାନ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ । (୩୭)

## ସଂଘୀୟ ସମାଜବାଦ

ମନ୍ଥର ସମାଜବାଦ ଭଳି ସଂଘୀୟ ସମାଜବାଦ ମଧ୍ୟ ଇଂଲଣ୍ଡରେ ମୁଣ୍ଡ ଟେକିଥିଲା । ବିଂଶ ଶତାବ୍ଦୀର ଆଦ୍ୟ ପାଦରେ ପୁଞ୍ଜିବାଦ ଓ ରାଷ୍ଟ୍ରୀୟ

---

(୩୬) ନନ୍ଦ, ଡ଼: ବାସୁଦେବ—ରାଜନୀତି ତତ୍ତ୍ୱ ଓ ଚିନ୍ତାଧାରା (ଗ୍ରନ୍ଥ ମନ୍ଦିର ଆଣ୍ଡ୍ ଗ୍ରନ୍ଥ, କଟକ, ୧୯୮୫) ପୃ. ୨୭୦-୨୭୧

(୩୭) Vijayraghavan—Political Thought-pp. 254-255

ସମାଜବାଦର ପ୍ରତିକ୍ରିୟା ସ୍ୱରୂପ ଏହାର ଉତ୍ପତ୍ତି ଘଟିଥିଲା । ପେଣ୍ଟି, ଅରେଜ୍, ହବସନ୍, କୋଲେ,ରସେଲ୍ ଓ ଝାନେ ଏହାର ମୁଖ୍ୟ ପ୍ରବକ୍ତା । ଏହି ଆଦର୍ଶର ପ୍ରଧାନ ଲକ୍ଷ୍ୟ ହେଉଛି—ପୁଞ୍ଜିବାଦର ବିରୋଧ, ଶ୍ରମିକ ଓ ଗ୍ରାହକ ମଧ୍ୟରେ ଅଂଶ ନିରୂପଣ, କ୍ଷମତାର ବିକେନ୍ଦ୍ରୀକରଣ, ସ୍ୱତନ୍ତ୍ର ଶ୍ରେଣୀ ସଂସ୍ଥା ଗଠନ ଏବଂ ସମାଜ, ଶିଳ୍ପ, ଅର୍ଥନୀତି ଓ ରାଜନୀତି ପ୍ରତ୍ୟେକ କ୍ଷେତ୍ରରେ ଗଣତାନ୍ତ୍ରିକ ଧାରାର ପ୍ରବର୍ତ୍ତନ । ଏଥିପାଇଁ ଏହାକୁ ଇଂରେଜ ମନ୍ଥରତାବାଦ (Febianism) ଓ ଫରାସୀ ସଂଘବାଦ (Syndicalism) ର ମାନସ ସନ୍ତାନ କୁହାଯାଏ । (୩୮)

### ଶ୍ରେଣୀ ସଂଘବାଦ

ଫରାସୀ ଶ୍ରମିକ ଆନ୍ଦୋଳନର ପରିଣାମ ସ୍ୱରୂପ ଊନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ଆଦ୍ୟଭାଗରେ ଏହି ଆଦର୍ଶ ବିକାଶ ଲାଭ କରିଥିଲା । ଜର୍ଜ ସୋରେଲ୍ (୧୮୪୭-୧୯୨୨) ଏହାର ଜନ୍ମଦାତା । ଏହି ଆଦର୍ଶର ମୁଖ୍ୟ ଆଭିମୁଖ୍ୟ ହେଉଛି—ଶ୍ରମିକମାନଙ୍କ ଦ୍ୱାରା ସେମାନଙ୍କର କାର୍ଯ୍ୟସୂଚୀ, କର୍ମକ୍ଷେତ୍ର ଓ ଜୀବନ ନିର୍ବାହ ଧାରା ନିରୂପଣ ଏବଂ ସଂଘ ମାଧ୍ୟମରେ ପ୍ରତ୍ୟକ୍ଷ ଭାବେ ସମସ୍ତ ଆବଶ୍ୟକୀୟ ସାମାଜିକ ପରିବର୍ତ୍ତନ ସାଧନ । ଏମାନେ କୌଣସି ପ୍ରକାର ନିୟନ୍ତ୍ରଣ ଗ୍ରହଣ କରୁ ନଥିଲେ, କାରଣ ନିୟନ୍ତ୍ରଣ ଦ୍ୱାରା ପ୍ରଗତି ପ୍ରତିହତ ହୁଏ ବୋଲି ଏମାନେ ବିଶ୍ୱାସ କରୁଥିଲେ । ତଥାପି ପୁଞ୍ଜିବାଦୀ ଓ ବ୍ୟକ୍ତିଗତ ମାଲିକାନା ପ୍ରତି ଏମାନଙ୍କର ସମର୍ଥନ ନଥିଲା । ଉତ୍ପାଦନକାରୀଙ୍କ ପକ୍ଷପାତୀ ଥିବା ସତ୍ତ୍ୱେ ଉପଭୋକ୍ତା ବା ଖାଉଟି ସମାଜ ସପକ୍ଷରେ ଏମାନଙ୍କର କୌଣସି ଅଭିମତ ନଥିବା ବିସ୍ମୟକର । ଏଥିପାଇଁ ଏହା 'ବିପ୍ଲବାତ୍ମକ ଶ୍ରମିକ ସଂଘବାଦ' (Revolutionary Trade Unionism) ଓ 'ସଂଘବଦ୍ଧ ଅରାଜକତାବାଦ' (Organised Anarchy) ଭାବରେ ମଧ୍ୟ ଅଭିହିତ ହୋଇଅଛି । (୩୯)

ଆଜିର ରାଜନୈତିକ ପରିବେଶରେ ସାମ୍ୟ ଓ ସମାଜବାଦର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା ପ୍ରାୟ ସମସ୍ତ ବୈଧର୍ମିକ ମତବାଦକୁ ପରିପୁଷ୍ଟ କରିଛି ବୋଲି କୁହାଯାଇପାରେ । କିନ୍ତୁ ଶ୍ରେଣୀ-ସଂଘର୍ଷ ତଥା ଦଳିତମାନଙ୍କ ପ୍ରତି ସମ୍ବେଦନା ମାଧ୍ୟମରେ ସମାଜବାଦୀ ଆଦର୍ଶର ସ୍ତର ମାନବର ଆଦିମ ସ୍ତର ।

---

(୩୮) Ibid—P. 233

(୩୯) Ibid—pp. 243-245

ପରୋକ୍ଷ ଭାବେ ସମସ୍ତ ରାଜନୈତିକ ମତବାଦର ଏହାହିଁ ଅନ୍ତଃସ୍ୱର । ତେଣୁ ସମାଜବାଦର ଜନ୍ମଭୂମି ଠାରୁ ବହୁ ଦୂରରେ ଏବଂ ଏହାର ଅଭ୍ୟୁଦୟର ବହୁ ପୂର୍ବରୁ ସାରଳାଙ୍କ ମହାଭାରତର ଛତ୍ରେ ଛତ୍ରେ ମାନବାତ୍ମା ପ୍ରତି ଏହି ସମ୍ବେଦନଶୀଳତା ପ୍ରକାଶ ପାଇଥିବା ଲକ୍ଷ୍ୟ କରୁଯାଏ । (୪୦)

## ଅଖଣ୍ଡତାବାଦ

ଚଳିତ ଶତାବ୍ଦୀରେ ରାଜନୀତି କ୍ଷେତ୍ରରେ ଅନ୍ୟ ଯେଉଁସବୁ ଆଦର୍ଶବାଦ ଓ ବିଚାରଧାରାର ଅଭ୍ୟୁଦୟ ଘଟିଅଛି ତନ୍ମଧ୍ୟରେ ଅଖଣ୍ଡତାବାଦ, ଫାସିବାଦ, ନାଜିବାଦ, ଜାତୀୟତାବାଦ, ଆନ୍ତର୍ଜାତୀୟତାବାଦ, ସାମ୍ରାଜ୍ୟବାଦ ଓ ଅରାଜକତା ବାଦ ବିଶେଷ ଉଲ୍ଲେଖଯୋଗ୍ୟ । ଗ୍ରୀକ୍ ନଗର-ରାଷ୍ଟ୍ରକାଳୀନ ସାର୍ବଭୌମତ୍ୱ ଏବଂ ଲୁଇ ଚତୁର୍ଦ୍ଦଶଙ୍କ ଅହଂରାଷ୍ଟ୍ରତ୍ୱ ଏ ଯୁଗରେ ଅଖଣ୍ଡତାବାଦର ନୂତନ ରୂପ ନେଇ ରୁଷିଆରେ ଷ୍ଟାଲିନ୍‌ବାଦ, ଇଟାଲିରେ ଫାସିବାଦ ଓ ଜର୍ମାନୀରେ ନାଜିବାଦ ଭାବରେ ଆତ୍ମପ୍ରକାଶ କଲା । ଅଖଣ୍ଡତାବାଦର ପ୍ରଧାନ ଲକ୍ଷଣ ହେଉଛି—ନିଜକୁ ରାଷ୍ଟ୍ର ମନେକରି ଏବଂ ରାଷ୍ଟ୍ରକୁ ଆତ୍ମବତ୍ ଜ୍ଞାନକରି ଗଣତାନ୍ତ୍ରିକ ଧାରା ତଥା ଜନମତକୁ କୌଣସି ପ୍ରଶ୍ରୟ ନଦେବା । ଏହି ବ୍ୟବସ୍ଥାରେ ବ୍ୟକ୍ତିକୁ ଦାସତ୍ୱ ସ୍ୱୀକାରପୂର୍ବକ ଜୀବନ ଧାରଣ କରିବାକୁ ପଡ଼ିଥାଏ ଏବଂ ଏଥିରେ ମାନବିକତାର ସ୍ଥାନ ନାହିଁ ।

ଯେତେବେଳେ ପ୍ରଥମ ପୃଥିବୀ ମହାସମର ପରେ ପୃଥିବୀରେ ଗଣତନ୍ତ୍ର ବିପର୍ଯ୍ୟସ୍ତ ହୋଇପଡିଲା ଏବଂ ରାଷ୍ଟ୍ରସଂଘ (League of Nations) ନିଷ୍କ୍ରିୟ ମନେହେଲା, ସେତେବେଳେ ମୁସୋଲିନିଙ୍କ ଏକଛତ୍ରବାଦର ବିସ୍ତାର ଫଳରେ ଇଟାଲିରେ ଫାସିବାଦର ଜନ୍ମ । ଫାସିବାଦର ସ୍ୱରୂପ ବିଶେଷ ଉଲ୍ଲେଖଯୋଗ୍ୟ । (୪୧) ।

୧ । ଏହା ଉଗ୍ର ଜାତୀୟତା ବାଦ ଉପରେ ପ୍ରତିଷ୍ଠିତ ।

୨ । ବିଭିନ୍ନ ସଂଘ ଓ ଅର୍ଥନୀତି ରାଷ୍ଟ୍ର ଦ୍ୱାରା ନିୟନ୍ତ୍ରିତ ।

୩ । ଗୋଟିଏ ଦଳ ଦ୍ୱାରାହିଁ ଶାସନ ପରିଚାଳିତ ।

---

(୪୦) ସା: ମ: ଭା: (ରା) ବନ—ପୃ. ୧୩୬, ଭୀଷ୍ମ—ପୃ. ୮୨-୮୩, ଶାନ୍ତି—ପୃ. ୯୬, ଅଶ୍ୱମେଧ—ପୃ. ୧୮, ଆଶ୍ରମିକ—ପୃ. ୪୬ ।

(୪୧) ନବ-ରାଜନୀତି ତତ୍ତ୍ୱ ଓ ଚିନ୍ତାଧାରା—ପୃ. ୨୬୭-୨୬୮

୪ । ଏହା ଧର୍ମର ବିରୋଧୀ ଓ ରାଷ୍ଟ୍ରରୁ ଧର୍ମ ଉଚ୍ଛେଦନର ପକ୍ଷପାତୀ ।

୫ । ଏହା ବୁଦ୍ଧିଜୀବୀମାନଙ୍କ ସ୍ଥିତିର ବିରୋଧୀ ।

୬ । ଏଥିରେ ସମାଜବାଦ ବା ସାମ୍ୟ ଚିନ୍ତାଧାରାର ସ୍ଥାନ ନାହିଁ ।

୭ । ଯୁଦ୍ଧ, ହିଂସା ଓ ବଳ ପ୍ରୟୋଗ ଏହାର ଶ୍ରେଷ୍ଠନୀତି ।

୮ । ଏହା ସାମ୍ରାଜ୍ୟବାଦର ସମର୍ଥକ ।

୯ । ଅଖଣ୍ଡ ଏକଛତ୍ରବାଦୀ ଶାସନ ଏହାର ମୂଳ ଆଦର୍ଶ ।

୧୦ । ଏଥିରେ ଶାସକ ନିଜକୁ ସର୍ବଶ୍ରେଷ୍ଠ ମାନବ ମନେ କରେ ।

ଏହି ଆଦର୍ଶ ଇଟାଲିରେ ଜନ୍ମ ଲାଭ କରି ଅଷ୍ଟ୍ରିଆ, ହଙ୍ଗେରୀ, ଗ୍ରୀସ୍, ବୁଲ୍‌ଗାରିଆ, ରୁମାନିଆ, ଜାପାନ, ଜର୍ମାନୀ ପ୍ରଭୃତି ବହୁ ୟୁରୋପୀୟ ରାଷ୍ଟ୍ରରେ ପରିବ୍ୟାପ୍ତ ହୋଇଥିଲା । ହିଟଲରଙ୍କ ନାଜିବାଦ ଏହି ଫାସିବାଦର ହିଁ ବଳିଷ୍ଠ ପରିପ୍ରକାଶ । ସେ ଯୁଦ୍ଧକୁ ସର୍ବବ୍ୟାପକ ଓ ସୃଷ୍ଟିର ମୂଳ ହେତୁ ରୂପେ ଗ୍ରହଣ କରି ଧ୍ୱଂସ ବା ପରାଜୟରେ ଭବିଷ୍ୟତର ଅଭ୍ୟୁଦୟ ସୁନିଶ୍ଚିତ ବୋଲି ବିଶ୍ୱାସ କରିଥିଲେ । (୪୨) ଏଥିପାଇଁ ଫାସିବାଦୀ ଆନ୍ଦୋଳନକୁ 'ଧ୍ୱଂସବାଦର ବିପ୍ଳବ' ବୋଲି କୁହାଯାଇଥାଏ । (୪୩)

ସାରଳା ମହାଭାରତରେ ଯେଉଁ ଦାନବ ରାଜାମାନଙ୍କର ଚିତ୍ର ଉପସ୍ଥାପନା କରାଯାଇଛି, ତାହା ଏହି ଅଖଣ୍ଡତାବାଦର ହିଁ ନିଦର୍ଶନ । ସାରଳା ଦାସ ଏକ ଅଖଣ୍ଡତାବାଦୀ ଶାସକଙ୍କୁ ସମର୍ଥନ କରି ପାରିନାହାନ୍ତି । ଏହି ମତବାଦ ଯେପରି ଆଧୁନିକ ରାଜନୀତିଜ୍ଞମାନଙ୍କ ବିବେଚନାରେ ଘୃଣ୍ୟ ଓ ବର୍ବରୋଚିତ, ସାରଳା ମଧ୍ୟ ଏ ପ୍ରକାର ଶାସନାବସ୍ଥା ଯେ ଧ୍ୱଂସମୁଖୀ ଓ କ୍ଷଣସ୍ଥାୟୀ, ତାହା ପୌରାଣିକ ଉପାଖ୍ୟାନଗୁଡ଼ିକ ମାଧ୍ୟମରେ ସ୍ପଷ୍ଟୀଭୂତ କରିବା ପାଇଁ ଚେଷ୍ଟା କରିଛନ୍ତି । (୪୪)

## ଜାତୀୟତାବାଦ ଓ ଆନ୍ତର୍ଜାତୀୟତାବାଦ

ଏକ ନିର୍ଦ୍ଦିଷ୍ଟ ଜାତିର ଐକ୍ୟ ଭାବନାରୁ ବିକାଶପ୍ରାପ୍ତ ରାଜନୈତିକ ଆଦର୍ଶ ଜାତୀୟତାବାଦ ରୂପେ ପରିଚିତ । ଏହା ଜାତି ଜାତି ଓ ଦେଶ ଦେଶ ମଧ୍ୟରେ

---

(୪୨) Hitler, Adolf—My Struggle (Sagar Publications, New Delhi, 1972) P. 104.

(୪୩) Pant—History of Western Political Thought (Part-II) pp. 323-324

(୪୪) ତ୍ରିପୁରାସୁର ବଧ, କଳ୍ପାସୁର ବଧ, ପ୍ରୌଢ଼ାସୁର ବଧ ପ୍ରଭୃତି ଉପାଖ୍ୟାନ ଦ୍ରଷ୍ଟବ୍ୟ ।

ଭିନ୍ନ ଭିନ୍ନ ରୂପରେ ଆତ୍ମପ୍ରକାଶ କରିଥାଏ । ଭାରତର ଜାତୀୟତାବାଦ ଆଧ୍ୟାତ୍ମିକତା ଓ ମାନବିକତା ଉପରେ ପ୍ରତିଷ୍ଠା ଲାଭ କଲାବେଳେ, ଏହା ଜର୍ମାନୀରେ ବର୍ଣ୍ଣଗତ ବିଶେଷତ୍ୱ ଏବଂ ଇଂଲଣ୍ଡ ଓ ଆମେରିକାରେ ସାମାଜିକତାକୁ ଭିତ୍ତି କରି ରୂପାୟିତ । ଜନ୍ମଗତ, ଧର୍ମଗତ, ଭାଷାଗତ, ଭୌଗୋଳିକ ସାଂସ୍କୃତିକ, ରାଜନୈତିକ ଅର୍ଥନୈତିକ ଓ ଆକାଂକ୍ଷାଜନିତ ଐକ୍ୟ ହିଁ ଏହାର ମୂଳତତ୍ତ୍ୱ । (୪୫) ପ୍ରାଚୀନ ଆର୍ଯ୍ୟ ସଭ୍ୟତାର ଆନ୍ତର୍ଜାତୀୟ ଚେତନା ତଥା ବିଶ୍ୱମୈତ୍ରୀ ଚିନ୍ତାଧାରା ପୁଣି ଥରେ ଯୁଦ୍ଧ ଭାରାକ୍ରାନ୍ତ ପୃଥିବୀରେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଶାନ୍ତି ଓ ସହାବସ୍ଥାନ ଆଦର୍ଶ ପ୍ରତିଷ୍ଠା ମୂଳକ ମାନବଜାତିର ସମୂହ କଲ୍ୟାଣ ସାଧନ ଉଦ୍ଦେଶ୍ୟରେ 'ଆନ୍ତର୍ଜାତୀୟତାବାଦ' ରୂପରେ ଜନ୍ମ ଲାଭ କରିଅଛି । ଅର୍ଥନୈତିକ ସହଯୋଗ, ବାଣିଜ୍ୟିକ ସମ୍ପର୍କ, ବୈଜ୍ଞାନିକ ନିର୍ଭରଶୀଳତା ଓ ନିରସ୍ତ୍ରୀକରଣ ଆଦର୍ଶ ଆଧୁନିକ ଆନ୍ତର୍ଜାତୀୟତାବାଦର ବିଶେଷତ୍ୱ । ଆପାତ ଦୃଷ୍ଟିରେ, ଏହି ଉଭୟ ଆଦର୍ଶ ପରସ୍ପରର ବିରୋଧୀ ଭଳି ମନେହୁଏ । କିନ୍ତୁ ମାନବ ଜାତି ପ୍ରତି ଗଭୀର ସମ୍ବେଦନଶୀଳ ସାରଳା ଦାସଙ୍କର ଦଳିତଙ୍କ ପ୍ରତି ସମବେଦନା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପରିକଳ୍ପନା (୪୬) ଜାତୀୟତା ମାଧ୍ୟମରେ ବିଶ୍ୱମୈତ୍ରୀ ଆଦର୍ଶର ହିଁ ସୂଚନା ଦେଇଥାଏ ।

## ଅରାଜକତାବାଦ

ଊନବିଂଶ ଶତାବ୍ଦୀର ବିଭିନ୍ନ ରାଜନୈତିକ ମତବାଦ ଓ ଦର୍ଶନର ପ୍ରଭାବରେ ଅରାଜକତାବାଦ ସୃଷ୍ଟି ଲାଭ କରିଥିଲା । ଏହା ରାଷ୍ଟ୍ର ଓ ସରକାରର ବିରୋଧୀ ଏବଂ ରାଷ୍ଟ୍ରର ବିଲୋପ ସାଧନ ହିଁ ଏହାର ମୂଳ ଲକ୍ଷ୍ୟ । ଏହା ସହିତ ବ୍ୟକ୍ତିଗତ ସମ୍ପତ୍ତି ଅଧିକାର, ପୁଞ୍ଜିବାଦ ଓ ବିଭିନ୍ନ ଧର୍ମାନୁଷ୍ଠାନର ନିରାକରଣ ଉପରେ ଏହା ପ୍ରାଧାନ୍ୟ ଦେଇଥାଏ । ଗଡ଼ଉଇନ୍, ପ୍ରୌଧନ, ଥରୋ, ଟଲଷ୍ଟୟ, ବାକୁନିନ୍, କ୍ରୋପଟକିନ୍ ପ୍ରମୁଖ ଏହି ଆଦର୍ଶର ମୁଖ୍ୟ ପ୍ରବକ୍ତା । ତେବେ, ଅରାଜକତାବାଦ ପ୍ରବର୍ତ୍ତନ କ୍ଷେତ୍ରରେ ଦ୍ୱିବିଧ ମତ ପରିଦୃଷ୍ଟ ହୁଏ । ଥରୋ, ଟଲଷ୍ଟୟ ପ୍ରମୁଖ ସେମାନେ,

---

(୪୫) ନନ୍ଦ—ରାଜନୀତି ତତ୍ତ୍ୱ ଓ ଚିନ୍ତାଧାରା—ପୃ. ୧୮୮-୧୯୦

(୪୬) ସା: ମ: ଭା: (ବା) ଆଦ୍ୟ-ପୃ. ୧୧୪-୧୧୫ ଓ ସଭା-ପୃ. ୯୭୫ ଏବଂ ସାହୁ, ସହଦେବ—ଗଣତାନ୍ତ୍ରିକ ସାହିତ୍ୟର ସ୍ରଷ୍ଟା ସାରଳା ଦାସ (ପ୍ରବନ୍ଧ) ମହାନ୍ତି, ଡ଼: ଉପେନ୍ଦ୍ରନାଥ ସମ୍ପାଦିତ ବିପ୍ଳବୀ କବି ସାରଳା ଦାସ-ପୃ. ୪-୯

ଶାନ୍ତି ଓ ପ୍ରେମମାର୍ଗରେ ଅରାଜକତାବାଦ ପ୍ରତିଷ୍ଠା କରିବାକୁ ଚାହିଁଲାବେଳେ ଅନ୍ୟମାନେ ହିଂସା, ବିପ୍ଳବ ଓ ଦମନ ନୀତିର ସମର୍ଥନ କରିଛନ୍ତି । (୪୭)

**ସାମ୍ରାଜ୍ୟବାଦ**

ରାଷ୍ଟ୍ରୀୟ ବ୍ୟବସ୍ଥା କ୍ଷେତ୍ରରେ ସାମ୍ରାଜ୍ୟବାଦ ଏକ ପ୍ରାଚୀନ ରାଜନୈତିକ ଆଦର୍ଶ । ପ୍ରାଚୀନ ରୋମରେ ବିକାଶପ୍ରାପ୍ତ ଏହି ତତ୍ତ୍ୱ ପ୍ରଥମେ ସ୍ପେନ, ବ୍ରିଟିଶ, ଡଚ୍ ଓ ପର୍ତ୍ତୁଗୀଜମାନଙ୍କ ପ୍ରଭାବିତ କରିଥିଲା ଓ ପରେ ଅନ୍ୟାନ୍ୟ ଦେଶକୁ ସମ୍ପ୍ରସାରିତ ହୋଇଥିଲା । ଖ୍ରୀ ୧୯୨୬ ମସିହାର ସାମ୍ରାଜ୍ୟବାଦୀ ସମ୍ମିଳନୀରେ ବ୍ରିଟିଶ ମିଳିତ ରାଷ୍ଟ୍ରସଂଘର ସାମ୍ରାଜବାଦୀ ରାଷ୍ଟ୍ରମାନଙ୍କୁ ସମାନ ଅଧିକାର ମିଳିଥିଲା ଏବଂ ଖ୍ରୀ ୧୯୩୧ ରେ ତାହା ପୁନଃ ସମର୍ଥିତ ହେଲା । ଖ୍ରୀ ୧୯୩୫ ବେଳକୁ ସମଗ୍ର ପୃଥିବୀର ଶତକଡ଼ା ୮୫ ଭାଗ ଅଞ୍ଚଳ ବ୍ରିଟିଶ ସାମ୍ରାଜ୍ୟର ଅଧୀନସ୍ଥ ଥିବା କମ୍ ବିସ୍ମୟକର ନୁହଁ । ତେବେ, ଏହି ଆଦର୍ଶ ପରବର୍ତ୍ତୀ କାଳରେ ବିଶେଷ ପ୍ରଭାବଶାଳୀ ଓ କାଳଜୟୀ ହୋଇପାରିଲା ନାହିଁ । ଖ୍ରୀ ୧୯୪୬ ମସିହାବେଳକୁ ପୃଥିବୀର ମାତ୍ର ନବ ଶତାଂଶ (୯%) ଅଞ୍ଚଳ ବ୍ରିଟିଶ ଶାସନାଧୀନରେ ରହିପାରିଲା । ପରେ ତାହା ମଧ୍ୟ କ୍ରମଶଃ ହ୍ରାସପ୍ରାପ୍ତ ହେବାକୁ ଲାଗିଲା ।

**ଅନ୍ୟାନ୍ୟ ମତବାଦ**

ଏହି ସମୟରେ ପ୍ରଚଳିତ ମତବାଦଗୁଡ଼ିକର ପୁଙ୍ଖାନୁପୁଙ୍ଖ ସମୀକ୍ଷାପୂର୍ବକ ଅନ୍ୟ କେତେକ ରାଜନୀତି-ଦାର୍ଶନିକ ବିଭିନ୍ନ ନୂତନ ମତବାଦ ସୃଷ୍ଟି କରିଥିବା ପରିଲକ୍ଷିତ ହୁଏ । ସେମାନଙ୍କ ମଧ୍ୟରୁ ସି. ଏସ୍. ପାଏର୍ସ (୧୮୩୯-୧୯୧୪), ଉଇଲିୟମ୍ ଜେମସ୍ (୧୮୪୨-୧୯୧୦), ଜନ୍ ଡ୍ୟୁଇ (୧୮୯୫-୧୯୫୨) ପ୍ରମୁଖ ବାସ୍ତବବାଦ ( Pragmatism ) ତତ୍ତ୍ୱ ମାଧ୍ୟମରେ ଜ୍ଞାନ, ବିଜ୍ଞାନ ଓ ଅନୁଭୂତି ଉପରେ ଗୁରୁତ୍ୱ ଆରୋପ କରି ବିଭିନ୍ନ ରାଜନୈତିକ ମତବାଦର ଉଦ୍ଭଟତା ଓ କାଳ୍ପନିକତାର ବିରୋଧ କଲାବେଳେ ଜନ୍ ପାଲ୍ ସାର୍ତ୍ରେ, ମାର୍ଟିନ୍ ହେଡ଼ଗେର୍, ଗେବ୍ରିୟଲ ମୋର୍ସଲ ପ୍ରମୁଖ ସ୍ଥିତିବାଦ ( Existentialism ) ଦର୍ଶନ ମାଧ୍ୟମରେ ମାନବିକତାର ଉତ୍କର୍ଷ ପ୍ରତିପାଦନ ପାଇଁ ଚେଷ୍ଟା କରିଛନ୍ତି । (୪୮) ଏହା

---

(୪୭) ନନ୍ଦ, ରାଜନୀତି ତତ୍ତ୍ୱ ଓ ଚିନ୍ତାଧାରା—ପୃ. ୨୮୨—୨୮୪

(୪୮) Pant –History of Western Political Thought–(Part-II) pp. 376-378

*ବ୍ୟଗାତ, ପାଭଲୋଭ, ଗ୍ରାହମ୍ ଓ୍ୱାଲସ ଓ ଅର୍ଥର ବେଣ୍ଟଲେ ଆଚରଣବାଦ (Behaviouralism) ଆନ୍ଦୋଳନର ସୂତ୍ରପାତ ଘଟାଇ ମାନବିକ ବ୍ୟବହାର, ନିୟମାନୁବର୍ତ୍ତିତା, ଯୋଗ୍ୟତା, ମୂଲ୍ୟବୋଧ, ସଂସ୍କୃତି ଓ ଶୃଙ୍ଖଳା ଉପରେ ପ୍ରାଧାନ୍ୟ ଦେବା ସଙ୍ଗେ ସଙ୍ଗେ ବ୍ୟକ୍ତିର ସାମାଜିକ ଓ ମନସ୍ତାତ୍ତ୍ୱିକ ଅବସ୍ଥା ପ୍ରତି ଧ୍ୟାନ ଦିଆଯିବାର ଆବଶ୍ୟକତା ସଂପର୍କରେ ମତ ବ୍ୟକ୍ତ କରିଯାଇଛନ୍ତି । (୪୯)

## କଲ୍ୟାଣବ୍ରତୀ ରାଷ୍ଟ୍ରାଦର୍ଶ

ଏ ସମସ୍ତ ମତବାଦ ସତ୍ତ୍ୱେ କଲ୍ୟାଣବ୍ରତୀ ରାଷ୍ଟ୍ରାଦର୍ଶର ଅଭ୍ୟୁତ୍ଥାନ ଆଲୋଚ୍ୟ ଯୁଗର ସର୍ବଶ୍ରେଷ୍ଠ ଅବଦାନ ରୂପେ ଗ୍ରହଣୀୟ । ଏହା ପ୍ରାଚୀନ ତଥା ପାରଂପରିକ ଆଦର୍ଶର ସମର୍ଥକ ଏବଂ ବର୍ତ୍ତମାନକାଳୀନ ମାନବତାବାଦର ପ୍ରଖ୍ୟାପକ । ଜନସାଧାରଣଙ୍କର ସର୍ବାଙ୍ଗୀଣ ମଙ୍ଗଳ ବିଧାନ ତଥା କଲ୍ୟାଣ ସାଧନ ଏହାର ଶ୍ରେଷ୍ଠ ଆଦର୍ଶ । ପ୍ରାଚୀନ ଗ୍ରୀସ୍ ଓ ରୋମର ନଗର ସଭ୍ୟତା ଏବଂ ପ୍ରାଚୀନ ଭାରତୀୟ 'ରାମରାଜ୍ୟ' ଆଦର୍ଶ ଏହାର ପାରଂପରିକ ଭିତ୍ତି । ତେବେ, ଶିଳ୍ପବିପ୍ଳବ ଓ ମହାନ୍ ଅର୍ଥନୈତିକ ଅପଚୟ ଅବସ୍ଥା (Great Economic Depression) ପରେ ବ୍ୟକ୍ତିବାଦ ଓ ସମାଜବାଦ ମଧ୍ୟରେ ସଂଯୋଗ ରକ୍ଷାକରିବା ଉଦ୍ଦେଶ୍ୟରେ ଏହାର ବିକାଶ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ବ୍ୟବସ୍ଥାରେ ବ୍ୟକ୍ତିର ଏବଂ ସମାଜର ସାମୂହିକ କଲ୍ୟାଣ ପ୍ରତି ଦୃଷ୍ଟି ଦିଆଯାଇଥାଏ । ଏହା ମୁଖ୍ୟତଃ ଧର୍ମନିରପେକ୍ଷତା ଓ ସମାଜବାଦୀ ଆଦର୍ଶ ଉପରେ ପ୍ରତିଷ୍ଠିତ । ତଥାପି, ଏହା ଅଖଣ୍ଡତାବାଦ, ସାମ୍ୟବାଦ, ସାମ୍ରାଜ୍ୟବାଦ, ଗଣତନ୍ତ୍ର ପ୍ରଭୃତି ସମସ୍ତ ରାଷ୍ଟ୍ରୀୟ ବ୍ୟବସ୍ଥାର ସାର୍ଥକତା ପାଇଁ ନିତାନ୍ତ ଅପରିହାର୍ଯ୍ୟ । ଏହି ବ୍ୟବସ୍ଥାକୁ ଶାନ୍ତିର ଆଦର୍ଶ ସଙ୍ଗେ ସଙ୍ଗେ ଯୁଦ୍ଧର ଅଧ୍ୟାୟ ରୂପେ ଗ୍ରହଣ କରାଯାଇଥାଏ; କାରଣ ଏହା କେବଳ ସ୍ୱାର୍ଥାନ୍ୱେଷୀ ରାଜତନ୍ତ୍ର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରେ ନାହିଁ, ବରଂ ଜନସାଧାରଣଙ୍କୁ ରାଜଗାଦିରେ ଅଭିଷିକ୍ତ ହେବା ନିମନ୍ତେ ନିମନ୍ତ୍ରଣ କରେ । ଏଣୁ କଲ୍ୟାଣବ୍ରତୀ ରାଷ୍ଟ୍ରାଦର୍ଶକୁ 'ଗଣତନ୍ତ୍ରର ନବୀକରଣ' ଆଖ୍ୟା ପ୍ରଦାନ କରାଯାଇଛି । (୫୦)

---

(୪୯) Das, Dr. Harihar & Choudhury, B C.—Political Theory (Part III) (Vidyarthi Vawan, Berhampur, 1986) pp. 14-21

(୫୦) Vijayraghavan —Political Thought—pp 260-261

ଏହି ରାଷ୍ଟ୍ରାଦର୍ଶର ସ୍ୱରୂପ ନିର୍ଣ୍ଣୟ କରିବାକୁ ଗଲବେଳେ ଦୁଇ ଜଣ ବିଶିଷ୍ଟ ଦାର୍ଶନିକ ଆଲେକଜାଣ୍ଡେର ହେମିଲଟନ୍ ଓ ଟମାସ୍ ଜେଫରସନ୍‌ଙ୍କ ଦ୍ୱିବିଧ ମତବାଦ ସଂପର୍କରେ ଅବହିତ ହେବା ଆବଶ୍ୟକ । ହେମିଲଟନ୍ ଦେଶର ବାଣିଜ୍ୟ ଶକ୍ତିକୁ ଜାତୀୟ କଲ୍ୟାଣର ପରିମାପକ ରୂପେ ଗ୍ରହଣ କଲାବେଳେ ଜେଫରସନ୍ ବାଣିଜ୍ୟ ଶକ୍ତି ଉପରେ ପ୍ରାଧାନ୍ୟ ନ ଦେଇ ଗଣତାନ୍ତ୍ରିକ ଆଦର୍ଶ ଓ ସୀମିତ ଶାସନ ତଥା ବିକେନ୍ଦ୍ରୀକରଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତେବେ, ଆଧୁନିକ ଯୁଗରେ ଏହି ଉଭୟ ମତବାଦର ଉପଯୋଗିତା ବିଶେଷ ଉପଲବ୍ଧ ହୁଏନାହିଁ । ଗ୍ରାହମ୍, ସ୍ପେନ୍ସର୍, କ୍ଲିଭଲାଣ୍ଡ ପ୍ରମୁଖ ଚିନ୍ତାବିଦ୍ ସ୍ପଷ୍ଟ ମତବ୍ୟକ୍ତ କରିଯାଇଛନ୍ତି ଯେ କଲ୍ୟାଣବ୍ରତୀ ରାଷ୍ଟ୍ର କୌଣସି ମତବାଦ ଉପରେ ପ୍ରତିଷ୍ଠିତ ନୁହେଁ, କେବଳ ସାମାଜିକ ଅବସ୍ଥା ଉପରେ ହିଁ ନିର୍ଭରଶୀଳ । କୋଲେ ଓ କାଣ୍ଟଙ୍କ ପରି ବିଶିଷ୍ଟ ଦାର୍ଶନିକମାନେ ମଧ୍ୟ ସାମାଜିକ କଲ୍ୟାଣ, ଜନସେବା ଓ ଜୀବନଯାପନ ପ୍ରଣାଳୀର ମାନ ନିର୍ଦ୍ଧାରଣ ଉପରେ ହିଁ ପ୍ରାଧାନ୍ୟ ଆରୋପ କରିଛନ୍ତି । (୫୧)

ଆଧୁନିକ ଇଂଲଣ୍ଡରେ ରାଣୀ ଏଲିଜାବେଥ୍‌ଙ୍କ ସମୟରେ ଏହି ଆଦର୍ଶ କେତେକାଂଶରେ କାର୍ଯ୍ୟକାରୀ ହୋଇଥିବା ପରିଲକ୍ଷିତ ହୁଏ । ଫ୍ରାନ୍ସର ତୃତୀୟ ନେପୋଲିୟନ ମଧ୍ୟ ଏ ଦିଗରେ ପ୍ରୟାସୀ ହୋଇଥିଲେ । ବିସମାର୍କ ମଧ୍ୟ ଜର୍ମାନୀରେ ଏହାର ପରୀକ୍ଷା କରିଥିଲେ । ପରବର୍ତ୍ତୀ କାଳରେ ଡ଼ିକେନ୍ସ, ଡ଼ିଜରାଲି, କିଙ୍ଗ୍ସ୍‌ଲେ, ଲୋଇଡ୍ ଜର୍ଜ, ଲସ୍କି ପ୍ରମୁଖଙ୍କ କାର୍ଯ୍ୟପନ୍ଥା ଓ ଚିନ୍ତାଧାରାରେ ଏହି ଆଦର୍ଶର ସଫଳ ରୂପାୟନ ଦେଖିବାକୁ ମିଳେ ।

କଲ୍ୟାଣବ୍ରତୀ ଆଦର୍ଶର ମୁଖ୍ୟ ଉପାଦାନଗୁଡ଼ିକ ହେଉଛି—(୧) ବ୍ୟକ୍ତିର ସ୍ଥିତି ଉପରେ ପ୍ରାଧାନ୍ୟ ପ୍ରଦାନ, (୨) ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଜୀବିକା ନିର୍ବାହର ସର୍ବନିମ୍ନ ସୁବିଧା ବ୍ୟବସ୍ଥା, (୩) ସମାଜରେ ସର୍ବାଧିକ ବ୍ୟକ୍ତିଙ୍କୁ କର୍ମଯୋଗାଣ ଏବଂ (୪) ରାଷ୍ଟ୍ରୀୟ ଆୟର ସୁଷମ ବଣ୍ଟନ । ଏହି ରାଷ୍ଟ୍ରୀୟ ବ୍ୟବସ୍ଥାରେ ଦ୍ୱିବିଧ କାର୍ଯ୍ୟକ୍ରମ ପରିଲକ୍ଷିତ ହୁଏ—ସୁରକ୍ଷା ଓ ସେବାମୂଳକ । ସୁରକ୍ଷାମୂଳକ କାର୍ଯ୍ୟାବଳୀ ମଧ୍ୟରେ ପ୍ରଧାନ ହେଉଛି—(କ) ରାଷ୍ଟ୍ରୀୟ ବିଶୃଙ୍ଖଳା ଓ ବୈଦେଶିକ ଆକ୍ରମଣ କବଳରୁ ରାଷ୍ଟ୍ରୀୟ ସାର୍ବଭୌମତ୍ୱର ସୁରକ୍ଷା, (ଖ) ରାଷ୍ଟ୍ରୀୟ ଆନୁଗତ୍ୟ ଓ ସାମାଜିକ ନିରାପତ୍ତା ଲାଗି ଆଇନ ପ୍ରଣୟନ, (ଗ) ପରିବାର ଓ ବ୍ୟକ୍ତିଗତ ସଂପତ୍ତିର

(୫୧) Ibid P. 262

ରକ୍ଷଣାବେକ୍ଷଣ, (ଘ) ଯାତାୟାତ ଓ ପରିବହନ ନିମିତ୍ତ ଗମନାଗମନ ପଥର ବିକାଶ ସାଧନ, (ଙ) ବାଣିଜ୍ୟ ବ୍ୟବସାୟର ସୁନିୟନ୍ତ୍ରଣ, (ଚ) ବୈଦେଶିକ ସୁସମ୍ପର୍କ ସ୍ଥାପନ ଏବଂ (ଛ) କର ଆଦାୟ ଓ ଦୁର୍ନୀତି ନିବାରଣ । ଅନ୍ୟ ଦିଗରେ, ମୁଖ୍ୟ ସେବାମୂଳକ କାର୍ଯ୍ୟଗୁଡ଼ିକ ହେଉଛି—କ) ଅର୍ଥନୈତିକ ସାମ୍ୟ ଓ ସ୍ଥିରତା, (ଖ) ନିଯୁକ୍ତି ସୁଯୋଗ (ଗ) ଯୋଜନା ପ୍ରସ୍ତୁତି, (ଘ) ପାରିଶ୍ରମିକ ନିର୍ଦ୍ଧାରଣ ଓ କାର୍ଯ୍ୟ-ନିର୍ଘଣ୍ଟ ନିରୂପଣ, (ଙ) ସ୍ୱାସ୍ଥ୍ୟରକ୍ଷା ଓ ପ୍ରତିଷେଧକ ବ୍ୟବସ୍ଥା, (ଚ) ବାଧ୍ୟତାମୂଳକ ଶିକ୍ଷା ଓ ନିରକ୍ଷରତା ଦୂରୀକରଣ, (ଛ) କୃଷିର ଉନ୍ନତି, (ଜ) ଶିଳ୍ପ-ପ୍ରସାର ଓ (ଝ) ବୃଦ୍ଧକାଳୀନ ଭତ୍ତା ପ୍ରଦାନ । (୫୬) ସଂକ୍ଷେପରେ ପ୍ରକାଶ କଲେ, ଏହି ବ୍ୟବସ୍ଥା ଅଭାବ, ଅଜ୍ଞତା, ଅସୁସ୍ଥତା, ଅପରିଚ୍ଛନ୍ନତା ଓ ଆଳସ୍ୟରୂପକ ପଞ୍ଚ ରାକ୍ଷସଙ୍କ ବିରୁଦ୍ଧରେ ଏକ ବଳିଷ୍ଠ ଆକ୍ରମଣାତ୍ମକ ଅଭିଯାନ । ଲାସ୍କି ଯଥାର୍ଥରେ ମତ ପ୍ରକାଶ କରିଛନ୍ତି ଯେ ରାଷ୍ଟ୍ର ହେଉଛି ଆଧୁନିକ ସାମାଜିକ ହର୍ମ୍ୟର ଶୀର୍ଷବିନ୍ଦୁ । (୫୭)

ସର୍ବକାଳର ପରୀକ୍ଷା ନିରୀକ୍ଷାପରେ ପାଶ୍ଚାତ୍ୟ ରାଜନୀତି-ଦାର୍ଶନିକମାନେ ଯେଉଁ କଲ୍ୟାଣବ୍ରତୀ ରାଷ୍ଟ୍ରର ସ୍ୱରୂପ ସ୍ୱୀକୃତ କରିଯାଇଛନ୍ତି, ତାହା ପଞ୍ଚଦଶ ଶତାବ୍ଦୀର ଶୂଦ୍ରକବି ସାରଳା ଦାସଙ୍କ ରାଷ୍ଟ୍ର-ବ୍ୟବସ୍ଥା ଠାରୁ ସ୍ୱତନ୍ତ୍ର ବୋଲି ମନେ ହୁଏ ନାହିଁ । କପିଳେନ୍ଦ୍ର ଦେବଙ୍କ ପରି ଧର୍ମପ୍ରାଣ, ପ୍ରଜାବତ୍ସଳ ତଥା ନ୍ୟାୟବାଦୀ ଶାସକଙ୍କ ଶାସନପ୍ରଣାଳୀର ଅଭିଜ୍ଞତା ସହିତ ପାରମ୍ପରିକ ମହାଭାରତୀୟ ରାଜନୈତିକ ଆଦର୍ଶ ସାରଳା ଦାସଙ୍କୁ ଏପରି ଏକ ରାଷ୍ଟ୍ର ପରିକଳ୍ପନା ଦିଗରେ ଯେ ଯଥେଷ୍ଟ ସହାୟକ ହୋଇଥିବ, ଏଥିରେ ସନ୍ଦେହ ନାହିଁ । ରାଜତନ୍ତ୍ରର ପୃଷ୍ଠଭୂମିକାରେ ସାରଳା ପରିକଳ୍ପିତ ରାଷ୍ଟ୍ରାଦର୍ଶ ଗଣତାନ୍ତ୍ରିକ ସମାଜବାଦୀ ରାଷ୍ଟ୍ର ପାଇଁ ମଧ୍ୟ କିପରି ଅନୁକୂଳ, ତାହା ବାସ୍ତବରେ ଲକ୍ଷ୍ୟ କରିବାର କଥା । ଏହିଠାରେହିଁ ସାରଳାଙ୍କ ବିଶେଷତ୍ୱ ନିହିତ ।

## ଭାରତୀୟ ରାଜନୈତିକ ବିଚାରଧାରା

ସାରଳାଙ୍କ ପୂର୍ବ ଓ ପରବର୍ତ୍ତୀ ସମୟରେ ପାଶ୍ଚାତ୍ୟ ଭୂଖଣ୍ଡରେ ରାଜନୈତିକ ଆଦର୍ଶର ଯେଉଁ ବହୁବିଧ ରୂପ ବିକାଶ ଲଭି କଲା, ସେଗୁଡ଼ିକ କେବଳ ସେହି

---

(୫୬) Ibid—pp. 263-264

(୫୭) Laski, H. J.—Introduction to Politics (Unwin Books, London, 1968) P. 9 [ State is the Crowning point of modern social edifice. ]

କେତୋଟି ଦେଶର ପରିସୀମା ମଧ୍ୟରେ ଆବଦ୍ଧ ହୋଇ ରହିଲା ନାହିଁ; ବିଭିନ୍ନ ଗଣ ମାଧ୍ୟମର ଉଦ୍‌ଭାବନ ଫଳରେ ବିଭିନ୍ନ ଦେଶର ଚିନ୍ତାଶୀଳ ମନୀଷୀମାନଙ୍କୁ ତାହା ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ସେ ସମ୍ପର୍କରେ ଅଧିକ ଚିନ୍ତା କରିବା ପାଇଁ ପ୍ରେରଣା ପ୍ରଦାନ କଲା । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଭାରତ ବର୍ଷ ମଧ୍ୟ ପାଶ୍ଚାତ୍ୟ ଚିନ୍ତା ଓ ଚେତନାର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ଦ୍ୱାରା ଭାରତୀୟ ଚିନ୍ତାନାୟକମାନେ ଏହି ରାଜନୈତିକ ଆଦର୍ଶଗୁଡ଼ିକ ସହିତ ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ ହୋଇ ପଡ଼ିଥିଲେ । ନିଜ ଦେଶର ବିଳାସ୍ତ ରାଜନୈତିକ ପରଂପରା ସହିତ ଏହି ନବୀନ ଚିନ୍ତାଧାରାର ସମନ୍ୱୟରେ ସେମାନେ ମଧ୍ୟ କେତେକ ନୂତନ ରାଜନୈତିକ ଆଦର୍ଶର ପରିକଳ୍ପନା କରିଛନ୍ତି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀବେଳକୁ ଭାରତୀୟ ଚିନ୍ତାରାଜ୍ୟରେ ଅବକ୍ଷୟ ଯୁଗର ଆରମ୍ଭ ହୋଇ ସାରିଥିଲା । ଫଳରେ ଜୀବନ ରାଜ୍ୟର ଅନ୍ୟାନ୍ୟ ବିଭାବ ପରି ରାଜନୀତି ଦର୍ଶନ କ୍ଷେତ୍ରରେ ମଧ୍ୟ କୌଣସି ମୌଳିକ ଆଦର୍ଶ ତଥା ଅଭିନବ ମତବାଦର ଅଭ୍ୟୁଦୟ ଦେଖିବାକୁ ମିଳେ ନାହିଁ । ପୁନଶ୍ଚ, ବୈଦେଶିକ ଓ ଔପନିବେଶିକ ଶାସନତନ୍ତ୍ର ମଧ୍ୟରେ କବଳିତ ଭାରତୀୟ ମନୀଷୀମାନେ ରାଜ୍ୟଶାସନ ସମ୍ପର୍କରେ ଚିନ୍ତା କରିବାର ଆବଶ୍ୟକତା ଉପଲବ୍‌ଧି କରିନାହାନ୍ତି; ଆତ୍ମରକ୍ଷାର ପନ୍ଥା ଅନୁସନ୍ଧାନ କରୁଥିବାବେଳେ ଶାସକ ଗୋଷ୍ଠୀର ଗୁଣ କୀର୍ତ୍ତନରେ ବା ଗ୍ରନ୍ଥ ରଚନାରେ ନିଜର ସମସ୍ତ ପ୍ରତିଭା ବିନିଯୋଗ କରିଛନ୍ତି କିମ୍ବା ଭାଗ୍ୟବାଦର ଆଶ୍ରୟ ନେଇ ଅଧ୍ୟାତ୍ମ ଭାବନାର ଆବରଣ ତଳେ ନିଜକୁ ବଞ୍ଚାଇ ରଖିବା ଦିଗରେ ପ୍ରୟାସୀ ହୋଇ ଉଠିଛନ୍ତି । ଫଳରେ ଏ ସମୟରେ ରାଜନୈତିକ ଦର୍ଶନଶାସ୍ତ୍ର ଅପେକ୍ଷା (୫୪) ଧାର୍ମିକ ସଙ୍ଗୀତ ହିଁ ସମଗ୍ର ଦେଶକୁ ମୁଖରିତ କରିପାରିଛି । ତେଣୁ ଶୁକ୍ର, ମନୁ, ପରାଶର, ବୃହସ୍ପତି ଓ କୌଟିଲ୍ୟଙ୍କ ପରି ଚିନ୍ତାନାୟକଙ୍କ ପରିବର୍ତ୍ତେ ତୁଳସୀ ଦାସ, କେଶବ ଦାସ, କୃଷ୍ଣଦାସ, ମୀରାବାଈ, ତୁକାରାମ, ଗୋପାଳକୃଷ୍ଣଙ୍କ

---

(୫୪) ଅବୁଲ ଫଜଲଙ୍କ 'ଆକବର ନାମା' ଓ 'ଆଇନ-ଇ-ଆକବରୀ' ବାଦାଉନୀଙ୍କ 'ମୁନ୍ତଖାବ-ଉତ୍‌ ତାରିଖ', 'ମାସୀର-ଇ-ଜାହାଙ୍ଗିରୀ,' ଅବଦୁଲ୍ ହମିଦ ଓ ଅମିନାଇ କ୍ୱାଜବିନୀଙ୍କ 'ବାଦଶାହନାମା' ଇନାୟତ୍ ଖାଁଙ୍କର 'ଶାହାଜହାନ୍ନାମା ପ୍ରଭୃତି ଗ୍ରନ୍ଥରେ ରାଜନୈତିକ ତତ୍ତ୍ୱ ଅପେକ୍ଷା ଶାସକମାନଙ୍କର ଗୁଣାବଳୀ ଓ କାର୍ଯ୍ୟକଳାପର ବିବରଣୀ ପ୍ରାଧାନ୍ୟ ଲାଭ କରିଥିବାରୁ ଏଗୁଡ଼ିକର ଐତିହାସିକ ମୂଲ୍ୟ ହିଁ ବିଦ୍ୟମାନ ।

ପନ୍ଥ ଭକ୍ତ ଜନ୍ମମାନଙ୍କର ଆବିର୍ଭାବ ଘଟିଅଛି । ଦୀର୍ଘ ଦିନ ଧରି ଗ୍ରୀଷ୍ଟୀୟ ରାଜନୀତି-ଦର୍ଶନ ସଂପର୍କରେ ଅନବହିତ ଭାରତୀୟମାନଙ୍କୁ ଏଥିପାଇଁ ଗୋଟିଏ ବିଦେଶୀ ବାଣିଜ୍ୟିକ କଂପାନୀ ନିଜ ଶାସନାଧୀନରେ ୨୦୦ ବର୍ଷ କାଳ ରଖିପାରିବା ଅସ୍ୱାଭାବିକ ମନେହୁଏ ନାହିଁ । (୫୫) ବହୁକାଳ ଧରି ବୈଦେଶିକ ଶାସନତନ୍ତ୍ର ଓ ଉପନିବେଶ-ବାଦର ଶିକାର ହେଲେମଧ୍ୟ ଏହି ଶାସନ ନୀତିର ଦୋଷଗୁଣ ବିଗ୍ଭର କରି ସେ ସମୟରେ ଖଣ୍ଡିଏ ମାତ୍ର ଗ୍ରନ୍ଥ ପ୍ରଣୀତ ହୋଇ ନଥିବା ନିତାନ୍ତ ଶୋଚନୀୟ । (୫୬)

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଦେଶୀ ଶାସନର ଅତ୍ୟାଗ୍ଭର ଯେତେବେଳେ ସୀମାତୀତ ହୋଇ ଉଠିଲା ଏବଂ ଶାସିତମାନଙ୍କର ସହନଶୀଳତା ଚରମ ସୀମା ଅତିକ୍ରମ କରିଗଲା, ସେତେବେଳେ ଭାରତୀୟ ବୁଦ୍ଧିଜୀବୀମାନେ ପୁଣି ଥରେ ଜାତୀୟ ରାଜନୈତିକ ଘଟଣାବଳୀର ପର୍ଯ୍ୟାଲୋଚନା କରିବା ଆରମ୍ଭ କଲେ । ଏହାର ପରିଣତି ସ୍ୱରୂପ ଏକ ମୁକ୍ତଚେତନା ସମ୍ପନ୍ନ ଜାତୀୟବାଦୀ ରାଜନୈତିକ ଦର୍ଶନର ଆବିର୍ଭାବ ଘଟିଲା । ପ୍ରଥମେ ପରଂପରାପୁଷ୍ଟ ଧର୍ମଭାବନା ମଧ୍ୟରେ ଏହା ସୀମାବଦ୍ଧ ଥିଲାବେଳେ ପରବର୍ତ୍ତୀ ସମୟରେ ଏହା ବୈପ୍ଲବିକତାର ସ୍ୱର ଆହରଣ କରିଥିଲା । ଆଲୋଚ୍ୟ ରାଜନୈତିକ ଆଦର୍ଶ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ଭାରତର ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଯେଉଁ ଚିନ୍ତାନାୟକମାନଙ୍କ ଲେଖନୀରେ ରୂପାୟିତ ହୋଇ ଉଠିଥିଲା, ସେମାନଙ୍କ ମଧ୍ୟରୁ ରାଜା ରାମମୋହନ ରାୟ, ଦୟାନନ୍ଦ ସରସ୍ୱତୀ, ରାମକୃଷ୍ଣ ପରମହଂସ, ଆନି ବେଶାନ୍ତ, ଦାଦାଭାଇ ନାଓରୋଜୀ, ଲାଲ ଲଜପତ୍ ରାୟ, ବାଲ ଗଙ୍ଗାଧର ତିଲକ, ବିପିନଚନ୍ଦ୍ର ପାଲ, ଚିତ୍ତରଞ୍ଜନ ଦାସ, ଗୋପାଳକୃଷ୍ଣ ଗୋଖଲେ, ଅରବିନ୍ଦ ଘୋଷ, ବିବେକାନନ୍ଦ, ମହାତ୍ମା ଗାନ୍ଧୀ, ଜବାହରଲାଲ ନେହରୁ, ରବୀନ୍ଦ୍ରନାଥ ଠାକୁର, ସୁଭାଷଚନ୍ଦ୍ର ବୋଷ, ମାନବେନ୍ଦ୍ରନାଥ ରାୟ, ବଲ୍ଲଭଭାଇ ପଟେଲ, ପଣ୍ଡିତ ଗୋପବନ୍ଧୁ ଦାସ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନଙ୍କ ଚିନ୍ତାଧାରାରେ ଭାରତୀୟ ଜନଜୀବନ ନୂତନ ରାଜନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଥିଲା

---

(୫୫) Collins, Larry & Lapierre, Dominique—Freedom at Midnight (Vikash Publishing House, New Delhi, 9th Ed, 1976) P. 12

(୫୬) ଆଲୋଚ୍ୟ କାଳରେ ପ୍ରଣୀତ W. W. Hunter ଙ୍କର 'The India of the Queen', F. J. Shore ଙ୍କର 'Notes on Indian Affairs' (1837), Murray ଙ୍କର 'History of British Indian' (1857)

ଏବଂ ଭାରତୀୟ ଜନତା ସାମାଜିକ ସଂସ୍କାର, ରାଜନୈତିକ ମୁକ୍ତି ଓ ଅର୍ଥନୈତିକ ପ୍ରଗତି ହାସଲ ଉଦ୍ଦେଶ୍ୟରେ ଜାତୀୟ ଜାଗରଣର ମହାସ୍ରୋତରେ ଝାସ ଦେଇଥିଲେ । ଏହି ଚିନ୍ତାନାୟକଗଣ ଏକ ନିର୍ଦ୍ଦିଷ୍ଟ ପରିବେଶ ତଥା ମାନସିକ ସ୍ଥିତି ମଧ୍ୟରେ ରହିଥିବା ଫଳରେ ସମସ୍ତଙ୍କର ଲକ୍ଷ୍ୟ ଗୋଟିଏ ବିନ୍ଦୁରେ କେନ୍ଦ୍ରୀଭୂତ ଥିଲା । ସେହି ଲକ୍ଷ୍ୟରେ ଉପନୀତ ହେବା ପାଇଁ ଏମାନେ ବିଭିନ୍ନ ପନ୍ଥାର ନିର୍ଦ୍ଦେଶ ମଧ୍ୟ ଦେଇଯାଇ ଅଛନ୍ତି ।

## ସଂସ୍କାରବାଦୀ ଚେତନା

୧୮୧୩ ମସିହାରେ ଥମାସ୍ ମେକାଲେଙ୍କ ଦ୍ୱାରା ପ୍ରବର୍ତ୍ତିତ ଅଣ-ପାରଂପରିକ ତଥା ପାଶ୍ଚାତ୍ୟ ସଭ୍ୟତା ପ୍ରଣୋଦିତ ଶିକ୍ଷା ବ୍ୟବସ୍ଥାର ପ୍ରତିକ୍ରିୟା ସ୍ୱରୂପ **ରାଜା ରାମମୋହନ ରାୟ** (୧୭୭୨-୧୮୩୩) ପାଶ୍ଚାତ୍ୟ ଢାଞ୍ଚାରେ ସମାଜ ଓ ସଂସ୍କୃତିର ପୁନର୍ଗଠନ ଦିଗରେ ପ୍ରୟାସୀ ହୋଇ ବିଭିନ୍ନ ଅନାବଶ୍ୟକ ପ୍ରଥା, ଚଳଣି ଓ ବହୁବିଧ ମୂର୍ତ୍ତିପୂଜାର ବିରୋଧ କରି ହିନ୍ଦୁ ତନ୍ତ୍ରର ନବୀକରଣ ଉଦ୍ଦେଶ୍ୟରେ ଖ୍ରୀ ୧୮୧୮ରେ ବ୍ରାହ୍ମ ସମାଜ ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ କାଳରେ ଏହା କେଶବଚନ୍ଦ୍ର ସେନ ଓ ଦେବେନ୍ଦ୍ରନାଥ ଠାକୁରଙ୍କ ଦ୍ୱାରା ଅଧିକ ପ୍ରଭାବଶାଳୀ ହୋଇଥିଲା । ପ୍ରତିମାପୂଜା ଓ ସତୀଦାହ ଭଳି କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନପୂର୍ବକ ବେଦବେଦାନ୍ତାଦି ପ୍ରାଚୀନ ହିନ୍ଦୁ ଶାସ୍ତ୍ରଗ୍ରନ୍ଥକୁ ସହଜ ଓ ସରଳ ଭାବେ ପରିବେଷଣ କରି ରାମମୋହନ ହିନ୍ଦୁ ଆଦର୍ଶର ସାରବତ୍ତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଏକମାତ୍ର ନିରାକାର ବିଶ୍ୱନିୟନ୍ତାଙ୍କ ଦ୍ୱାରା ସୃଷ୍ଟ ସମଗ୍ର ସମାଜରେ ବିଶ୍ୱଭ୍ରାତୃତ୍ୱର ମହତ୍ତ୍ୱ ପ୍ରଖ୍ୟାପନ ଦିଗରେ ବଳିଷ୍ଠ ପ୍ରେରଣା ଯୋଗାଇଥିଲେ । ଏହା ବ୍ୟତୀତ, ଭୂସଂପତ୍ତିର ସ୍ଥାୟୀ ବନ୍ଦୋବସ୍ତ ଓ ରାଜସ୍ୱ ହ୍ରାସ ନିମିତ୍ତ ଆନ୍ଦୋଳନ କରି କୃଷକସମାଜର ମୁଖପାତ୍ର ତଥା ଜମିଦାରୀ ଉଚ୍ଛେଦର ଆଦ୍ୟ ପ୍ରବକ୍ତା ରୂପେ ସେ ପରିଚିତ । (୫୭)

---

J. W. Kayeଙ୍କର 'Administration of the East India Company' (1853), W. P. Andrew ଙ୍କର 'India and her neighbours' (1878) J. W. S. Wyllie ଙ୍କର 'Essays on the External Policy of India' (1875) ପ୍ରଭୃତି ବିଦେଶୀ ଲେଖକମାନଙ୍କର ଏକଦେଶଦର୍ଶୀ ଇତିହାସ ମୂଳକ ରଚନାରୁ କୌଣସି ରାଜନୀତିତତ୍ତ୍ୱ ସମ୍ପର୍କୀୟ ଅବଦାନ ଉପଲବ୍ଧ ହୁଏନାହିଁ ।

(୫୭ (କ) Majumdar & others—An Advanced History of India P. 809

(ଖ) Das, Dr Harihar-Freedom Movement and National Integration in India (Vidyarthi Vawan) Berhampur, 1986) pp 14-19

• ସେହି ସମୟରେ 'ବ୍ରାହ୍ମ ସମାଜ'ର କେବଳ ସଂସ୍ଥା ସ୍ୱରୂପ **ସ୍ୱାମୀ ଦୟାନନ୍ଦ ସରସ୍ୱତୀ** (୧୮୨୪-୧୮୮୩)ଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠିତ 'ଆର୍ଯ୍ୟସମାଜ' ହିନ୍ଦୁ ଆଦର୍ଶ ଓ ଭାରତୀୟ ସଂସ୍କୃତିକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଥିଲା । ବିଶିଷ୍ଟ ସଂସ୍କୃତବିଦ୍ ଦୟାନନ୍ଦ ଇଂରେଜ ଶିକ୍ଷା ଓ ଖ୍ରୀଷ୍ଟଧର୍ମ ପ୍ରଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନପୂର୍ବକ ବୈଦିକ ଆଦର୍ଶରେ ଭାରତୀୟ ସମାଜକୁ ସୁଦୃଢ଼ କରିବା ଦିଗରେ ବ୍ରତୀ ହୋଇଥିଲେ । ଦୟାନନ୍ଦ ରାମମୋହନଙ୍କ ତୁଲ୍ୟ ଏକେଶ୍ୱରବାଦୀ ଥିଲେ ଏବଂ ବାଲ୍ୟବିବାହ, ଜାତିଭେଦ, ଜଳଯାତ୍ରା ଓ କାଳ୍ପନିକ ପୁରାଣଗ୍ରନ୍ଥଗୁଡ଼ିକର ପ୍ରସାର ବିରୁଦ୍ଧରେ ବିକ୍ଷୋଭ ପ୍ରଚାର କରିଥିଲେ । ରାମମୋହନ ଚିନ୍ତାବିତ୍‌ମାନଙ୍କୁ ପ୍ରଭାବିତ କରିପାରିଥିବା ବେଳେ ଦୟାନନ୍ଦ ସାଧାରଣ ଜନତାଙ୍କ ଉପରେ ପ୍ରଭାବ ବିସ୍ତାର କରିପାରିଥିଲେ । (୬୮) ତାଙ୍କର 'ସତ୍ୟାର୍ଥପ୍ରକାଶ' ଗ୍ରନ୍ଥ ସମାଜରେ ବିପୁଳ ଭାବେ ଆଦୃତ ହୋଇଥିଲା ଏବଂ ତାଙ୍କ ଦ୍ୱାରା ଲାହୋର ଓ ଜଳନ୍ଧରଠାରେ ସ୍ଥାପିତ ଆଙ୍ଗ୍ଲୋବୈଦିକ ମହାବିଦ୍ୟାଳୟ ଓ କନ୍ୟା ମହାବିଦ୍ୟାଳୟ ତତ୍କାଳୀନ ସମାଜରେ ଆଲୋଡ଼ନ ସୃଷ୍ଟି କରିଥିଲା । ଶୁଦ୍ଧି ଆନ୍ଦୋଳନ ମାଧ୍ୟମରେ ସେ ବହୁ ଧର୍ମାନ୍ତରିତ ହିନ୍ଦୁଙ୍କୁ ପୁଣି ହିନ୍ଦୁଧର୍ମରେ ଦୀକ୍ଷିତ କରାଇ ଜାତୀୟ ସଂହତି ଓ ସ୍ୱଦେଶପ୍ରୀତି ଭାବନାକୁ ଜାଗ୍ରତ କରିଥିଲେ । ତାଙ୍କ ଆଦର୍ଶ ପଞ୍ଜାବ ଓ ଯୁକ୍ତପ୍ରଦେଶରେ ପ୍ରବଳ ପ୍ରଭାବଶାଳୀ ହୋଇ ଉଠିଥିଲା ଏବଂ ମହାତ୍ମା ହଂସରାଜ, ମହାତ୍ମା ମୁନ୍‌ସୀରାମ (ସ୍ୱାମୀ ଶ୍ରଦ୍ଧାନନ୍ଦ) ଓ ଲାଲା ଲଜପତ୍ ରାୟଙ୍କ ଭଳି ଚିନ୍ତାନାୟକ ସେହି ସଂସ୍ଥାର ଅଭିଯାନରେ ସଂଶ୍ଳିଷ୍ଟ ହୋଇ ପଡ଼ିଥିଲେ । (୬୯)

ଏହା ପରେ ରାମକୃଷ୍ଣ ମିସନ୍ ପ୍ରତିଷ୍ଠିତ ହେବା ଫଳରେ ବ୍ରାହ୍ମସମାଜ ଓ ଆର୍ଯ୍ୟ ସମାଜ ଅର୍ଥାତ୍ ନରମବାଦୀ ବା ପାଶ୍ଚାତ୍ୟବାଦୀ ଓ ଚରମବାଦୀ ବା ପ୍ରାଚ୍ୟବାଦୀଙ୍କ ମଧ୍ୟରେ ଆଦର୍ଶଗତ ସମନ୍ୱୟ ସ୍ଥାପିତ ହୋଇପାରିଥିଲା । **ରାମକୃଷ୍ଣ ପରମହଂସ** (୧୮୩୬-୧୮୮୬) ଯୁକ୍ତିବଳରେ ବୁଝାଇ ଦେଇଥିଲେ ଯେ ଚେତନ ଓ ଅଚେତନ ସମସ୍ତ ପଦାର୍ଥରେ ବ୍ରହ୍ମ ବିଦ୍ୟମାନ; ଏଣୁ ଯେ କୌଣସି ମୂର୍ତ୍ତିର ଉପାସନା କଲେ ମଧ୍ୟ ସେଥିରେ ପରମ ପୁରୁଷଙ୍କର ସତ୍ତା ଉପଲବ୍‌ଧି କରିହେବ ।

---

(୬୮) Das, Dr. Harihar—Some Issues and Ideas in Indian Government and Politics (Grantha Mandir, 2nd. Ed. 1985) pp. 10-11

(୬୯) Das, Durga—India from Curzon to Nehru & Afte (Rupa & Co. 1974) pp. 30-35

ରାମକୃଷ୍ଣ ମିସନ ମାଧ୍ୟମରେ ହିନ୍ଦୁ ଆଦର୍ଶର ଯେଉଁଲି ପରପ୍ରଚାର ଘଟିଥିଲା, ଯେଥିରେ ହିନ୍ଦୁତତ୍ତ୍ୱକୁ ମୃତ ମନେ କରୁଥିବା ଇଂରେଜ ଶିକ୍ଷିତମାନଙ୍କର ହୃତ୍‌କମ୍ପ ସୃଷ୍ଟି ହୋଇଥିଲା । (୭୦)

ରାମକୃଷ୍ଣ ପରମହଂସଙ୍କର ଶ୍ରେଷ୍ଠ ଶିଷ୍ୟ **ସ୍ୱାମୀ ବିବେକାନନ୍ଦ** (୧୮୬୨-୧୯୦୨) କେବଳ ଧର୍ମ ଓ ସମାଜ ସଂସ୍କାର ଉପରେ ଗୁରୁତ୍ୱ ନଦେଇ ବିପ୍ଳବୀ ଯୁବ ସମାଜର ଜାଗରଣ ତଥା ଜାତୀୟ ଜୀବନର ସୂର୍ବାଙ୍ଗ ପୁନର୍ଗଠନ ଉଦ୍ଦେଶ୍ୟରେ ଶିକ୍ଷା ସଂସ୍କାର, ନାରୀ ପ୍ରଗତି, ଦାରିଦ୍ର୍ୟ ନିରାକରଣ, ଜାତିଭେଦ ପ୍ରଥାର ସଂସ୍କାର, ସାମାଜିକ ଦୁର୍ଗତିର ପ୍ରତିକାର, ସାଧାରଣ ଜୀବନ ମାନର ଉନ୍ନୟନ ଆଦି ବିଭିନ୍ନ ବିଷୟରେ କେବଳ ଭାରତବାସୀଙ୍କୁ ନୁହିଁ, ସମଗ୍ର ବିଶ୍ୱ ସମାଜକୁ ଉଜ୍ଜୀବିତ କରିଥିଲେ । ମହାନ୍ ଅତୀତ ଓ ଉଜ୍ଜ୍ୱଳ ଭବିଷ୍ୟତର ସଂଯୋଜକ ରୂପେ ସେ ସୁପ୍ତ ହିନ୍ଦୁ ଚେତନାକୁ ଆତ୍ମ-ବିଶ୍ୱାସ ରୂପକ ଶକ୍ତି ସଞ୍ଚାରକାରୀ ମହୌଷଧି ଯୋଗାଇଥିଲେ । (୭୧) ପରବର୍ତ୍ତୀ ପର୍ଯ୍ୟାୟରେ ମାର୍କିନ ମାଟିରେ ଗଢି ଉଠିଥିବା ଥିଓସଫିକାଲ ସୋସାଇଟିର ଆଜୀବନ ସଭାନେତ୍ରୀ **ଶ୍ରୀମତୀ ଆନି ବେଶାନ୍ତ** (୧୮୪୭-୧୯୩୩)ଖ୍ରୀ ୧୮୯୩ରେ ଭାରତକୁ ଆସି ଏଠାରେ ହିନ୍ଦୁ ଆଦର୍ଶର ପ୍ରଚାର, ହିନ୍ଦୁଧର୍ମର ସୁଦୃଢ଼ୀକରଣ, ନାରୀ ଜାତିର ଜାଗରଣ ଓ ଆଧ୍ୟାତ୍ମିକ ଶିକ୍ଷାର ବିକାଶ ଦିଗରେ ବ୍ରତୀ ହୋଇଥିଲେ । ଖ୍ରୀ ୧୮୯୮ରେ ବନାରସଠାରେ ସେ କେନ୍ଦ୍ରୀୟ ହିନ୍ଦୁ ବିଦ୍ୟାଳୟ ସ୍ଥାପନ କରି ଜାତି ନିର୍ମାଣ କାର୍ଯ୍ୟରେ ମନୋନିବେଶ କରିଥିଲେ ଏବଂ ୧୯୧୬ ମସିହାରେ ତିଲକଙ୍କ ତାଲିମରେ ଅନ୍ୟ ଏକ 'ହୋମ ରୁଲ୍ ଲିଗ୍' ପ୍ରତିଷ୍ଠା କରି ଜାତୀୟ ଆନ୍ଦୋଳନକୁ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । (୭୨)

---

(୭୦) ରାଜଗୋପାଳାଚାରୀ, ଚକ୍ରବର୍ତ୍ତୀ—ଶ୍ରୀ ରାମକୃଷ୍ଣ ଉପନିଷଦ (ଅନୁ-ସ୍ୱାମୀ ସ୍ତୁତ୍ୟାନନ୍ଦ, ରାମକୃଷ୍ଣ ମଠ, ଭୁବନେଶ୍ୱର-୧୯୭୬) ପୃ ୫୬

(୭୧) (କ) Nirvedanand, Swami– Swami Vivekananda on India and her problems (Advaita Ashram, Calcutta, 1963) P—V.

(ଖ) Avinashilingam, T. S —Educational philosophy of Swami Vivekananda (Sri Ramkrishna Mission Vidyalaya, Coimbatore, 1964) pp. 222-227.

(୭୨) Majumdar & others—An Advanced History of India P. 979

## ଜାତୀୟ କଂଗ୍ରେସ ଓ ସ୍ୱରାଜ୍ୟ ଭାବନା

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ପ୍ରାଚୀନ ଭାରତୀୟ ପରଂପରାର ପୁନର୍ଜାଗରଣ ଫଳରେ ଭାରତୀୟ ଜନମାନସରେ ଏକ ନୂତନ ଆତ୍ମସମ୍ମାନବୋଧ ଜାଗ୍ରତ ହୋଇ ଉଠିଥିଲା ଏବଂ ଏହାର ଅପରିହାର୍ଯ୍ୟ ପରିଣତି ସ୍ୱରୂପ ଜାତୀୟତାର ଏକ ମହାସ୍ରୋତ ସୃଷ୍ଟି ହୋଇଥିଲା । ସେତେବେଳେ ଯଥାର୍ଥ କାରଣ ବିନା ସାର୍ ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ ଆଇ. ସି. ଏସ୍. ଚାକିରୀରୁ ବରଖାସ୍ତ କରାଯିବା ଫଳରେ ସେ ଜାତୀୟ ଜାଗରଣ ସୃଷ୍ଟି ଉଦ୍ଦେଶ୍ୟରେ ଏକ 'ଭାରତୀୟ ସଂଘ' ଗଠନ ପୂର୍ବକ ଘୋର ଆନ୍ଦୋଳନ ଆରମ୍ଭ କରିଥିଲେ । ତାର ପରିଣତି ସ୍ୱରୂପ ୧୮୮୩ ମସିହାରେ କଲିକତା ଠାରେ ନିଖିଳ ଭାରତୀୟ ଜାତୀୟ ସମ୍ମିଳନୀ ଆହୂତ ହୋଇଥିଲା । ସେହି ବର୍ଷ ସାର ଆଲ୍‌ନ୍ ଅକ୍ଟୋଭିଆନ୍ ହ୍ୟୁମ୍ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକ ଛାତ୍ରମାନଙ୍କୁ ଭାରତୀୟମାନଙ୍କର ମାନସିକ, ନୈତିକ, ସାମାଜିକ ଓ ରାଜନୈତିକ ଜାଗୃତି ସକାଶେ ଏକ ସଙ୍ଗଠନ ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଇଥିଲେ । ଏହା ଫଳରେ ମାତ୍ର ୭୨ ଜଣ ସଭ୍ୟଙ୍କୁ ନେଇ ୧୮୮୫ ମସିହାରେ 'ଭାରତୀୟ ଜାତୀୟ କଂଗ୍ରେସ' ଜନ୍ମଲାଭ କରିଥିଲା । (୭୨-କ)

ସେ ସମୟରେ **ଲାଲା ଲାଜପତ୍ ରାୟ** (୧୮୬୪-୧୯୨୮) ଜାତୀୟ କଂଗ୍ରେସରେ ଯୋଗ ଦେବା ପରେ ତିଲକ, ଗୋଖଲେ, ନାଓରୋଜୀ ପ୍ରମୁଖ ନେତାମାନଙ୍କ ସଂସ୍ପର୍ଶରେ ଆସି ଗଣଆନ୍ଦୋଳନରେ ଝାସ ଦେଇଥିଲେ । ହିନ୍ଦୁସଭା, ଲୋକସେବକ ମଣ୍ଡଳ ଓ ବନ୍ଦେ ମାତରମ୍ ପତ୍ରିକା ମାଧ୍ୟମରେ କେବଳ ଭାରତର ଜନମତକୁ ଜାଗ୍ରତ କରିବାରେ ସନ୍ତୁଷ୍ଟ ନହୋଇ ସେ ଇଂଲଣ୍ଡ, ଆମେରିକା ଓ ଜାପାନ ପ୍ରଭୃତି ବିଦେଶ ଭୂମିରେ ଭାରତର ରାଜନୈତିକ ସମସ୍ୟାକୁ ଉପସ୍ଥାପନ କରିଥିଲେ । **ଦାଦାଭାଇ ନାଓରୋଜୀ** (୧୮୨୫-୧୯୧୭) ମଧ୍ୟ ସ୍ୱାୟତ୍ତ ଶାସନର ଅପରିହାର୍ଯ୍ୟତାକୁ ସ୍ୱୀକାର କରି ଭାରତରୁ କୁଶାସନ ଦୂର କରିବା ପାଇଁ ଆହ୍ୱାନ ଦେଇଥିଲେ । ଦାରିଦ୍ର୍ୟ, ଦୁର୍ଭିକ୍ଷ ଓ ମହାମାରୀଗ୍ରସ୍ତ ଅର୍ଦ୍ଧବୁଭୁକ୍ଷୁ ଭାରତବାସୀଙ୍କ ପାଇଁ ସ୍ୱାୟତ୍ତଶାସନ ବ୍ୟବସ୍ଥା ଯେ ଏକମାତ୍ର ପନ୍ଥା ତାହା ସେ ଦୃଢ଼ ଭାବରେ ସାବ୍ୟସ୍ତ କରିଥିଲେ । ଅନ୍ୟତମ ଚିନ୍ତାନାୟକ **ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ** (୧୮୭୦-୧୯୨୫) ବାସ୍ତବ ସହଯୋଗାତ୍ମକ ମନୋଭାବ, ବିଶ୍ୱଶାନ୍ତି ପ୍ରତିଷ୍ଠା, ବିଶ୍ୱ ରାଷ୍ଟ୍ରସଂଘ **(Federation of the World)** ଗଠନ ତଥା ମାନବଜାତିର ମହାସଂଘ ସ୍ଥାପନ ଉପରେ ଗୁରୁତ୍ୱ ଦେଇଥିଲେ । ବ୍ରିଟିଶ ରାଜ୍ୟଗୋଷ୍ଠୀ

---

୭୨ (କ) **Ibid pp. 886-888 & Manorama Year Book-1988, P. 432**

ମଧ୍ୟରେ ଭାରତର ସ୍ୱାଧୀନତା ଥିଲା ତାଙ୍କର କାମ୍ୟ । ସ୍ୱରାଜ୍ୟ ଓ ସ୍ୱାଧୀନତାର ତୁଳନାତ୍ମକ ତତ୍ତ୍ୱ ଉପସ୍ଥାପନ ପୂର୍ବକ ଚିତ୍ତରଞ୍ଜନ ସ୍ୱାଧୀନତାକୁ ଏକ ସଂକୀର୍ଣ୍ଣ ତଥା ପରାଧୀନତାର ବିପରୀତାତ୍ମକ ଅବସ୍ଥା ଭାବେ ଗ୍ରହଣ କରି ଏହାଦ୍ୱାରା ଭାରତୀୟ ପରଂପରା, ଦର୍ଶନ, ପ୍ରଜ୍ଞା ଓ ଚେତନା ସମନ୍ୱିତ ସ୍ୱରାଜଭାବନା ପୁଷ୍ଟୀଭୂତ ହୋଇପାରିବ ନାହିଁ ବୋଲି ଚେତାବନୀ ଦେଇଥିଲେ । (୬୩) ବିପିନଚନ୍ଦ୍ର ପାଲ (୧୮୫୮-୧୯୩୨)ଙ୍କ ମତରେ ଅସହଯୋଗ ଅସାମ୍ବିଧାନିକ ବିବେଚିତ ହୋଇଥିଲା ।

ଅନ୍ୟପକ୍ଷରେ, ଚରମ ପନ୍ଥୀ **ବାଳ ଗଙ୍ଗାଧର ତିଳକ** (୧୮୫୬-୧୯୨୦) ଯେ କୌଣସି ଉପାୟରେ ସ୍ୱରାଜ ହାସଲ କରିବାକୁ ଚାହିଁଥିଲେ । ଶୟନେ, ସ୍ୱପନେ, ଜାଗରଣେ ସ୍ୱରାଜ ପ୍ରାପ୍ତି ହିଁ ଥିଲା ତାଙ୍କର ଏକମାତ୍ର ଧ୍ୟେୟ । ସେ ନିଜେ ସ୍ୱଭାବବଶତଃ ଅଧ୍ୟାତ୍ମବାଦୀ ଥିଲେ ମଧ୍ୟ ପରିସ୍ଥିତିର ଚାପରେ ବାଧ୍ୟ ହୋଇ ରାଜନୀତି କ୍ଷେତ୍ରରେ ପଦାର୍ପଣ କରିଥିଲେ । ତାଙ୍କର ମୂଳ ଲକ୍ଷ୍ୟଥିଲା ଆତ୍ମନିର୍ଭରଶୀଳତା, ଆତ୍ମସମ୍ମାନ ଓ ସ୍ୱାୟତ୍ତଶାସନ । ସ୍ୱରାଜକୁ ସେ ବ୍ୟକ୍ତିର ଜନ୍ମଗତ ଅଧିକାର ରୂପେ ଗ୍ରହଣ କରି ନେଇଥିଲେ । (୬୪) କିନ୍ତୁ ନରମ ପନ୍ଥୀ **ଗୋପାଳକୃଷ୍ଣ ଗୋଖଲେ** (୧୮୬୬-୧୯୧୫) ଆବେଦନ ଓ ପ୍ରରୋଚନା ମାଧ୍ୟମରେ ପୂର୍ଣ୍ଣସ୍ୱରାଜ ହାସଲ ଅଭିପ୍ରାୟରେ 'ଭାରତ ସେବକ ସମାଜ' ମାଧ୍ୟମରେ ତ୍ୟାଗ ଓ ସେବାଦ୍ୱାରା ଦାରିଦ୍ର୍ୟ ଓ ପରାଧୀନତା ଦୂର କରିବା ଲାଗି ଆହ୍ୱାନ ଦେଇଥିଲେ । ନାଓରୋଜୀଙ୍କ ଭଳି ସେ ମଧ୍ୟ ଭାରତୀୟ ଗଣଚେତନା ସମ୍ପର୍କରେ ଇଂରେଜମାନଙ୍କୁ ପ୍ରଭାବିତ କରିଥିଲେ । ଗୋଖଲେ ଓ ତିଳକ ଥିଲେ ପରସ୍ପରଙ୍କର ପରିପୂରକ । (୬୫)

---

(୬୩) (କ) ଦାସ, ସୂର୍ଯ୍ୟନାରାୟଣ—ସାମ୍ପ୍ରତିକ ପ୍ରବନ୍ଧ (ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ-୧୯୭୨) ପୃ. ୬୬-୮୦

(ଖ) Masani, R. P—Dadabhai Naoroji (Publications Division, New Delhi, 1960) P 168

(ଗ) Dasgupta, Hemendranath—Deshabandhu Chittaranjan Das (Publications Division, New Delhi, 1960) pp. 209-212

(୬୪) Jog, N. G—Lokmanya Balgangadhar Tilak (Publications Division, New Delhi, 1970) pp. 179-185

(୬୫) Deogirikar, T. R.—Gopal Krishna Gokhale (Publications Division, New Delhi, 1969) pp. 159-168

## ଗାନ୍ଧିବାଦୀ ଆଦର୍ଶ

ସ୍ୱାଧୀନତା ଆନ୍ଦୋଳନର ଏହି ମୁହୂର୍ତ୍ତରେ ଭାରତୀୟ ରାଜନୈତିକ ରଙ୍ଗମଞ୍ଚରେ **ମୋହନଦାସ କରମଚାନ୍ଦ ଗାନ୍ଧୀ (୧୮୬୯-୧୯୪୮)** ଙ୍କର ଆବିର୍ଭାବ ଘଟିଥିଲା । ସେ ଗୋଖଲେଙ୍କୁ ନିଜର ରାଜନୈତିକ ଗୁରୁ ରୂପେ ମାନିଥିଲେ ଏବଂ ତିଲକଙ୍କୁ ଅଗ୍ରଜ ତୁଲ୍ୟ ସମ୍ମାନ ଦେଉଥିଲେ । ଗାନ୍ଧିଜୀ ଅନ୍ୟାନ୍ୟ ପ୍ରତିଷ୍ଠିତ ରାଜନୀତି-ଦାର୍ଶନିକଙ୍କ ପରିକଳ୍ପିତ ରାଜନୈତିକ ମତବାଦ ପ୍ରଖ୍ୟାପନ କରିବା ପାଇଁ ଚାହିଁ ନଥିଲେ । ସେ ଥିଲେ ଜଣେ ଅନୁଭୂତିସମ୍ପନ୍ନ ପ୍ରୟୋଗବାଦୀ ରାଜନୀତିଜ୍ଞ । ଭାରତୀୟ ପରଂପରା, ସାଂସ୍କୃତିକ ଆଦର୍ଶ ଏବଂ ଜାତୀୟ ଜନମାନସର ଆଶା, ଆକାଂକ୍ଷା ଓ ସର୍ବୋପରି ତତ୍କାଳୀନ ଜାତୀୟ ଆବଶ୍ୟକତାକୁ ଆଖି ଆଗରେ ରଖି ସେ ନିଜର ରାଜନୈତିକ ଆଦର୍ଶକୁ ରୂପରେଖ ଦେଇଥିଲେ । ଭାରତୀୟ ରାଜନୈତିକ ଚେତନାକୁ ନୂତନ ରୂପରେଖ ପ୍ରଦାନ କରିବା ଫଳରେ ଗାନ୍ଧିଜୀଙ୍କ ଆଦର୍ଶ କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ସମାଦୃତ ହୋଇଥିଲା ।

ତାଙ୍କ ରାଜନୈତିକ ମତବାଦରେ ମାନବିକ ସ୍ୱାତନ୍ତ୍ର୍ୟ, ସ୍ୱାୟତ୍ତଶାସନ ଓ ଗ୍ରାମ୍ୟ ଉନ୍ନୟନ ଉପରେ ଗୁରୁତ୍ୱ ଦିଆଯାଇଥିଲା । ଧର୍ମ ବିନା ରାଜନୀତି ମୃତ୍ୟୁ ଫାଶରେ ପରିଣତ ହେବା ସୁନିଶ୍ଚିତ ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା । ତାଙ୍କର ମୂର୍ତ୍ତ ସ୍ୱରାଜ ପରିକଳ୍ପନା ଥିଲା ଧରାପୃଷ୍ଠରେ ସ୍ୱର୍ଗର ଅବତରଣ ଏବଂ ଏହା ହିଁ ଥିଲା ତାଙ୍କ ପରିକଳ୍ପିତ 'ରାମରାଜ୍ୟ' । ଜନତାର ସ୍ୱରାଜ୍ୟରେ ହିଁ ଆଧ୍ୟାତ୍ମିକ ଓ ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା ତଥା ବିଶ୍ୱମୈତ୍ରୀ ଆଦର୍ଶର ପ୍ରସାର ସମ୍ଭବ ବୋଲି ସେ ଦୃଢ଼ ମତ ବ୍ୟକ୍ତ କରିଥିଲେ । ଗାନ୍ଧିଜୀ ସ୍ପଷ୍ଟ ଭାଷାରେ ପ୍ରକାଶ କରିଥିଲେ ଯେ କୋଡ଼ିଏ ଜଣ ବ୍ୟକ୍ତି କେନ୍ଦ୍ରରେ ଅଧିଷ୍ଠିତ ହେଲେ ପ୍ରକୃତ ଗଣତନ୍ତ୍ର କାର୍ଯ୍ୟକାରୀ ହୋଇପାରିବ ନାହିଁ, ଏହା ପ୍ରତ୍ୟେକ ଗ୍ରାମର ଲୋକମାନଙ୍କ ଦ୍ୱାରା ହିଁ କାର୍ଯ୍ୟକାରୀ ହେବା ଆବଶ୍ୟକ । ପାଶ୍ଚାତ୍ୟ ଗଣତନ୍ତ୍ରକୁ ସେ ଲଘୁ ନାଜିବାଦ ବା ଫାସିବାଦ ଆଖ୍ୟା ଦେଇ ତାହା ସାମ୍ରାଜ୍ୟବାଦକୁ ପଛ ଘୋଡ଼ାଇବା ଲାଗି ଉଦ୍ଦିଷ୍ଟ ବୋଲି କହୁଥିଲେ । ଶାନ୍ତି, ଅହିଂସା, ଶୃଙ୍ଖଳା, ନିରପେକ୍ଷତା ଓ ପଞ୍ଚାୟତିରାଜ ପ୍ରତିଷ୍ଠାକୁ ଭିତ୍ତି କରି ହିଁ ପ୍ରକୃତ ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରବର୍ତ୍ତନ ସମ୍ଭବପର ବୋଲି ତାଙ୍କର ଦୃଢ଼ଧାରଣା ରହିଥିଲା । ଗାନ୍ଧିଜୀ ଅଶିକ୍ଷା, ଅନ୍ଧ ବିଶ୍ୱାସ, ଶ୍ରେଣୀ-ସଂଘର୍ଷ, ଅସ୍ପୃଶ୍ୟତା, ଜାତିଭେଦ, ନାରୀ ନିର୍ଯ୍ୟାତନା, ବାଲ୍ୟ ବିବାହ, ଯୌତୁକ ପ୍ରଥା, ସତୀଦାହ ପ୍ରଥା, ନିଶାପାନ ପ୍ରଭୃତି କୁସଂସ୍କାର ବିରୁଦ୍ଧରେ ଜନମତ ଜାଗ୍ରତ କରିବା ପାଇଁ ସତତ ପ୍ରୟାସୀ ଥିଲେ । ସଂକ୍ଷେପରେ ପ୍ରକାଶ କଲେ, ଗାନ୍ଧିଜୀ ଭାରତର ସ୍ୱାଧୀନତା ମାଧ୍ୟମରେ ବିଶ୍ୱର ମୁକ୍ତି ଚାହୁଁଥିଲେ ଏବଂ ଏହି ଲକ୍ଷ୍ୟ ସାଧନ ନିମିତ୍ତ ସାମ୍ୟ, ମୈତ୍ରୀ, ସଂହତି, ସଦ୍‌ଭାବ,

ସମବଣ୍ଟନ, ସମବାୟ, ସର୍ବୋଦୟ, କୁଟୀର ଶିଳ୍ପର ପ୍ରସାର, ଯୁଦ୍ଧ ନିରାକରଣ ଓ ବିଶ୍ୱଶାନ୍ତି ପ୍ରତିଷ୍ଠା ଉପରେ ଗୁରୁତ୍ୱ ଆରୋପ କରିଥିଲେ । (୭୬)

ଉତ୍କଳୀୟ ସାହିତ୍ୟସାଧକ, ତ୍ୟାଗନିଷ୍ଠ ଜନସେବକ, କର୍ମପ୍ରାଣ **ପଣ୍ଡିତ ଗୋପବନ୍ଧୁ ଦାସ** (୧୮୭୭-୧୯୨୮)ଙ୍କର ଚିନ୍ତା ଓ ଚେତନାରେ ମଧ୍ୟ ଗାନ୍ଧିଜୀଙ୍କ ରାଜନୈତିକ ଆଦର୍ଶର ଗୁଞ୍ଜରଣ ପ୍ରତିଧ୍ୱନିତ ହୋଇଥିଲା । ସେ ଭାରତର ଅସାତ୍ୟତନ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନପୂର୍ବକ 'ଜନ୍ମ, ଭାଷଣ, ବିଚାରଣ ଓ ଅନୁଷ୍ଠାନ'ଗତ ସ୍ୱାଧୀନତା ପ୍ରତିଷ୍ଠା ତଥା ଗ୍ରାମ ପଞ୍ଚାୟତ, ଅରଟ ଏବଂ ଜନତାର ଏକତା ଓ ସହୃତ ଭିତ୍ତିରେ ସ୍ୱରାଜ୍ୟ ସାଧନର ବାର୍ତ୍ତା ପ୍ରଚ୍ଚର କରିଥିଲେ । ଆଧ୍ୟାତ୍ମିକତାର ବିକାଶ ତଥା ଜାତୀୟତା ମାଧ୍ୟମରେ ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା ଥିଲା ତାଙ୍କର ଚରମ ଲକ୍ଷ୍ୟ । ବାସ୍ତବରେ ଗୋପବନ୍ଧୁଙ୍କ ଆଦର୍ଶ ଥିଲା ଗାନ୍ଧିବାଦର ପୂର୍ବରୂପ । (୭୭)

---

(୭୬) ଦାସ, ସୂର୍ଯ୍ୟନାରାୟଣ—ଯୁଗଜନକ ମହାତ୍ମାଗାନ୍ଧୀ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ତୃତୀୟ ସଂସ୍କରଣ, ୧୯୭୬) ପୃ. ୧୭୬ ୨୮୨ ଓ ୩୮୭-୩୮୮

(୭୭) (କ) ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଚୃର ଦ୍ରମେ ମାନବର ସମାଜ ସନ୍ଥିତି ।

× ×

ଗୃହେ ଗୃହେ ଅରଟ ଗ୍ରାମେ ପଞ୍ଚାୟତ ,
ଗ୍ରାମବାସୀଗଣ ମଧ୍ୟେ ଏକମତ ।
ସ୍ୱରାଜ୍ୟ ସାଧନେ ଏହି ତିନପଦ
ପାଳିଲେ ଖଣ୍ଡିବ ଉତ୍କଳ ବିପଦ । (ଗୋପବନ୍ଧୁ)

(ଖ) "ଜାତୀୟତାର ଲକ୍ଷ୍ୟରେ ଉଦାର ମାନବିକତା, ସମଗ୍ର ଭାରତରେ ତାହା କେବଳ ଓଡ଼ିଆମାନେ ବୁଝିଥିଲେ । ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତାପୂର୍ଣ୍ଣ ପ୍ରାଣ ।" (ଉତ୍କଳ ସମ୍ମିଳନୀ ୧୪ଶ ଅଧିବେଶନରେ ଗୋପବନ୍ଧୁଙ୍କ ଭାଷଣର କିୟଦଂଶ ।)

(ଗ) ଦାସ, ସୂର୍ଯ୍ୟନାରାୟଣ—ଗାନ୍ଧିବାଦର ଜନକ ଗୋପବନ୍ଧୁ (ପ୍ରବନ୍ଧ) ରାଧାନାଥ ରଥ—ସଂ, ସମାଜ (ବାର୍ଷିକ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା ୧୯୭୫)

ଗାନ୍ଧୀ ଓ ଗୋପବନ୍ଧୁଙ୍କ ମାନବବାଦ ତଥା ବିଶ୍ୱପ୍ରେମ କବିଗୁରୁ **ରବୀନ୍ଦ୍ରନାଥ ଠାକୁର** (୧୮୬୧-୧୯୪୧) **ଓ** ବିଶ୍ୱବିଖ୍ୟାତ ଦାର୍ଶନିକ **ଡକ୍‌ଟର ରାଧାକୃଷ୍ଣନ** (୧୮୮୮-୧୯୭୫)ଙ୍କ ରଚନା ସଂଭାରରେ ଅଧିକ ଉଦ୍‌ବୋଧ ଓ ସାବଲୀଳ ରୂପ ପରିଗ୍ରହ କରିଥିଲା । ରବୀନ୍ଦ୍ରନାଥ ସାମ୍ରାଜ୍ୟବାଦର ଅସହିଷ୍ଣୁତା ଓ ସମାଜବାଦର ଧ୍ୱଂସାତ୍ମକତାର ବିରୋଧ କରି ନୈତିକତାର ସ୍ୱାଧୀନ ପରିପ୍ରକାଶକୁ ଶ୍ରେଷ୍ଠ ରାଜନୈତିକ ଆଦର୍ଶ ବୋଲି ମତ ଦେଉଥିଲେ । ଶୋଷଣ, ସଙ୍ଗଠନ ଓ ଦକ୍ଷତା ପରିବର୍ତ୍ତେ ସେ ସାମାଜିକ ସହଯୋଗ, ଆଧ୍ୟାତ୍ମିକ ଆଦର୍ଶବାଦ ଓ ଆନ୍ତର୍ଜାତୀୟ ଭାବ ବିନିମୟ ଉପରେ ଗୁରୁତ୍ୱ ଆରୋପ କରିଥିଲେ । (୬୮) ଗାନ୍ଧିଜୀଙ୍କ ଭଳି ମାଟିର ସନ୍ତାନ ନ ହୋଇ ସେ ଆଭିଜାତ୍ୟସଂପନ୍ନ ପରିବାରସଂଭୂତ ହେଲେହେଁ ସାଧାରଣ ଜନତାର ସ୍ୱତଃସ୍ଫୂର୍ତ୍ତ ଉଦ୍ଦୀପନା ଓ ପାରଂପରିକ ଜୀବନ ଧାରା ବିକାଶର ପ୍ରାଧାନ୍ୟ ଉପଲବ୍‌ଧି କରିଥିଲେ । ତେବେ, ଗାନ୍ଧିଙ୍କ କଠୋର କର୍ମସାଧନ, ତ୍ୟାଗ, ସେବା ଓ ବ୍ରହ୍ମଚର୍ଯ୍ୟର ବାଣୀ ପ୍ରଚାର କଲାବେଳେ, ମାନବ ଜୀବନର ମୂର୍ତ୍ତ ଉପଭୋଗ ତଥା ସାହିତ୍ୟ ସଙ୍ଗୀତ-କଳା ପରିପୂର୍ଣ୍ଣ ଜୀବନର ନିର୍ଝରିଣୀ ପରିପ୍ରକାଶ ଥିଲା ରବୀନ୍ଦ୍ରନାଥଙ୍କ ଲକ୍ଷ୍ୟ । (୬୯) ଅକୃତ୍ରିମ ଦେଶପ୍ରୀତି, ଅଗାଧ ଜାତୀୟତା ଓ ମହାନ ମାନବବାଦୀ ଗୁଣରେ ବିଭୂଷିତ ତାଙ୍କର କବି-ବ୍ୟକ୍ତିତ୍ୱ ଭାରତର ଜାତୀୟ ବିକାଶକୁ ପ୍ରଭାବିତ କରିଥିଲା । (୭୦) ରାଧାକୃଷ୍ଣନ୍ ମଧ୍ୟ ଭାରତର ପାରମ୍ପରିକ ଆଦର୍ଶରେ ଅନୁପ୍ରାଣିତ ହୋଇ ମାନବିକତାକୁ ଦୈବୀସତ୍ତାର ପରିପ୍ରକାଶ ଭାବରେ ଗ୍ରହଣ କରି ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା ତଥା ସହଯୋଗ, ଭାବ ବିନିମୟ ଓ ବିଶ୍ୱରାଷ୍ଟ୍ରସଙ୍ଘ ମାଧ୍ୟମରେ ଏକ ଗଣତାନ୍ତ୍ରିକ ବିଶ୍ୱର ପରିକଳ୍ପନା କରିଥିଲେ । (୭୧)

## ବୈପ୍ଳବିକ ଚେତନା

କିନ୍ତୁ ଏ ସମୟର ଅନ୍ୟ ତିନି ଜଣ ଚିନ୍ତାନାୟକ ଅରବିନ୍ଦ, ସୁଭାଷଚନ୍ଦ୍ର ଓ ମାନବେନ୍ଦ୍ରନାଥଙ୍କ ମତବାଦରେ ବୈପ୍ଳବିକ ଚେତନାର ସଙ୍କେତ ସୁସ୍ପଷ୍ଟ ।

---

(୬୮) Tagore, R. N.—The Religion of Man-pp, 112-113

(୬୯) Nehru—Discovery of India-pp. 342-343

(୭୦) ପଣ୍ଡା, ଡକ୍ଟର ହୃଷୀକେଶ—ରବୀନ୍ଦ୍ରନାଥ ଓ ଜାତୀୟ ଚେତନା (ପ୍ରବନ୍ଧ) ମହତାବ, ଭକ୍ତିହରି (ସ) ପ୍ରକାଚନ୍ତ (ତା ୮।୫।୮୮)

(୭୧) Radhakrishnan, Dr. S.—Towards a New World (Orient Paper Backs, Hind Book Depot, New Delhi 1980) pp. 130-139

**ଅରବିନ୍ଦ ଘୋଷ** (୧୮୭୨-୧୯୫୦) ଥିଲେ କାଳ୍ପନିକ ଅନ୍ତର୍ବେଦନ ଓ କଷ୍ଟସିଦ୍ଧ ପ୍ରତିରୋଧର ଘୋର ବିରୋଧୀ । ସେ ଜାତୀୟତାକୁ ମାନବର ଧର୍ମରୂପେ ସ୍ୱୀକାର କରି ଏବଂ ଭଗବତ୍ ଗୀତାର କ୍ଷାତ୍ରଧର୍ମ ସମର୍ଥିତ ଯୁଦ୍ଧଭିତ୍ତିକ ସ୍ୱାଧୀନତାକୁ ରାଜନୈତିକ ଆଦର୍ଶ ଭାବରେ ଗ୍ରହଣ କରି ଆଇନ ଅମାନ୍ୟ ଆନ୍ଦୋଳନ ଓ ବ୍ୟକ୍ତିଗତ ସ୍ୱାଧୀନତା ପ୍ରତିଷ୍ଠା ଉପରେ ଗୁରୁତ୍ୱ ଦେଇଥିଲେ । ସେ ପ୍ରାଥମିକ ସ୍ତରରେ ଥିଲେ ପ୍ରତ୍ୟକ୍ଷ ବିପ୍ଳବ, ସଶସ୍ତ୍ର ବିଦ୍ରୋହ ଓ ଆତଙ୍କବାଦର ସମର୍ଥକ । କିନ୍ତୁ ପରେ ମହାଭାରତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ପିତୃଭୂମିର ଉଦ୍ଧାର ଏବଂ ଆର୍ଯ୍ୟାତ୍ମା, ଆର୍ଯ୍ୟଶୃଙ୍ଖଳା, ଆର୍ଯ୍ୟଚରିତ୍ର ଓ ଆର୍ଯ୍ୟଜୀବନର ପୁନର୍ଜାଗରଣ ଦ୍ୱାରା ଦେଶମାତୃକାର ସେବା କରିବା ପାଇଁ ଆହ୍ୱାନ ଦେଇଥିଲେ । (୭୨)

ବିପ୍ଳବୀ ସୁଭାଷ ଓ ଉଗ୍ର ଜାତୀୟବାଦୀ ମାନବେନ୍ଦ୍ରନାଥ ଗାନ୍ଧିଜୀଙ୍କ ଆଦର୍ଶରୁ ଅଧିକ ଦୂରେଇ ଯାଇ ଭାରତର ରାଜନୈତିକ ପ୍ରବାହକୁ ଅନ୍ୟ ଏକ ଦିଗରେ ଦ୍ରୁତଗାମୀ କରାଇଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ଆଦର୍ଶରେ ଅନୁପ୍ରାଣିତ **ସୁଭାଷଚନ୍ଦ୍ର ବୋଷ** (୧୮୯୭-୧୯୪୩) ସ୍ୱରାଜ ଦଳ ଗଠନ କରି ହିଟଲରଙ୍କ ସହିତ ହାତମିଳାଇ ଜର୍ମାନୀରେ ଫ୍ରି ଇଣ୍ଡିଆ ସେଣ୍ଟର୍ ସ୍ଥାପନପୂର୍ବକ ଆଜାଦ ହିନ୍ଦ୍ ଫୌଜ ଗଢ଼ି ଜାତୀୟ ବିପ୍ଳବକୁ ଅଧିକ ତେଜସ୍ୱାନ କରିଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ରହିଥିଲା ଯେ ଧ୍ୱଂସ ସାଧନ ବିନା ନୂତନ ସୃଷ୍ଟି ନିର୍ମାଣ ଅସମ୍ଭବ । (୭୩) କିନ୍ତୁ ଚରମ ମାନବବାଦୀ **ମାନବେନ୍ଦ୍ରନାଥ ରାୟ** (୧୮୮୭-୧୯୫) ଙ୍କର ସ୍ପଷ୍ଟ ହୃଦ୍‌ବୋଧ ହୋଇଥିଲା ଯେ ପୁଞ୍ଜିବାଦୀ ଓ ସାମ୍ୟବାଦ ବ୍ୟବସ୍ଥାରେ ମଣିଷର ସ୍ୱାଧୀନତା ସୁରକ୍ଷିତ ନୁହେଁ । ୟୁରୋପର ସଂସଦୀୟ ଗଣତନ୍ତ୍ର କିମ୍ବା ସର୍ବଶକ୍ତିମାନ ସାମ୍ୟବାଦୀ ରାଷ୍ଟ୍ରରେ ବ୍ୟକ୍ତି ସ୍ୱାଧୀନତା ଲାଭକରିବା ପରିବର୍ତ୍ତେ ରାଷ୍ଟ୍ରର ଦାସତ୍ୱ ସ୍ୱୀକାର କରିବାକୁ ହିଁ

(୭୨) ଦାସ, ପୂର୍ଣ୍ଣନାରାୟଣ —ଅରବିନ୍ଦ ପଞ୍ଚଶୀଳ (ପ୍ରବନ୍ଧ) କର, ବିଚିତ୍ରାନନ୍ଦ (ସ) ସହକାର (୧୯୭୩ ଅକ୍ଟୋବର ସଂଖ୍ୟା) ।

(୭୩) (କ) Ray, Dilipkumar—Netaji the Man (Bharatiya Vidya Bhavan, Bombay 1966) P. 207

(ଖ) Toye, Hugh—Subhash Chandra Bose—the Springing Tiger. (Joice Publishing House, Bombay, 1970) P. 62

ବାଧ ହେଉଛି । ଏଥିପାଇଁ ଯୁଦ୍ଧ ତଥା ଧ୍ୱଂସ ଅନିବାର୍ଯ୍ୟ ବୋଲି ତାଙ୍କର ଧାରଣା ଦୃଢ଼ୀଭୂତ ହୋଇଥିଲା । ଏଣୁ ସେ ସାମ୍ୟବାଦଠାରୁ ଏକ ସ୍ୱତନ୍ତ୍ର ରାଷ୍ଟ୍ରୀୟ ବ୍ୟବସ୍ଥାର ରୂପରେଖ ଅଙ୍କନ କରିବାକୁ ଯାଇ ସାଙ୍ଗଠନିକ ଗଣତନ୍ତ୍ର, ସହଯୋଗାତ୍ମକ ଅର୍ଥନୀତି ଓ ସ୍ୱାଧୀନତାଭିତ୍ତିକ ଚରମ ମାନବବାଦର ଆଦର୍ଶ ପ୍ରଚାର କରିଥିଲେ । (୭୪)

ଗାନ୍ଧିବାଦୀ ଆଦର୍ଶର ସଫଳ ରୂପାୟନ ସକାଶେ **ବିନୋବା ଭାବେ** (୧୮୯୫-୧୯୮୨) ଙ୍କର ସର୍ବୋଦୟ ମନ୍ତ୍ର ଓ ଭୂଦାନ ଯଜ୍ଞ ଏବଂ ଲୌହମାନବ **ସର୍ଦ୍ଦାର ବଲ୍ଲଭଭାଇ ପଟେଲ** (୧୮୭୫-୧୯୫୦) ଙ୍କର ଦୃଢ଼ ଓ ଦୁର୍ଦ୍ଧର୍ଷ କର୍ମାଦର୍ଶ ବେଶ ସହାୟକ ହୋଇଥିଲା । ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲାବେଳେ ବିନୋବାଙ୍କ ସାଂପ୍ରଦାୟିକତା ଶୂନ୍ୟ ନିଃସ୍ୱାର୍ଥ ସେବାଦର୍ଶରେ ସନ୍ତୁଷ୍ଟ ହୋଇ ତାଙ୍କୁ ପ୍ରଥମ ସତ୍ୟାଗ୍ରହୀ ରୂପେ ମନୋନୀତ କରିଥିଲେ । ଗାନ୍ଧିଜୀଙ୍କ ଭଳି ବିନୋବା ମଧ୍ୟ କର୍ମପନ୍ଥାର ପବିତ୍ରତା ଉପରେ ଗୁରୁତ୍ୱ ଦେଉଥିଲେ । ତାଙ୍କର ଏହି ପବିତ୍ର କର୍ମନିଷ୍ଠା ଚମ୍ବଲ ଉପତ୍ୟକାର କେତେ ଜଣ ଦୁର୍ଦ୍ଧର୍ଷ ଡକାୟତଙ୍କର ମଧ୍ୟ ହୃଦୟ ପରିବର୍ତ୍ତନ କରିବା ପାଇଁ ସମର୍ଥ ହୋଇଥିଲା । ଗାନ୍ଧିଜୀଙ୍କ ତିରୋଧାନ ପରେ ସେ ସେବାଗ୍ରାମଠାରେ ସର୍ବୋଦୟ ସମାଜ ଗଢ଼ି ସମାଜର ଧନୀ ଦରିଦ୍ର, ସବଳ ଦୁର୍ବଳ, ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କର ସର୍ବବିଧ ଉନ୍ନତି ଉଦ୍ଦେଶ୍ୟରେ ସର୍ବୋଦୟର ବାର୍ତ୍ତା ପ୍ରଚାର କରିଥିଲେ । ଏକ ରାଷ୍ଟ୍ରଶୂନ୍ୟ ସମାଜରେ ଦମନ ଓ ଶୋଷଣହୀନ ନିର୍ଦ୍ଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ଦ୍ୱାରା ପ୍ରତ୍ୟେକ ବ୍ୟକ୍ତିର ସୁରକ୍ଷା ଓ ଉନ୍ନତି ସାଧନ ସର୍ବୋଦୟର ମୂଳମନ୍ତ୍ର । ଏହା ଆଧ୍ୟାତ୍ମିକତା, ଆତ୍ମଶକ୍ତି ଓ ଆତ୍ମସଂଯମ ଉପରେ ଆଧାରିତ ସୁଶୃଙ୍ଖଳ ଓ ଅହିଂସାଶୂନ୍ୟ ସାମ୍ୟଧର୍ମ । ସାଂପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା, ଶ୍ରେଣୀ ବୈଷମ୍ୟ ନିରାକରଣ, ନିଶା ନିବାରଣ, କୁଟୀର ଶିଳ୍ପର ପ୍ରସାର, ମୌଳିକ ଶିକ୍ଷା ବ୍ୟବସ୍ଥା, ନାରୀ ପୁରୁଷ ଉଭୟଙ୍କୁ ସମାନ ଅଧିକାର ପ୍ରଦାନ, ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା, କୃଷିର ଉନ୍ନତି ସାଧନ, ପରିବେଶର ସୁରକ୍ଷା, ଶ୍ରମ ସଙ୍ଗଠନ, ଆଦିବାସୀ କଲ୍ୟାଣ, ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟରକ୍ଷା, ପ୍ରାକୃତିକ ଉପାୟରେ ଚିକିତ୍ସା ବ୍ୟବସ୍ଥା, କୁଷ୍ଠରୋଗୀ ସେବା ପ୍ରଭୃତି ସର୍ବୋଦୟ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । ଭୂଦାନ, ଗ୍ରାମଦାନ, ଶ୍ରମଦାନ ମାଧ୍ୟମରେ ଶ୍ରେଣୀଶୂନ୍ୟ,

---

(୭୪) Karnik, V. B.—M. N. Ray (National Book Trust, India, New Delhi, 1980) P. 104

କାଉଭେଦଶାନ, ସ୍ପେନ୍ସର ସମାଜ ପ୍ରତିଷ୍ଠା ଧରାରେ ସେ ବୃଦ୍ଧ ହୋଇଥିବାରୁ ତାଙ୍କୁ ଅରାଜକତାବାଦର ପ୍ରବକ୍ତା ରୂପେ ଗ୍ରହଣ କରାଯାଏ । (୭୫)

ଗାନ୍ଧିଙ୍କ ରାଜନୈତିକ ଚିନ୍ତାଧାରା ଓ ଶାସନାଦର୍ଶକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ସର୍ଦ୍ଦାର ପଟେଲ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଏଥିପାଇଁ ତାଙ୍କୁ ଅନେକ ସମୟରେ ଗାନ୍ଧିଙ୍କ ଅହିଂସାନୀତିରେ ଜଳାଞ୍ଜଳି ମଧ୍ୟ ଦେବାକୁ ପଡ଼ିଛି । ଭାରତର ସ୍ୱାଧୀନତା ଘୋଷଣା ପରେ ଭିନ୍ନ ଗଡ଼ଜାତ ଅଞ୍ଚଳ ଓ ଜମିଦାରୀ ରାଜ୍ୟଗୁଡ଼ିକର ସମ୍ମିଶ୍ରଣ ଦିଗରେ ସେ ସଫଳ ଉଦ୍ୟମ କରିଥିଲେ । ସେମାନଙ୍କୁ ଜାତୀୟତା ଭାବରେ ଉଦ୍‌ବୁଦ୍ଧ କରି ହସ୍ତପାଣ୍ଟି ପ୍ରଦାନ ଓ କେତେକ ସ୍ୱତନ୍ତ୍ର ସୁବିଧାର ପ୍ରତିଶ୍ରୁତି ଦେଇ ଅନ୍ୟୂନ ୫୫୪ଟି ରାଜ୍ୟର ସମ୍ମିଶ୍ରଣ ଘଟାଇବାରେ ତାଙ୍କର କୂଟ-ନୈତିକ କାର୍ଯ୍ୟପନ୍ଥାର ସାଫଲ୍ୟ ଏକାନ୍ତ ଉଲ୍ଲେଖନୀୟ । ପଟେଲଙ୍କ ବାସ୍ତବାଭିମୁଖୀ କର୍ମଦକ୍ଷତା, ଲକ୍ଷ୍ୟସାଧନରେ ଦୃଢ଼ତା ଓ ଅଟଳତା ଏବଂ ରାଜନୀତିକ ଦୂରଦୃଷ୍ଟି ପାଇଁ ତାଙ୍କୁ ସାଧାରଣତଃ ବିଷ୍ମାର୍କଙ୍କ ସହ ତୁଳନା କରାଯାଇଥାଏ । (୭୬) ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଭାରତୀୟ ରାଜନୀତି ରଙ୍ଗମଞ୍ଚରେ ଗାନ୍ଧିଜୀ, ଲାଲଜୀ, ବିନୋବା ପ୍ରମୁଖଙ୍କ ଆବିର୍ଭାବ ଫଳରେ ବିଶେଷତଃ ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ କାଳରେ ରାଜନୈତିକ କ୍ଷେତ୍ରରେ 'କରବାଳ ତନ୍ତ୍ର' ପରିବର୍ତ୍ତେ 'ହରତାଳ ତନ୍ତ୍ର'ର ପ୍ରାଧାନ୍ୟ ପ୍ରତିଷ୍ଠା ଘଟିପାରିଛି । (୭୭)

**ନେହରୁଙ୍କ ଚିନ୍ତାଧାରା**

ଏହି ପରିପ୍ରେକ୍ଷୀରେ **ପଣ୍ଡିତ ଜବାହରଲାଲ ନେହରୁ** (୧୮୮୯-୧୯୬୪ ଙ୍କ ରାଜନୈତିକ ଆଦର୍ଶର ବିଶେଷତ୍ୱ ପ୍ରଣିଧାନଯୋଗ୍ୟ । ଭାରତର ପୁନରାବିଷ୍କାର, ପାଶ୍ଚାତ୍ୟ ରାଜନୀତିର ବିଶ୍ଳେଷଣ, ସ୍ୱାଧୀନତାର ପ୍ରାକ୍‌କାଳରେ ଗାନ୍ଧିଙ୍କ ନିକଟତମ ଅନ୍ତେବାସୀ ରୂପେ ଗାନ୍ଧିବାଦୀ ଆଦର୍ଶର ନିବିଡ଼ ଉପଲବ୍ଧି ଏବଂ ସ୍ୱାଧୀନତାର ଅବ୍ୟବହିତ ପରେ ଭାରତୀୟ ଗଣତନ୍ତ୍ରର ଶାସନ ରଜ୍ଜୁ ଧାରଣ ନେହରୁଙ୍କୁ ସାମ୍ପ୍ରତିକ ଯୁଗର ଜଣେ ବରିଷ୍ଠ ରାଜନୀତି-ଦାର୍ଶନିକ ରୂପେ ପ୍ରତିଷ୍ଠିତ

(୭୫) Pant, History of Western Political Thought (Part II) pp. 485-489

(୭୬) Punjabi, K. L.—The Indomitable Sardar (Bharatiya Vidya Bhavan, Bombay, 3rd Ed. 1969) pp. 203-212 & 248 255

(୭୭) ଶ୍ରୀଚନ୍ଦନ, ଡ଼: ଗୋପାଳକୃଷ୍ଣ—କରବାଳ, କରତାଳ, ହରତାଳ (ଶ୍ରୀଚନ୍ଦନ ନିଳୟ, କନ୍ଦଳବାଡ଼ି, ପୁରୀ-୧୯୮୪) ପୃ. ୯୯-୧୦୨

କରାଇପାରିଛି । ପଞ୍ଚଶୀଳ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ନିରପେକ୍ଷୀକରଣ ନୀତି ଓ ଗଣତାନ୍ତ୍ରିକ ସମାଜବାଦ ତାଙ୍କ ରାଜନୈତିକ ଦର୍ଶନର କେତୋଟି ବିଶିଷ୍ଟ ଦିଗ । ବିଶ୍ୱ ରାଜନୀତିକୁ ଏକ ନୂତନ ଦିଗ୍‌ଦର୍ଶନ ଦେବା ଦିଗରେ ନେହେରୁ ପରିକଳ୍ପିତ ନିରପେକ୍ଷବାଦର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ହୋଲଷ୍ଟାଇନ ଓ ମଣ୍ଟେସ୍କ୍ୟୁଙ୍କ ରାଜନୈତିକ ଦର୍ଶନ ପରି ତାଙ୍କର ଆଦର୍ଶ ଆଗାମୀ ରାଷ୍ଟ୍ରବ୍ୟବସ୍ଥା ପାଇଁ ଏକ ଆଲୋକବର୍ତ୍ତିକାର କାର୍ଯ୍ୟ କରିପାରିବ ବୋଲି ବୁଦ୍ଧିଜୀବୀମାନେ ଆଶାପୋଷଣ କରନ୍ତି । ଗଣତାନ୍ତ୍ରିକ ସମାଜବାଦର ସଫଳ ରୂପାୟନ ଦୃଷ୍ଟିରୁ ତାଙ୍କୁ 'ଏସିଆର ଲେନିନ୍' ବୋଲି ମଧ୍ୟ କୁହାଯାଇଥାଏ । ନେହେରୁଙ୍କ ଶାସନ ବ୍ୟବସ୍ଥାରେ ଅସ୍ପୃଶ୍ୟତା ନିବାରଣ, ଆଦିବାସୀ କଲ୍ୟାଣ, ଶିଳ୍ପ ସମାଜର ବିକାଶ, ନାରୀଜାତିର ଉନ୍ନତି, କୃଷି, ଶିଳ୍ପ, ବିଜ୍ଞାନ ପ୍ରଭୃତିର ଅଗ୍ରଗତି ପାଇଁ ଯେଉଁ ଦୃଢ଼ ପଦକ୍ଷେପ ନିଆଯାଇଥିଲା, ସେଥିପାଇଁ ତାଙ୍କୁ 'ନବ ଭାରତର ନିର୍ମାତା' ରୂପେ ଅଭିହିତ କରାଯାଇଛି । (୭୮)

ନେହେରୁଙ୍କ ସୁଚିନ୍ତିତ ତଥା ବହୁ ଅନୁଭୂତିପ୍ରସୂତ ରାଜନୈତିକ ଚିନ୍ତାଧାରା ତାଙ୍କ ମୃତ୍ୟୁର ଦୀର୍ଘ ପଚିଶ ବର୍ଷ ମଧ୍ୟରେ ଅପରିବର୍ତ୍ତିତ ଭାବେ ଭାରତୀୟ ରାଜନୈତିକ ବାତାବରଣକୁ ପ୍ରଭାବିତ କରି ଚାଲିଛି । ତାଙ୍କ ସୁଯୋଗ୍ୟା କନ୍ୟା ରାଷ୍ଟ୍ରନାୟିକା **ଇନ୍ଦିରା ଗାନ୍ଧୀ** (୧୯୧୭-୧୯୮୪) ମଧ୍ୟ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ । ନେହେରୁ ପ୍ରବର୍ତ୍ତିତ ସମାଜବାଦୀ ଶାସନ ବ୍ୟବସ୍ଥାର ତ୍ରୁଟି-ବିଚ୍ୟୁତିକୁ ସଂଶୋଧନ କରିବା ପାଇଁ ସେ ଯେଉଁ ବୈପ୍ଳବିକ ପଦକ୍ଷେପ ଗ୍ରହଣ କଲେ, ସେଥିରୁ ମନେହେଲା ଯେ ସେ ନେହେରୁଙ୍କ ଗଣତାନ୍ତ୍ରିକ ସମାଜବାଦ ପରିବର୍ତ୍ତେ ଉଦାର ଏକଛତ୍ରବାଦ ପ୍ରବର୍ତ୍ତନ ପାଇଁ ପ୍ରୟାସୀ । କିନ୍ତୁ ସ୍ୱଳ୍ପ ସମୟ ମଧ୍ୟରେ ହିଁ ତାଙ୍କର ମୋହଭଙ୍ଗ ଘଟିଥିଲା ଏବଂ ତା ଫଳରେ ଗଣତାନ୍ତ୍ରିକ ସମାଜବାଦ ଯେ ସାମ୍ପ୍ରତିକ ଭାରତ ବର୍ଷ ପାଇଁ ଏକମାତ୍ର ଉପଯୁକ୍ତ ରାଜନୈତିକ ବ୍ୟବସ୍ଥା, ଏହା ସେ ଉପଲବ୍‌ଧି କରିପାରିଥିଲେ । (୭୯)

---

(୭୮) ଦାସ, ସୂର୍ଯ୍ୟନାରାୟଣ—ଯୁଗସ୍ରଷ୍ଟା ନେହେରୁ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୩ୟ ସଂସ୍କରଣ, ୧୯୭୭) ପୃ. ୧୦୩-୧୦୪, ୧୨୮-୧୪୨, ୧୫୭-୧୫୯, ୧୮୮-୧୯୨ ଓ ୨୧୦-୨୧୨ ।

(୭୯) ଦାସ, ସୂର୍ଯ୍ୟନାରାୟଣ—ଯୁଗନେତ୍ରୀ ଇନ୍ଦିରା (ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୭୨) ପୃ. ୨୭୮-୨୮୯ ଏବଂ 'ସଂଗ୍ରାମ ସରିନାହିଁ' (ବେତାର ରୂପକ) ଫଲ୍‌ଗୁ (ଫଲଗୁ ସାହିତ୍ୟ ସଂସଦ, ବ୍ରହ୍ମପୁର) ପୂଜାଅର୍ଘ୍ୟ—୧୯୮୩ ପୃ. ୧୩୧ ।

## ସାଂପ୍ରତିକ ରାଜନୀତିରେ ସାରଳା ଦାସଙ୍କ ପଦଧ୍ୱନି

ଏହି ପରିପ୍ରେକ୍ଷୀରେ ବିଚାର କଲେ, ବୁଦ୍ଧ ଓ ଅଶୋକଙ୍କଠାରୁ ଆରମ୍ଭ କରି ଗାନ୍ଧୀ, ବିନୋବା ଓ ନେହେରୁଙ୍କ ପର୍ଯ୍ୟନ୍ତ ଭାରତୀୟ ନେତୃବୃନ୍ଦଙ୍କ ତ୍ୟାଗଶୀଳତା, ନିଃସ୍ୱାର୍ଥପରତା ଓ ସେବାପରାୟଣତା ଆମର ଜାତୀୟ ରାଜନୈତିକ ସଂସ୍କୃତିକୁ ବଳିଷ୍ଠ ଓ ପରିପୁଷ୍ଟ କରିଅଛି । ବିଶ୍ୱର ବିଭିନ୍ନ ପ୍ରାନ୍ତରେ ରାଜନୀତି କ୍ଷମତା ବିସ୍ତାରକୁ ଭିତ୍ତି କରି ଗଢ଼ି ଉଠିଥିଲାବେଳେ ଏଠାରେ କ୍ଷମତାରହିତ ସେବାବୃତ୍ତି ହିଁ ପ୍ରାଧାନ୍ୟ ଲାଭ କରିଥିବା ଲକ୍ଷଣୀୟ । ଅନ୍ୟ ଭାବରେ ପ୍ରକାଶ କଲେ, ରାଜନୀତି ପରିବର୍ତ୍ତେ ଲୋକନୀତି ଭାରତୀୟ ରାଜନୈତିକ ସଂସ୍କୃତିର ମୌଳିକ ଆଦର୍ଶ; ପ୍ରାଚୀନତା, ଆଧୁନିକତା ଓ ସନ୍ଥ ଉପାସନାର ସମନ୍ୱୟରେ ଏହା ଉଜ୍ଜ୍ୱଳ । (୮୦) ସାଧାରଣତଃ ବିଭିନ୍ନ ପ୍ରାଚୀନ ପୁରାଣଗୁଡ଼ିକର ଆଦର୍ଶସମୂହ ଐତିହାସିକତା ଦୃଷ୍ଟିରୁ ଅର୍ଦ୍ଧସତ୍ୟ ହେଲେହେଁ ଗୋଟିଏ ଜାତିର ରାଜନୈତିକ ସଂସ୍କୃତିର ଗଠନ ଦିଗରେ ବଳିଷ୍ଠ ଭୂମିକା ଗ୍ରହଣ କରିଥାଏ । ଏ ଦୃଷ୍ଟିରୁ ଜାତିର ସ୍ୱକୀୟତା, ବିଶାଳତା ଓ ମନସ୍ତାତ୍ତ୍ୱିକ ଏକାଗ୍ରତା ତଥା ଭାବଗତ ସଂହତି ପ୍ରତିଷ୍ଠା କ୍ଷେତ୍ରରେ ଭାରତୀୟ ପୁରାଣମାନଙ୍କର ଆଦର୍ଶ ଉପେକ୍ଷଣୀୟ ନୁହେଁ ।

ଏହି ପୃଷ୍ଠଭୂମିରେ ସାରଳା ମହାଭାରତର ଅବଦାନ ବିଶ୍ଳେଷଣ କଲେ, ସାରଳା ଦାସଙ୍କ ଦୂରଦର୍ଶିତା ତଥା ତାଙ୍କ ରଚନାରେ ଅନାଗତ ସୁଦୀର୍ଘ ଭବିଷ୍ୟତର ଚିତ୍ର ସ୍ପଷ୍ଟ ପ୍ରତିଭାତ ହୋଇ ଉଠିଥାଏ । ସେ ହବସ୍‌ଙ୍କ ଭଳି ଏକଛତ୍ରବାଦୀ ଶାସନର ଅପରିହାର୍ଯ୍ୟତାକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ରୁଷୋଙ୍କ ପରି ସଂଭ୍ରାନ୍ତ ଶାସନ ବିରୋଧୀ ମନୋଭାବ ପୋଷଣ କରିଛନ୍ତି । ପ୍ଲେଟୋ, ମିଲଟନ୍, ହେରିଙ୍ଗଟନ୍ ଓ ଫିଲମର୍‌ଙ୍କ ପରି ପିତୃତୁଲ୍ୟ ପ୍ରଜାପାଳନ ତଥା ଶାସକମାନଙ୍କ ନୈତିକତା, ବୌଦ୍ଧିକତା ଓ ଶାସ୍ତ୍ରଜ୍ଞାନର ଆବଶ୍ୟକତା ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରିଥିବା ଦେଖାଯାଏ । ସାରଳା ରାଜା ଓ ମନ୍ତ୍ରୀଙ୍କ ମଧ୍ୟରେ ବ୍ୟବଧାନ ରକ୍ଷା କରିବା ପାଇଁ ଯେଉଁ ପରାମର୍ଶ ଦେଇଛନ୍ତି ଏବଂ ମନ୍ତ୍ରୀଙ୍କୁ ସମସ୍ତ ଅଧିକାର ପ୍ରଦାନ ନକରି କେବଳ ଶାସନ ଦାୟିତ୍ୱ ହସ୍ତାନ୍ତର କରି ଅନ୍ତିମ କ୍ଷମତା ରାଜା ନିଜ ହସ୍ତରେ ରଖିବା ଲାଗି ଉପଦେଶବାଣୀ ଶୁଣାଇଛନ୍ତି, ସେହି ଆଦର୍ଶର ଉନ୍ନତ ପରିପ୍ରକାଶ ହିଁ ମଣ୍ଟେସ୍କ୍ୟୁଙ୍କ 'ପ୍ରତିରୋଧ ଓ ସନ୍ତୁଳନ ନୀତି'ର ସାରମର୍ମ ।

---

(୮୦) Johari, J. C.—Indian Politics (Vishal Publications, 3rd Ed. 1987) pp. 483-485.

ସାରଳା ପ୍ରଜାମାନଙ୍କର ସନ୍ତୋଷ ବିଧାନ ଉପରେ ପ୍ରାଧାନ୍ୟ ଆରୋପ କରି ପ୍ରଜା ଅସନ୍ତୋଷ ଫଳରେ ରାଜ୍ୟ ନାଶର ମଧ୍ୟ ଯେଉଁ ସୂଚନା ଦେଇଛନ୍ତି, ବେନ୍ଥାମଙ୍କ ଗଣ-ସନ୍ତୋଷ ନୀତିର ବିଶ୍ଳେଷଣରେ ତାର ଗୁରୁତ୍ୱ ସ୍ପଷ୍ଟ ପ୍ରତିଧ୍ୱନିତ । ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କ ରଚନାରେ ମାନବର ନୈତିକ ଓ ବୌଦ୍ଧିକ ମୂଲ୍ୟବୋଧର ଯେଉଁ ଜୟଗାନ କରାଯାଇଛି, ତାହାର ଆଦ୍ୟ ଆଭାସ ସାରଳାଙ୍କ ମହାଭାରତ (ଶାନ୍ତିପର୍ବ)ରେ ରାଜାଙ୍କୁ ଗୁଣୀ ଗୁଣ ପୂଜା କରିବା ଓ କବିଗଣଙ୍କ ପ୍ରତି କୃପଣ ନ ହେବା ପାଇଁ ଦିଆଯାଇଥିବା ଉପଦେଶରେ ସୁସ୍ପଷ୍ଟ । ସାରଳା ଆଧ୍ୟାତ୍ମିକ ଜାତୀୟତାବାଦର ଯେଉଁ ଭିତ୍ତି ସ୍ଥାପନ କରିଥିଲେ, ତାର ବିସ୍ତୃତ ବିକାଶ କେବଳ କାଣ୍ଟ୍ ଓ ହେଗଲ୍‌ଙ୍କ ରଚନାରେ ନୁହେଁ, ତିଳକ, ରବିନ୍ଦ୍ରନାଥ, ଗାନ୍ଧୀ ଓ ଗୋପବନ୍ଧୁଙ୍କ ଆଦର୍ଶରେ ମଧ୍ୟ ପ୍ରତିଫଳିତ । ସାରଳା ମହାଭାରତର ଛନ୍ଦେ ଛନ୍ଦେ ପ୍ରଜାସମାଜ ପ୍ରତି ଯେଉଁ ସମ୍ବେଦନଶୀଳତା ପ୍ରକାଶ ପାଇଛି ଏବଂ ସାମାଜିକ ଆଚରଣ, ମାନବିକ ସଂସ୍କାର ତଥା ଚରିତ୍ରଶୁଦ୍ଧି ଉପରେ ଯେଭଳି ଗୁରୁତ୍ୱ ଦିଆଯାଇଛି, ତାହା ସାନେ, ଗ୍ରାହାମ୍ ୱାଲସ, ଅରବିନ୍ଦ, ମାନବେନ୍ଦ୍ର ପ୍ରମୁଖଙ୍କ ଆଦର୍ଶର ନିକଟତର ମନେହୁଏ । ମାନବିକତାର ବିକାଶରେ ହିଁ ଜାତୀୟତାର ଉତ୍କର୍ଷ ସାଧନ ସମ୍ଭବ ଏବଂ ଜାତୀୟତାର ପରିପ୍ରକାଶରେ ହିଁ ବିଶ୍ୱମୈତ୍ରୀ ବା ଆନ୍ତର୍ଜାତୀୟ ଭାବ ଦୃଢ଼ୀଭୂତ ହୋଇପାରିବ, ଏହା ଗାନ୍ଧୀ, ଗୋପବନ୍ଧୁ, ରବୀନ୍ଦ୍ରନାଥ ଓ ନେହରୁଙ୍କ ଭଳି ସାରଳା ମଧ୍ୟ ଅନୁଭବ କରିଥିବା ତାଙ୍କ ସାର୍ବଜନୀନ ଧର୍ମାଦର୍ଶ ଓ 'ସଂଗ୍ରାମ ନିରୋଧ' ଆଦର୍ଶରୁ ସ୍ପଷ୍ଟ ଉପଲବ୍ଧ ହୁଏ ।

ତେବେ, ଏଠାରେ ଉଲ୍ଲେଖଯୋଗ୍ୟ ଯେ ପ୍ଲେଟୋଙ୍କ ପାରିବାରିକ ସାମ୍ୟବାଦ, ହିଟଲର୍ ଓ ମୁସୋଲିନୀଙ୍କ ନାଜିବାଦ ଓ ଫାସିବାଦ ତଥା ଷ୍ଟାଲିନ୍‌ଙ୍କ ଅଖଣ୍ଡତାବାଦ ଭଳି ଭାରତୀୟ ପରଂପରା ବିରୋଧୀ ଆଦର୍ଶଗୁଡ଼ିକୁ ସାରଳା ଗ୍ରହଣ କରିପାରି ନାହାନ୍ତି । ଏକଛତ୍ରବାଦୀ ଆଧିପତ୍ୟ ଓ ଅତ୍ୟାଚାର ବିରୁଦ୍ଧରେ ସେ କେବଳ ସ୍ୱର ଉତ୍ତୋଳନ କରିନାହାନ୍ତି, ନିଃସ୍ୱ ଜନତା ତଥା ଦଳିତ ଶ୍ରେଣୀର ଆଧିପତ୍ୟ ପ୍ରତିଷ୍ଠାକୁ ମଧ୍ୟ ସମର୍ଥନ ଜଣାଇଛନ୍ତି । ଏହି ଦୃଷ୍ଟିରୁ ସାରଳାଙ୍କ ଆଦର୍ଶ ମାର୍କସ୍, ଲେନିନ୍, କ୍ରୁଶ୍ଚେଭ ଓ କୋଶିଗିନ୍‌ଙ୍କ ଶାସନାଦର୍ଶର ଅଧିକ ନିକଟତର । ସାମାଜିକ ସାମ୍ୟ, ଯୁଦ୍ଧବିହୀନ ସମାଜ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଭିତ୍ତିକ ଉନ୍ନତ ମାନବବାଦୀ ଚିନ୍ତାଧାରା (୮୧) ପ୍ରକଟ କରିବା କ୍ଷେତ୍ରରେ ସାରଳା ବାସ୍ତବରେ ବିଭିନ୍ନ ଗଣତାନ୍ତ୍ରିକ ସମାଜବାଦୀ ଦାର୍ଶନିକଙ୍କ ସମକକ୍ଷ ।

(୮୧) Khrushchov, N.S.—Socialism and Communism (Foreign Language Publishing House, Moscow, 1963) pp. 129-136

ଅନ୍ୟ ଦିଗରୁ ବିଗ୍ଭର କଲେ, ପରମହଂସ ଯେଉଁଭଳି ନିରାକାର ବ୍ରହ୍ମତତ୍ତ୍ୱରେ ବିଶ୍ୱାସ କରିବା ସଙ୍ଗେ ସଙ୍ଗେ ପ୍ରତିମା ପୂଜାକୁ ଅସ୍ୱୀକାର କରି ନଥିଲେ, ସାରଳା ମଧ୍ୟ ସେଇଭଳି ସାକାର ଓ ନିରାକାର ସମସ୍ତ ଦେବଦେବୀଙ୍କ ପ୍ରତି ସମତୁଲ୍ୟ ଭକ୍ତିଭାବ ପ୍ରଦର୍ଶନ କରି ଭାରତୀୟ ରାଜନୈତିକ ପରଂପରାରେ ଧର୍ମନିରପେକ୍ଷତାର ପ୍ରାଧାନ୍ୟ ପ୍ରତିଷ୍ଠା କରିଛନ୍ତି । ସାରଳା ପରିକଳ୍ପିତ ସର୍ବଧର୍ମ ସମନ୍ୱୟାତ୍ମକ ଜଗନ୍ନାଥ ଧର୍ମ ଏହି ବାର୍ତ୍ତା ପ୍ରଚାର ନିମିତ୍ତ ହିଁ ଉଦ୍ଦିଷ୍ଟ । ରାଜା ରାମମୋହନ, ଦୟାନନ୍ଦ ସରସ୍ୱତୀ ଓ ମହାତ୍ମା ଗାନ୍ଧୀଙ୍କ ଭଳି ସାରଳା ବାଲ୍ୟ ବିବାହ ବିରୁଦ୍ଧରେ ପ୍ରତ୍ୟକ୍ଷ ବୈପ୍ଳବିକ ସ୍ୱର ଉତ୍ତୋଳନ କରିନଥିଲେ ମଧ୍ୟ ତିରିଶ ବର୍ଷର ପୁରୁଷ ଏବଂ ଷୋଡ଼ଶୀ ସ୍ତ୍ରୀର ଯୌନ ସଂଯୋଗ ହିଁ ଉତ୍ତମ ନାଗରିକ ସୃଷ୍ଟିର ଅନୁକୂଳ ବୋଲି କହିବା ଦ୍ୱାରା ଯୁବତୀ ବିବାହ ସପକ୍ଷରେ ହିଁ ମତ ପ୍ରକାଶ କରିଛନ୍ତି ବୋଲି କୁହାଯାଇପାରେ । ସଂଯମ, ଶୃଙ୍ଖଳା, ଆଧ୍ୟାତ୍ମିକ ସଂସ୍କାର, ଗଣଚେତନା ଓ ବିଶ୍ୱପ୍ରେମ ଭାବ ପ୍ରକାଶ କ୍ଷେତ୍ରରେ ସାରଳା ବିବେକାନନ୍ଦ, ଅରବିନ୍ଦ, ରବୀନ୍ଦ୍ରନାଥ ଓ ରାଧାକୃଷ୍ଣନଙ୍କର ଅଗ୍ରଗାମୀ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସର୍ବୋପରି, କଲ୍ୟାଣବ୍ରତୀ ରାଷ୍ଟ୍ର ପରିକଳ୍ପନାକୁ ବିଗତ ଶତାବ୍ଦୀର ଶ୍ରେଷ୍ଠ ଶାସନାଦର୍ଶ ରୂପେ ଗ୍ରହଣ କରାଗଲେ, ନୈତିକତା, ଆଧ୍ୟାତ୍ମିକତା, ମାନବିକତାବାଦ ମହନୀୟ ଆଦର୍ଶରେ ପରିପୁଷ୍ଟ ସାରଳାଙ୍କ ଜନମଙ୍ଗଳକର ଚିନ୍ତାଧାରା ଏକ ଉଚ୍ଚକୋଟୀର ରାଜନୈତିକ ଦର୍ଶନର ଯେ ଅମ୍ଳାନ ନିଦର୍ଶନ, ଏହା ଦୃଢ଼ କଣ୍ଠରେ ସ୍ୱୀକାର କରାଯାଇପାରେ ।

ଏଠାରେ ସ୍ମରଣଯୋଗ୍ୟ ଯେ ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟଲଙ୍କ ସମୟରୁ ଆରମ୍ଭ କରି ଅଧୁନାତନ କାଳ ପର୍ଯ୍ୟନ୍ତ ବିଶ୍ୱର ବିଭିନ୍ନ ପ୍ରାନ୍ତରେ ସବୁ ସମୟରେ କୌଣସି ଏକ ନିର୍ଦ୍ଦିଷ୍ଟ ଶାସନ ବ୍ୟବସ୍ଥା ପ୍ରତି ଗଣମତ ସ୍ଥିର ହୋଇ ରହିନାହିଁ । ଜନଚେତନା ସର୍ବଦା ଜାଗ୍ରତ ଓ ଗଣ-ଆକାଂକ୍ଷା ସତତ ପରିବର୍ତ୍ତନଶୀଳ । ଏଣୁ ସ୍ୱୈରାଚାର ବିରୁଦ୍ଧରେ ଗଣମତ ଜାଗ୍ରତ ହେଲେ ସମ୍ଭ୍ରାନ୍ତତନ୍ତ୍ର ପ୍ରତି ଆଦର ବଢ଼ିଥାଏ ଏବଂ ପରିଣାମରେ ପୁଣି ଜନତନ୍ତ୍ର ପ୍ରତି ପ୍ରବଣତା ଜାଗ୍ରତ ହୋଇଥାଏ । ଇତିହାସର ଆବର୍ତ୍ତରେ ପୁଣି ଜନତନ୍ତ୍ର ଗଣତନ୍ତ୍ରରେ ପରିଣତ ହେବା ପରେ ସେ ବ୍ୟବସ୍ଥାରେ ଅତିଷ୍ଠ ହୋଇ ସମାଜ ଗ୍ରହେ ପୁଣି ଧନତନ୍ତ୍ର ବା ରାଜତନ୍ତ୍ର । ଏହା କାଳଚକ୍ରରେ ଘୂର୍ଣ୍ଣାୟମାନ ଏକ ଅବିଚ୍ଛିନ୍ନ ଚକ୍ରାବର୍ତ୍ତ । ଅବଶ୍ୟ, ଐତିହ୍ୟ ଓ ପରଂପରା, ଭୌଗୋଳିକ ପରିବେଶ, ସାମାଜିକ ମୂଲ୍ୟବୋଧ, ବ୍ୟକ୍ତି ଚରିତ୍ର ଓ ଚିନ୍ତାଧାରାକୁ ନେଇ ଏଥିରେ କିଞ୍ଚିତ ବ୍ୟତିକ୍ରମ ଦେଖାଦେଇପାରେ ଏବଂ ରାଜନୈତିକ ସଂସ୍କୃତିର ପ୍ରବାହ ଦୃଢ଼ ଓ ପ୍ରଖର ଅଥବା କ୍ଷୀଣ ଓ ମନ୍ଥର ହୋଇ-

ପାରେ; କେତେକ କ୍ଷେତ୍ରରେ ନିରବଚ୍ଛିନ୍ନତାର ଧାରା ବିଚ୍ଛିନ୍ନ ବି ହୋଇଯାଇ ପାରେ କିନ୍ତୁ ଭାରତୀୟ ପୃଷ୍ଠଭୂମିରେ ରାଜନୈତିକ ସଂସ୍କୃତିର ଧାରା ଚିର ଅବ୍ୟାହତ ରହିଅଛି । ଏଠାରେ ଶାସନ କ୍ଷେତ୍ରରେ ଋଷିପ୍ରାଣତାର ଆଦର୍ଶ, ତ୍ୟାଗର ପରାକାଷ୍ଠା, ସେବାର ଉତ୍କର୍ଷ ଓ ଆଧ୍ୟାତ୍ମିକତାର ମହନୀୟତା ସବୁ କାଳେ ଭୋଗ ବାସନା, କ୍ଷମତା ମୋହ, ସ୍ୱାର୍ଥପରତା, ବିଷୟ ଓ ବସ୍ତୁ ଚେତନାର ଊର୍ଦ୍ଧ୍ୱରେ ରହିଆସିଛି । (୮୨) ପ୍ରଜାହିତ ବା ଗଣକଲ୍ୟାଣ ହିଁ ଭାରତୀୟ ରାଜନୀତିର ଚରମ ଆଦର୍ଶ ।

ଏହି କାରଣରୁ ନିରୋଳା ରାଜତାନ୍ତ୍ରିକ ବ୍ୟବସ୍ଥା ପ୍ରଚଳନ କାଳରେ ମଧ୍ୟ ମୌର୍ଯ୍ୟ ଓ ଗୁପ୍ତଯୁଗୀୟ ରାଜନ୍ୟବୃନ୍ଦଙ୍କ ସୁଦୀର୍ଘ ସୁଶାସନ (ଖ୍ରୀଷ୍ଟପୂର୍ବ ୩୨୫ ଠାରୁ ଖ୍ରୀଷ୍ଟୀୟ ୬୪୭ ପର୍ଯ୍ୟନ୍ତ) ପରେ ରାଜପୁତ୍ର, ମୁସଲମାନ ଓ ମୋଗଲମାନଙ୍କ (ଅବଶ୍ୟ ଶେରଶାହ ଓ ଆକବରଙ୍କୁ ବାଦ ଦେଇ) ଭାରତୀୟ ରାଜନୈତିକ ସଂସ୍କୃତିରେ ଅନ୍ଧକାରମୟ ଯୁଗ ରୂପେ କଥିତ ହୋଇଛି ଏବଂ ତା ଫଳରେ 'ଇଷ୍ଟ ଇଣ୍ଡିଆ କମ୍ପାନୀ' ତଥା ବ୍ରିଟିଶ ଉପନିବେଶବାଦୀ ଶାସନକୁ ସ୍ୱାଗତ କରାଯାଇଛି । କିନ୍ତୁ ସେହି ଆଦର ଓ ଆନୁଗତ୍ୟ ଦୀର୍ଘସ୍ଥାୟୀ ନ ହୋଇ ପୁଣି ଜାତୀୟ ଆନ୍ଦୋଳନ ମାଧ୍ୟମରେ ଏ ଦେଶରେ ସମାଜବାଦୀ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରଚଳିତ ହୋଇଛି । ସମ୍ପ୍ରତି ଏହି ବ୍ୟବସ୍ଥାରେ ଦୁର୍ନୀତି ଓ ଭ୍ରଷ୍ଟାଚାର ତଥା ଗଣସ୍ୱାର୍ଥବିରୋଧୀ କେତେକ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ଶତକଡ଼ା ଦଶ ଜଣ ) ବା ଦଶ ଜଣରେ ଜଣେ । ପୁଣି ଥରେ ହିତାକାଂକ୍ଷୀ ସାର୍ବଭୌମ ରାଜତନ୍ତ୍ର (Benevolent Authoritarian Regime) ପ୍ରତି ଆସ୍ଥା ପ୍ରକାଶ କରିବା ଏକାନ୍ତ ଉଲ୍ଲେଖଯୋଗ୍ୟ । (୮୩)

## ସାଂପ୍ରତିକ ଭାରତୀୟ ରାଜନୀତି ଓ ସାରଳାଙ୍କ କାଳଯୁଗ ବିବରଣୀ

ଅତ୍ୟାଧୁନିକ କାଳର ରାଜନୈତିକ ଅବସ୍ଥା ଓ ସାମାଜିକ ଜୀବନ ପ୍ରବାହର ଗତି ଓ ପ୍ରକୃତି ଅନୁଧ୍ୟାନ କଲେ ମଧ୍ୟ ସାରଳାଙ୍କ କାଳଜୟୀ ରାଜନୈତିକ ଆଦର୍ଶ ତଥା ଦୂରଦର୍ଶିତାର ଭୂରିଷ୍ଟ ପ୍ରମାଣ ଉପଲବ୍ଧ ହୁଏ । ଚଳିତ ଶତାବ୍ଦୀ (୧୮୮୮ ଠାରୁ ୧୯୮୮)ର ଇତିହାସ, ରାଜନୀତି ଓ ସାମାଜିକ ଚଳଣି ଅନୁଧ୍ୟାନ କଲେ ସ୍ପଷ୍ଟ ଅନୁଭୂତ ହୁଏ ଯେ ପ୍ରଥମାର୍ଦ୍ଧ ତୁଳନାରେ ଦ୍ୱିତୀୟାର୍ଦ୍ଧ କାଳର ରାଜନୈତିକ ଆଦର୍ଶ ଅର୍ଥନୈତିକ

(୮୨) Johari—Indian Politics · pp. 471 483

(୮୩) Kothari, Rajani—Democratic Polity and Social Change in India (Allied Publishers, New Delhi, 1976) P. 75

ସ୍ଥିତି, ସାମାଜିକ ଅବସ୍ଥା ତଥା ମାନବୀୟ ସଭ୍ୟତା ଓ ସଂସ୍କୃତିର ବିକାଶଧାରା ସମ୍ପୂର୍ଣ୍ଣ ଭିନ୍ନ ମାର୍ଗ ଅବଲମ୍ବନ କରିଅଛି । ସେତେବେଳେ ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତା ପୋଷଣ ଥିଲା ଗଣଜୀବନର ଚରମ ଆଦର୍ଶ । ନିଶାସେବନ ଘୋର ପାପକାର୍ଯ୍ୟ ରୂପେ ବିବେଚିତ ହେଉଥିଲା । ଗ୍ରାମାଞ୍ଚଳ ସମେତ ରେଡିଓ, ଟେଲିଫୋନ, ଟେଲିଭିଜନ ଓ ଚଳଚ୍ଚିତ୍ରାଦିର ପ୍ରଭାବ ଅନୁଭୂତ ହେଉ ନଥିଲା । ସମାଜରେ ମଧ୍ୟବିତ୍ତଙ୍କ ସଂଖ୍ୟାଥିଲା ଅତି ନଗଣ୍ୟ । ବିପ୍ଳବୀ, ଦେଶସେବକ, ଧର୍ମ ସଂସ୍କାରକ ତଥା ମହତ୍ ଜନଙ୍କ ଆଦର୍ଶରେ ଜାତୀୟ ଜୀବନ ଉଦ୍‌ଭାସିତ ହେଉଥିଲା । କିନ୍ତୁ ଆଜି ସମାଜରେ ମଧ୍ୟବିତ୍ତ ଶ୍ରେଣୀସ୍ଥ ଲୋକମାନଙ୍କର ସଂଖ୍ୟା ସର୍ବାଧିକ । ଏମାନେ ଟ୍ରାନ୍‌ଜିଷ୍ଟର ମୋହ ତ୍ୟାଗ କରି ଟେଲିଭିଜନ ରଖିଲେଣି; ରେଫ୍ରିଜେରେଟର, କାର୍, ସ୍କୁଟର ପ୍ରତି ଆଗ୍ରହୀ ହେଲେଣି । ବର୍ତ୍ତମାନ କେବଳ ଟେଲିଗ୍ରାମ ବା ଟେଲିଫୋନ ଦ୍ରୁତ ବାର୍ତ୍ତା ଯୋଗାଯୋଗର ମାଧ୍ୟମ ହୋଇନାହିଁ, ଟେଲେକ୍‌ସ୍ ଓ ଉପଗ୍ରହ ମାଧ୍ୟମରେ ବି ସମ୍ବାଦ ସଦ୍ୟବାର୍ତ୍ତା ଅଧିକ ତ୍ୱରାନ୍ୱିତ ହୋଇ ପାରୁଛି । ଖଦଡ଼ ପରିବର୍ତ୍ତେ ପଲିଷ୍ଟରର ଚାହିଦା ବଢ଼ିଛି । ସରଳତା ଆଜି ଅସମ୍ମାନଜନକ ଅସଭ୍ୟତା ରୂପେ ବିବେଚିତ ହେଉଛି । ପ୍ରାୟ ପ୍ରତ୍ୟେକ ମଧ୍ୟବିତ୍ତ ପରିବାର ଏକ କ୍ଷୁଦ୍ର ମଦ୍ୟ-ଶାଳାରେ ପରିଣତ ହୋଇଛି । ବାସ୍ତବିକ୍, ବିଗତ ଏକ ହଜାର ବର୍ଷ ମଧ୍ୟରେ ଯେତିକି ପରିବର୍ତ୍ତନ ପରିଲକ୍ଷିତ ହୋଇନାହିଁ, ଗତ ଶତାବ୍ଦୀ ମଧ୍ୟରେ ତଦପେକ୍ଷା ଅଧିକ ଚାଞ୍ଚଲ୍ୟକର ବିବର୍ତ୍ତନ ଘଟି ସାରିଲାଣି । (୮୪)

ଦୃଷ୍ଟାନ୍ତ ସ୍ୱରୂପ, ଆଜିକାଲି ଆମ କ୍ଷେତବାଡ଼ିର ମାଟିତଳୁ ଯଦି କିଛି ଜିନିଷ ପାଉଛେ, ଆମ୍ଭ ନିଜର ବୋଲି ଦାବୀ କରୁଛେ । କିନ୍ତୁ ଶତାଧିକ ବର୍ଷ ପୂର୍ବେ ଖ୍ରୀ ୧୮୭୮ରେ ବ୍ରିଟିଶ ସରକାର 'ଦି ଟ୍ରେଜର୍ ଟ୍ରୋଭସ୍ ଆକ୍‌ଟ' ପ୍ରଣୟନ କରି ଯେ କୌଣସି ମୂଲ୍ୟର ଯେ କୌଣସି ପଦାର୍ଥ ଯଦି ମାଟିତଳୁ ହସ୍ତଗତ ହୁଏ, ତାହା ସରକାରଙ୍କର ପ୍ରାପ୍ୟ ବୋଲି ସମଗ୍ର ବ୍ରିଟିଶ-ଭାରତରେ ଆଇନ୍ ପ୍ରବର୍ତ୍ତିନ କରିଥିଲେ । (୮୫) ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଏହି ଯେ ସାରଳା କଳିଯୁଗ ବିବରଣି ପ୍ରସଙ୍ଗରେ ବ୍ରାହ୍ମଣର ଜମିରୁ କୃଷକ ପାଇଥିବା ରତ୍ନଚରୁ ରାଜା ସର୍ବାକ୍ଷିତ ହସ୍ତଗତ କରି ନେଇଥିବା ଦର୍ଶାଇ (୮୬) କମ୍ ଦୂରଦୃଷ୍ଟିର ପରିଚୟ ଦେଇ ନାହାନ୍ତି ।

---

(୮୪) Kamath, M. V. 1988 and all that—The Week, Vol. 6, No. 14 ( March 27—April-2 1988 ) pp. 38-39

(୮୫) The Treasure Troves Act ( 1878 ) Sec. 1 & 3.

(୮୬) ସା: ମ: ଭା: (ସ୍ୱ) ସ୍ୱର୍ଗାରୋହଣ—ପୃ. ୨-୪

• ସାମ୍ପ୍ରତିକ ରାଜନୀତିର ହମବର୍ଦ୍ଧମାନ ଧାରା ପ୍ରତି ଲକ୍ଷ୍ୟ କଲେ ଗଣତାନ୍ତ୍ରିକ ସମାଜବାଦ ଓ ମିଶ୍ରିତ ଅର୍ଥନୀତିର ଅଭ୍ୟୁଦୟନ୍ତେ ଏକାନ୍ତ ଯୁଗୋପଯୋଗୀ ମନେ ହୁଏ । ଏ ପ୍ରସଙ୍ଗରେ ପଣ୍ଡିତ ନେହରୁଙ୍କ ଦୃଷ୍ଟିକୋଣ ନିତାନ୍ତ ପ୍ରଣିଧାନଯୋଗ୍ୟ । ଭାରତର ମୁଖ୍ୟମନ୍ତ୍ରୀମାନଙ୍କ ଉଦ୍ଦେଶ୍ୟରେ ଲିଖିତ ଏକ ପତ୍ରରେ ଏ ସଂପର୍କରେ ନିଜର ସୁଚିନ୍ତିତ ମନ୍ତବ୍ୟ ପ୍ରକାଶ କରି ସେ ଉଲ୍ଲେଖ କରିଥିଲେ ଯେ ଧର୍ମାଦର୍ଶ ବଳରେ ସମାଜରେ ନୈତିକ ଓ ଆଧ୍ୟାତ୍ମିକ ଶୃଙ୍ଖଳା ପ୍ରତିଷ୍ଠିତ ହୋଇଥିଲେ ହେଁ ତାହା ଅନେକ ଅନ୍ଧବିଶ୍ୱାସକୁ ଜନ୍ମ ଦେଇଥିଲା ଏବଂ ଧର୍ମର ମୌଳିକ ଆଦର୍ଶ କୁସଂସ୍କାରାଚ୍ଛନ୍ନ ହୋଇ ପଡ଼ିବା ଫଳରେ ନୈରାଶ୍ୟବାଦର ଉଦ୍ଭବ ଘଟିଥିଲା । ଏହାର ପରିଣାମରେ ବିକାଶ ଲାଭ କରିଥିବା ସାମ୍ୟବାଦ ଦ୍ୱାରା ନିରାଶାଜନିତ ଶୂନ୍ୟତାଭାବର ଅବସାନ ଘଟିଲା ଭଳି ମନେହେଲା । କିନ୍ତୁ ସାମ୍ୟବାଦୀ ଆଦର୍ଶର କଠୋରତା ଓ ମାନବୀୟ ଆଶା, ଅଭିଳାଷ ତଥା ସ୍ୱାଭାବିକ ଆକାଂକ୍ଷା ପ୍ରତି ଅବହେଳା ଭାବ ଏହାକୁ ସଫଳତାର ଶୀର୍ଷ ସୀମାରେ ପହଞ୍ଚାଇ ପାରିଲା ନାହିଁ । ମାନବିକ ସ୍ୱାଧୀନତାର ଦମନ ଫଳରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହେଲା । ବ୍ୟକ୍ତିର ନୈତିକ ଓ ଆଧ୍ୟାତ୍ମିକ ଦିଗ ପ୍ରତି ଅବଜ୍ଞା ଓ ହିଂସାମାର୍ଗର ଅବଲମ୍ବନ ସାମ୍ୟବାଦୀ ଆଦର୍ଶ, ମାନବୀୟ ଆଚରଣ ଓ ମୂଲ୍ୟବୋଧକୁ କଳଙ୍କିତ କରିଦେଲା । ଏହି କାରଣରୁ ନେହରୁ ବ୍ୟକ୍ତିଗତ ସ୍ୱାଧୀନତା ଓ ମିଶ୍ରିତ ଅର୍ଥନୀତି ଭିତ୍ତିକ ଗଣତାନ୍ତ୍ରିକ ସମାଜବାଦୀ ଆଦର୍ଶକୁ ଆଦରି ନେଇଥିଲେ । ଏହା ସତ୍ତ୍ୱେ, ସେ ହୃଦୟଙ୍ଗମ କରିଥିଲେ ଯେ ବ୍ୟକ୍ତିର ଗୁଣାତ୍ମକ ଆଦର୍ଶ ଓ କର୍ମଦକ୍ଷତା ଉପରେ ହିଁ ଏହାର ବିକାଶ ନିର୍ଭରଶୀଳ । (୮୭)

କିନ୍ତୁ ଭାରତର ଅର୍ଦ୍ଧାହାରୀ ଜନତା କୌଣସି ଆଦର୍ଶବାଦ ପ୍ରତି ଆକୃଷ୍ଟ ହେବାର ଅବକାଶ ନାହିଁ; ସର୍ବନିମ୍ନ ଆବଶ୍ୟକତାର ପୂରଣ ହିଁ ତାର ଏକମାତ୍ର ଲକ୍ଷ୍ୟ । ଏହା ଉପଲବ୍ଧି କରି ଇନ୍ଦିରା ଗାନ୍ଧୀ 'ଗରିବୀ ହଟାଓ' ଧ୍ୱନି ଦେଇ ଏ ଦିଗରେ ଅନେକ ସାର୍ଥକ ପଦକ୍ଷେପ ମଧ୍ୟ ଗ୍ରହଣ କରିଥିଲେ । ତାହା ସତ୍ତ୍ୱେ ଗରିବୀ ସମ୍ପୂର୍ଣ୍ଣ ନିରାକୃତ ହୋଇପାରିଲା ନାହିଁ । ଏପରି କି ଜୟପ୍ରକାଶଙ୍କର ସଂପୂର୍ଣ୍ଣ ବିପ୍ଳବର ଆହ୍ୱାନରେ ତାଙ୍କୁ କ୍ଷମତାଚ୍ୟୁତ ହେବାକୁ ପଡ଼ିଥିଲା । ଏଥିଯୋଗୁଁ ସମାଲୋଚକଗଣ ଆମର ଆଧୁନିକ ନେତାମାନଙ୍କ ସ୍ଲୋଗାନ ପ୍ରୀତିର କଠୋର ନିନ୍ଦାଗାନ କରିଛନ୍ତି । ଅତୀତରେ ପୁଙ୍ଖାନୁପୁଙ୍ଖ ବିଚାର ପରେ ନିର୍ଦ୍ଦିଷ୍ଟ କର୍ମପନ୍ଥା ନିର୍ଦ୍ଧାରଣ କରାଯାଇ ସୁଚିନ୍ତିତ ସ୍ଲୋଗାନମାନ ( ଭାରତ ଛାଡ଼, କର ଅବା ମର )

(୮୭) Nayar, Kuldip—India after Nehru ( Vikas Publishing House, New Delhi, 1977 ) pp. 277-278

ସଂପ୍ରସାରିତ ହେଉଥିଲା; କିନ୍ତୁ ଆଜିକାଲି ପ୍ରଥମେ ମନଲାଖି ସ୍ଲୋଗାନମାନ ପ୍ରସ୍ତୁତ କରିଦେଇ ତଦନୁସାରେ ଲକ୍ଷ୍ୟ ହାସଲ ପାଇଁ ଚେଷ୍ଟା କରାଯିବା ଫଳରେ ତାହା ଅନ୍ଧାର ଘରେ ବାଡି ବୁଲାଇବା ଭଳି ନିରର୍ଥକ ବୋଧ ହେଉଛି ଏବଂ ନବୀନ-କାଳୀନ ପ୍ରତିଶ୍ରୁତି ମୂଲ୍ୟ ଅଚରେ ସନ୍ତ୍ରି ହରାଇ ବସୁଛି । (୮୮)

ବାସ୍ତବରେ, ବର୍ତ୍ତମାନ ଭାରତୀୟ ଜନମାନସ ନୈରାଶ୍ୟବୋଧ ଓ ହତାଶା-ଭାବ ଦ୍ଵାରା କବଳିତ ହୋଇ ପଡୁଛି । ବ୍ରିଟିଶ ରାଜତ୍ଵ କାଳରେ ଅଭୂତପୂର୍ବ ଜାତୀୟ ଜାଗରଣ ଫଳରେ ଆଦର୍ଶ ଶାସନକୁ ସ୍ଵାୟତ୍ତଶାସନ ବା ସ୍ଵରାଜ୍ୟର ବିକଳ୍ପ ରୂପେ ଧରାଯାଉଥିଲା; କିନ୍ତୁ ସଂପ୍ରତି ସ୍ଵାଧୀନତା ପରବର୍ତ୍ତୀ ଭାରତରେ ବିପରୀତ ଅବସ୍ଥା ହିଁ ସତ୍ୟ ପ୍ରତୀତ ହେଉଅଛି । ବ୍ରିଟିଶ ଶାସକବୃନ୍ଦ ପ୍ରଚଳିତ ସାମାଜିକ ଚଳଣିରେ ବିଶେଷ ପରିବର୍ତ୍ତନ ନଆଣି ବ୍ୟକ୍ତି ବ୍ୟକ୍ତି ତଥା ଜମିଦାର ଓ ପ୍ରଜାଗଣ ମଧ୍ୟରେ ଆଇନ ଓ ନ୍ୟାୟର ସୁରକ୍ଷା ଉଦ୍ଦେଶ୍ୟରେ ଏକ ଅମଲାତନ୍ତ୍ର ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ଯେ କୌଣସି ଉପାୟରେ ଇଂରେଜ ଶାସନକର୍ତ୍ତାଙ୍କର ଅନୁଗ୍ରହ ହାସଲ କରିବା ଜନସାଧାରଣଙ୍କର ଅଭ୍ୟାସଗତ ଆଚରଣରେ ପରିଣତ ହୋଇଥିଲା ଏବଂ ଗାନ୍ଧୀୟ ବିପ୍ଲବ ମଧ୍ୟ ଏହି ମନୋଭାବରେ କୌଣସି ପରିବର୍ତ୍ତନ ଆଣିପାରି ନଥିଲା । (୮୯)

ତେବେ, ଭାରତର ସ୍ଵାଧୀନତା ଆନ୍ଦୋଳନ କାଳରେ ଉଭୟ ପକ୍ଷ ଦୀର୍ଘ କାଳ ଧରି ଅବିରାମ ସଂଘର୍ଷର ସମ୍ମୁଖୀନ ହୋଇଥିଲେ ହେଁ ମୌଳିକ ମୂଲ୍ୟ-ବୋଧକୁ ଜଳାଞ୍ଜଳି ଦେଇନଥିଲେ । ଗାନ୍ଧିଜୀ ସତ୍ୟ, ଅହିଂସା ଓ ବିଶ୍ଵ ଭ୍ରାତୃଭାବର ଆଦର୍ଶରୁ ବିଚ୍ୟୁତ ହୋଇ ନଥିଲେ (ବରଂ, କ୍ଷୁଦ୍ରାପି କ୍ଷୁଦ୍ର ବ୍ୟତିକ୍ରମ ପାଇଁ ଅନଶନ ରୂପକ ପ୍ରାୟଶ୍ଚିତ୍ତ ପନ୍ଥା ଗ୍ରହଣ କରୁଥିଲେ ) ; ସାମ୍ରାଜ୍ୟବାଦୀ ଶକ୍ତି ମଧ୍ୟ ନ୍ୟାୟ ଓ ନିରପେକ୍ଷତାର ଆବରଣକୁ ଫିଙ୍ଗି ନଦେଇ ଭାରତୀୟ ଜନମତ ପ୍ରତି ସମର୍ଥନ ଜଣାଇ କ୍ରମଶଃ ଅଖଣ୍ଡ ଆଧିପତ୍ୟକୁ ଶିଥିଳ କରିଦେଇଥିଲେ । ଏହାର

---

(୮୮) Chakravarti, Nikhil—Let the left unite (Essay)-Kamath, M. V. Ed. The India of our dreams ( I. B. H. Publishing Co, Bombay, 1982 ) P. 46

(୮୯) Das, Durga—India from Curzon to Nehru and After (Rupa & Co, 1969 ) P. 450

କ୍ରମ ପରିଣତିରେ ହିଁ ସଂପୂର୍ଣ୍ଣ ଶାସନ ଦାୟିତ୍ୱ ହସ୍ତାନ୍ତର ବା ସ୍ୱାଧୀନତା ପ୍ରାପ୍ତି ଘଟିଅଛି । ଏହି କାରଣରୁ ଦୁଇ ଜାତି ମଧ୍ୟରେ ସ୍ଥାୟୀ ତିକ୍ତତା ବା ଶତ୍ରୁତାର ଉଦ୍‌ଭବ ଘଟିନାହିଁ । ଏଠାରେ ସ୍ୱାଧୀନତା କେବଳ ଉଚ୍ଚ ସାମାଜିକ ସ୍ତରରେ ପରିଣତ ହୋଇ ନଥିବାରୁ ଅମଲାତନ୍ତ୍ର ବ୍ୟବସ୍ଥାରେ ବିଶେଷ ପରିବର୍ତ୍ତନ ସଂଘଟିତ ହୋଇନାହିଁ, ବରଂ ତାର ସଂପ୍ରସାରଣ ଅବ୍ୟାହତ ରହିଛି ଏବଂ ମନ୍ଦ ପରିଣାମ ପରିବର୍ଦ୍ଧିତ ହେବାରେ ଲାଗିଛି । ନେତା, ଶାସକ, ବ୍ୟବସାୟୀ, କୃଷକ, ଶ୍ରମିକ ଯେ ଯାହାର ସ୍ତରରେ ସୁଯୋଗ ନେବାପାଇଁ ତତ୍ପର ହୋଇପଡ଼ିଛନ୍ତି । ରାଜନୀତିଜ୍ଞ-ମାନେ ରାଜନୀତିକୁ ପଙ୍କିଳ କରି ପକାଉଛନ୍ତି; ତ୍ୟାଗ, ସେବା, ପରମ୍ପରା ଓ ଆଦର୍ଶ ପରିବର୍ତ୍ତେ ଦୁର୍ନୀତି, ସ୍ୱାର୍ଥପ୍ରୀତି ଓ ଅର୍ଥଖୋର ମନୋବୃତ୍ତି ପ୍ରାଧାନ୍ୟ ଲାଭ କରିଛି; ପ୍ରଶାସକଗଣ ଶାସନ କଳକୁ ଅଚଳ କରି ଦେଉଛନ୍ତି; ବ୍ୟବସାୟୀ ଗୋଷ୍ଠୀ ସାମାଜିକ ବ୍ୟବସ୍ଥାର ସ୍ଥିର ସାମ୍ୟ ନଷ୍ଟ କରୁଛନ୍ତି; ଶ୍ରମିକ ଶ୍ରେଣୀ ଉତ୍ପାଦନ ବୃଦ୍ଧିରେ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି; କୃଷିଜାତ ଦ୍ରବ୍ୟର ମହଜୁଦକରଣ ଦ୍ୱାରା କଳାବଜାରି ବୃଦ୍ଧି ପାଉଛି; ଶାସନର ପ୍ରତ୍ୟେକ ସ୍ତରରେ ଦକ୍ଷତା ହ୍ରାସ ପରିଲକ୍ଷିତ ହେଉଛି । (୧୦)

ଯେ କୌଣସି ରାଜନୈତିକ ଦଳ ଗୋଟିଏ ସୁଦୃଢ଼ ଆଦର୍ଶ ବା ମତବାଦ ଉପରେ ପ୍ରତିଷ୍ଠିତ ନ ହେଲେ, ତାର ସମସ୍ତ ନୀତି ବା କାର୍ଯ୍ୟକ୍ରମ ଦୁର୍ବଳ ହୋଇ-ପଡ଼ିବା ସ୍ୱାଭାବିକ । ସଂପ୍ରତି ଆଦର୍ଶବାଦବିହୀନ ଭାରତୀୟ ରାଜନୀତି କେବଳ କ୍ଷମତା ହାସଲ ଲକ୍ଷ୍ୟରେ ପରିଚାଳିତ । ସମସ୍ତ ଦଳର ସମଗ୍ର କାର୍ଯ୍ୟପନ୍ଥା ଏହି ଏକମାତ୍ର ଲକ୍ଷ୍ୟ ଦ୍ୱାରା ନିୟନ୍ତ୍ରିତ । ଏଥିପାଇଁ ନିର୍ବାଚନରେ ଅସଦ୍ ଉପାୟ ଅବଲମ୍ବନ, ଭୋଟଦାତାଙ୍କୁ ଅର୍ଥଦାନ, ମିଥ୍ୟା ପ୍ରତିଶ୍ରୁତି ପ୍ରଦାନ, ଦଳୀୟ କାର୍ଯ୍ୟରେ ସରକାରୀ କଳର ବିନିଯୋଗ, ଏପରିକି ଅଦାଲତର ନିର୍ଦ୍ଦେଶକୁ ଏଡ଼ାଇବା ଉଦ୍ଦେଶ୍ୟରେ ସମ୍ବିଧାନ ସଂଶୋଧନ ଭଳି କାର୍ଯ୍ୟପନ୍ଥାମାନ ଗ୍ରହଣ କରାଯାଉଛି । ପୁଣି ଦଳ ମଧ୍ୟରେ ନେତୃତ୍ୱ ହାସଲ ବା ପ୍ରାଧାନ୍ୟ ପ୍ରତିଷ୍ଠା ନିମିତ୍ତ ଆଭ୍ୟନ୍ତରୀଣ କନ୍ଦଳ ଅପରି-ହାର୍ଯ୍ୟ ହୋଇ ଉଠୁଛି । କେତେକ କ୍ଷୁଦ୍ର ନେତା ବୃହତ୍ ନେତୃବୃନ୍ଦଙ୍କ ନିକଟବର୍ତ୍ତୀ ହେବା ଲାଗି ପ୍ରତିଯୋଗିତା କଲାବେଳକୁ ଅନ୍ୟ ପକ୍ଷରେ ଜନତା ନେତୃତ୍ୱ

---

(୧୦) Ibid—P. 451 ଏବଂ ମହତାବ, ଭର୍ତ୍ତୃହରି - ସ୍ୱାଧୀନ ବର୍ଷର ଗଣତନ୍ତ୍ର ( ନାଲନ୍ଦା, କଟକ, ୧୯୮୭ ) ପୃ. ୬-୧୨

ପରିବର୍ତ୍ତନ ଆଶାରେ ପ୍ରତୀକ୍ଷମାଣ । (୧୧) ସ୍ୱାଧୀନତା-ସଂଗ୍ରାମୀମାନେ ଏଭଳି ସ୍ୱାଧୀନତା ବିରୁଦ୍ଧରେ ବିମୁଖ । (୧୨) ଏତାଦୃଶ ରାଜନୀତି ଯୋଗୁଁ ସାମାଜିକ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ପ୍ରଶାସନିକ ଯେ କୌଣସି କ୍ଷେତ୍ରରେ ଯେଉଁସବୁ ନୀତି ନିର୍ଦ୍ଧାରିତ ହେଉଛି, ତାହା କେବଳ କ୍ଷଣସ୍ଥାୟୀ ସିନା ଚିରସ୍ଥାୟୀ ହୋଇପାରୁ ନାହିଁ । ଏହି କାରଣରୁ କେତେକ ସମାଲୋଚକ ସମ୍ପ୍ରତି ଭାରତରେ 'କାର୍ଯ୍ୟକାରୀ ଗଣତନ୍ତ୍ର'ର ସ୍ଥିତି ଉପଲବ୍ଧ ହେଉନାହିଁ ବୋଲି ମତବ୍ୟକ୍ତ କରି ଦେଶ ଏକଛତ୍ରବାଦ ବା ଅରାଜକତା ଆଡ଼କୁ ଗତି କରିବ ଏବଂ ପୂର୍ବର ରାଜତାନ୍ତ୍ରିକ ଗଣତନ୍ତ୍ର ପରିବର୍ତ୍ତେ ଗଣତାନ୍ତ୍ରିକ ରାଜତନ୍ତ୍ରର ହିଁ ବିସ୍ତାର ଘଟିବ ବୋଲି ଆଶଙ୍କା ପ୍ରକାଶ କରୁଛନ୍ତି । (୧୩)

ଏହି ପରିପ୍ରେକ୍ଷୀରେ ସାରଳା ଦାସଙ୍କ କଳିଯୁଗ ବିବରଣ ପ୍ରସଙ୍ଗ (୧୪) ବିଚାର କଲେ ଅନ୍ୟାୟ ଓ ଅରାଜକତାର ଯେଉଁ ଚିତ୍ର ସେ ପ୍ରଦାନ କରିଛନ୍ତି, ତାହା ଆଧୁନିକ ରାଜନୈତିକ ସ୍ଥିତିର ଏକ ନିଖୁଣ ଚିତ୍ରପଟ ମନେହୁଏ । ସାରଳାଙ୍କ ବର୍ଣ୍ଣନାନୁଯାୟୀ କଳିଯୁଗର ପ୍ରଭାବ କ୍ରମେ ରାଜାଗଣ ମିଥ୍ୟାଚାରୀ ହେବେ; ନାନା ଫନ୍ଦିଫିକର କରି ପ୍ରଜାମାନଙ୍କର ଆୟ ଛଡ଼ାଇ ନେବେ; ଶାଗୁଣା ଗୋଚମଡ଼ା ଭକ୍ଷଣ କଲା ପରି ରାଜା ପ୍ରଜାଙ୍କୁ ଶୋଷଣ କରିବେ; ଅନ୍ୟାୟ ଅବିଚାର କରି ନିର୍ଦ୍ଦୋଷଙ୍କ ଶିରଚ୍ଛେଦନ କରିବେ; ପରଧନ ଓ ପରଭୂମି ଅପହରଣ କରିନେବେ; ରାଜକୋଷ ସର୍ବଦା ନିଅଣ୍ଟ ହେବ; ପ୍ରଜାକୁଳ ଅନେକ ଯନ୍ତ୍ରଣା ଭୋଗ କରିବେ; ରାଜ୍ୟରେ ସୁବୃଷ୍ଟି ହେବ ନାହିଁ; ଶସ୍ୟହାନି ଘଟିବ; କୃଷିକର୍ମ କଷ୍ଟପ୍ରଦ ହେବ; ରାଜାଙ୍କ ଦୋଷରୁ ପ୍ରଜା ଅନାଥ ମନେ କରିବେ । ଏହା ବ୍ୟତୀତ, ସମାଜରେ

---

(୧୧) Buch, M. N.—Politics without Ideology (Essay) (Indian Express, Vizianagram, April 22, 1988)

(୧୨) Das, Sunil (Now and then) The Week, Vol. 6 No. 24 (5-6-88—11-6 88) P. 62

(୧୩) Buch, M. N.—Politics without Ideology (Indian Express 22-4-88)

(୧୪) ସା: ମ: ଭ: (ସ୍ୱ)—ସ୍ୱର୍ଗାରୋହଣ—ପୃ. ୪-୫ ଓ ସା: ମ: ଭ: (ସା) ସ୍ୱର୍ଗାରୋହଣ—ପୃ. ୯-୧୧

ହତ୍ୟା, ଅତ୍ୟାଗୃହ ଓ ଅନାଗୃହ ବ୍ୟାପିଯିବ; ପିତାମାତା ଓ ଗୁରୁଜନଙ୍କ ପ୍ରତି ଭକ୍ତିଭାବ ରହିବ ନାହିଁ; ଶାସ୍ତ୍ରନିନ୍ଦା, ପଶୁବଧ ଓ ଦ୍ୟୁତକ୍ରୀଡ଼ାଦିରେ ପ୍ରମତ୍ତ ରହି ଜନସାଧାରଣ ଶ୍ରଦ୍ଧା, ବ୍ରତ, ଉପବାସାଦି ତ୍ୟାଗ କରିବେ; କୁଳରମଣୀ ଅଭିସାର ରଚନା କରିବେ; ବିଧବା ବ୍ରାହ୍ମଣୀ ଜାରଜ ସନ୍ତାନଙ୍କୁ ଜନ୍ମ ଦେବେ ଓ ସେମାନେ (ଜାରଜମାନେ) ବେଦ ବିସ୍ତାରକ ହେବେ; ଜନତା ସଦା ନାସ୍ତିକ ରହି ଚିର ରୋଗୀ ହେବେ; ପଥଗ୍ରସ୍ତଙ୍କୁ ପ୍ରବଞ୍ଚିତ କରି ଧନ ଲୁଣ୍ଠନ କରିନେବେ; ଦେବତା ବ୍ରାହ୍ମଣଙ୍କୁ କେହି ପୂଜା କରିବେ ନାହିଁ ଓ ବ୍ରାହ୍ମଣଙ୍କୁ ହତ୍ୟା କଲେ ବ୍ରହ୍ମହତ୍ୟା ଦୋଷର ଭୟ ରହିବ ନାହିଁ । ଏଭଳି ବର୍ଣ୍ଣନାରୁ ମନେହୁଏ ଯେତେ ଯେମିତି ସାରଳା ପାଞ୍ଚଶତ ବର୍ଷ ପୂର୍ବେ ସ୍ୱଚକ୍ଷୁରେ ଆଜିର ଅବସ୍ଥା ସନ୍ଦର୍ଶନ କରିଥିଲେ ।

**ଉପସଂହାର**

ଚିନ୍ତାଶୀଳ ଦାର୍ଶନିକମାନଙ୍କ ମତରେ ସମଗ୍ର ବିଶ୍ୱସମାଜରେ ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ ତଥା ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରୁ ମାନବ ସଭ୍ୟତାର ଅବକ୍ଷୟ ଆରମ୍ଭ ହୋଇଛି ଏବଂ ପାଶବିକ ପରିବେଶରେ ନିକ୍ଷେପିତ ହୋଇ ସୃଷ୍ଟିର ଶ୍ରେଷ୍ଠ ଜୀବ ମନୁଷ୍ୟ ସଂଘବଦ୍ଧ ସମାଜ ସମ୍ମୁଖରେ ତାର ଆଧ୍ୟାତ୍ମିକ ସ୍ୱାଧୀନତା ଓ ନୈତିକ ବିଗ୍ରହ ଶକ୍ତି ସମର୍ପଣ କରିବାକୁ ବାଧ ହେଉଛି । ସଭ୍ୟତାର ଏତାଦୃଶ ସଙ୍କଟାବସ୍ଥାରୁ ଉଦ୍ଧାର ପାଇବା ପାଇଁ ନୈତିକତା, ଆଧ୍ୟାତ୍ମିକତା, ଆତ୍ମତ୍ୟାଗ ଓ ଆତ୍ମବିଶ୍ୱାସର ଆବଶ୍ୟକତା ନିତାନ୍ତ ଅପରିହାର୍ଯ୍ୟ (୯୫) ପୃଥିବୀ ସାରା ଗତ କେତେ ଶତାବ୍ଦୀ ଧରି ଗଣତନ୍ତ୍ରର ଯେଉଁ ବିଜୟଧ୍ୱଜା ଉତ୍ତୋଳିତ ହୋଇଛି, ତାହା ପ୍ରକୃତ ଗଣତନ୍ତ୍ର ନୁହେଁ; କାରଣ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ସ୍ୱାସ୍ଥ୍ୟ ଶାସନ ହିଁ ପ୍ରକୃତ ଗଣତନ୍ତ୍ର । (୯୬) ସମଧିକ ସମର୍ପଣ ଭାବ ବିନା ଗଣତନ୍ତ୍ର ଆଦୌ ଏକ ପୂର୍ଣ୍ଣାଙ୍ଗ ରାଜନୈତିକ ବ୍ୟବସ୍ଥା ରୂପେ ଗ୍ରହଣୀୟ ନୁହେଁ । (୯୭)

(୯୫) Schweitzer—The Decay and the Restoration of Civilization—pp. 8-9, 15-17 & 38-39

(୯୬) Radhakrishnan, Dr. S.—Kalki or the Future of Civilization (Kalyani Publishers, Ludhiana, 6th Ed., 1974) P. 68

(୯୭) Russell—Political Ideals· P. 23

ଏହା ଏକ ସ୍ୱଭାବସିଦ୍ଧ ପ୍ରାକୃତିକ ଅବସ୍ଥା ସୃଷ୍ଟି କରିଥାଏ; ଏଥିପାଇଁ ଆଦର୍ଶ ଶିକ୍ଷା ଏବଂ ପ୍ରୟାସ ଆବଶ୍ୟକ । ମତଦାନକାରୀ ବ୍ୟକ୍ତିଙ୍କର ବୁଦ୍ଧି, ବିବେକ ଓ ବିଚାର ଶକ୍ତି ଏବଂ ନେତୃବୃନ୍ଦଙ୍କର ନିଷ୍ଠା ଓ ସାଧୁତା ଉପରେ ଗଣତନ୍ତ୍ରର ସଫଳତା ନିର୍ଭରଶୀଳ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଯେତେ ଦୋଷତ୍ରୁଟି ଦୃଷ୍ଟିଗୋଚର ହେଲେ ସୁଦ୍ଧା ଅତୀତରେ ପରୀକ୍ଷିତ ବିଭିନ୍ନ ରାଜନୈତିକ ଆଦର୍ଶ ମଧ୍ୟରେ ଏହା ଶ୍ରେୟସ୍କର । (୯୮) ଆଧୁନିକ ଯୁଗରେ ପରସ୍ପରବିରୁଦ୍ଧ ଦ୍ୱିବିଧ କ୍ରାନ୍ତିକାରୀ ଆଦର୍ଶ—ବ୍ୟକ୍ତିବାଦ ଓ ଅଖଣ୍ଡତାବାଦ ମଧ୍ୟରେ ସଂସଦୀୟ ଗଣତନ୍ତ୍ର ହିଁ ସୁସମନ୍ୱୟ ପ୍ରତିଷ୍ଠା କରିବା ପାଇଁ ସମର୍ଥ । (୯୯)

ଏହି ପୃଷ୍ଠଭୂମିରେ ଭାରତୀୟ ଗଣତନ୍ତ୍ରର ଭବିଷ୍ୟତ ପ୍ରଶ୍ନ ବିଚାର କଲେ ସ୍ପଷ୍ଟ ମନେହୁଏ ଯେ ଆମର ସମସ୍ତ ଜାତୀୟବାଦୀ ତଥା ଗଣତାନ୍ତ୍ରିକ ଦଳଗୁଡ଼ିକ ଏକତାବଦ୍ଧ ଭାବରେ ଜାତିଆଣ ଭେଦଭାବ, ସାମ୍ପ୍ରଦାୟିକତା ଓ ଆଞ୍ଚଳିକତାର ଅଭିଯାନକୁ ପ୍ରତିହତ କରି ମହାଭାରତୀୟ ଚେତନାକୁ ବଳିଷ୍ଠ ଓ ପୁନର୍ଜୀବିତ ନକଲା ପର୍ଯ୍ୟନ୍ତ ଏ ଦେଶର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ । (୧୦୦) ଭାରତରେ ବିଶୃଙ୍ଖଳା ଭାବର ଦମନ ନିମନ୍ତେ କଠୋର ଦଣ୍ଡବିଧାନ ତଥା ଏକଚ୍ଛତ୍ର ଶାସନର ଆବଶ୍ୟକତା ଉପରେ କେତେକ ସମାଲୋଚକ ଆସ୍ଥା ପୋଷଣ କରୁଥିଲେ ହେଁ, ତାହା ଏ ମାଟି ପାଇଁ ଉପଯୁକ୍ତ ନୁହେଁ, କିମ୍ବା ଯୁଗୋପଯୋଗୀ ବି ନୁହେଁ । କଥିତ ଅଛି, ମଣିଷର ନ୍ୟାୟବୋଧ ଗଣତନ୍ତ୍ରକୁ ସହଜଲଭ୍ୟ କରିଥାଏ; ମାତ୍ର ମଣିଷର ଅନ୍ୟାୟ ଶକ୍ତି ବଢ଼ିଲେ, ଗଣତନ୍ତ୍ର ଆବଶ୍ୟକ ପଡ଼ିଥାଏ । ଏଣୁ ଏଠାରେ ଗଣତନ୍ତ୍ରର ଆବଶ୍ୟକତା ବେଶୀ । (୧୦୧) ଏଥିପାଇଁ ବ୍ୟକ୍ତି ଓ ଅନୁଷ୍ଠାନଗୁଡ଼ିକୁ ଉପଯୁକ୍ତ ଶିକ୍ଷା ଓ ଆଧ୍ୟାତ୍ମିକ

---

(୯୮) Radhakrishnan, Kalki or the Future of Civilization. P. 69

(୯୯) Munshi, K. M. - Warnings of History—Trends in Modern India (Bharatiya Vidya Bhavan, Bombay, 2nd Ed. 1960) P. 28

(୧୦୦) Madhok, Balraj—Indianisation ( Hind Pocket Books (P) Ltd, New Delhi, 1971) P. 110

(୧୦୧) Gandhi, Raj Mohan—Encourage a new national ethos (Essay) Kamath Ed. The India of our dreams—pp. 109-111

ପ୍ରେରଣା ଦ୍ୱାରା ନ୍ୟାୟୋଚିତ ମାର୍ଗରେ ପରିଚାଳିତ କରିବାକୁ ସମ୍ଭବ ଏବଂ ଏହା ସହିତ ନିର୍ବାଚନ ପଦ୍ଧତି ବ୍ୟବସ୍ଥା ମାଧ୍ୟମରେ ନିମ୍ନ ସ୍ତରରୁ ଗଣତନ୍ତ୍ରର ସୁଦୃଢ଼ୀକରଣ ଆବଶ୍ୟକ । (୧୦୨)

ସର୍ବୋପରି, ସ୍ୱାଧୀନ ଭାରତରେ ବ୍ୟବସାୟୀ ଗୋଷ୍ଠୀ, କର୍ମଚାରୀ ଓ ଶ୍ରମିକ ସମାଜ ବିଭିନ୍ନ ସଂଗଠନ, ଆନ୍ଦୋଳନ ଓ ବନ୍ଦ ପାଳନ ମାଧ୍ୟମରେ ରାଜନୀତିକୁ ବେଶ ପ୍ରଭାବିତ କରି ପାରୁଥିଲା ବେଳେ କୃଷକକୁଳ ( ତଥା ଗୋପାଳ, ଧୀବର, କୁମ୍ଭକାର, ସ୍ୱର୍ଣ୍ଣକାର ପ୍ରମୁଖ ) ଅନୁରୂପ ପ୍ରଭାବ ବିସ୍ତାର କରି ପାରୁନାହାନ୍ତି । ଏଣୁ କୃଷକସମାଜ ତଥା ବିଭିନ୍ନ ବୃତ୍ତିଜୀବୀମାନଙ୍କର ସଂଗଠନ ସକ୍ରିୟତା ହାସଲ ନକଲା ପର୍ଯ୍ୟନ୍ତ ଦେଶର ରାଜନୈତିକ ବ୍ୟବସ୍ଥାରେ ଭାରସାମ୍ୟ ରକ୍ଷା ହୋଇପାରିବ ନାହିଁ । (୧୦୩) ସୁତରାଂ, ଗଣତନ୍ତ୍ରକୁ ସୁଦୃଢ଼ ଓ ଫଳବତୀ କରିବା ପାଇଁ ଏହି ଦିଗ ପ୍ରତି ମଧ୍ୟ ଦୃଷ୍ଟି ଦିଆଯିବା ଆବଶ୍ୟକ ।

ସାରଳା ଦାସ ସତେ ଯେପରି ମାନସ ଚକ୍ଷୁରେ ଏତାଦୃଶ ଅବସ୍ଥା ଅବଲୋକନ କରିପାରିଥିଲେ । ତେଣୁ ସେ କୃଷକସମାଜ ପ୍ରତି ଅତ୍ୟନ୍ତ ଦରଦୀ ହୋଇ ଉଠିଥିଲେ ଏବଂ ତାଙ୍କ ପ୍ରତି କୃପଣ ନହେବା ପାଇଁ ରାଜାଙ୍କୁ ଉପଦେଶ ଦେଇଥିଲେ । ରାଜନୀତିରେ ନୈତିକତା, ଆଧ୍ୟାତ୍ମିକତା, ସାଧୁତା, ଶାସ୍ତ୍ରଦର୍ଶିତା, ବଦାନ୍ୟତା, ତ୍ୟାଗ ଓ ସହିଷ୍ଣୁତା ଉପରେ ସାରଳାଙ୍କ ପ୍ରାଧାନ୍ୟ ଆରୋପ ପ୍ରସଙ୍ଗରେ ପୁନରାବୃତ୍ତି ଅନାବଶ୍ୟକ । ବର୍ତ୍ତମାନର ପରିସ୍ଥିତିରେ ଶାସକ ଦଳ ସହିତ ଘନିଷ୍ଠ ଭାବେ ସମ୍ପୃକ୍ତ ଚିନ୍ତାଶୀଳ ବ୍ୟକ୍ତି ମଧ୍ୟ ସ୍ୱୀକାର କରୁଛନ୍ତି ଯେ ସେବା, ସମର୍ପଣ ଓ ଚରିତ୍ରଶୂନ୍ୟ ଲୋକମାନେ ରାଜନୀତିର ଶୀର୍ଷ ସ୍ଥାନରେ ଅଛନ୍ତି ଏବଂ ରାଜନୀତିକୁ ପେଶା କରି ବିକାଶକୁ ବିନାଶ ଆଡ଼କୁ ଟାଣି ନେଇଯାଉଛନ୍ତି । (୧୦୪) ରାଜନୀତି ସହିତ ଭାଷା,

---

(୧୦୨) Kothari—Democratic Polity and Social Change in India-pp. 110-112

(୧୦୩) Johari—Indian Politics-pp. 505-507

(୧୦୪) ତା ୧୧।୪।୧୯୮୮ ରିଖ 'ପ୍ରଜାତନ୍ତ୍ର'ର ବାର୍ଷିକ ମିଳନ ଉତ୍ସବରେ ପ୍ରସିଦ୍ଧ ହିନ୍ଦୀ ସାହିତ୍ୟିକ ତଥା ଅଖିଳ ଭାରତ କଂଗ୍ରେସ (ଇ) କମିଟିର ସାଧାରଣ ସମ୍ପାଦକ ଶ୍ରୀ ନରେଶଚନ୍ଦ୍ର ଚତୁର୍ବେଦୀଙ୍କ ଭାଷଣରୁ ଗୃହୀତ । (ସମାଜ-ତା ୧୩।୪।୮୮ ସଂଖ୍ୟା, ପୃ-୮, ସ୍ତମ୍ଭ ୪ ଓ ୫)

ସାହିତ୍ୟ ଓ ମେଧାର ସଂଯୋଗ ଏକାନ୍ତ ଆବଶ୍ୟକ । କାରଣ, ସାହିତ୍ୟ, ସଂସ୍କୃତି ଓ ପରମ୍ପରାକୁ ତ୍ୟାଗ କରି କେବଳ ରାଜନୀତି ଦ୍ୱାରା ଦେଶର ସମୂହ କଲ୍ୟାଣ ସାଧନ ସମ୍ଭବ ନୁହେଁ ।

ଏହି ଦୃଷ୍ଟିରୁ ବିଚାର କଲେ, ସାରଳା ଦାସଙ୍କ ସଶରୀର ପୁନରାବିର୍ଭାବ ସିନା ଅସମ୍ଭବ ଓ ଅକଳ୍ପନୀୟ, ମାତ୍ର ତାଙ୍କର ଅସାଧାରଣ ଜ୍ଞାନ, ଗମ୍ଭୀର ବ୍ୟୁତ୍ପତ୍ତି, ପ୍ରଚଣ୍ଡ ପ୍ରତିଭା, ପ୍ରଗାଢ଼ ଧର୍ମାନୁରକ୍ତି, ଐକାନ୍ତିକ ଦେଶଭକ୍ତି, ବଳିଷ୍ଠ ଜାତୀୟ ମମତା, ଅପାର ଦୂରଦର୍ଶିତା, ଅସାମାନ୍ୟ ନୈତିକତା ଓ ନିଃସ୍ୱ ଜନତା ପ୍ରତି ଅଖଣ୍ଡ ସମ୍ବେଦନଶୀଳତା ପ୍ରଭୃତି ସଦ୍‌ଗୁଣାବଳୀ ତଥା ଆଦର୍ଶ ସମୂହର ପୁନରାବୃତ୍ତି ବଳରେ ଯେ ଭାରତ ବର୍ଷରେ ଏକ ନବଯୁଗର ଅଭ୍ୟୁଦୟ ସମ୍ଭବ ହୋଇପାରିବ ଏବଂ ଜନସାଧାରଣ ଶିକ୍ଷାର ବିମଳ ଆଲୋକରେ ଉଦ୍‌ଭାସିତ ହୋଇ ସାମ୍ୟ, ଶାନ୍ତି, ମୈତ୍ରୀ ସମନ୍ୱିତ ସମାଜରେ ରୋଗକ୍ଲେଶ, ବ୍ୟଥା ଯନ୍ତ୍ରଣା, ଅଭାବ ଅସୁବିଧାରହିତ ଉନ୍ନତ ଓ ଆଦର୍ଶ ଜୀବନ ଯାପନ କରିପାରିବେ, ଏଥିରେ ଦ୍ୱିଧାର ଅବକାଶ ନାହିଁ । ଏହାହିଁ ସାରଳାଙ୍କ ଅକ୍ଳାନ୍ତ ସାସ୍କୃତିକ ସାଧନାର ବଳିଷ୍ଠ, ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଅଭିମୁଖ୍ୟ; ତାଙ୍କ ସୁଦୂରପ୍ରସାରୀ ରାଜନୈତିକ ଚେତନାର ଚରମ ଲକ୍ଷ୍ୟ ।

□ □ □

[ ସଂଲଗ୍ନ ସାରଣୀରେ ତୁଳନାତ୍ମକ ରାଜନୈତିକ ଆଦର୍ଶସମୂହର ଯେଉଁ ସୂଚନା ପ୍ରଦତ୍ତ ହୋଇଛି, ତାହା ସାରଳାଙ୍କ କେତେକ ଆଦର୍ଶ ସହିତ ବିଭିନ୍ନ ସମୟର ଭାରତୀୟ ଓ ବୈଦେଶିକ ରାଜନୀତିବିଶାରଦ-ମାନଙ୍କ ଚିନ୍ତାଧାରାର ସାଦୃଶ୍ୟ ଦର୍ଶାଇବା ପାଇଁ ହିଁ ଉଦ୍ଦିଷ୍ଟ । ଏହା ସମସ୍ତ ରାଜନୀତିଦାର୍ଶନିକଙ୍କର ସାମଗ୍ରିକ ଚିନ୍ତାଦର୍ଶର ସୂଚନା ନୁହେଁ । ଏହି ଗ୍ରନ୍ଥରେ ଆଲୋଚିତ ବିଷୟବସ୍ତୁ ଅନୁସାରେ ବନ୍ଧନୀ ମଧ୍ୟରେ ପୃଷ୍ଠାଙ୍କ ନିର୍ଦ୍ଦେଶିତ ହୋଇଅଛି ]।

# ରାଜନୈତିକ ଆଦର୍ଶ ସମ୍ପର୍କୀୟ ଚିନ୍ତାସାମ୍ୟର ସୂଚନା

| ସାରଳା ଦାସଙ୍କ ଆଦର୍ଶ | ସମଦର୍ଶୀ ଭାରତୀୟ ମନୀଷୀ | ସମଦର୍ଶୀ ପାଶ୍ଚାତ୍ୟ ଦାର୍ଶନିକ |
|---|---|---|
| ଅତ୍ୟାଚାରୀ ଶାସନର ବିରୋଧ (୨୧୫, ୨୧୬) | କହ୍ଲଣ (୧୫) | କାଲଭିନ୍ (୧୩୩), ଭୋଲ୍‌ଟାୟାର (୩୧୬), ସ୍ପେନ୍‌ସର୍ (୩୨୩) |
| ଆଇନାନୁସାରୀ ଶାସନ (୨୨୨) | ଭୋଜରାଜ (୧୬) | ହାମୁରାବି (୩୨), ଡ୍ରାକୋ (୩୪), ପ୍ଲାଟୋ (୩୯, ୪୨, ୪୩), ଆରିଷ୍ଟୋଟଲ୍ (୪୪, ୪୬), ସିସେରୋ (୫୦), କାଣ୍ଟ (୩୨୧) |
| ଆଦର୍ଶ ପରିବାର (୨୫୭-୨୫୯) | — | ପ୍ଲାଟୋ (୩୯, ୪୧), ଆରିଷ୍ଟୋଟଲ୍ (୪୬), ମୁର୍ (୧୩୬), ବେନ୍ଥାମ୍ (୩୨୦) |
| ଆଦର୍ଶ ଶିକ୍ଷା (୧୭୪, ୧୭୫, ୨୩୯-୨୪୨) | ମନୁ (୭୬), କୌଟିଲ୍ୟ (୭୩) ରାମମୋହନ (୩୩୮), ବିବେକାନନ୍ଦ (୩୪୦), ଗାନ୍ଧୀ (୩୪୩), ବିନୋବା (୩୪୭) | ସୋଲନ୍ (୩୪), ପ୍ଲାଟୋ (୩୯-୪୧), ଆରିଷ୍ଟୋଟଲ୍ (୪୪, ୪୬) ଗ୍ରୀନ୍ (୩୨୨) |

| | | |
|---|---|---|
| ଉନ୍ନତ ଆର୍ଥିକ ବ୍ୟବସ୍ଥା (୧୮୭-୧୮୯, ୨୩୩, ୨୩୪) | ମନୁ (୭୦), କୌଟିଲ୍ୟ (୭୪), ବୃହସ୍ପତି (୮୯-୯୦), ଶୁକ୍ର (୯୩), ଗାନ୍ଧୀ (୩୪୩), ବିନୋବା (୩୪୭) | ସୋଲନ୍ (୩୪), ପିସିଷ୍ଟ୍ରେଟସ୍ (୩୪), ଆରିଷ୍ଟୋଟଲ୍ (୪୬) ହବସନ୍ (୩୨୮) ରସେଲ୍ (୩୨୮), ସୋରେଲ୍ (୩୨୮) |
| କର୍ମ ବିଭାଜନ (୨୭୫, ୨୯୦, ୨୯୧) | ମନୁ (୭୬), କୌଟିଲ୍ୟ (୭୩, ୭୪), ବୃହସ୍ପତି (୮୯), ଶୁକ୍ର (୯୨), ଆଲ୍‌ବେରୁନି (୯୬) | ପ୍ଲେଟୋ (୪୦), ଆରିଷ୍ଟୋଟଲ୍ (୪୬), ମୁର୍ (୧୩୬) |
| କଲ୍ୟାଣବ୍ରତୀ ଆଦର୍ଶ (୧୮୮, ୨୭୬, ୨୯୦) | ଅଶୋକ (୭୪), ବୃହସ୍ପତି (୮୯), ବିନୋବା (୩୪୭) | ଗ୍ରାହାମ୍, ହେନ୍‌ସର୍, କ୍ଲିଭଲାଣ୍ଡ, ଲସ୍କି, କାଣ୍ଟ (୩୩୪) |
| କୃଷି ବିକାଶ (୧୮୬, ୧୮୯, ୨୮୬) | ମନୁ (୭୦), ବୃହସ୍ପତି (୯୦, ୯୩), ରାମମୋହନ (୩୩୮), ନେହରୁ (୩୪୯) | ହମୁରବି (୩୨), ପିସିଷ୍ଟ୍ରେଟସ୍ (୩୪), ଆରିଷ୍ଟୋଟଲ୍ (୪୬), ମୁର୍ (୧୩୬) |
| ଗଣମତର ପ୍ରାଧାନ୍ୟ (୧୯୨, ୨୯୬, ୨୯୯) | ଅଶୋକ (୭୪), ଗାନ୍ଧୀ (୩୪୩) | ପିସିଷ୍ଟ୍ରେଟସ୍ (୩୪), ପେରିକ୍ଲିସ୍ (୩୬), ଜନ୍ ନକ୍ସ (୧୩୪), ସ୍ୱାରେଜ୍ (୧୩୫), ମୁର୍ (୧୩୬), ବାର୍କ (୩୧୮), ବେନ୍ଥାମ୍ (୩୧୯), ଗ୍ରୀନ୍ (୩୨୨) |
| ଗଣସନ୍ତୋଷ ବିଧାନ (୧୮୬, ୧୯୨, ୨୭୬, ୨୮୬) | ଅଶୋକ (୭୪), ଶୁକ୍ର (୯୩), କହ୍ଲଣ (୯୫), ଗାନ୍ଧୀ (୩୪୩) | ରୁଷୋ (୩୧୬) |

| | | |
|---|---|---|
| ଗୁପ୍ତଚର ବ୍ୟବସ୍ଥା (୧୮୭) | ଅଶୋକ (୭୪), କୌଟିଲ୍ୟ (୭୩, (୭୫), ବୃହସ୍ପତି (୮୯), ଭୋଜରାଜ, (୯୭), | ଆରିଷ୍ଟୋଟଲ୍ (୪୫) |
| ଗୋଜାତିର ଉନ୍ନତି (୧୮୯, ୨୭୭, ୨୮୭) | ମନୁ (୭୦), କୌଟିଲ୍ୟ (୭୪), ବୃହସ୍ପତି (୯୦, ୯୩) | — |
| ଚିକିତ୍ସା ଓ ସ୍ୱାସ୍ଥ୍ୟରକ୍ଷା (୨୭୪, ୨୭୧, ୨୭୩) | କୌଟିଲ୍ୟ (୭୫), ବିନୋବା (୩୪୭) | ହମୁରାବି (୩୨), ପ୍ଲେଟୋ (୪୩), ବେନ୍ଥାମ୍ (୩୨୦), ଗ୍ରୀନ୍ (୩୨୨) |
| ଜନଜୀବନର ସୁରକ୍ଷା (୧୮୭, ୨୯୬) | ମନୁ (୬୫, ୭୦), କୌଟିଲ୍ୟ (୭୬) | ମେକ୍ୟାଭେଲି (୧୩୭), ବେନ୍ଥାମ (୩୨୦), ସ୍ପେନ୍ସର୍ (୩୨୩) |
| ଜାତିଭେଦ ବିରୋଧ (୨୮୯-୨୯୧) | କହ୍ଲଣ (୯୫), ବିବେକାନନ୍ଦ (୩୪୦), ଗାନ୍ଧୀ (୩୪୩), ବିନୋବା (୩୪୭), ନେହରୁ (୩୪୮) | — |
| ଜାତୀୟତାବୋଧ (୧୪୭-୧୫୨) | ଗୋପବନ୍ଧୁ (୧୫୧, ୩୪୪), ଦୟାନନ୍ଦ (୩୩୯), ଗାନ୍ଧୀ (୩୪୩), ରବୀନ୍ଦ୍ରନାଥ (୩୪୫), ଅରବିନ୍ଦ (୩୪୬), ସୁଭାଷ (୩୫୬), | ମେକ୍ୟାଭେଲି (୧୩୯), ହେଗେଲ୍ (୩୨୨) |

| | | |
|---|---|---|
| ଜ୍ଞାନୋତ୍କର୍ଷ ବା ବୌଦ୍ଧିକତା (୧୬୪, ୧୬୮, ୧୯୧, ୨୭୬) | ମନୁ (୬୬), କୌଟିଲ୍ୟ (୭୩, ବୃହସ୍ପତି (୯୩), ଶୁକ୍ର (୯୩) | ପାଇଥାଗୋରସ୍ (୩୫), ସକ୍ରେଟିସ୍ (୩୬), ପ୍ଲେଟୋ (୩୯), ମିଲ୍ଟନ୍ (୩୧୬), ଫିଲ୍ମର୍ (୩୧୬) |
| ଦରଦାମ ନିୟନ୍ତ୍ରଣ (୨୮୮) | — | ହ୍ୱମୁରାବ୍ବି (୩୨) |
| ଧର୍ମାନୁରକ୍ତି ବା ଆଧ୍ୟାତ୍ମିକତା (୮୫, ୮୬, ୧୯୨, ୨୨୮-୨୩୩, ୨୬୬, ୨୭୬, ୨୯୧) | ଅଶୋକ (୬୩, ୬୪), ମନୁ (୬୬), କ୍ଷେମେନ୍ଦ୍ର (୯୬), ଆଲ୍‌ବେରୁନି (୯୬), ରାମମୋହନ (୩୩୮), ଗାନ୍ଧୀ (୩୪୩), ଗୋପବନ୍ଧୁ (୩୪୪), ବିବେକାନନ୍ଦ (୩୪୦), ରାଧାକୃଷ୍ଣନ୍ (୩୪୫), ବିନୋବା (୩୪୬) | ସେନେକା (୫୧), ଏମ୍ବ୍ରୋସ୍ (୫୧), ମାଲଙ୍କଥନ୍ (୧୩୨), କାଲ୍‌ଭିନ୍ (୧୩୩) ଲିପ୍‌ସି (୧୩୪), ମୁର୍ (୧୩୬), ହେଗେଲ୍ (୩୨୨) |
| ନାଗରିକ ଅଧିକାର (୨୭୬, ୨୭୭) | ବିନୋବା (୩୪୬) | ପେରିକ୍ଲସ୍ (୩୬), ଏକ୍ୱିନାସ୍ (୫୬), କାଲ୍‌ଭିନ୍ (୧୩୪), ସିଡ୍‌ନି (୩୧୬) |
| ନାରୀଜାତିର ସମ୍ମାନ (୮୬, ୧୯୨, ୨୬୦, ୨୬୪, ୨୬୫) | ମନୁ (୬୮, ୭୦), କହ୍ଲଣ (୯୫), ରାମମୋହନ (୩୩୮), ବିବେକାନନ୍ଦ (୩୪୦), ଗାନ୍ଧୀ (୩୪୩), ନେହରୁ (୩୪୯) | — |
| ନିଶା ନିବାରଣ (୧୯୨) | ଗାନ୍ଧୀ (୩୪୩), ବିନୋବା (୩୪୬) | ଗ୍ରୀନ୍ (୩୨୨) |

| | | |
|---|---|---|
| ନ୍ୟାୟଶ୍ରେଣୀର ଅଭ୍ୟୁତ୍ଥାନ (୨୯୦, ୨୯୧, ୨୯୬, ୨୯୭) | ଗାନ୍ଧୀ (୩୪୩), ବିନୋବା (୩୪୭) ନେହେରୁ (୩୪୯) | ହାମୁରାବି (୩୨), ସୋଲନ୍ (୩୪), ମାର୍କସ୍ (୩୨୪) |
| ନୈତିକତା ଓ ପବିତ୍ରତା (୨୬୬-୨୬୯, ୨୭୫, ୨୮୯) | ମନୁ (୭୦), କହ୍ଲଣ (୯୬), ଗାନ୍ଧୀ (୩୪୩), ରବୀନ୍ଦ୍ରନାଥ (୩୪୫) | ପାଇଥାଗୋରସ୍ (୩୫), ସକ୍ରେଟିସ୍ (୩୮) ପ୍ଲେଟୋ (୩୯), ଆରିଷ୍ଟୋଟଲ (୪୭), ସେନେକା (୫୧), ମୁର୍ (୧୩୬), ମିଲ୍‌ଟନ୍ (୩୧୭), ମିଲ୍ (୩୨୦), ବ୍ରାଡ୍‌ଲେ (୩୨୩) |
| ନ୍ୟାୟ ଶାସନ (୧୮୬, ୨୦୩, ୨୩୩) | ଅଶୋକ (୭୪), ବୃହସ୍ପତି (୮୯), ଶୁକ୍ର (୯୨) | ହାମୁରାବି (୩୨), କାଲ୍‌ଭିନ୍ (୧୩୩), ବ୍ଲେକଷ୍ଟୋନ (୩୧୬), ମଣ୍ଟେସକ୍ୟୁ (୩୧୭) |
| ପଣ୍ଣପ୍ରଥା ଦସ୍ତା (୨୬୭, ୨୮୯) | ମନୁ (୭୦), ବୃହସ୍ପତି (୯୩) | — |
| ବଂଶପରଂପରାର ମହତ୍ତ୍ୱ (୧୫୨-୧୫୬, ୧୬୪, ୨୩୬, ୨୫୮) | ମନୁ (୬୬), କୌଟିଲ୍ୟ (୭୩), ବୃହସ୍ପତି (୮୮) | ପ୍ଲେଟୋ (୪୧) |
| ବଦାନ୍ୟତା (୧୮୮, ୮୯, ୨୬୬) | ଅଶୋକ (୭୪), କହ୍ଲଣ (୯୬), ଆଲ୍‌ବେରୁନି (୯୭), କୌଟିଲ୍ୟ (୧୯୯) | — |
| ବାସଗୃହ ଯୋଗାଣ (୧୮୯, ୨୬୬, ୨୬୭) | — | କାଲ୍‌ଭିନ୍ (୧୩୩) |

| | | |
|---|---|---|
| ବିଧବା କଲ୍ୟାଣ (୨୬୧) | ଗାନ୍ଧୀ (୩୪୩) | ହମୁସବ (୩୨) |
| ବିବାହ ନିୟନ୍ତ୍ରଣ (୨୪୭-୨୪୮, ୨୫୦-୨୫୩) | ବୃହସ୍ପତି (୮୮), ଗାନ୍ଧୀ (୩୪୩) | ହମୁରବି (୩୨), ସୋଲନ୍ (୩୪), ପ୍ଲେଟୋ (୪୩), ମୁର୍ (୧୩୬) |
| ବିଳାସବ୍ୟସନ ବର୍ଜନ (୧୯୨, ୨୯୫-୨୯୬) | ମନୁ (୬୬), ବୃହସ୍ପତି (୮୮) | ମେକ୍ୟାଭେଲି (୧୩୮) |
| ବିଶ୍ୱଭ୍ରାତୃଭାବ (୨୯୬, ୨୯୭) | ଅଶୋକ (୬୩), ବୃହସ୍ପତି (୯ ), ଶୁକ୍ର (୯୨), ରବୀନ୍ଦ୍ରନାଥ (୧୧୧, ୩୪୫), ରାମମୋହନ (୩୩୮), ବିବେକାନନ୍ଦ (୩୪୦), ଚିତ୍ତରଞ୍ଜନ (୩୪୧), ଗାନ୍ଧୀ (୩୪୩), ଗୋପବନ୍ଧୁ (୩୪୪), ରାଧାକୃଷ୍ଣନ୍ (୩୪୫) | ସେଣ୍ଟ ଅଗଷ୍ଟାଇନ୍ (୫୧), ଦାନ୍ତେ (୫୨), ମାର୍ସିଲିଓ (୫୨), |
| ବ୍ୟକ୍ତିଗତ ସମ୍ପତ୍ତିର ସୁରକ୍ଷା (୨୮୬) | ମନୁ (୭୦), | ଆରିଷ୍ଟୋଟଲ (୪୬), କାଲ୍ଭିନ୍ (୧୩୩), ମେଣଆନା (୧୩୫), ମେକ୍ୟାଭେଲି (୧୩୬), କାଣ୍ଟ (୩୨୦), ଗ୍ରୀନ୍ (୩୨୨), |
| ଭୂସଂସ୍କାର ଓ ବନ୍ଦୋବସ୍ତ (୧୮୯, ୧୮୯) | ଶୁକ୍ର (୯୩), ରାମମୋହନ (୩୩୮), ବିନୋବା (୩୪୭) | ସୋଲନ୍ (୩୪), ପିସିଷ୍ଟ୍ରେଟସ୍ (୩୪) |
| ମାନବବାଦ (୨୭୫, ୨୮୯, ୨୯୭) | ଅଶୋକ (୬୩), ଗାନ୍ଧୀ (୩୪୩), ରବୀନ୍ଦ୍ରନାଥ (୩୪୫), ରାଧାକୃଷ୍ଣନ (୩୪୫), ମାନବେନ୍ଦ୍ରନାଥ (୩୪୬) | ସକ୍ରେଟିସ୍ (୩୮), ମେଣଆନା (୧୩୫), ମୁର୍ (୧୩୬), ରସେଲ୍ (୨୦୦), ଗେବ୍ରିୟେଲ୍ (୩୩୨), ସାର୍ତ୍ରେ (୩୩୨), ହେଡ଼ଗେର୍ (୩୩୨) |

| | | |
|---|---|---|
| ଯଜ୍ଞାନୁଷ୍ଠାନ (୧୬୯-୧୭୨, ୧[illegible], ୨୭୭, ୨୯୮) | ଅଶୋକ (୭୪), ଶୁକ୍ର (୯୩) | — |
| ଯୌନସମ୍ପର୍କ ନିୟନ୍ତ୍ରଣ (୨୫୩-୨୫୭) | ବୃହସ୍ପତି (୮୮), ଗାନ୍ଧୀ (୩୪୩) | ପ୍ଲେଟୋ (୪୧, ୪୩) |
| ରାଜସ୍ୱ ନିୟନ୍ତ୍ରଣ (୧୮୮, ୧୮୯, ୨୮୭) | ଅଶୋକ (୭୪), ମନୁ (୬୭), କୌଟିଲ୍ୟ (୭୪), ବୃହସ୍ପତି (୮୯-୯୦), ଶୁକ୍ର (୯୧, ୯୨). ପରାଶର (୯୨), ଅଲ୍‌ବେରୁନି (୯୬), ରାମମୋହନ (୩୩୮) | ହମ୍ମୁରାବି (୩୨), ହବସନ୍, କୋଲେ, ରସେଲ୍ ଓ ସୋବେଲ୍ (୩୨୮) |
| ରାଜ୍ୟଗୋଷ୍ଠୀ ପରିକଳ୍ପନା (୨୯୬) | ଅଶୋକ (୭୩) | ସେନେକା (୫୧), ମାଲଙ୍କଥନ୍ (୧୩୦), ମୁର୍ (୧୩୬), ହେରିଙ୍ଗଟନ୍ (୩୧୬) |
| ରାଜ୍ୟରକ୍ଷା (୧୯୩, ୨୯୮) | କୌଟିଲ୍ୟ (୭୧, ୭୫, ୭୭), ବୃହସ୍ପତି (୮୯), ଶୁକ୍ର (୯୩) | ମେକ୍ୟାଭେଲି (୧୩୭) |
| ରାଷ୍ଟ୍ରୀୟ ସାର୍ବଭୌମତ୍ୱ (୨୯୮, ୩୪୯) | କୌଟିଲ୍ୟ (୭୧, ୭୨) | ଆରିଷ୍ଟୋଟଲ୍ (୪୪), ମାର୍ଟିନ୍ ଲୁଥର (୧୩୨), କ୍ୱିଗଲି (୧୩୩), ହବସ୍ (୩୧୬), ଫିଲମର୍ (୩୧୭) |
| ଶତ୍ରୁଦମନ (୮୫, ୫୬, ୧୯୩) | ମନୁ (୬୭, ୭୧), କୌଟିଲ୍ୟ (୭୦), ଶୁକ୍ର (୯୩) | ମେକ୍ୟାଭେଲି (୧୩୮) |

| | | |
|---|---|---|
| ଶାନ୍ତ ଓ ଅହିଂସା (୧୮୫, ୧୮୬, ୧୯୨, ୨୯୬) | ଅଶୋକ (୬୩), କୌଟିଲ୍ୟ (୧୧୧), ଗାନ୍ଧୀ (୩୪୩), ବିନୋବା (୩୪୬) | ପେରିକ୍ଲସ୍ (୩୬), ଟଲଷ୍ଟୟ (୩୩୧), ଥରୋ (୩୩୧) |
| ଶିଳ୍ପ ଓ ବାଣିଜ୍ୟର ବିକାଶ (୧୮୬, ୨୮୬-୨୮୮) | ବୃହସ୍ପତି (୯୦, ୯୩), ଗାନ୍ଧୀ (୩୪୪), ବିନୋବା (୩୪୬), ନେହରୁ (୩୪୯) | ହାମୁରାବି (୩୨), ଥିମିଷ୍ଟୋକ୍ଲେସ୍ (୩୪), ହବ୍ସନ୍, କୋଲେ, ରସେଲ୍ (୩୨୮) |
| ଶୋଷଣର ନିରୋଧ (୨୮୬, ୨୮୯, ୨୯୫) | ମନୁ (୭୦), ବିନୋବା (୩୪୬) | ମେକ୍ୟାଭେଲି (୧୩୭), ମାର୍କସ୍ (୩୨୪) |
| ଶ୍ରେଣୀବୈଷମ୍ୟ ଦୂରୀକରଣ (୨୮୯) | ଗାନ୍ଧୀ (୩୪୩), ବିନୋବା (୩୪୬), ନେହରୁ (୩୪୯) | ଏଣ୍ଟିସ୍ଥେନସ୍ (୩୮), ପ୍ଲେଟୋ (୪୦), ମାର୍କସ୍ (୩୨୪) |
| ସଂଗ୍ରାମ ନିରୋଧ ବା ସୀମିତ ଯୁଦ୍ଧ (୧୮୫, ୧୮୬, ୨୯୮) | ଅଶୋକ (୬୩), ମନୁ (୬୨), କୌଟିଲ୍ୟ (୭୭), ବୃହସ୍ପତି (୮୯), ଶୁକ୍ର (୯୨), ପରାଶର (୯୨), ଭୋଜରାଜ (୯୬), ଗାନ୍ଧୀ (୩୪୩), ନେହରୁ (୩୪୯) | ଆରିଷ୍ଟୋଟଲ୍ (୪୪, ୪୬), ମୁର୍ (୧୩୬), ମେକ୍ୟାଭେଲି (୧୩୮), କାଣ୍ଟ (୩୨୧) |
| ସର୍ବାସ୍ତୁ ରାଷ୍ଟ୍ରୀ ପରିକଳ୍ପନା (୨୮୬) | ଚିତ୍ତରଞ୍ଜନ (୩୪୧) | କାଣ୍ଟ (୩୨୧) |
| ସର୍ବାବାସ୍ତୁ ନିରୋଧ (୨୬୦-୨୬୨) | ରାମମୋହନ (୩୩୮), ଗାନ୍ଧୀ (୩୪୩) | — |

| | | |
|---|---|---|
| ସମୁଚିତ ଦଣ୍ଡବ୍ୟବସ୍ଥା (୯୮୭) | ମନୁ (୭୮-୭୦), କୌଟିଲ୍ୟ (୭୬) ବୃହସ୍ପତି (୮୬-୮୭), ଶୁକ୍ର (୯୩), ଭୋଜରାଜ (୯୭) | ହମୁରାବି (୩୧), ମୁର୍ (୧୩୬) |
| ସର୍ବଧର୍ମ ସମନ୍ୱୟ ବିସ୍ତାର (୨୦୨, ୨୦୩, ୨୨୮, ୨୩୦-୨୩୪, ୨୯୬) | ନେହରୁ (୩୪୮) | ମୁର୍ (୧୩୬) |
| ସାମାଜିକ ସାମ୍ୟଭାବନା (୨୭୫, ୨୭୬) | ଗାନ୍ଧୀ (୩୪୩, ୩୪୪) ବିନୋବା (୩୪୭), ନେହରୁ (୪୩୮) | ପ୍ଲେଟୋ (୩୯, ୪୧), ମୁର୍ (୧୩୬), ହେରିଙ୍ଗଟନ୍ (୩୧୭), ଲେନିନ୍ (୩୧୫) |
| ସାମୁଦ୍ରିକ ବାଣିଜ୍ୟର ବିରୋଧ (୨୮୮) | — | ପ୍ଲେଟୋ (୪୩) |
| ହିତୈଷୀ ରାଜତନ୍ତ୍ର (୨୭୫-୨୭୭) | ବୃହସ୍ପତି (୮୮) | ସେନେକା (୫୧) |
| କ୍ଷମତାର ପ୍ରତିରୋଧ ଓ ସନ୍ତୁଳନ (୩୦୨, ୩୦୩) | — | ପୋଲିବିୟସ୍ (୭୦), ମଣ୍ଟେସ୍କ୍ୟୁ (୩୧୦) |



# ସହାୟକ ଗ୍ରନ୍ଥସୂଚୀ


॥ ସଂସ୍କୃତ ॥

ଆଚାର୍ଯ୍ୟ, ନାରାୟଣ ରାମ : ଈଶାଦି ବିଂଶୋତ୍ତର ଶତ ଉପନିଷଦଃ (ନିର୍ଣ୍ଣୟସାଗର ପ୍ରେସ୍, ବମ୍ବେ, ୧୯୪୮)

ଆପ୍ଟେ, ଏଇଚ. ଏନ୍ : ତୈତ୍ତିରୀୟ ଆରଣ୍ୟକ (ପୁନା, ୧୮୯୮)

ଆୟଙ୍ଗାର, କେ. ଭି. ରଙ୍ଗସ୍ୱାମୀ : ବୃହସ୍ପତି ସ୍ମୃତି (ଗାୟକୱାଡ଼ ଓରିଏଣ୍ଟାଲ୍ ସିରିଜ, ବରୋଦା, ୧୯୪୧)

ଓ୍ୱେବର୍, ଏ : ଶତପଥ ବ୍ରାହ୍ମଣ (ଲଣ୍ଡନ, ୧୮୫୫)
ତୈତ୍ତିରୀୟ ସଂହିତା (ବର୍ଲିନ, ୧୮୭୧)

ଔଫ୍ରେଚ୍ଟ୍, ଅମାସ୍ : ଐତରେୟ ବ୍ରାହ୍ମଣ (ବନ୍, ୧୮୭୯)

କର, ଅନନ୍ତରାମ : କୌଟିଲ୍ୟ ଅର୍ଥଶାସ୍ତ୍ରମ (୨ ଭାଗ) (ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୬୩)

କର ଗୋପୀନାଥ : ଯାଜ୍ଞବଲ୍କ୍ୟ ସ୍ମୃତି (ଧର୍ମଗ୍ରନ୍ଥ ଷ୍ଟୋର, କଟକ, ୧୯୮୪)

କନ୍ତୱାଡ଼କର, ଆର୍ : ମହାଭାରତ
ଭଣ୍ଡାରକର ଓରିଏଣ୍ଟାଲ୍ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ (ପୁନା ୧୯୨୯-୩୩)

କିଥ୍, ଏ. ବି. : ଐତରେୟ ଆରଣ୍ୟକ (ଅକ୍ସଫୋର୍ଡ, ୧୯୦୯)

ଗମ୍ଭୀରାନନ୍ଦ, ସ୍ୱାମୀ : ଉପନିଷଦ (୨ ଖଣ୍ଡ) (ଅଦ୍ୱୈତ ଆଶ୍ରମ, କଲିକତା, ୧୯୫୭)

ଚନ୍ଦ୍ର, ମୋହିତ : ଶୁକ୍ର ନୀତିସାର (ବମ୍ବେ, ୧୯୧୦)

ଦାସ, ନୀଳକଣ୍ଠ : ଶ୍ରୀମଦ୍ ଭଗବତ୍ ଗୀତା (ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୬୮)

ଦାସ, ପ୍ରିୟବ୍ରତ : ଋଗ୍‌ବେଦ ସୌରଭ (ବୈଦିକ ଅନୁଷ୍ଠାନ ପ୍ରତିଷ୍ଠାନ, ଭୁବନେଶ୍ୱର ୧୯୮୧-୮୫)

,, ଅଥର୍ବବେଦ ସୌରଭ ,,

,, ଚତୁର୍ବେଦ ସୂକ୍ତ ସଞ୍ଚୟିକା ,,

ବ୍ୟାସ, କ୍ଷେମରାଜ ଶ୍ରୀକୃଷ୍ଣ : ଗରୁଡ଼ ପୁରାଣ (ବମ୍ବେ, ୧୯୦୬)
ଧର, ଆର୍ତ୍ତିତ୍ରାଣ : ପରାଶର ସଂହିତା, (ଧର୍ମଗ୍ରନ୍ଥ ଷ୍ଟୋର, କଟକ, ୧୯୮୩)
ପଣ୍ଡିତ, କନ୍ହୈୟାଲାଲ : ମାର୍କଣ୍ଡେୟ ପୁରାଣ (ବମ୍ବେ, ୧୯୧୦)
ପଣ୍ଡିତ, ହୃଷୀକେଶ : ବରାହ ପୁରାଣ (କଲିକତା, ୧୯୮୩)
ବାଜପେୟୀ, ବିଦ୍ୟାଧର : ନିତ୍ୟାଚାର ପଦ୍ଧତି (ଏସିଆଟିକ୍ ସୋସାଇଟି, ୧୯୦୩)
ବୁହ୍ଲର, ଜି : ଆପସ୍ତମ୍ବ ଧର୍ମସୂତ୍ର (୨ ଖଣ୍ଡ) ବମ୍ବେ (୧୮୬୮ ଓ ୧୮୭୨)
ମଣ୍ଡଲିକ, ଭି. ଏନ୍ : ପଦ୍ମ ପୁରାଣ (ପୁନା, ୧୮୯୪)
ମୁଖୋପାଧ୍ୟାୟ, ନୀଲମଣି : କୂର୍ମ ପୁରାଣ (କଲିକତା, ୧୮୯୦)
ମିଶ୍ର, ଜ୍ୱାଲାପ୍ରସାଦ : କାମନ୍ଦକୀୟ ନୀତିସାର (ବମ୍ବେ, ୧୯୧୦)
ମିଶ୍ର, ରାଜେନ୍ଦ୍ର ଲାଲ : ବାୟୁ ପୁରାଣ (କଲିକତା, ୧୮୮୦)
,, ଗୋପଥ ବ୍ରାହ୍ମଣ (କଲିକତା, ୧୮୭୨)
,, ତୈତ୍ତିରୀୟ ବ୍ରାହ୍ମଣ (କଲିକତା, ୧୮୭୦)
ରାଧାକ୍ରିଷ୍ଣାନ୍, ସର୍ବପଲ୍ଲୀ : ଭଗବଦ୍ ଗୀତା (ସଂପାଦନା ଓ ଅନୁବାଦ)
(ଏଲେନ୍ ଆଣ୍ଡ ଆନ୍ଓ୍ୱିନ୍, ଲଣ୍ଡନ, ୧୯୫୩)
ରାୟ, ରାମଶଙ୍କର : ମନୁ ସଂହିତା (ସଂପାଦନା ଓ ଅନୁବାଦ)
(ଧର୍ମଗ୍ରନ୍ଥ ଷ୍ଟୋର, କଟକ, ୧୯୬୮)
ଶାସ୍ତ୍ରୀ, ଗଣପତି : କାମନ୍ଦକ ନୀତିସାର (ସଂପାଦନା)
(ତ୍ରିଭନ୍ଦ୍ରମ ସଂସ୍କୃତ ସିରଜ୍, ୧୯୧୨)
ଷ୍ଟେଇନ୍, ଏମ୍. ଏ : କହ୍ଲଣ କୃତ ରାଜତରଙ୍ଗିଣୀ (ବମ୍ବେ, ୧୮୯୨)
ଷ୍ଟେଞ୍ଜଲ୍ର, ଏ. ଏଫ୍ : ଗୌତମ ଧର୍ମସୂତ୍ର (ଲଣ୍ଡନ ୧୮୭୬)
,, ପରାଶର ଗୃହ୍ୟସୂତ୍ର (ଲିପ୍ଜିଗ୍, ୧୮୭୬)
ସରକାର, ବି. କେ : ଶୁକ୍ର ନୀତିସାର (ଆଲ୍ହାବାଦ, ୧୯୧୨)
ସ୍ୱାମୀ ସର୍ବାନନ୍ଦ : ମୁଣ୍ଡକୋପନିଷଦ୍-ଶ୍ରୀ ରାମକୃଷ୍ଣ ମଠ, ମାନ୍ଦ୍ରାଜ, ୧୯୫୬
,, ଈଶାବାସ୍ୟୋପନିଷଦ୍ ,, ,, ୧୯୬୪
ବୃହଦାରଣ୍ୟକୋପନିଷଦ୍ ୧୯୬୨
କାଳିଦାସ ଗ୍ରନ୍ଥାବଳୀ (ବାରଣାସୀ ହିନ୍ଦୁ ବିଶ୍ୱବିଦ୍ୟାଳୟ, ୧୯୭୬)

ସ୍ୱାମୀ ସର୍ବାନନ୍ଦ : ମତ୍ସ୍ୟ ପୁରାଣ (ଆନନ୍ଦାଶ୍ରମ ସଂସ୍କୃତ ସିରିଜ୍, ପୁନା, ୧୯୦୭)
ଅଗ୍ନି ପୁରାଣ (ବିବ୍ଲିଓଥେକା ଇଣ୍ଡିକା, କଲିକତା, ୧୮୭୩)
ବିଦୁର ନୀତି (ଗୀତା ପ୍ରେସ୍, ଗୋରଖପୁର, ୧୯୭୪)

॥ ଓଡ଼ିଆ ॥

ଆଚାର୍ଯ୍ୟ, ଡ଼: ବୃନ୍ଦାବନଚନ୍ଦ୍ର : ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ (ଗ୍ରନ୍ଥ ମନ୍ଦିର, କଟକ, ୧୯୭୯)

ଆଚାର୍ଯ୍ୟ ଡ଼: ସୁଦର୍ଶନ : ଓଡ଼ିଆ କାବ୍ୟ କୌଶଳ (ପତିତପାବନ ନିକେତନ, ବ୍ରହ୍ମପୁର, ୧୯୮୩)
,, ସୋମଦେବକୃତ କଥା ସରିତ ସାଗର (ଅନୁବାଦ)

କର, ଚନ୍ଦ୍ରପାକ୍ଷ : ଉତ୍କଳରେ ବୌଦ୍ଧଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୧)

ଜେନା କୁଳମଣି : ଶ୍ରୀ ଗଣେଶ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୭୯)

ଜେନା, ଡ଼: ଭ୍ରମରବର : ଆଧୁନିକ ରାଜନୀତି ବିଜ୍ଞାନ (କିତାବ୍ ମହଲ, କଟକ-୧୯୮୫)

ଦାଶ, ଅଭିନ୍ନଚନ୍ଦ୍ର : ବୈଦିକ ସାହିତ୍ୟ ଓ ସଂସ୍କୃତି (ଗ୍ରନ୍ଥମନ୍ଦିର, କଟକ-୧୯୭୮)

ଦାଶ, ସର୍ବେଶ୍ୱର : ମହାକବି ସାରଳା ଦାସ -ଏଜନ-୧୮୮୩

ଦାସ, ପ୍ରିୟବ୍ରତ : ବେଦ ମନୁଷ୍ୟକୃତ କି ? (ବୈଦିକ ଅନୁସନ୍ଧାନ ପ୍ରତିଷ୍ଠାନ, ଭୁବନେଶ୍ୱର, ୧୯୭୬)

ଦାସ, ଦୀନକୃଷ୍ଣ : ଅଳଙ୍କାର ବୋଲି (ଅରୁଣୋଦୟ ପ୍ରେସ୍, କଟକ, ୧୯୬୩)

ଦାସ, ଶ୍ରୀଧର : ଜାତକ କାହାଣୀ (୪ ଖଣ୍ଡ) (ଗ୍ରନ୍ଥ ମନ୍ଦିର, କଟକ, ୧୯୮୩)

ଦାସ, ପଣ୍ଡିତ ସୂର୍ଯ୍ୟନାରାୟଣ : ଓଡ଼ିଆ ସାହିତ୍ୟର ଇତିହାସ (ଗ୍ରନ୍ଥ ମନ୍ଦିର, କଟକ, ୧୯୭୮)
,, ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୭୬)

ଦାସ, ସୂର୍ଯ୍ୟନାରାୟଣ : ଯୁଗଜନକ ମହାତ୍ମା ଗାନ୍ଧୀ (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୭୬) ଯୁଗସ୍ରଷ୍ଟା ନେହରୁ-ଏଜନ-୧୯୭୭ ଜୀବନୀ ଓ ଜାଗରଣ-ଏଜନ-୧୯୮୦

ଦାଶ, ସୂର୍ଯ୍ୟନାରାୟଣ : ସାଂପ୍ରତିକ ପ୍ରବନ୍ଧ (ନବ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୭୦)

,, ଯୁଗନେତ୍ରୀ ଇନ୍ଦିରା (ନବ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୭୮)

ଦେବ, ନରସିଂହ : ଇତିହାସ ଏକ ରୂପାନ୍ତର (ମାତୃସେବା ଗ୍ରନ୍ଥମାଳା, ଚକଟୀ, ୧୯୮୮)

ନନ୍ଦଶର୍ମା, ପଣ୍ଡିତ ଗୋପୀନାଥ : ଶ୍ରୀ ଭାରତ ଦର୍ପଣ (ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୬୮)

ନନ୍ଦ, ଡ଼: ବାସୁଦେବ : ରାଜନୀତି ତନ୍ତ୍ର ଓ ଶାସନତନ୍ତ୍ର (ବୁକ୍ସ ଆଣ୍ଡ ବୁକ୍ସ, କଟକ, ୧୯୮୫)

ପଟ୍ଟନାୟକ, ପଠାଣି : ଓଡ଼ିଆ ସାହିତ୍ୟର ଇତିହାସ (ନାଳନ୍ଦା, କଟକ, ୧୯୭୮)

ପାଣିଗ୍ରାହୀ, ଡ଼: କୃଷ୍ଣଚନ୍ଦ୍ର : ସାରଳା ସାହିତ୍ୟରେ ଉତ୍କଳର ଐତିହାସିକ ଚିତ୍ର, (ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ୧୯୭୬)

,, ପ୍ରବନ୍ଧ ମାନସ (କିତାବ ମହଲ, କଟକ, ୧୯୭୨)

ପୂଜାରୀ, ମଦନମୋହନ : ବୈଦ୍ୟନାଥ ବିରଚିତ ଜାତକ ପାରିଜାତ (ଅନୁବାଦ) (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୨)

ମହତାବ, ହରେକୃଷ୍ଣ : ଗ୍ରୀକ୍ ବର୍ଷର ଗଣତନ୍ତ୍ର (ନାଳନ୍ଦା, କଟକ, ୧୯୮୬)

ମହାନ୍ତି, ଡ଼: ଆର୍ତ୍ତବଲ୍ଲଭ : ସାରଳା ମହାଭାରତ (ସାଂସ୍କୃତିକ ବ୍ୟାପାର ବିଭାଗ, ଭୁବନେଶ୍ୱର ୧୯୭୨)

ମହାନ୍ତି, ଡ଼: ଉପେନ୍ଦ୍ରନାଥ : ବିପ୍ଳବୀ କବି ସାରଳା ଦାସ (ସଂପାଦନା) (ଆଙ୍ଗ୍ଲୋବୈଦିକ ମହାବିଦ୍ୟାଳୟ, ଟିଟିଲାଗଡ଼, ୧୯୮୩)

ମହାନ୍ତି, ଡ଼: ବଂଶୀଧର : ଓଡ଼ିଆ ସାହିତ୍ୟର ଇତିହାସ (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୮୨)

,, ଶ୍ରୀ ଜଗନ୍ନାଥ, ଭୁବନେଶ୍ୱର, ୧୯୮୧

ମହାନ୍ତି, ଡ଼: ବିଚିତ୍ରାନନ୍ଦ ଓ ଅନ୍ୟାନ୍ୟ : ଓଡ଼ିଶାର ଦେବଦେବୀ (ଉତ୍କଳ ପାଠକ ସଂସଦ, କଟକ, ୧୯୮୧)

ମହାନ୍ତି ସୁରେନ୍ଦ୍ର : ଓଡ଼ିଆ ସାହିତ୍ୟର ଆଦିପର୍ବ (କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ, ୧୯୮୩)

,, ଓଡ଼ିଆ ସାହିତ୍ୟର କ୍ରମବିକାଶ (ଗ୍ରନ୍ଥ ମନ୍ଦିର, କଟକ, ୧୯୭୮)

ମହାପାତ୍ର, କେଦାରନାଥ : ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ (ଭୁବନେଶ୍ୱର, ୧୯୭୩)

ମହାପାତ୍ର, ଗୋପୀନାଥ : ସଂସ୍କୃତ ସାହିତ୍ୟର ଇତିହାସ (ନାଳନ୍ଦା, କଟକ, ୧୯୭୭)

ମହାପାତ୍ର, ପଣ୍ଡିତ ଗୋବିନ୍ଦଚନ୍ଦ୍ର : ମହାଭାରତ (ଅନୁବାଦ) (ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୬୪-୬୫)

ମାନସିଂହ, ମାୟାଧର : ଓଡ଼ିଆ ସାହିତ୍ୟର ଇତିହାସ (ଗ୍ରନ୍ଥମନ୍ଦିର, କଟକ, ୧୯୮୫)

,, ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ (ସଂପାଦନା) (୪ ଖଣ୍ଡ) (ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ୧୯୬୩)

ମିଶ୍ର, ଡ଼. କାହ୍ନୁଚରଣ : ଓଡ଼ିଆ ସାହିତ୍ୟରେ ଧର୍ମଧାରା (ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୮)

ମିଶ୍ର, ଡ଼: ଗଣେଶ୍ୱର : ବୈଦିକ ଧର୍ମଚେତନା— ଏକ ଦାର୍ଶନିକ ବିଚାର (ସନ୍ତୋଷ ପବ୍ଲିକେଶନସ୍, କଟକ, ୧୯୮୫)

ମିଶ୍ର, ଡ଼: ପ୍ରସନ୍ନକୁମାର : ପୂର୍ବ-ଭାରତର ହିନ୍ଦୁ ଲୋକମିଥ୍ : (ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୧)

ମେହେର, ମନୋହର : ସ୍ତ୍ରୀ ପୁଷ୍ପବତୀ ଫଳ (ଅନୁବାଦ) ଲକ୍ଷ୍ମୀଧର ଦାସ, କଟକ, ୧୯୫୭)

ରଥ, ଡ଼: ଦୀନବନ୍ଧୁ : ସାରଳା ମହାଭାରତରେ ସାମାଜିକ ଜୀବନ (ଗ୍ରନ୍ଥ ମନ୍ଦିର, କଟକ, ୧୯୭୪)

ରଥ, ମୃତ୍ୟୁଞ୍ଜୟ : ଶାରଳା ଚରିତ (ମୁକୁର ପ୍ରେସ୍, କଟକ, ୧୯୧୧)

ରାଉଳ, ରମାକାନ୍ତ : ଝଙ୍କଡ଼ ସାରଳା (୧୯୮୯)

ଶତପଥୀ, ଡ଼: ପ୍ରତିଭା : କହ୍ଲଣ (ସୋମନାଥ ଧରଙ୍କ ମୂଳଲେଖାର ଅନୁବାଦ) ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ ୧୯୮୮

ଶ୍ରୀଚନ୍ଦନ, ଡ଼: ଗୋପାଳକୃଷ୍ଣ : କରବାଳ, କରତାଳ, ହରତାଳ (ଶ୍ରୀଚନ୍ଦନ ନିଳୟ, କଦଳିବାଡ଼ି, ପୁରୀ ୧୯୮୪)

ସାହୁ, ଡ଼: କୃଷ୍ଣଚରଣ : ସାରଳା ମହାଭାରତ ସଂପାଦନା ଓ ଆଲୋଚନା
(ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୭୮)

ସାମନ୍ତରାୟ, ଡ଼: ନଟବର : ମୁଁ କାହାର ଗଣେଶଙ୍କ କଥା (ବାଣୀଭବନ,
ଭୁବନେଶ୍ୱର, ୧୯୭୬)

ସାହୁ, ଡ଼: ନବୀନକୁମାର : ଓଡ଼ିଆ ଜାତିର ଇତିହାସ (ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୪)

ସିଂହ, ଜଗବନ୍ଧୁ : ପ୍ରାଚୀନ ଉତ୍କଳ (ଓଡ଼ିଶା ସାହିତ୍ୟ ଏକାଡ଼େମୀ,
ଭୁବନେଶ୍ୱର, ୧୯୬୪)

ସିଂହ, ରାଜା କୃଷ୍ଣଚନ୍ଦ୍ର : ମହାଭାରତ (ଜଗଦୀଶ ପ୍ରେସ୍, ବୌଦ୍ଧ, ୧୯୦୭)

ସ୍ତୁତ୍ୟାନନ୍ଦ, ସ୍ୱାମୀ : ରାଜଗୋପାଳାଚାରୀଙ୍କ ରାମକୃଷ୍ଣ ଉପନିଷଦ (ଅନୁବାଦ)
(ରାମକୃଷ୍ଣ ମଠ, ଭୁବନେଶ୍ୱର, ୧୯୭୬)

ଓଡ଼ିଶାର ସାମରିକ ସଂସ୍କୃତି (ଓଡ଼ିଶା କଲଚରାଲ
ଫୋରମ ସଂପାଦିତ, ଭୁବନେଶ୍ୱର ୧୯୮୧)

ସାରଳା ସାହିତ୍ୟରେ ଧର୍ମ (ଶାରଳା ସ୍ମାରକ ସଂପାଦିତ)
(ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୮୦)

ସାରଳା ମହାଭାରତ : ଚରିତ୍ର ଚିତ୍ରଶାଳା (ସାରଳା
ସାହିତ୍ୟ ସଂସଦ ସଂପାଦିତ) ଗ୍ରନ୍ଥ ମନ୍ଦିର, କଟକ, ୧୯୮୩

ସାରଳା ସାହିତ୍ୟ ସମୀକ୍ଷା (ସାରଳା ସାହିତ୍ୟ ସଂସଦ
ସଂପାଦିତ) ଖାରବେଳ ଶ୍ରୀ ବୁକ୍ ଷ୍ଟୋର, କଟକ, ୧୯୮୩

ସାରଳା ସୃଷ୍ଟିର ଦିଗଦିଗନ୍ତ (ସାରଳା ସାହିତ୍ୟ ସଂସଦ
ସଂପାଦିତ) ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୯

ସାରଳା ଦାସ କୃତ ମହାଭାରତ : (ରାଧାରମଣ ପୁସ୍ତକାଳୟ,
କଟକ, ୧୯୮୧)

,, ଚଣ୍ଡୀପୁରାଣ (କଟକ ଟ୍ରେଡ଼ିଂ କମ୍ପାନୀ,
କଟକ, ୧୯୭୨)

,, ବିଲଙ୍କା ରାମାୟଣ (ବାଣୀଭଣ୍ଡାର, ବ୍ରହ୍ମପୁର)

,, ବିଚିତ୍ର ରାମାୟଣ (ସଂ ମିଶ୍ର, ସଚ୍ଚିଦାନନ୍ଦ,
ଭୁବନେଶ୍ୱର ୧୯୮୦)

## ॥ ଇଂରାଜୀ ॥

Afanasyev, V. Marxist Philosophy (Foreign Language Publishing House, Moscow, 1964.)

Asirvatham, Dr. Eddy. Political Theory, (The Upper India Publishing House (P) Ltd, Lucknow (11th Ed) 1980.)

Avinashilingam, T. S. Educational Philosophy of Swami Vivekananda (Sri Ramkrishna Mission Vidyalaya, Coimbatore, 1964)

Barker, Sir Ernest. Greek Political Theory (B. I. Publications, India, 1980)

Bhasam, Dr. A. L. The wonder that was India (Rupa & Co., India, 1971)

Buhler, G. The Laws of Manu (Oxford, 1886)

Collins, Larry & Lapierre, Dominique Freedom at Midnight (Vikash Publishing House, New Delhi, 9th Ed. 1976)

Das, Durga. India from Curzon to Nehru & After (Rupa & Co. India, 1974)

Das, Dr. Harihar. Some issues and ideas in Indian Govern ment and politics (2nd Ed.) (Grantha Mandir, Cuttack, 1982)

Das, Dr. Harihar. Freedom Movement and National Integration in India (Vidyarthi Vawan, Berhampur, 1986)

Das Dr. M. N. World History (Vidyapuri, Cuttack, 1981)

Das, R. K. The legends of Jagannath Puri (Pragati Udyog, Bhadrak, 1978)

Dasgupta, Hemendranath. Deshabandhu Chittaranjan Das (Publications Division, New Delhi, 1960)

Deogirikar, T. R. Gopal Krishna Gokhale (Publications Division, New Delhi, 1969)

Ghosh, N. N. Early History of India (The Indian Press (P) Ltd, Allahabad, 1981)

Ghosh, Sunit. Orissa in Turmoil (BookLand International, Bhubaneswar, 1979)

Hitler, Adolf. My struggle (Sagar Publications, New Delhi, 1972)

Jog, N. G. Lokamanya Balagangadhar Tilak (Publications Division, New Delhi, 1970)

Johari, J. C. Indian Politics (Vishal Publications, 1987)

Jolli, Julius. Sacred books of the East (Oxford, 1886)

Kamath, M V. (Ed.) The India of Our Dreams (I. B. H. Publishing Co., Bombay, 1982)

Kapoor, A. C. Principles of Political Science (S Chand & Co, New Delhi, 1984)

Karnik, V. B. M. N. Ray (National Book Trust, India, 1980)

Ketlbey, C. D. M. A History of Modern Times (George G. Harrap & Co., London, 1961)

Khrushchov, N. S. Socialism and Communism (Foreign Language Publishing House, Moscow, 1963)

Kothari, RaJani. Democratic Polity and social change in India (Allied Publishers, New Delhi, 1976)

Laski, H. J. Introduction to Politics (Unwin Books, London, 1968)

Leacock, Stephen. The Elements of Political Science Constable, London, 1924)

Lunia, B. N. Some Historians of Medieval India (L. N. Agrawal, Agra, 1969)

Lunia, B. N. Evolution of Indian Culture (10th Ed.) (L. N. Agrawal, Agra, 1987)

Madhok, Balraj. Indianisation (Hind Pocket Books, New Delhi, 1971)

Mahajan, V. D. Ancient India (S. Chand & Co., New Delhi, 1983)

Majumdar, B. B. Principles of Political Science and Government—Mondal Bros & Co, Calcutta, 1956)

Majumdar B. C. Typical Selection from Oriya Literature (Vol I) (Calcutta University, 1921)

Majumdar, Dr. R. C. & others An Advanced History of India, (Macmillan & Co London, 1967)

Masani R. P. Dadabhai Naoroji (Publications Division, New Delhi, 1960)

Maxmuller, F. The six systems of Indian Philosophy (Oxford, London, 1899)

Mookerjee, Dr. R. K. Hindu civilization (2 Vols) (Bharatiya Vidya Bhavan, Bombay, 1964)

Mukherjee, Pravat. The History of Gajapati Kings of Orissa (Kitab Mahal, Cuttack, 1981)

Munshi, K. M. & Diwakar R. R. Peageant of Great Lives (4 Vols) (Bharatiya Vidya Bhavan, Bombay, 1964)

Munshi, K. M. Warnings of History—Trends in Modern India (2nd Ed.) (Bharatiya Vidya Bhavan, Bombay, 1960)

Nayar, Kuldip. India after Nehru (Vikash Publishing House, india, 1960)

Nehru, Jawaharlal. The Discovery of India (Asia Publishing House, India, 1960)

Nirvedenanda, Swami. Swami Vivekananda on India and her problems (Advaita Ashram, Calcutta, 1963)

Noble, M. E. Footfalls of Indian History (Advaita Ashram Calcutta, 1956)

Panigrahi, Dr. K. C. History of Orissa Kitab Mahal, (Cuttack, 1983)

Pant, S. C. History of Western Political Thought (2 parts) (Prakashan Kendra, Lucknow, 1983)

Prasad Dr. Beni. The State in Ancient India (The Indian Press (P) Ltd., Allahabad, 1974)

Prasad, Iswari. A short History of Muslim Rule in India (The Indian Press (P) Ltd, Allahabad, 1982)

Punjabi, K. L. The Indomitable Sardar (Bharatiya Vidya Bhavan, Bombay, 1969)

Radhakrishnan, S. Principal Upanishads (George Allen & Unwin, London, 1953)

Towards a New World (Hind Pocket Books, New Delhi, 1980)

Kalki or the Future of Civilization (Kalyani Publishers, Ludhiana, 1974)

The cultural heritage of India (5 Vols. Edited with Dr. S. K. Chatterji & others) (Ram Krishna Mission Institute of Culture, Calcutta, 1975)

Rajgopalachari, C. Mahabharata (25th Ed.) (Bharatiya Vidya Bhavan, Bombay, 1983)

Rajguru, S. N. History of the Gangas (2 Vols) (Orissa State Museum, Bhubaneswar, 1968)

Rao, V. V. A History of Political Theories (S. Chand & Co., New Delhi, 1983)

Ray, D. K. Netaji the Man (Bharatiya Vidya Bhavan, Bombay, 1966)

Roy, M. R. A Brief Survey of World History (2 Vols) (Orient Longmans Ltd., India, 1949)

Russell, Bertrand. Political Ideals (George Allen & Unwin Ltd., London, 1963)

Sabine, George H. A History of Political Theory (I B H. Publishing Co. India, 1973 & George G. Harrap & Co. Ltd. London, 3rd Ed. 1956)

A History of Political glory (Newyork, 1937)

Sahu, Dr. N. & others. History of Orissa (Nalanda, Cuttack, 1979)

Schweitzer, Albert The Decay and the Restoration of Civilization (George Allen & Unwin Ltd. London, 1961)

Sarkar, Sir Jadunath. India through the Ages (M. C. Sarkar & Sons (P) Ltd, Calcutta, 1960)

Sharma, D S. Hinduism through the Ages (Bharatiya Vidya Bhavan, Bombay 3rd Ed. 1967)

Sharma, S. R. The Crescent in India (L. N. Agrawal, Agra, 1983)

Shastri, Neelakantha Administration in India-A Historical Review (Bharatiya Vidya Bhavan, Bombay, 1967)

Sorensen, S. An Index to the names of Mahabharata (Motilal Banarasidas, Calcutta, 1963)

Subramanyam, R. The Suryavamsi Gajapatis of Orissa (Andhra University, Vishakhpatna, 1957)

Sundaram, Dr. K. The Simhachalam Temple (Simhachalam Devastanam 2nd Ed. 1984)

Tagore, Rabindranath. The Religion of Man (George Allen & Unwin Ltd. London, 1967)

Thomas, Henry & Thomas, Lee. Living Biographies of Religious Leaders (Bharatiya Vidya Bhavan Bombay, 1959)

Toye Hugh. Subhash Chandra Bose – The Springing Tiger (Jaico Publishing House, Bombay, 4th Ed. 1970)

Vijayraghavan, S & Jayaram, R. Political Thought (Sterling Publishers (P) Ltd. 1985)

Wayper, C. L. Political Thought (The English University Press, London, 1958)

Columbia Encyclopaedia (Columbia University Press, 3rd Ed. 1968)

॥ ହିନ୍ଦୀ ॥

ଉପାଧ୍ୟାୟ, ବଳଦେବ : ସଂସ୍କୃତ ସାହିତ୍ୟ କା ଇତିହାସ, ବାରାଣସୀ, ୧୯୬୮

ବାଚସ୍ପତି, ଗୈରୋଲ ଓ ଝା, ତାରଣୀଶ : ଚଣ୍ଡେଶ୍ୱର କୃତ ରାଜନୀତି ରତ୍ନାକର (ମୂଳ ସଂସ୍କୃତ ଓ ଅନୁବାଦ) ଚୌଖମ୍ବା ସଂସ୍କୃତ ସିରିଜ, ବାରାଣସୀ, ୧୯୭୦

ବାଜପେୟୀ, ଡ଼: ରାମଚନ୍ଦ୍ର : ବାର୍ହସ୍ପତ୍ୟ ରାଜ୍ୟ ବ୍ୟବସ୍ଥା (ଗବେଷଣାମୂଳକ ନିବନ୍ଧ ଗ୍ରନ୍ଥ) ଚୌଖମ୍ବା ବିଦ୍ୟାଭବନ, ବାରାଣସୀ, ୧୯୬୬

## ॥ ପତ୍ରପତ୍ରିକା ॥

କର, ଚିତ୍ତରଞ୍ଜନ (ସଂ) : ସହକାର (ଅକ୍ଟୋବର, ୧୯୭୩) ସାରସ୍ୱତ ପ୍ରେସ, କଟକ

ଗଡ଼ନାୟକ, ରାଧାମୋହନ (ସଂ) : କୋଣାର୍କ (୬୫ତମ ସଂଖ୍ୟା ୧୯୮୭)
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

ଦାସ, ସୂର୍ଯ୍ୟନାରାୟଣ ଓ ଅନ୍ୟାନ୍ୟ (ସଂ) : ଫଲ୍‌ଗୁ (ପୂଜାଅର୍ଘ୍ୟ-୧୯୮୩)
ଫଲ୍‌ଗୁ ସାହିତ୍ୟ ସଂସଦ, ବ୍ରହ୍ମପୁର

ପରଜା, ରବୀନ୍ଦ୍ରକୁମାର (ସଂ) : ନବରବି (ଅକ୍ଟୋବର ଓ ନଭେମ୍ବର, ୧୯୭୦)
ପ୍ରଫୁଲ୍ଲ ସରକାର ଷ୍ଟ୍ରୀଟ, କଲିକତା-୧୩

ମହତାବ, ହରେକୃଷ୍ଣ (ସଂ) : ପ୍ରଜାତନ୍ତ୍ର (୮।୫।୮୮) ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ

ମହାପାତ୍ର, ଲକ୍ଷ୍ମୀନାରାୟଣ (ସଂ) : ଦୈନିକ ଆଶା (ଷଷ୍ଠ ବାର୍ଷିକ ସାହିତ୍ୟ ସଂଖ୍ୟା,
୧୯୮୮) ବ୍ରହ୍ମପୁର

ମିଶ୍ର, ବାଳକୃଷ୍ଣ (ସଂ) : ନୟୁତ (ଜୁନ୍, ୧୯୮୯) କଟକ

ରଥ, ରାଧାନାଥ (ସଂ) : ସମାଜ (ତା ୧୩।୪।୮୮ ଓ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା—
୧୯୭୮ ଓ ୧୯୭୫) କଟକ

ରାୟ, ଗୌରୀଶଙ୍କର : ଉତ୍କଳ ଦୀପିକା (୬୩ ଭାଗ, ୭ମ ସଂଖ୍ୟା, ତା ୧୫।୨।୧୮୬୮)

Hattangadi, Sekhar (Ed.)—Mirror (January 1981) Bombay

Kamath, M. V. (Ed.)—The Illustrated Weekly of India
(Dec. 21-27, 1980) Bombay.

Lal, Jagdish (Ed.)—Laws and Flaws (Vol. XXVII No. 3
dt 15-3-88) Law Publishers, Allahabad.

Mathew, K. M. (Ed.) —The Week (Vol. 5 No. 43 dt. 11-10-87, Vol. 6 No. 14 dt. 27-3-88 & No. 24 dt 5-6-88) & Manorama Year Book 1988 Malayala Manorama, Kottayam, Kerala.

Mohanty, A. B. (Ed.)—Prachi (Vol. II 1932) Cuttack.

Shourie, Arun (Ed) Indian Express (22. 4. 88) Vizianagram

The Indian Journal of Political Science (Oct.-Dec. 1975) New Delhi.

ଯେପରି କ୍ଷୁଧାର ପ୍ରଖରତାରେ ଖାଦ୍ୟର ମିଷ୍ଟତା ଅନୁଭୂତ, ଦ୍ରବ୍ୟର ବର୍ଣ୍ଣ ଉପରେ ହିଁ ବାଣିଜ୍ୟର ସଫଳତା, ସେହିପରି ଏବଂ ଶ୍ରୋତାର ରୁଚିବା ଶକ୍ତି ଉପରେ ବକ୍ତାର ସାର୍ଥକତା ନିର୍ଭରଶୀଳ, ସେହିପରି ପ୍ରତ୍ୟେକ କ୍ଷେତ୍ରରେ କର୍ମର ସଙ୍ଗରେ ହିଁ ଜୀବନର ସାର୍ଥକତା ନିହିତ ।

(ପୃ. ୬୭୫)

*　　*　　*

ପ୍ରଜାକୁଳର ସମୂହହିତସାଧନ ଓ ଉନ୍ନତି କରିବା ସଂପାଦନ ଯେପରି ରାଜାର ଶାସନ ସଂକ୍ରାନ୍ତୀୟ ଅଧିକାରର ମୂଳ ଆଧାର, ସେପରି ଶାସକଙ୍କର ନ୍ୟାୟ ଓ ଆଇନସିଦ୍ଧ ଅଧିକାର ପ୍ରତି ଆନୁଗତ୍ୟ ପ୍ରଦର୍ଶନ ନାଗରିକମାନଙ୍କର ରାଷ୍ଟ୍ରୀୟ କର୍ତ୍ତବ୍ୟ । ପ୍ରତ୍ୟେକ ନାଗରିକ ନିଜ ନିଜର ଦାୟିତ୍ୱ ଓ ଅଧିକାରକୁ ସୁଷ୍ଠୁ-ରୂପେ ସଂପନ୍ନ କରିପାରିଲେ, ରାଷ୍ଟ୍ରୀୟ ଦୃଢ଼ତା ନିଶ୍ଚିତ ଭାବେ ପ୍ରତିଷ୍ଠିତ ହୋଇପାରିବ । ଏଣୁ ବ୍ୟକ୍ତିର ଉନ୍ନତ ଚେତନା, ଆଗ୍ରହ ବ୍ୟବହାର, ଖାଦ୍ୟପେୟ, ଶିକ୍ଷାଦୀକ୍ଷା ପ୍ରଭୃତିର ପୁନଃସ୍ମରଣ ସର୍ବପ୍ରଥମ ରାଜନୈତିକ ଆବଶ୍ୟକତା । (ପୃ. ୭୭୭)

*　　*　　*

କୌଣସି ଦେଶ ବା ଜାତିର ନିରବଚ୍ଛିନ୍ନ ସାଂସ୍କୃତିକ ପ୍ରବାହ ଯୁଗୋପଯୋଗୀ ବିବର୍ତ୍ତନର ଧାରାକୁ ନିଜ ମଧ୍ୟରେ ଗଢ଼ିତ ନ କଲେ ଭବିଷ୍ୟତ ବଂଶଧରମାନଙ୍କୁ ଏକ ଅଖଣ୍ଡ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବା ପାଇଁ ସମର୍ଥ ହୋଇପାରେ ନାହିଁ । କିନ୍ତୁ ଅନାଦିକାଳରୁ ଭାରତୀୟ ମନୀଷୀମାନେ ଏ ପ୍ରକାର ଏକ ଶାଶ୍ୱତ ସତ୍ୟକୁ ଉପଲବ୍ଧ କରିପାରିଥିଲେ ବୋଲି ଭାରତୀୟ ସଂସ୍କୃତି ଆଜି ତାର ମୂଳ ଉତ୍ସଠାରୁ ବିଚ୍ଛିନ୍ନ ନହୋଇ ଏକ ସାର୍ବଜନୀନ ରୂପ ଆହରଣପୂର୍ବକ ମହାକାଳ ବକ୍ଷରେ ତାର ପଦଚିହ୍ନ ଅଙ୍କନ କରି ଯାଉଛି ।" (ପୃ. ୬୭୮)

ଏବଂ ଏପରି ଅନେକ କିଛି... ... ...



ଡକ୍ଟର ଦାସଙ୍କର ଜନ୍ମ-୧୯୪୩ ମସିହା ଜାନୁୟାରୀ ୨୫ ତାରିଖ । ଜନ୍ମସ୍ଥାନ-ଗଞ୍ଜାମର ଚିକିଟି ଅନ୍ତର୍ଗତ ଶ୍ରୀମପୁର । ପୈତୃକ ବାସସ୍ଥାନ-ବଡ଼ଖାଡ଼, ଖିଦାବୂଲମ୍ ତାଳ ଅନ୍ତର୍ଭୁକ୍ତ । ସାଂପ୍ରତିକ ନିବାସ-ଅନନ୍ତ ନଗର, ବ୍ରହ୍ମପୁର । ନିଜ ଗ୍ରାମରେ ପ୍ରାଥମିକ ଶିକ୍ଷା ଶେଷ କଲା ପରେ ସ୍ୱପିତୃବ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ସାମନ୍ତଆପଲ୍ଲୀ ମହନ୍ତ ପରକ୍ରଣ ବିଦ୍ୟାପୀଠର ଛାତ୍ର; ତତ୍ପରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଓଡ଼ିଆରେ (ସମ୍ମାନ) ପାଠ୍ୟକ୍ରମ ସମାପ୍ତ କରି ୧୯୬୩ରେ ଆଲହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ପ୍ରାପ୍ତ । ୧୯୮୯ରେ 'ସାରଳା ମହାଭାରତରେ ରାଜନୀତି' ଶୀର୍ଷକ ଗବେଷଣା-ନିବନ୍ଧ ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପିଏଚ୍.ଡ଼ି. ଉପାଧିରେ ଭୂଷିତ । ୧୯୬୫ଠାରୁ ୧୯୮୯ ମସିହା ମଧ୍ୟରେ ଜୀବନୀ, ଉପନ୍ୟାସ, ପ୍ରବନ୍ଧ ଓ ଐତିହାସିକ ପର୍ଯ୍ୟାଲୋଚନା ସମ୍ବଳିତ ଅନ୍ୟୂନ ୩୫ ଖଣ୍ଡି ବହି ବିଭିନ୍ନ ସ୍ୱନାମଧନ୍ୟ ପ୍ରସିଦ୍ଧ ପ୍ରକାଶକ ସଂସ୍ଥା ଦ୍ୱାରା ପ୍ରକାଶିତ ଏବଂ ବହୁ ସଂଖ୍ୟାରେ ଆଦୃତ; ଅନେକ ଗଳ୍ପ, କବିତା ଓ ଶତାଧିକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକା ଦ୍ୱାରା ପରିବେଷିତ । ଏହା ବ୍ୟତୀତ, କଟକ ଆକାଶବାଣୀ, ତେଲୁଗୁ ସାହିତ୍ୟ ପତ୍ର 'ବିପୁଳା' ଓ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ମାଧ୍ୟମରେ ସାହିତ୍ୟ-ପ୍ରତିଭା ପରିସ୍ଫୁଟିତ । ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ପାଠକ ସଂସଦ, ବଂଶଧାରା ସାହିତ୍ୟ ପରିଷଦ ଓ ତେଲୁଗୁ ସାହିତ୍ୟ ସଂସଦ ପ୍ରଭୃତି ସାହିତ୍ୟାନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ଉତ୍ତର ପ୍ରଦେଶ ସରକାର, ସତ୍ୟବାଦୀ ଗୋପବନ୍ଧୁ ମହାବିଦ୍ୟାଳୟ, 'ଜନବୃତ୍ତ' ନ୍ୟାତର୍ଗବେଷଣା କେନ୍ଦ୍ର, କଟକ, ବ୍ରହ୍ମପୁରର ଉତ୍କଳ ପରିଷଦ ଓ ଗଞ୍ଜାମ ଲେଖକ ସମ୍ମିଳନୀ ପକ୍ଷରୁ ସମ୍ମାନିତ । କର୍ମକ୍ଷେତ୍ର-ପ୍ରଥମେ ରାଜ୍ୟ ସାହିତ୍ୟ ଏକାଡେମୀ, ପରେ ଅର୍ଥ ବିଭାଗୀୟ ଅଧିକାରୀ । ସଂପ୍ରତି ରାଜସ୍ୱ ବିଭାଗର ସମୀକ୍ଷାଧିକାରୀ ତଥା ଅନୁଶାସନ ସଚିବ ରୂପେ ଭୁବନେଶ୍ୱରଠାରେ ଅବସ୍ଥାପିତ ।

